# ଯୁଗପୁରୁଷ

# ଗୋପବନ୍ଧୁ ଦାସ

ସଂକଳକ

ସୂର୍ଯ୍ୟନାରାୟଣ ଦାସ

ଓଡ଼ିଶା ବୁକ୍ ଷ୍ଟୋର୍

YUGAPURUSHA GOPABANDHU DAS
*Compiled by* : Suryanarayan Das

ସଙ୍କଳକ
ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ.

ପ୍ରକାଶକ
ଶ୍ରୀ ଗୋବର୍ଦ୍ଧନଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩୦୦୨

ପ୍ରଚ୍ଛଦଶିଳ୍ପୀ
ଶ୍ରୀ ଲଡ଼ୁକିଶୋର ସିଂହସାମନ୍ତ

ମୁଦ୍ରାକର
ଗୁରୁପ୍ରସନ୍ନ ପ୍ରେସ୍
କଟକ-୧

ପ୍ରଥମ ପ୍ରକାଶ ତିଥି
ରାସ ପୂର୍ଣ୍ଣିମା, ୧୯୭୨

ଦ୍ୱିତୀୟ ପ୍ରକାଶ ତିଥି
ଗୋପବନ୍ଧୁଙ୍କ ଶତତମ ଜନ୍ମବାର୍ଷିକୀ, ୧୯୭୭

ତୃତୀୟ ପ୍ରକାଶ ତିଥି
ଦୀପାବଳି ପୂର୍ଣ୍ଣିମା, ୧୯୮୩

Published by
G. C. Patra
ORISSA BOOK STORE
Binod Behari, Cuttack—753002

ପୁଣ୍ୟଶ୍ଳୋକ, ଦୀନବନ୍ଧୁ
ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ
ପବିତ୍ର ଶତତମ ଜନ୍ମ - ବାର୍ଷିକୀରେ
**ଯୁଗ-ପୁରୁଷ ଗୋପବନ୍ଧୁ ଦାସ**
ଗ୍ରନ୍ଥର ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣ
ଆମେ ପାଠକ, ପାଠିକାଙ୍କ ହାତରେ
ଅର୍ପଣ କରି ନିଜକୁ ଗୌରବାନ୍ୱିତ
ମନେ କରୁଛୁ । ଆଶାକରୁ ଏ
ସଂସ୍କରଣଟି ମଧ୍ୟ ଜନସାଧାରଣଙ୍କ
ମଧ୍ୟରେ ପୂର୍ବଭଳି ଆଦୃତ ହେବ ।

**ପ୍ରକାଶକ**

**ଯୁଗ-ପୁରୁଷ ଗୋପବନ୍ଧୁ ଦାସ**
ଗ୍ରନ୍ଥର ତୃତୀୟ ସଂସ୍କରଣ ପ୍ରକାଶ
ଅବସରରେ ସଂକଳକ, ପ୍ରାବନ୍ଧିକ,
ଲେଖକ ଏବଂ ଅଗଣିତ ଶୁଭେଚ୍ଛୁ ଓ
ପୃଷ୍ଠପୋଷକଗଣଙ୍କୁ ଆମର ହାର୍ଦ୍ଦିକ
କୃତଜ୍ଞତା ଜ୍ଞାପନ କରୁଛୁ ।

**ପ୍ରକାଶକ**

# ଅନିର୍ବାଣ ଶିଖା



ଆବିର୍ଭାବ
୯।୧୦।୧୮୭୭

ତିରୋଭାବ
୧୭।୬।୧୯୨୮

## ଏଇ ସଂକଳନର
## ଶ୍ରୀବୃଦ୍ଧି ସାଧକ କେଇଜଣ·····



ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର



ସ୍ୱର୍ଗତ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ



ଶ୍ରୀଯୁକ୍ତ ବିଶ୍ୱନାଥ ଦାସ



ପଦ୍ମଭୂଷଣ ଡଃ ରାଧାନାଥ ରଥ



ସ୍ୱର୍ଗତ ଚିନ୍ତାମଣି ଦାସ



ପଦ୍ମଶ୍ରୀ ଡଃ ସତ୍ୟନାରାୟଣ ରାଜଗୁରୁ



ଡଃ ଶ୍ରୀରାମଚନ୍ଦ୍ର ଦାଶ



ଡଃ ଗୋପାଳଚନ୍ଦ୍ର ମିଶ୍ର



ଅଧ୍ୟାପକ ନାରାୟଣ ଶତପଥୀ



ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ



ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀ



ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ କର



ପଣ୍ଡିତ ନୀଳମଣି ମିଶ୍ର



ଶ୍ରୀ ମୁରଲୀଧର ମଲ୍ଲିକ



ଶ୍ରୀ ଧର୍ମେଶ୍ୱର ତ୍ରିପାଠୀ



ଶ୍ରୀ ଚିତ୍ତରଞ୍ଜନ ଦାସ



ଡାଃ ଈଶାନ ଚନ୍ଦ୍ର ପଟ୍ଟନାୟକ



ସତ୍ୟନାରାୟଣ ମହାପାତ୍ର



ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀ



ଶ୍ରୀମତୀ ପ୍ରମିଳା ପଣ୍ଡା



କୁମାରୀ ଶୈଳବାଳା ବେହେରା



ଶ୍ରୀ ନବଘନ ପଣ୍ଡା



ଶ୍ରୀ କିଶୋରଚନ୍ଦ୍ର ମିଶ୍ର



ସଂକଳକ

ସୁପରିଚିତ ସାହିତ୍ୟିକ ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ଦାସଙ୍କର ଜନ୍ମ ଗଞ୍ଜାମର ଏକ କ୍ଷୁଦ୍ର ପଲ୍ଲୀ ଶ୍ରୀମପୁରଠାରେ, ୧୯୪୩ ମସିହାରେ । ତାଙ୍କର ବାଲ୍ୟକାଳ ଅତିବାହିତ ହୁଏ ଅନ୍ଧ୍ରର ଅଖ୍ୟାତ ଗ୍ରାମ ବଡ଼ବାଡ଼ରେ । ଶିକ୍ଷାକ୍ଷେତ୍ର—ସାମନ୍ତଅପଲ୍ଲୀ, ବ୍ରହ୍ମପୁର ଓ ଆଲହାବାଦ । କର୍ମକ୍ଷେତ୍ର—ଆଗେ ରାଜ୍ୟ ସାହିତ୍ୟ ଏକାଡେମୀ; ଏବେ ଓଡ଼ିଶା ଅର୍ଥବିଭାଗୀୟ ଅଫିସର । ଓଡ଼ିଆ ସାହିତ୍ୟକୁ ଏ ଯାବତ୍ ତାଙ୍କର ଦାନ—ଯୁଗ ଜନକ ମହାତ୍ମାଗାନ୍ଧୀ, ଯୁଗସ୍ରଷ୍ଟା ନେହେରୁ, ଯୁଗଜ୍ୟୋତି ଲାଲବାହାଦୁର ଶାସ୍ତ୍ରୀ, ଯୁଗନେତ୍ରୀ ଇନ୍ଦିରା, ଯୁଗାଗ୍ରଣୀ ରାଜୀବ, ଯୁଗଜନ୍ମୀ ଜୟପ୍ରକାଶ, ଦାସ ଅପଣେ, ଯୁଗମାନବ ଜାକିରହୁସେନ, ଯୁଗେ ଯୁଗେ ନାରୀ, ଯୁଗେ ଯୁଗେ ଭାରତ, ଯୁଗେ ଯୁଗେ ଆଫ୍ରିକା, ଜାତିସଂଘ, ସାଂପ୍ରତିକ ପ୍ରବନ୍ଧ, ପୃଥିବୀର ଅମର ମଣିଷ, ନାଟ୍ୟ ପ୍ରତିଭା, ମାନସ ମନ୍ଥନ ଓ ଅନ୍ୟାନ୍ୟ ।

•



ପ୍ରକାଶକ

ଏ ସଂକଳନର ପ୍ରକାଶକ **'ଓଡ଼ିଶା ବୁକ ଷ୍ଟୋର"**ର ପ୍ରତିଷ୍ଠାତା ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ରଙ୍କ ଜନ୍ମ ଗଞ୍ଜାମର ପିତଳାଠାରେ, ୧୯୨୭ ମସିହାରେ । ଜୀବନର ପୂର୍ବାହ୍ନରୁ ଏହି କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଶତାଧିକ ବଶିଷ୍ଟ ଗ୍ରନ୍ଥ ଏବଂ ସହସ୍ରାଧିକ ଗଳ୍ପ ଉପନ୍ୟାସ, ନାଟକ, ଜୀବନୀ, ପ୍ରବନ୍ଧ ସମାଲୋଚନା, ଭ୍ରମଣ, ରମ୍ୟ ରଚନା ସାଧାରଣ ଜ୍ଞାନ, ଧର୍ମ ସାହିତ୍ୟ ଓ ଧର୍ମ ଗ୍ରନ୍ଥ, ଅନୁବାଦ ସାହିତ୍ୟ ଗ୍ରନ୍ଥାବଳୀ, ଜ୍ୟୋତିଷ ଓ ଅଭିଧାନ, ଆଦି ପୁସ୍ତକ ପ୍ରକାଶନ ଦ୍ୱାରା ସାହିତ୍ୟ ବିପଣୀକୁ ସୁଶ୍ରୀ, ସମୃଦ୍ଧ ଓ ଋଦ୍ଧିମନ୍ତ କରିବା ଦିଗରେ ତାଙ୍କର ସଦୁଦ୍ୟମ ଅବିସମ୍ବାଦିତ । ଅମାବାସ୍ୟାର ଚନ୍ଦ୍ର, ବଧୂ ନିରୁପମା, ଗୀତା ଜ୍ଞାନେଶ୍ୱରୀ, ଯୁଗେ ଯୁଗେ ନାଟ୍ୟ ସାହିତ୍ୟ, ଯୁଗ ଜନକ ମହାତ୍ମାଗାନ୍ଧୀ, ରାମାୟଣ, ମହାଭାରତ, ଭାଗବତ, ମଣିମା ଗୁଣିମା ହେତୁ, ଆକାଶ ପାତାଳ, ଲଳିତ ଲବଙ୍ଗ ଲତା, ଓଡ଼ିଶାର ଦେବା ଦେବୀ, ଓଡ଼ିଶାରେ ସାଧୁ ସନ୍ଥ, ଓଡ଼ିଶାର ପର୍ବପର୍ବାଣୀ, ଓଷା ବ୍ରତ, ଯାନିଯାତ୍ରା ଆଦି ଏହି ସଂସ୍ଥାର କେତୋଟି ଉତ୍କୃଷ୍ଟ ଅବଦାନ ।

•

# ଗୋପ-ବନ୍ଦନମ୍

ପ୍ରବୋଧକୁମାର ମିଶ୍ରଃ
(କଟକମ୍)

( ୧ )

ମହାର୍ହ-କାବ୍ୟ-ସ୍ତବଗ୍ରନ୍ଥିତ !
ମହୀୟସୀ ତେ ବର-ଲେଖନୀ-ସୁତା
ମହାନୁଭାବା ତବ ଦଗ୍ଧ ଭାରତୀ
ମନସ୍ୱିତା ତେ ମହସା ମନୋରମା ।

( ୨ )

ସୁମଞ୍ଜୁ ବାଣୀ-ବର-କୁଂଜ-ମଣ୍ଡନ !
ତ୍ୱମେବ ବଂଧୋ ! ମମତାର୍ଦ୍ର-ଚେତନଃ
ତବୈବ ଭାଷା ନନୁଭାବ-ଭାରକୈଃ
ବିଭାତି ବା ଭାସ୍ୟତି ଶାଶ୍ୱତୀ ସତୀ ।

( ୩ )

ସୁଲୋଲ ଭାବାବଳି-ସଂବଳା କଳା-
ସୁସାଧନା ତେ ବିମଳା ଗଳତ୍ସୁଧା
ସୁକୋମଳା କ୍ଳୃପ୍ତ-ପଦାଳି-ଲୋଳିତା
ସୁଶୋଭନା ସ୍ୟା[illegible]ସିକାଽନ୍ତରାଽମ୍ନନ ।

( ୪ )

ହେ ଗୋପବନ୍ଧୋ ! ମହତୀ ମନସ୍ୱିତା
ସଂଶୁଦ୍ଧିଗା ବୁଦ୍ଧିବିବେକ-ବୋଦ୍ଧୃତା
ଶଶ୍ୱଦ୍‌ବିନମ୍ୟୋତ୍କଳ-ଧାମ-ମଣ୍ଡନ !
ଦେହି ପ୍ରକାମଂ ଜଗତେ 'ପ୍ରବୋଧନମ୍' ।



# ଏ ସଂକଳନର ଯଥାର୍ଥତା କ'ଣ ?

ସାହିତ୍ୟର ମୂଳ ଲକ୍ଷ୍ୟ ସାମାଜିକ ବିକାଶର ପ୍ରକାଶ ହେଲେ ସୁଦ୍ଧା ଏହାର ଦୁଇଟି ଆଭିମୁଖ୍ୟ ପରିଦୃଷ୍ଟ ହୁଏ । ପ୍ରଥମ—ଆଦର୍ଶ, ଅପରଟି—ବାସ୍ତବତା । ପ୍ରାଚୀନ ଯୁଗର ଓଡ଼ିଆ ସାହିତ୍ୟ, ଏପରି କି ଭାରତୀୟ ସାହିତ୍ୟ ସୁଦ୍ଧା ଆଦର୍ଶାଭିମୁଖୀ ଥିବାର ଜଣାପଡ଼େ । ଅବଶ୍ୟ ଆଜିକାଲି ବିଭିନ୍ନ ଭାଷା ଓ ସାହିତ୍ୟର ପ୍ରଭାବ ବଳରେ ଓଡ଼ିଆ ସାହିତ୍ୟରେ ବହୁବିଧ ବାସ୍ତବତାଭିମୁଖୀ ସାହିତ୍ୟ ସୃଷ୍ଟି ହେବାରେ ଲାଗିଛି । ବିଶଦ ଆଲୋଚନା କଲେ ଦୁଇଟି ଯେ ପରସ୍ପରସାପେକ୍ଷ, ଏଥିରେ ସନ୍ଦେହ ନାହିଁ । ଏଣିକି ଦେଖିବା କଥା, କାହାର ପ୍ରାଧାନ୍ୟ କେଉଁଥିରେ ବେଶୀ ।

ଏହି ଦୃଷ୍ଟିରେ ବିଚାର କଲେ, ବାସ୍ତବାଭିମୁଖୀ ସାହିତ୍ୟର ପ୍ରୟୋଜନୀୟତା ଯେତିକି, ଆଦର୍ଶାଭିମୁଖୀ ସାହିତ୍ୟର ଆବଶ୍ୟକତା ତା ଅପେକ୍ଷା କୌଣସି ଗୁଣରେ କମ୍ ନୁହେଁ । ସେହି ହେତୁରୁ ସାହିତ୍ୟର ବିଭିନ୍ନ ବିଭାବ ମଧ୍ୟରେ ଜୀବନୀ ବା ଚରିତମୂଳକ ରଚନାର ଏକ ବିଶିଷ୍ଟ ସ୍ଥାନ ଦୃଷ୍ଟ ହୁଏ । ଭାରତୀୟ ସାହିତ୍ୟ ଛାଡ଼ନ୍ତୁ, ଓଡ଼ିଆ ସାହିତ୍ୟରେ କିନ୍ତୁ ତାଦୃଶ ଜୀବନୀସମ୍ବଳିତ ସାହିତ୍ୟର ଅଭାବ ପ୍ରଚଣ୍ଡଭାବେ ଅନୁଭୂତ ହୁଏ । ଗୋଟିଏ ଦୁଇଟିକୁ ଛାଡ଼ିଦେଲେ ଓଡ଼ିଆରେ ଆଦର୍ଶ ସାହିତ୍ୟ ନାହିଁ କହିଲେ ଚଳେ । କିନ୍ତୁ ଭୁଲିଯିବା ଉଚିତ ନୁହେଁ, ମହାକବି, ମହାପୁରୁଷ ତଥା ମହାମନୀଷୀଙ୍କ ଜୀବନୀ ଜାତୀୟ ଉନ୍ନତିରେ ପ୍ରଭୂତ

ସାହାଯ୍ୟ କରିଥାଏ । ଦୁଃଖର କଥା, ସମସ୍ତେ ଏକଥା ଉଣା ଅଧିକେ ଉପଲବ୍ଧି କରୁଥିଲେ ସୁଦ୍ଧା ଓଡ଼ିଆରେ ତାଦୃଶ ସାହିତ୍ୟ ସୃଷ୍ଟି ପାଇଁ କାହାରି ଉଦ୍ୟମ ଦେଖାଯାଏ ନାହିଁ । ବହୁ ଦୂର ତଳର କଥା ଛାଡ଼ନ୍ତୁ, ଚଳିତ ଶତକର ଯୋଗଜନ୍ମା କୁଳବୃଦ୍ଧ ମଧୁସୂଦନ ଦାସ, ପୁଣ୍ୟାତ୍ମା ଗୋପବନ୍ଧୁ, ସ୍ୱଭାବକବି ଗଙ୍ଗାଧର ପ୍ରଭୃତି ଯେଉଁମାନେ ବିଭିନ୍ନ କ୍ଷେତ୍ରରେ ଅସାଧାରଣ ନୈପୁଣ୍ୟ ପ୍ରଦର୍ଶନ କରିଯାଇଛନ୍ତି, ସେମାନଙ୍କର ଜୀବନଚରିତ ସମ୍ବନ୍ଧରେ କେହି ଆଲୋକପାତ କରିବା ଯତ୍ନ ସୁଦ୍ଧା କରୁନାହାନ୍ତି । ତା ହୋଇଥିଲେ ଓଡ଼ିଆ ସାହିତ୍ୟର ବିଭବର ଏକ ଅତ୍ୟାବଶ୍ୟକ ଶୂନ୍ୟସ୍ଥାନ ପୂରଣ ହୁଅନ୍ତା, ସନ୍ଦେହ ନାହିଁ ।

ଏହିଭଳି ଅବସ୍ଥାରେ ତରୁଣ ସମାଲୋଚକ ଶ୍ରୀ ସୂର୍ଯ୍ୟନାରାୟଣ ଦାସଙ୍କ ଉଦ୍ୟମ ନିଶ୍ଚିତ ଭାବେ ପ୍ରଶଂସନୀୟ । ଏହା ଯେ କୌଣସି ଓଡ଼ିଆ କହିବେ । ଆମେ ଆମକୁ, ଓଡ଼ିଆ ଜାତିକି, ଓଡ଼ିଆ ଦେଶକୁ ଚିହ୍ନାଇବାକୁ ଗଲାବେଳେ ପ୍ରଥମେ ଗୋପବନ୍ଧୁଙ୍କ ନାମ ଉଚ୍ଚାରଣ କରୁ । ତାଙ୍କୁ ମିଠା କଥାରେ ପୁଣ୍ୟାତ୍ମା, ଦେଶବନ୍ଧୁ, ଯୋଗଜନ୍ମା, ମହାପୁରୁଷ ପ୍ରଭୃତି ବିଶେଷଣ ବିଶିଷ୍ଟ କରୁଥାଉ । ଅଥଚ ତାଙ୍କ ଅକାଳ ବିୟୋଗରେ ପାର୍ଦ୍ଧ ଅର୍ଦ୍ଧ ଶତାବ୍ଦୀ ଅତୀତ ହୋଇଗଲା ସିନା, ତାଙ୍କ ଜୀବନୀସମ୍ବଳିତ ପୂର୍ଣ୍ଣାଙ୍ଗ ଇତିହାସଟିଏ ପ୍ରଣୀତ ହୋଇ ପାରିନାହିଁ । ଆବଶ୍ୟକତା ଅନୁପାତରେ କ୍ଷୁଦ୍ର ହେଲେ ସୁଦ୍ଧା ଏତିକିବେଳେ ଶ୍ରୀ ଦାସଙ୍କ ସଂକଳନଟିର କି ଯଥାର୍ଥତା ରହିଛି, ପାଠକ ମାନେ ଅନୁଭବ କରିନେବେ । ମୁଁ ସେ ବିଷୟରେ ବିଶେଷ କିଛି କହିବାରେ ଫଳ ନାହିଁ ।

ଲେଖକଙ୍କ ଉଦ୍ୟମ ସର୍ବତୋଭାବେ ସଫଳ ହେଉ ।

ଡକ୍ଟର **ବେଣୀମାଧବ ପାଢ଼ୀ**
ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

# 'ଗୋପବନ୍ଧୁ-ସଂକଳନ' କାହିଁକି ?

'ଗୋପବନ୍ଧୁ' ନାମୋଚ୍ଚାରଣ ମାତ୍ରେ ମନରେ ସ୍ୱତଃ ପ୍ରତିଭାତ ହୁଏ ବହୁମୁଖୀ ପ୍ରତିଭାର ଏକ ପ୍ରତୀକ; ପୁଣି ଭିନ୍ନମୁଖୀ ପ୍ରଭାର ଏକ ପ୍ରତିଭୂ । ସେଇଥିପାଇଁ ଗୋପବନ୍ଧୁ ପରିଚିତ 'ଉତ୍କଳମଣି' ଭାବରେ, ଯେପରିକି 'ଉତ୍କଳଗୌରବ' ବା 'କୁଳବୃଦ୍ଧ' ଭାବରେ ପରିଚିତ ମଧୁସୂଦନ ଦାସ କିମ୍ବା 'ଦେଶବନ୍ଧୁ' ଭାବରେ ପରିଚିତ ଚିତ୍ତରଞ୍ଜନ, ଅଥବା 'ବାପୁ' ଭାବରେ ପରିଚିତ ଗାନ୍ଧିଜୀ ।

ଦେଶ, ଜାତି, ସମାଜର କଲ୍ୟାଣ କାମନାରେ ଉତ୍ସର୍ଗ ହୋଇଥାଏ ଯାହାଙ୍କର ଜୀବନ, ସମଷ୍ଟିର ସ୍ୱାର୍ଥସାଧନ ପାଇଁ ବ୍ୟଷ୍ଟି ସ୍ୱାର୍ଥ ଯାହାଙ୍କ ପାଖରେ ତୁଚ୍ଛ ଏବଂ ଦୁଃଖ-କଷ୍ଟ, ସେବା, ତ୍ୟାଗ, ସାଧନା ଓ ମାନବିକତାର ବ୍ରତରେ ସିଏ ବ୍ରତୀ, ସିଏ ହିଁ ବୁଝନ୍ତି ସମସ୍ତଙ୍କର ସ୍ମରଣୀୟ । ପୁଣି ଭାଷା, ସାହିତ୍ୟ, ସଂସ୍କୃତି ଓ କଳାକୁ ଋଦ୍ଧିମନ୍ତ ଓ ସମୃଦ୍ଧ କରିବା ପାଇଁ ସିଏ ନିଜକୁ ଅକୁଣ୍ଠ ସମର୍ପି ଦେଇଥାଆନ୍ତି ଏବଂ ସଳିତା ଭଳି ନିଜେ ଜଳି ଜଳି ଅନ୍ୟକୁ ଆଲୋକିତ ଓ ଉଦ୍ଭାସିତ କରିବା ଯାହାର ଧର୍ମ ଓ କର୍ମ, ସିଏ ହୁଅନ୍ତି ଅକ୍ଷୟ, ଅମର ।

"ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ସ୍ୱରାଜ୍ୟର ପଥେ ଅଛି ଯେତେ ଗାଡ଼,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

ଏଭଳି ମର୍ମସ୍ପର୍ଶୀ ଉଦ୍‌ବୋଧନ ଯାହାଙ୍କ କଣ୍ଠରୁ ଉଚ୍ଚାରିତ, ତାଙ୍କର ମହାମନ୍ୟତା, ଜାତୀୟତା, ସ୍ୱଦେଶପ୍ରେମ, ଆକାଶଚୁମ୍ବୀ ଉଚ୍ଚ ଚିନ୍ତା ଓ ସମୁନ୍ନତ ଦୃଷ୍ଟିକୋଣ ସ୍ପଷ୍ଟ ପ୍ରମାଣିତ ।

କେବଳ ଉଚ୍ଚକୋଟୀର ଜଣେ ଦେଶସେବୀ ଭାବରେ ନୁହନ୍ତି, ଜନ ମନକୁ ଛୁଇଁଲା ଭଳି ଓ ଜନମାନସରେ ପ୍ରତିବିମ୍ବିତ, ପ୍ରତିଫଳିତ ହେଲାଭଳି ଲେଖା ଲେଖିବାରେ ଯିଏ ସମର୍ଥ, ସେ ହିଁ ଯଥାର୍ଥରେ ସାର୍ଥକ ଓ ସଫଳ ଲେଖକ, ସାହିତ୍ୟିକ ।

ଜୀବନ ସହିତ ଯାହାର ଗତି, ତାହା ହିଁ ସାହିତ୍ୟ । ସମାଜ ଓ ଜୀବନର ନିଛକ ଛବି ପ୍ରତିଫଳିତ ହୁଏ ଏବଂ ବାସ୍ତବରୂପ ରୂପାୟିତ ହୁଏ ଯେଉଁଥିରେ, ତାହାହିଁ ସାହିତ୍ୟ । ଦୁଃଖ, ଦୈନ୍ୟ, ବିଷାଦ, ବିମର୍ଷ, ଯାତନା, ଯନ୍ତ୍ରଣା ଓ ବ୍ୟଥା-ବେଦନା-ବିଦଗ୍ଧ ପ୍ରାଣର ଚିତ୍ର ଯିଏ ଫୁଟାଇପାରେ, ପୁଣି ସମାଜର କଳଙ୍କ କାଳିମା ଓ ପ୍ରକୃତିର ପ୍ରାଚୁର୍ଯ୍ୟ ଓ ସୁନ୍ଦରତାକୁ ଯିଏ ନିଷ୍ଠାର ସହ ନିଖୁଣ ଭାବରେ ପ୍ରକଟ କରିପାରେ, ସେ ହିଁ ଅସଲ ସାହିତ୍ୟିକ, କବି ଓ କଳାକାର ।

ଏହିଭଳି ଜଣେ ଶ୍ରେଷ୍ଠ କବି ଓ ଶିଳ୍ପୀ ଉତ୍କଳମଣି ଗୋପବନ୍ଧୁ । ସମାଜସେବୀ ଭାବରେ ତାଙ୍କର ପ୍ରଖ୍ୟାତି ଯେତିକି ଵ୍ୟାପ୍ତ, ଜଣେ ଦରଦୀ କବି ଓ କୁଶଳୀ କଳାକାର ଭାବରେ ତାଙ୍କର ପରିଚିତି ମଧ୍ୟ ସେତିକି ବ୍ୟାପ୍ତ । ତାଙ୍କର ଲେଖାରେ, କାବ୍ୟ-କବିତାରେ ବାସ୍ତବତା ଓ ଜାତୀୟତାର ଯେଉଁ ଅଫୁରନ୍ତ ଆଲେଖ୍ୟ ରହିଛି ଏବଂ ଯେଉଁ ମାର୍ମିକ ମାନବିକତାର ମାର୍କା ରହିଛି, ତାହା ତାଙ୍କର ମହାମନ୍ୟତା ଓ ମହାନୁଭବତାର ପ୍ରକୃଷ୍ଟ ପ୍ରମାଣ । ତାଙ୍କର 'ବନ୍ଦୀର ଆତ୍ମକଥା' 'କାରା କବିତା', 'ଧର୍ମପଦ', 'ଗୋମାହାତ୍ମ୍ୟ' ଇତ୍ୟାଦି କାବ୍ୟଗୁଚ୍ଛ ଆକାରରେ, ପ୍ରକାରରେ ବିଶାଳ ଓ ବିରାଟ ନ ହେଲେ ମଧ୍ୟ ଆସନରେ ଆକାଶଚୁମ୍ବୀ ଓ ମୂଲ୍ୟବୋଧରେ ମାଟିଚଲଲମ୍ବୀ ।

ଜଣେ ଆଦର୍ଶ ଓ ଆଗ୍ରହନିଷ୍ଠ ଶିକ୍ଷକ ତଥା ଜାତିଗଠକ ଭାବରେ ସତ୍ୟବାଦୀର ବକୁଳ ବନ ଓ ଛୁରିଅନା କଣ୍ଠରେ ବନବିଦ୍ୟାଳୟ ପ୍ରତିଷ୍ଠା

କର ଏବଂ ପଣ୍ଡିତ ଗୋଦାବରୀଶ, ପଣ୍ଡିତ ନୀଳକଣ୍ଠ, ଅଗ୍ରଣୀ ହରିହର, ପଣ୍ଡିତ କୃପାସିନ୍ଧୁଙ୍କ ଭଳି ବିଦ୍ୟାବାଗୀଶ, ଜ୍ଞାନଗରିଷ୍ଠ, ବୁଦ୍ଧିଶ୍ରେଷ୍ଠ ବ୍ୟକ୍ତିମାନଙ୍କୁ ସହଯୋଗୀ ଭାବରେ ଆଣି ଗୁଡ଼ିଏ ନିର୍ଭୀକ, ସ୍ୱାଧୀନ-ଚେତା, ଦେଶପ୍ରେମୀ, ସ୍ପଷ୍ଟବାଦୀଣୁଆ ମଣିଷ ସର୍ଜନା କରିବା କେବଳ ଗୋପବନ୍ଧୁଙ୍କ ଦ୍ୱାରା ହିଁ ସମ୍ଭବ ହୋଇ ପାରିଥିଲା । ଇଚ୍ଛା କରିଥିଲେ ଲେଉମାସୁ ଭୂକରଟିଏ ସେ କରିପାରିଥାନ୍ତେ ଓ ଆଜି ପାଞ୍ଚଜଣଙ୍କ ଭଳି ମଉଜରେ ରହିପାରିଥାନ୍ତେ; କିନ୍ତୁ କବିବର ରାଧାନାଥଙ୍କ ଭାଷାରେ କୁହାଯାଇପାରେ—"ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।" ସେ ଥିଲେ ବକୁଳବନର ସୁରଭିତ ପୁଷ୍ପ ।

ବାଡ଼ି, ଝଡ଼ି, ମରୁଡ଼ି, ବାଢ଼ି ବେଳେ ଇଚ୍ଛା କରିଥିଲେ ସେ ଅନ୍ୟମାନଙ୍କ ଭଳି ଉଦାସୀନ ଓ ଦ୍ୱାରରୁଦ୍ଧ ହୋଇ ରହିପାରିଥାନ୍ତେ; କିନ୍ତୁ ସେ ସ୍ୱେଚ୍ଛାରେ ବରଣ କରି ନେଇଥିଲେ ଚରମ ଦୁଃଖକଷ୍ଟକୁ ଓ ଆର୍ତ୍ତଜନଙ୍କ ସେବାଯଜ୍ଞକୁ । ସେଥିପାଇଁ ଘରେ ପୀଡ଼ିତ ପୁଅ ପାଖରେ ଅଟକି ନ ଯାଇ ସେ ଧାଇଁ ଯାଇଥିଲେ ଶହେ ପୁଅ ଝିଅଙ୍କ ପାଖକୁ, ଯେଉଁମାନେ ଥିଲେ ତାଙ୍କର ପ୍ରାଣ ଓ ଧନ ।

ଓଡ଼ିଶାରେ ଜାତୀୟ କଂଗ୍ରେସକୁ ଆଣିବାରେ ସେ ଥିଲେ ଭଗୀରଥ । ଜାତୀୟ କଂଗ୍ରେସର ହାଉଆ ବୁହାଇ ସେ ଓଡ଼ିଶାବାସୀଙ୍କ ନିଥର ପ୍ରାଣତନ୍ତ୍ରୀରେ ସୃଷ୍ଟି କରାଇ ପାରିଥିଲେ ତରଙ୍ଗ ଓ ଆନ୍ଦୋଳନ ।

ଏଇଭଳି ବିଶେଷ ଓ ବହୁମୁଖୀ ପ୍ରଭା ଓ ପ୍ରତିଭାର ଏକ ଜ୍ୟୋତିଷ୍କ ଉତ୍ସକୁ ଚିହ୍ନି ଚିହ୍ନାଇବାର ଆବଶ୍ୟକତା ଏକାନ୍ତ ଅନସ୍ୱୀକାର୍ଯ୍ୟ; ଆଉ ଅପରିହାର୍ଯ୍ୟ ତାଙ୍କର ଅସାଧାରଣ କାର୍ଯ୍ୟ ଓ କୃତିର ସମୀକ୍ଷା ଓ ପର୍ଯ୍ୟାଲୋଚନା । ଅଲୌକିକ ତାଙ୍କର ସାହିତ୍ୟ ସାଧନା ଓ ସମାଜର ବାସ୍ତବ ଚିତ୍ର ଚିତ୍ରଣରେ କଳାକୁଶଳତା । ଅନନ୍ୟସାଧାରଣ ତାଙ୍କର ସମାଜସେବା ଓ ସମାଜସଂସ୍କାର । ଦାଢ଼ି ନିଶ ରଖିବା ଯେତେବେଳେ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଧର୍ମ ସୂତ୍ରରେ ବାନ୍ଧିଥିଲା, ସେତେବେଳେ ଦାଢ଼ି ନିଶ ରଖି ସେ ଆଣିଥିଲେ ସମାଜସଂସ୍କାର ।

ଏଇଭଳି ଏକ ଅଫୁରନ୍ତ ପ୍ରତିଭା ସମ୍ପର୍କରେ ଏକ ସଙ୍କଳନ ସତରେ ଏକାନ୍ତ ଆବଶ୍ୟକ । ଗୋପବନ୍ଧୁଙ୍କ ସମ୍ପର୍କରେ ଜୀବନୀ ଲେଖା ହୋଇଛି; ତାଙ୍କର ରଚନାର ଆଲୋଚନା ମଧ୍ୟ ହୋଇପାରିଛି । ତଥାପି ସମୁଦ୍ରର ବିଶାଳତା ଓ ଗମ୍ଭୀରତା ମାପିବା ଯେପରି ଦୁଃସାଧ୍ୟ; ସେହିପରି ଉତ୍କଳମଣି ଗୋପବନ୍ଧୁଙ୍କୁ ମାପିବା ମଧ୍ୟ କଷ୍ଟକର । ତେଣୁ ଯେତେ ଯେତେ ଆଲୋଚନା, ପର୍ଯ୍ୟାଲୋଚନା ହେବ, ସେତେ ଭଲ ହେବ ତାଙ୍କୁ ଜାଣିବା ପାଇଁ । ଏଥିପାଇଁ ଗୋପବନ୍ଧୁ-ସଂକଳନର ଆବଶ୍ୟକତାକୁ ଗ୍ରହଣ କରିବାକୁ ହେବ ।

ଏଥିରେ ଗୋପବନ୍ଧୁଙ୍କୁ ବିଭିନ୍ନ ଦିଗରୁ ଚିହ୍ନି ଚିହ୍ନାଇବାର ପ୍ରୟାସ କରାଯାଇଛି । ବହୁ ବିଶିଷ୍ଟ ଲେଖକ, ସାହିତ୍ୟିକ, ରାଜନୀତିଜ୍ଞ ଓ ସମାଜ-ସେବୀଙ୍କ ବିଭିନ୍ନ ଦୃଷ୍ଟିକୋଣର ଆଲୋଚନା ଏହି ସଙ୍କଳନରେ ସନ୍ନିବେଶିତ ହୋଇଛି । ତେଣୁ ଏହି ସଙ୍କଳନଟି ଖଣ୍ଡିଏ ଦର୍ପଣ, ଯେଉଁଥିରେ କି ପ୍ରତିବିମ୍ବିତ ଗୋପବନ୍ଧୁଙ୍କୁ ସ୍ପଷ୍ଟ ଦେଖିହେବ । ଏଥିପାଇଁ ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ସୂର୍ଯ୍ୟନାରାୟଣ ଦାସଙ୍କ ଏ ଉଦ୍ୟମ ଅତ୍ୟନ୍ତ ସ୍ୱାଗତଯୋଗ୍ୟ ।

ଶ୍ରୀ ବିଚିତ୍ରାନନ୍ଦ କର, ଏମ୍. ଏ.
ସମ୍ପାଦକ, 'ମାତୃଭୂମି'

# ଏଇ ସଂକଳନ ସମ୍ପର୍କରେ...

ସେ ଆଜକୁ ଛଅ ବର୍ଷ ତଳର କଥା । ୧୯୬୬ ମସିହାର ଏକ ଶିଶିରସିକ୍ତ ସନ୍ଧ୍ୟା । ମୋର ବନ୍ଧୁ ଅଧ୍ୟାପକ ଶ୍ରୀ ସୁଦର୍ଶନ ଆଚାର୍ଯ୍ୟଙ୍କର ବ୍ରହ୍ମପୁରସ୍ଥ ବାସଭବନରେ ଏକ ଘରୋଇ ଆସର ବସିଥାଏ । ସେଠାରେ ଉପସ୍ଥିତ ଥାଆନ୍ତି ଅଧ୍ୟାପକ ଆଚାର୍ଯ୍ୟଙ୍କ ସହିତ ଅଧ୍ୟାପକ ସୀତାରାମ ମହାପାତ୍ର, ଅଧ୍ୟାପକ ସହସ୍ରନାମ ପାଣିଗ୍ରାହୀ ଓ ଆଉ ବି କଏ ଜଣେ ଦି' ଜଣ; ଠିକ୍ ମନେପଡ଼ୁନି । ସେଥିର ପ୍ରଧାନ ଆଲୋଚ୍ୟ ବିଷୟ ଥିଲା—ମୁଁ ଆଇ. ପି. ଏସ୍. ଚାକିରି କରିବି କି ନାହିଁ ? (ଆଗରୁ ଥରେ ମୁଁ ଆଇ. ଏ. ଏସ୍. ପରୀକ୍ଷା ଦେଇଥିଲି ଓ ଇତିହାସ ଭିନ୍ନ ଅନ୍ୟ ସବୁ ବିଷୟରେ ଖୁବ୍ ଉଚ୍ଚ ନମ୍ବର ରଖିଥିଲି । ମାନଚିତ୍ର ଅଙ୍କନରେ ଦୁର୍ବଳତା ଯୋଗୁଁ ଇତିହାସ ଉପରେ ଆଉ ଭରସା ନ ଥିଲା । ତେଣୁ ତାକୁ ବାଦ ଦେଲେ କେବଳ ଆଇ. ପି. ଏସ୍. ହିଁ ଥିଲା ମୋ ନିମନ୍ତେ ପ୍ରଶସ୍ତ ।) ସେତେବେଳକୁ ଜଣେ ଆଇ. ପି. ଏସ୍. ଅଫିସର ତାଲିମ ଗ୍ରହଣ କରୁଥିବାବେଳେ ଘୋଡ଼ା ଉପରୁ ପଡ଼ି ମୃତ୍ୟୁବରଣ କରିଥିବା ଖବର ସମ୍ବାଦପତ୍ରରେ ପ୍ରକାଶ ପାଇଥାଏ ଏବଂ ମୋର ପିତା ଥିଲେ ପୋଲିସ ଚାକିରିର ପ୍ରବଳ ବିରୋଧୀ—ବୋଧହୁଏ ମୁଁ ଏକମାତ୍ର ସନ୍ତାନ, ଆଉ ସେ ଚାକିରିରେ ନିରାପତ୍ତା କମ୍ ଏଥିପାଇଁ । ପୁଣି ସେତେବେଳକୁ ସାହିତ୍ୟ କ୍ଷେତ୍ର ପ୍ରତି ମୋର ଆସକ୍ତି ଆସିଯାଇଥାଏ (ମୋର 'ଯୁଗସ୍ରଷ୍ଟା ନେହେରୁ' 'ଯୁଗଜ୍ୟୋତି ଲାଲବାହାଦୁର ଶାସ୍ତ୍ରୀ' ଓ 'ଜାତିସଂଘ'—ତିନୋଟି ବହି ପ୍ରକାଶିତ ହୋଇ ସାରିଥାଏ) ଏବଂ ପୋଲିସ ବିଭାଗୀୟ ଚାକିରି ଲାଗି ମୁଁ ମଧ୍ୟ ଦୋ ଦୋ ପାଞ୍ଚ ହେଉଥାଏ । ସେତେବେଳେ ମୋର ସେହି ଶୁଭେଚ୍ଛୁମାନଙ୍କର ପୁଙ୍ଖାନୁପୁଙ୍ଖ ଆଲୋଚନା ଓ ପରାମର୍ଶ କ୍ରମେ ମୁଁ ନିଷ୍ପତ୍ତି ନେଇଥିଲି ଯେ ଆଇ. ପି. ଏସ୍. ଚାକିରି କରିବି ନାହିଁ ।

ସେଦିନର ସେହି ଆଲୋଚନା ପ୍ରସଙ୍ଗରେ 'ଗୋପବନ୍ଧୁ ସଙ୍କଳନ' କଥା ଉଠିଥିଲା । ପୂଜ୍ୟ ଅଧ୍ୟାପକ-ବନ୍ଧୁ ଶ୍ରୀ ମହାପାତ୍ର ମୋତେ କହିଥିଲେ —ସୂର୍ଯ୍ୟ, ଏଥର ଗୋପବନ୍ଧୁଙ୍କ ଉପରେ ଗୋଟାଏ ଲେଖ । ଗୋପବନ୍ଧୁଙ୍କ ଉପରେ ସେଭଳି ଉପାଦେୟ ବହି ନାହିଁ । ପିଲାଙ୍କର ଖୁବ୍ ଦରକାରରେ ଆସିବ ।" "ହଁ, ଖୁବ୍ ଭଲ ହୁଅନ୍ତା", ଦୃଢ଼ ସମର୍ଥନ ଜଣାଇଥିଲେ ଅଧ୍ୟାପକ ଆଗୃର୍ଯ୍ୟ । "ସାର୍ 'ଗାନ୍ଧୀ" ସରିଲା ପରେ ଚେଷ୍ଟା କରିବି", ମୁଁ କହିଥିଲି ।

ଆଗରୁ ପ୍ରକାଶିତ ମୋର 'ଜୀବନୀ-ସମାଲୋଚନା'ଗୁଡ଼ିକ ଖୁବ୍ ଆଦୃତ ହୋଇଥିବାରୁ ସେଥିପ୍ରତି ମୋର ଏକ ପ୍ରକାର ଝୁଙ୍କ୍ ଆସି ଯାଇଥାଏ, ପୁଣି ମୋର ଶୁଭେଚ୍ଛୁ ବନ୍ଧୁଙ୍କର ପରାମର୍ଶ ତ ସହଜେ ଏଡ଼ି ଦେବାର ନୁହେଁ ! କିନ୍ତୁ ଗୋପବନ୍ଧୁଙ୍କ ସମସାମୟିକ ବହୁ ପ୍ରବୁଦ୍ଧ ଓ ପ୍ରବୀଣ ସାହିତ୍ୟିକ ଥାଉ ଥାଉ ମୋ ଭଳି ଜଣେ ତରୁଣ ସେ ଦିଗରେ ଉଦ୍ୟମ କଲେ ରଚନାଟି କ'ଣ ପୂର୍ଣ୍ଣାଙ୍ଗ ଓ ପ୍ରାମାଣିକ ହୋଇପାରିବ ? ଏହା ଭାବି ନିଜେ ତାଙ୍କ ସମ୍ବନ୍ଧରେ ଗ୍ରନ୍ଥଟିଏ ନ ଲେଖି ଗୋପବନ୍ଧୁଙ୍କ ସହକର୍ମୀ ତଥା ସମସାମୟିକ ସାହିତ୍ୟିକଙ୍କ ସମେତ ବିଭିନ୍ନ ଲେଖକଙ୍କର ରଚନାର ଏକ ସଂକଳନ କରିବା ଲାଗି ସ୍ଥିର କଲି । ଏ ସମ୍ପର୍କରେ ଗୋପବନ୍ଧୁଙ୍କର ଯୋଗ୍ୟତମ ଦାୟାଦ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ସହିତ 'ଗୋପବନ୍ଧୁ ଭବନ'ଠାରେ ସାକ୍ଷାତ କଲି ସେଇ ଉଦ୍ଦେଶ୍ୟର ତିନି ତାରିଖରେ । ତାଙ୍କର ହାର୍ଦ୍ଦିକ ସମର୍ଥନ ଓ ପ୍ରୋତ୍ସାହନ ଏ ଦିଗରେ ଅଗ୍ରସର ହେବା ଲାଗି ମୋତେ ପ୍ରେରଣା ଯୋଗାଇଥିଲା ।

ଏହି ସଂକଳନ କାର୍ଯ୍ୟରେ ଅଗ୍ରସର ହେଲା ପରେ ଏପରି ଘାତ-ପ୍ରତିଘାତର ସମ୍ମୁଖୀନ ହେବାକୁ ପଡ଼ିଲା ଯେ ତାହା ମୁଁ କଳ୍ପନା କରି ନ ଥିଲି । ମୂଳ ପ୍ରତିବନ୍ଧକ ହେଲା—କୌଣସି ଲେଖକଙ୍କଠାରୁ ହଠାତ୍ ଲେଖା ମିଳିଲା ନାହିଁ । ମୁଁ ଯୋଗାଯୋଗ ସ୍ଥାପନ କରିଥିବା ଲେଖକମାନଙ୍କ ମଧ୍ୟରୁ କେତେକ ଅସମର୍ଥତା ସ୍ୱୀକାର କରି କ୍ଷମା ଦେବାକୁ ଅନୁରୋଧ ଜଣାଇ ଉତ୍ତର ଦେଲେ, କେତେକ ପାରିଶ୍ରମିକ ଲାଭ ଆଶାରେ ପ୍ରବନ୍ଧ ପଠାଇବାରୁ କ୍ଷାନ୍ତ ହେଲେ; ଆଉ କେତେକଙ୍କଠାରୁ ପ୍ରବନ୍ଧ ନ ପାଇବା ପାଇଁ ବୋଧହୁଏ ମୋ ବୟସ ଦାୟୀ—ମୋର ବାଳ ପାଚିନି । ଏପରି

କି ରାଜ୍ୟର କେତେକ ବରିଷ୍ଠ କଲେଜର ଓଡ଼ିଆ ବିଭାଗର ତତ୍କାଳୀନ ମୁଖ୍ୟ ଅଧ୍ୟାପକଙ୍କଠାରୁ ମଧ୍ୟ ଏ ଦିଗରେ ବିଶେଷ ସହଯୋଗ ମିଳିଲା ନାହିଁ । ସେ ଯାହାହେଉ, ପଦ୍ମଭୂଷଣ ରାଧାନାଥ ରଥ, ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଅଧ୍ୟାପକ ଚିନ୍ତାମଣି ଦାଶ, ଅଧ୍ୟାପକ କାଙ୍ଗାଳଚରଣ ପତି, ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର, ଶ୍ରୀ ଅନନ୍ତଚରଣ ଶତପଥୀ, ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର ପ୍ରମୁଖ ବହୁ ପ୍ରବୁଦ୍ଧ ସାହିତ୍ୟରଥୀଙ୍କ ସମେତ ଅନ୍ୟ କେତେକ ପ୍ରତିଭାବାନ୍ ଲେଖକଙ୍କର ସହୃଦୟତା ବଳରେ ମୋ ଉଦ୍ୟମ ଅପ୍ରତିହତ ରହିଲା ଏବଂ ଏଇ ସଂକଳନ ତା'ର ବାସ୍ତବ ରୂପ ପରିଗ୍ରହ କଲା ।

ଏଇ ସଂକଳନର ପ୍ରକାଶ ଦାୟିତ୍ୱ ପ୍ରଥମେ କଟକ 'କମଳା ବୁକ୍ ଷ୍ଟୋର'ର ମାଲିକ ଶ୍ରୀ ରମେଶଚନ୍ଦ୍ର ମିଶ୍ର ନେଇଥିଲେ । କିନ୍ତୁ କେତେକ ପ୍ରତିକୂଳତାବଶତଃ ସେ ତାହା ହଠାତ୍ ପ୍ରକାଶ କରିବା ପାଇଁ ଅକ୍ଷମ ହୋଇଥିଲେ । ଏଣେ କେତେକ ଲେଖକ-ଲେଖିକା ସଂକଳନଟିର ଆଶୁ ପ୍ରକାଶ ନିମିତ୍ତ ମୋତେ ବ୍ୟତିବ୍ୟସ୍ତ କରିବାରୁ 'ଓଡ଼ିଶା ବୁକ୍ ଷ୍ଟୋର'ର ପ୍ରତିଷ୍ଠାତା ଶ୍ରୀ ଗୋବିନ୍ଦ ଚରଣ ପାତ୍ରଙ୍କ ଆଗ୍ରହ କ୍ରମେ ମୁଁ ସମସ୍ତ ପାଣ୍ଡୁଲିପି ସେଠାରୁ ଆଣି ପ୍ରକାଶକଙ୍କୁ ଦେଲି ୧୯୬୭ ମସିହା ନଭେମ୍ବର ତିନି ତାରିଖରେ । ସେ ଯଥାଶୀଘ୍ର ଏହାର ପ୍ରକାଶ ବ୍ୟବସ୍ଥା କରିବାକୁ ଯାଇ ମୁଦ୍ରଣ ଦାୟିତ୍ୱ 'ପ୍ରକାଶ ପ୍ରିଣ୍ଟର୍ସ'ଙ୍କୁ ଦେଲେ ଏବଂ ଖୁବ୍ ଅଳ୍ପ ସମୟ ମଧ୍ୟରେ ଏହାର ଏକ-ତୃତୀୟାଂଶ ମୁଦ୍ରିତ ହୋଇଗଲା । ତାପରେ ଏହା ଉପରେ ପଡ଼ିଲା ଅଶୁଭ ଗ୍ରହଙ୍କର ଵକ୍ରଦୃଷ୍ଟି । ଅନିର୍ଦ୍ଦିଷ୍ଟ ଓ ଅନିବାର୍ଯ୍ୟ କାରଣବଶତଃ ଏହା ପଡ଼ିରହିଲା ୧୯୭୨ ଅଗଷ୍ଟ ମାସ ଯାଏ । ଏଇ ମଧ୍ୟରେ ଏଥିର ଲେଖକ-ଲେଖିକାମାନଙ୍କର ଜୀବନପ୍ରବାହର ଗତି-ପଥରେ ଦେଖାଦେଇଛି ନାନା ସ୍ୱାଭାବିକ ପରିବର୍ତ୍ତନ; କିଏ କେତେମତେ ଉଠିଛନ୍ତି, ପଡ଼ିଛନ୍ତି, ଆଉ ଏଇ ସଂସାରରୁ ବିଦାୟ ନେଇ ଯାଇଛନ୍ତି ପ୍ରତ୍ନତତ୍ତ୍ୱ ବିଶାରଦ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ । କିନ୍ତୁ 'ସଂକଳନ'ର ଲେଖକ ପରିଚୟରେ ରହି ଯାଇଅଛି ପାଞ୍ଚ ଛଅ ବର୍ଷ ତଳର ସେଇ ଜୀବନଟିପ୍ପଣୀ । ସୌଭାଗ୍ୟବଶତଃ ଅବଶେଷରେ ଶ୍ରୀ ସତ୍ୟନାରାୟଣ ପ୍ରେସର ମାଲିକ ଶ୍ରୀ ବସନ୍ତକୁମାର ଦାଶଙ୍କର ତତ୍ପରତା ଫଳରେ ଏହା ଲୋକଲୋଚନକୁ ଆସିପାରିଛି । ଯେଉଁ କାରଣରୁ ମୁଁ ପାଣ୍ଡୁଲିପି ରମେଶ-ବାବୁଙ୍କଠୁଁ ଫେରାଇ ଆଣିଥିଲି; ତାହା ବ୍ୟର୍ଥ ହେଲା, ବୃଥାରେ ତାଙ୍କର

ଅସନ୍ତୋଷର ସାର ହେଲା, ମୋର ବିନା ଦୋଷରେ ସମ୍ଭାଳ ବହୁ ଲେଖକ-ଲେଖିକାଙ୍କର ରୁଷ୍ଟ ଆକ୍ଷେପ । ଏହି ସଂକଳନ ପାଇଁ ପ୍ରକାଶକଙ୍କଠାରେ ମୋର କୌଣସି ପାରିଶ୍ରମିକ ଦାବୀ ନାହିଁ; ପ୍ରତି ଲେଖକଙ୍କୁ ମାତ୍ର ଖଣ୍ଡିଏ ଲେଖାଏଁ ବହି । କିନ୍ତୁ ବିଭିନ୍ନ ଲେଖକଙ୍କର ରୋଷ, ଅସନ୍ତୋଷର ମୁଁ ପାତ୍ର, ସେଥିପାଇଁ ହକ୍‌ଦାର ବି । କାରଣ ମୁଁ ସ୍ୱେଚ୍ଛାରେ ଏହି ସଂକଳନର ଦାୟିତ୍ୱ ମୁଣ୍ଡାଇଛି ଗୋପବନ୍ଧୁ ପ୍ରେମୀଙ୍କର ଏକ ଅଭାବ ମେଣ୍ଟାଇବା ଉଦ୍ଦେଶ୍ୟରେ ।

ବାସ୍ତବିକ, "ଅନ୍ୟ ଉପାଦାନେ" ଗଢ଼ା ଥିଲା ଗୋପବନ୍ଧୁଙ୍କ ଜୀବନ; ତାଙ୍କ ସାହିତ୍ୟରୁ ସ୍ପଷ୍ଟୀକୃତ ହେଉଥିଲା 'ଭିନ୍ନ ଦୃଷ୍ଟି'ର ଝଲକ । ସେ ଥିଲେ "ଆଜୀବନ ତ୍ୟାଗବ୍ରତୀ, ସାଧୁ ଓ ସାଧକ । ଉତ୍କଳ ସେବା-ପୀଠରେ ରହି ବିଶ୍ୱସେବାରେ ନିଜକୁ ନିୟୋଜିତ କରିବା ନିମନ୍ତେ ଭଗବାନ ଯେପରି ତାଙ୍କୁ ଏ ମର୍ତ୍ତ୍ୟମଣ୍ଡଳକୁ ପ୍ରେରଣ କରିଥିଲେ ।"
(ପୃ. ୧୦୯)

ପ୍ରକୃତରେ ଦେଖିଲେ—"ଭଗବାନଙ୍କର କୌଣସି ଏକ ଆକାଙ୍କ୍ଷାକୁ ରୂପାୟିତ କରିବା ନିମନ୍ତେ ଜୀବର ମର ଶରୀର ଧାରଣ । ଯେତେ କ୍ଷୁଦ୍ର ହେଲେ ହେଁ ତାର ମର କଳେବର ମାଟିରେ ମିଶିବା ନିମିତ୍ତ କେବଳ ସୃଷ୍ଟି ନୁହେଁ । ପ୍ରତ୍ୟେକ ବ୍ୟକ୍ତିର ଜୀବନରେ କିଛି ନା କିଛି ମହତ୍ତ୍ୱ ନିହିତ । ତାକୁ ଦେଖି ଦେଖାଇ ପାରିଲେ ହେଲା । ଏଥିପାଇଁ ଯେଉଁ ସୂକ୍ଷ୍ମ ଓ ଦିବ୍ୟ ଦୃଷ୍ଟିଶକ୍ତିର ଆବଶ୍ୟକତା ରହିଛି ତାହା ଗୋପବନ୍ଧୁଙ୍କଠାରେ ଥିଲା । ବିଶେଷତଃ ମହାପୁରୁଷ ବା ବିଭିନ୍ନ ପ୍ରତିଭା-ସମ୍ପନ୍ନ ବୀରମାନଙ୍କର ମହତ୍ତ୍ୱ ହିଁ ଇତର ବ୍ୟକ୍ତିମାନଙ୍କର ଜୀବନ-ସରଣୀକୁ ପୁଷ୍ପିତ କରିବା ନିମନ୍ତେ ସାହାଯ୍ୟ କରିଥାଏ । ମନୁଷ୍ୟ ସଂସାରର ଜଟିଳ କ୍ଷେତ୍ରରେ ଦିଗ୍‌ଭ୍ରଷ୍ଟ ପଥିକ ଭୁଲି ଇତସ୍ତତଃ ହେଉଥିଲାବେଳେ ଏମାନଙ୍କର ଆଦର୍ଶ ତାକୁ ପ୍ରକୃତ ପଥର ସନ୍ଧାନ ଦେଇଥାଏ । ସତ୍ୟପ୍ରିୟ ଯୁଧିଷ୍ଠିର କହିଥିଲେ—

ନାନା ମୁନୀନାଂ ମତଯୁକ୍ତ ଭିନ୍ନାଃ
ନୈକ ମୁନୀ ଯସ୍ୟ ମତଂ ପ୍ରମାଣଂ;
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟଃ
ମହାଜନୋ ଯେନ ଗତଃ ସ ପନ୍ଥା ॥

ସେଭଳି ଗୋପବନ୍ଧୁ ଉତ୍କଳୀୟ ମହାପୁରୁଷମାନଙ୍କର ସରଣୀ ଅନୁସରଣ କରି ଅନ୍ୟମାନଙ୍କୁ ତାହା ଅବଲମ୍ବନ କରିବା ନିମନ୍ତେ ନିର୍ଦ୍ଦେଶ

ଦେଇଥିଲେ । ଏହି ମହାମାନବପ୍ରୀତି ହିଁ ଆଜି ଗୋପବନ୍ଧୁଙ୍କୁ ଉତ୍କଳମଣି ରୂପେ ଉତ୍କଳର ପୁରପଲ୍ଲୀରେ ସୁପରିଚିତ କରାଇପାରିଛି । ସେ ବୀର-ପୂଜାର ମହତ୍ତ୍ୱ ଉପଲବ୍‌ଧି କରିପାରିଥିଲେ ବୋଲି ଦେଶର ନେତୃତ୍ୱ ନେବା ନିମନ୍ତେ ସମର୍ଥ ହୋଇ ପାରିଥିଲେ । ଯେଉଁ ଜାତି ବୀରପୂଜା କରିବାରେ ଯେତେ ଆଗ୍ରହୀ, ସେ ଜାତି ସେତେ ଉନ୍ନତ । ପୂଜ୍ୟପୂଜାର ବ୍ୟତିକ୍ରମ ଫଳରେ ଆଜି ଓଡ଼ିଆ ଜାତିର ଏ ଦୁର୍ଦ୍ଦଶା ।" (ପୃ. ୧୬୩)

ତେବେ "ପ୍ରାଚ୍ୟ ପରମ୍ପରାର ପୃଷ୍ଠପୋଷକ ଗୋପବନ୍ଧୁ, ଉତ୍କଳର ଅଧଃପତନ···ଭାଗ୍ୟଚକ୍ରର ଏକ ସ୍ୱାଭାବିକ କ୍ରିୟା" (ପୃ. ୧୬୨) ଗ୍ରହଣ କରି :—

"ନ ହୁଅ ନିରାଶ, ନ ହୁଅ ଦୁଃଖିତ
ଉତ୍କଳର ଦେଖି ଦୁଃଖମୟ ଚିତ୍ର ।
ସୁଖଦୁଃଖ ଚକ୍ର ଘୂରେ ନିରନ୍ତର
ଏକ ପରେ ଆନ ଆସିବ ନିକର ।"

ଉଦ୍‌ବୋଧନ ବାଣୀ ଶୁଣାଇବା ସଙ୍ଗେ ସଙ୍ଗେ ଉତ୍କଳୀୟ ଗ୍ରାମ୍ୟ ଜୀବନର କରୁଣ ଚିତ୍ର ବର୍ଣ୍ଣନା କରି ଗାଇଥିଲେ—

"ଶୋଇଅଛି ଭଙ୍ଗି ଗ୍ରାମ ଦେବାଳୟ
ପୂରିଲାଣି ପଙ୍କ ବନ୍ଧେ ଜଳାଶୟ ।
× × ×
ନାହିଁ ଜନ ମୁଖେ ସତ୍ୟ ଧର୍ମ-କାନ୍ତି
ନାହିଁ ହୃଦେ ଶୌଚ, ପ୍ରାଣେ ସ୍ନେହ ଶାନ୍ତି ।
ପର ପ୍ରବଞ୍ଚନା କଚେରୀ-ବିଗ୍ରହ
ଗ୍ରାମ ମୁଖିଆଙ୍କ ନିତ୍ୟ କାରବାର ।"

ଏବଂ ତାର ଉନ୍ନତି କଳ୍ପେ ଉପଦେଶ ଦେଇଥିଲେ—

"ଏସବୁ ଯାତନା ନର କର୍ମଫଳ
ହୋଇଛି ଏ ଦେଶେ ପାତକ ପ୍ରବଳ
ଦେଶବାସୀଙ୍କର ହେଲେ ଆତ୍ମଶୁଦ୍ଧି,
ସତ୍ୟେ ଅନୁରାଗ ଧର୍ମେ ଦିବ୍ୟ ବୁଦ୍ଧି
× × ×

ହେଲେ ଆତ୍ମ ଶୁଦ୍ଧି ସୁନିର୍ମଳ ମତି
ପ୍ରକାଶିତ ତେଜ ସମ୍ପଦ, ଶକତି ।
× × ×
ଗ୍ରେଷ୍ଠ ନାଶ୍ନି ନଶା ଆଦ୍ୟ ଦୁରାଚାର
ନ କରୁ ଦୂଷିତ ଗ୍ରାମ ପରିବାର ।
× × ×
ପୂଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ,
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ ।
ମାନବ ଜନମ ହୁଅଇ ସଫଳ,
ଏ ମହା ଶିକ୍ଷା କି ବୁଝିବ ଉତ୍କଳ ?"

"ସାଧନାର ଆତ୍ମବିସ୍ମୃତି, କର୍ମରେ ନିରଭିମାନତା ଓ ସ୍ୱଭାବରେ ନମ୍ରତା ଥିଲା ତାଙ୍କ ଚରିତ୍ରର ବିଶେଷତ୍ୱ । ସେ ଥିଲେ ଉଦାର ଓ ମନସ୍ୱୀ । କୌଣସି କ୍ଷୁଦ୍ର ସ୍ୱାର୍ଥର କାମନା ମନରେ ପୋଷଣ ନ କରି ସେ ନିଜର ସାଧନା ବଳରେ ନିଜକୁ ନିୟୋଜିତ କରୁଥିଲେ; ଦେଶ ଓ ଦଶର କଲ୍ୟାଣ ନିମନ୍ତେ ଅକାତର ଭାବରେ ଜନସମାଜରେ ନିଜ ସାଧନାର ଅମୃତମୟ ଫଳ ପରିବେଷଣ କରୁଥିଲେ । ସାଧକଠାରୁ ସାଧନା ବଡ଼ ଓ ମନୁଷ୍ୟଠାରୁ ତାର କାର୍ଯ୍ୟ ହିଁ ବଡ଼, ସେ ଏହା ନିବିଡ଼ ଭାବରେ ଉପଲବ୍ଧି କରିଥିଲେ ।" (ପୃ. ୧୧୦) ସେହି ସମୟରେ (୧୯୦୩ ଠାରୁ ୧୯୨୧ ପର୍ଯ୍ୟନ୍ତ) 'ଉତ୍କଳ ସମ୍ମିଳନୀ' ହିଁ ଥିଲା 'ଗୋପବନ୍ଧୁଙ୍କର ପ୍ରାଣପିଣ୍ଡ, ଜୀବନର ପ୍ରଶସ୍ତ କର୍ମକ୍ଷେତ୍ର ଓ ଲୋକସେବାର ପ୍ରକୃଷ୍ଟ ମାଧ୍ୟମ···ମହା ଭାରତୀୟ ଭାବର ଅଦମ୍ୟ ପ୍ରେରଣାର ଅଫୁରନ୍ତ ଉତ୍ସ ।" (ପୃ·୭୧)

ଗୋପବନ୍ଧୁ ସ୍ପଷ୍ଟ ହୃଦୟଙ୍ଗମ କରିଥିଲେ ଯେ "ଜାତିର କେତେଟା ବାହ୍ୟ ଉନ୍ନତି, ଯଥା—ଶିକ୍ଷାନୁଷ୍ଠାନର ସଂଖ୍ୟାବୃଦ୍ଧି, କଳକାରଖାନା ପ୍ରତିଷ୍ଠାଦ୍ୱାରା ଶିଳ୍ପୋନ୍ନତି କିମ୍ବା କେତୋଟି ବଡ଼ ବଡ଼ ସରକାରୀ ଚାକିରି ପ୍ରଭୃତି ଦ୍ୱାରା ଜାତିର ପ୍ରକୃତ ସ୍ଥାୟୀ ଅଭିବୃଦ୍ଧି ଘଟେ ନାହିଁ । ଜାତୀୟ ଚରିତ୍ରର ଉନ୍ନତି ନ ହେଲେ, ଜାତୀୟ ଆତ୍ମାର ଅଭ୍ୟୁତ୍ଥାନ ନ ଘଟିଲେ କିମ୍ବା ଜାତୀୟ ଜୀବନ ସୁଚାରୁରୂପେ ଗଠିତ ନ ହେଲେ, ଏସବୁ ବାହ୍ୟ ଉନ୍ନତିର କୌଣସି ସ୍ଥାୟୀ ମୂଲ୍ୟ ନାହିଁ ।" (ପୃ. ୭୪) । ସେ ଆହୁରି

ଉପଲବ୍ଧି କରିଥିଲେ ଯେ ସମାଜର ଉନ୍ନତି କୌଣସି ଏକ ନିର୍ଦ୍ଦିଷ୍ଟ ସମୟ ବା ଅବସ୍ଥାରେ ଶେଷ ହୋଇ ନ ପାରେ; ଏହା ଅନନ୍ତ କାଳ ଯାଏ ଅଧିକରୁ ଅଧିକତର ଭାବରେ କ୍ରମପ୍ରବାହଶୀଳ । ତେଣୁ ସେ ମଞ୍ଜୁଷାଧିପ ଶ୍ରୀ ଶ୍ରୀନିବାସ ହରିଚନ୍ଦନ ରାଜଦେବଙ୍କ ଉକ୍ତି ଉଦ୍ଧାର ପୂର୍ବକ ଉପଦେଶ ଦେଇଥିଲେ—"ଭବିଷ୍ୟତ ଉପରେ ବିଶ୍ୱାସ ଏବଂ ଭବିଷ୍ୟତ ଉଦ୍ଦେଶ୍ୟରେ ଆତ୍ମବିନିଯୋଗ ଆମ୍ଭମାନଙ୍କର ଜାତୀୟ ଧର୍ମ । ସେହି ଧର୍ମରେ ଆସ୍ଥା ଓ ବିଶ୍ୱାସ ରଖି ଜାତୀୟ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ "କ୍ଷୁଦ୍ର ହୃଦୟଦୌର୍ବଲ୍ୟ' ଅପସାରିତ ହେବ ।"

ବାସ୍ତବରେ ଏକ ବ୍ୟାପକ ଦୃଷ୍ଟିକୋଣରୁ ବିଚାର କଲେ ସେ "ଜାତୀୟତାକୁ ଧର୍ମଧାରଣା ଉପରେ ପ୍ରତିଷ୍ଠିତ କରି, ଜାତିକୁ ଈଶ୍ୱର ରୂପେ କଳ୍ପନା କରି, ସେହି ଈଶ୍ୱରସେବାରେ ସର୍ବତୋଭାବରେ"(ପୃ.୪୭) ଜୀବନକୁ ଉତ୍ସର୍ଗ କରିଦେଇଥିଲେ । ତାଙ୍କ ଅନ୍ତରର ସ୍ପଷ୍ଟ ଅଭିବ୍ୟକ୍ତି ଥିଲା—"ସ୍ୱଦେଶ ସେବାହିଁ ପ୍ରକୃତରେ ମନୁଷ୍ୟ ପକ୍ଷରେ ଭଗବତ୍ ସେବା । ଏହି ପୁଣ୍ୟ ଜାତୀୟ ପୀଠରେ ସେହି ସେବା କାର୍ଯ୍ୟରେ ମୋତେ ଆପଣମାନେ ପ୍ରଧାନ ପୂଜକର ଭାର ଦେଇ ଅଛନ୍ତି ।" ଏହି ଜାତୀୟ ସେବା ଦାୟିତ୍ୱ ନିର୍ବାହ କରିବା ଲାଗି ସେ ଥିଲେ ଅତି ବ୍ୟାକୁଳ; ତେଣୁ ଆବେଗ-ସିକ୍ତ କଣ୍ଠରେ ମଳୟାନିଳ ଉଦ୍ଦେଶ୍ୟରେ ସ୍ୱରର ଝଙ୍କାର ତୋଳିଥିଲେ—

"ଗମ୍ଭୀରରୁ କିବା ଶ୍ରୀମୁଖ ଆଦେଶ
ପଠାଇ ଅଛନ୍ତି ଦେବ ମୋ ପାଇଁ
କହ ବେଗେ ବାୟୁ କ୍ଷୀଣ ହୁଏ ଆୟୁ
ରହିଥିବ କେତେ କାଳ ଅନାଇ ।"

ଜାତିର ଜନକ ମହାତ୍ମାଗାନ୍ଧୀଙ୍କର ଚରିତ୍ର ଓ ବ୍ୟକ୍ତିତ୍ୱର ଭିତ୍ତି ଯେପରି ଥିଲା 'ଅବିଚଳ ଭଗବତ୍ ନିଷ୍ଠା', ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱରେ ସେହିପରି ଅଟଳ ଭଗବତ୍ ନିଷ୍ଠା ବିଦ୍ୟମାନ ଥିଲା । ତାଙ୍କର ସକଳ କର୍ମକୁ ସେ ବଦ୍ଧାଞ୍ଜଳି ହୋଇ ଈଶ୍ୱରଙ୍କଠାରେ ହିଁ ସମର୍ପଣ କରିଛନ୍ତି । ସେହି ଅନନ୍ତ କରୁଣାମୟ, ପ୍ରୀତିମୟ ବିଧାତା ଯାହାଙ୍କ ଦୟାରେ ହିଁ ଏ ଜଗତର ସ୍ଥିତି, ସେହି ଆମର ଆଦର୍ଶ—ଏହା ଥିଲା ଗୋପବନ୍ଧୁଙ୍କ ଜୀବନର ବାଣୀ ।" (ପୃ.୧୯୯) 'ଜଣେ ଜଣେ ବିଶିଷ୍ଟ ମହାପୁରୁଷଙ୍କର ଆବିର୍ଭାବ ପୂର୍ବରୁ ଅନ୍ୟ କେତେକ ମହାନ୍ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଥାଏ ।

ପୁରାଣ ଓ ଇତିହାସ ଏହାର ପ୍ରଧାନ ସାକ୍ଷୀ । ସେହି ମାଟିରେ ଭାରତରେ ଗାନ୍ଧୀଙ୍କର ଆବିର୍ଭାବ ପୂର୍ବରୁ ଓଡ଼ିଶାରେ ତାଙ୍କର ପୂର୍ବରୂପ ଗ୍ରହଣ କରି ଗୋପବନ୍ଧୁ ଜନ୍ମ ହୋଇଥିଲେ'' (ପୃ.୨୬୨) ବୋଲି କହିବା ନିତାନ୍ତ ସମୀଚୀନ ।

''ଗୋପବନ୍ଧୁଙ୍କ ପ୍ରାଣରେ ଯେଉଁ ଆବେଗ ଦେଖା ଦେଇଛି, ଅବିକଳ ସେହି ଆବେଗ ନେହେରୁଙ୍କ ପ୍ରାଣରେ ମଧ୍ୟ ଦେଖା ଦେଇଛି । ସ୍ୱାଧୀନତା ପ୍ରାପ୍ତି ପରେ ଦେଶର ଗଣତାନ୍ତ୍ରିକ ଶାସନ ସଂସ୍ଥା ଓ ସମାଜବାଦର ପ୍ରତିଷ୍ଠା ପାଇଁ ଲୋକମାନ୍ୟ ତିଲକ, ଲାଲ ଲଜପତ ରାୟ, ଗୋପାଳକୃଷ୍ଣ ଗୋଖଲେ, ପଣ୍ଡିତ ନେହେରୁ ପ୍ରଭୃତି ବିଶିଷ୍ଟ ଜନନାୟକ-ମାନେ ନିଜ ନିଜର ବ୍ୟକ୍ତିଗତ ଚିନ୍ତାଧାରା ଯେପରି ପ୍ରକାଶ କରିଥିଲେ, ଉତ୍କଳମଣି ଗୋପବନ୍ଧୁ ମଧ୍ୟ ଅନୁରୂପ ଚିନ୍ତାଧାରା ପ୍ରକାଶ କରିଛନ୍ତି । ଅର୍ଥନୈତିକ ସ୍ୱାଧୀନତା ବିନା ରାଜନୈତିକ ସ୍ୱାଧୀନତା ମୂଲ୍ୟହୀନ । ତେଣୁ ଦେଶର ଜନନାୟକମାନେ ଅର୍ଥନୈତିକ ସମସ୍ୟାର ସମାଧାନ କରି ଜନସାଧାରଣଙ୍କ ମନରୁ ଦୁଃଖ ଓ ଦୈନ୍ୟକୁ ଦୂର କରି ଦେଶରେ ଏକ ସୁସ୍ଥ ଗଣତାନ୍ତ୍ରିକ ସରକାର ଗଢ଼ିବାର ଯେଉଁ ସ୍ୱପ୍ନ ଦେଖୁଥିଲେ, ସମ୍ବେଦନଶୀଳ କବି ଗୋପବନ୍ଧୁ ମଧ୍ୟ ସେହି ସ୍ୱପ୍ନ ଦେଖିଛନ୍ତି ।''(ପୃ.୨୯୧)

ପୁଣି ''ବିଶ୍ୱକବି ରବୀନ୍ଦ୍ରନାଥ ଯେପରି ବିଶ୍ୱପ୍ରେମୀ ହୋଇଲେ ବି ନିଜର ସ୍ୱଦେଶ ଓ ସ୍ୱଦେଶର ସାଂସ୍କୃତିକ ଐକ୍ୟ ପାଇଁ ସର୍ବଦା ସଚେତନ ଥିଲେ, ପୁଣ୍ୟଶ୍ଳୋକ ଗୋପବନ୍ଧୁ ମଧ୍ୟ ନିଜ ଦେଶ ଓ ଦଶର ସଂସ୍କୃତି ଓ ଐତିହ୍ୟ ପ୍ରତି ସର୍ବଦା ସଚେତନ ଥିଲେ ।'' (ପୃ.୨୯୩)

ବାସ୍ତବିକ୍ ''ଓଡ଼ିଆ ଜାତିକୁ ଚହଲି ଚହଲାଇବାର ଅସାମାନ୍ୟ ଶକ୍ତି ଥିଲା ଗୋପବନ୍ଧୁଙ୍କର । ଉତ୍କଳର ଏହି ମହାଭାବରେ ତାଙ୍କର ଚିତ୍ତ ଯେପରି ସ୍ପନ୍ଦିତ, ଉଦ୍ଦୀପିତ, ଜାଗରିତ ଓ ପୁଲକିତ ହେଉଥିଲା, ସେପରି ଆଉ କାହାର ହେଉ ନ ଥିଲା । ସେଥିପାଇଁ ତ ସେ 'ଉତ୍କଳମଣି' ଓ 'ନବ୍ୟ ଉତ୍କଳର ପ୍ରତିଷ୍ଠାତା' ।'' (ପୃ.୮୧) ତେବେ ଗୋପବନ୍ଧୁଙ୍କ ଉତ୍କଳୀୟ ମମତା ମହାଭାରତୀୟ ଭାବର ଅନ୍ତରାୟ ନ ଥିଲା, ତାଙ୍କର ଜାତୀୟତା ଥିଲା ବିଶ୍ୱ ଭାବର ପରିପୂରକ । "ଆମ୍ଭେମାନେ ପ୍ରଥମେ ମନୁଷ୍ୟ, ପରେ ଭାରତୀୟ ଏବଂ ସର୍ବଶେଷରେ ଓଡ଼ିଆ"—ଏହାହିଁ ଥିଲା ଗୋପବନ୍ଧୁଙ୍କର ଚରମ ଆଦର୍ଶ; ଆଉ ତାଙ୍କର କାବ୍ୟିକ ଉପଦେଶ—

“କହିଛନ୍ତି ମୁନି          କୁଳରକ୍ଷା ହେନ
ହେବ ଯେବେ ପ୍ରୟୋଜନ
ତେଜିବ ଜଣକୁ          ହେଲେ ହେଉ ପଛେ
ସେ ଯେତେ ସ୍ନେହଭାଜନ ।
ନ ହୋଇ ବ୍ୟାକୁଳ          ଗ୍ରାମ ହିତେ କୁଳ
ବର୍ଜନ୍ତି ସାଧୁଜନ ।
ଦେଶହିତେ ଗ୍ରାମ,          ଜଗତ କଲ୍ୟାଣେ
କର ପ୍ରାଣ ବିସର୍ଜନ ।”

“ସେ Communism ବା ସାମ୍ୟବାଦର ପ୍ରତିଷ୍ଠାତା ନ ଥିଲେ, Socialism ବା ସମାଜବାଦର ପ୍ରାଣଦାତା ନ ଥିଲେ କିମ୍ବା Federalism ବା ଜାଞ୍ଚସୂବାଦର ପୁନଃ ପ୍ରତିଷ୍ଠା କରି ନ ଥିଲେ । କିନ୍ତୁ ସବୁର ସମନ୍ୱୟରେ ତାଙ୍କର ସ୍ୱତନ୍ତ୍ରତା ପ୍ରକାଶ ପାଇଲା ମାନବବାଦ ବା Humanism ରୂପରେ ।” (ପୃ. ୨୮୭) ଗୋପବନ୍ଧୁ ପୂର୍ଣ୍ଣମାତ୍ରାରେ ଉପଲବ୍ଧି କରିଥିଲେ ଯେ “ଯେଉଁ ଦେଶର ଶାସନ କଳୁଷିତ ସେ ଦେଶର କୌଣସି ନାଗରିକଙ୍କଠାରୁ ଉନ୍ନତ ଭାବଧାରା ଆଶା କରିବା ବୃଥା ।” (ପୃ. ୨୮୩-୨୮୪) ସେଥିପାଇଁ ସେ କ୍ଷୋଭ ବାଣୀ ଶୁଣାଇ-ଥିଲେ ।

ପ୍ରଜା ଲାଗି ରାଜା ପ୍ରଜା ହିତେ ରାଜନୀତି,
ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳ ଭିତ୍ତି ।
ସାର୍ବଭୌମ ସନାତନ ଏ ଶାସନ ବିଧି,
ଲଭିଛି ସର୍ବତ୍ର ଆଜ ବିଶେଷ ପ୍ରସିଦ୍ଧି ।
ଭାରତ ଶାସନେ କିନ୍ତୁ ବ୍ୟବସ୍ଥା ସ୍ୱତନ୍ତ୍ର
ଏ ରାଜ୍ୟେ ଅମାତ୍ୟ ସଂସ୍ଥା ରାଜନୀତି ଯନ୍ତ୍ର ।
କାହିଁ ଏଥି ରାଜା ଏ ଯେ ନଉକର ସାହି,
ପ୍ରଜା ସୁଖ ଶାନ୍ତି ନାମେ ବୃଥା ଧର୍ମ ଦ୍ୱାହି ।”

“ଗୋପବନ୍ଧୁ ନିଜ ବ୍ୟକ୍ତିତ୍ୱକୁ ରାଜନୀତିର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ସେପରି ସୀମିତ କରି ନ ଥିଲେ ।···ପାପପଙ୍କିଳ ଶାସନତନ୍ତ୍ରକୁ ସଜାଡ଼ିବା ପାଇଁ ସେ ବ୍ୟଗ୍ର ଓ ଉଦ୍‌ବିଗ୍ନ ଥିଲେ ମାତ୍ର । ରାଜନୀତି ବରଂ ନ ଛୁନ୍ତୁ, କିନ୍ତୁ ମାନବସମାଜ ମଧ୍ୟରେ ସହଯୋଗିତା, ସହାନୁଭୂତିଶୀଳତା ତଥା

ବନ୍ଧୁତାର ପ୍ରତିଷ୍ଠା ହେଉ—ଏହାହିଁ ଥିଲା ତାଙ୍କର କାମ୍ୟ । ସେ ଶିଖାଇଲେ ମାନବପ୍ରୀତି—ମଣିଷ ପାଇଁ ମଣିଷ କପରି ଅଶ୍ରୁ ଝରାଇପାରେ । ସେ ଦେଖାଇଲେ—ଦୈହିକ, ମାନସିକ ତଥା ଆଧ୍ୟାତ୍ମିକ ପୁଷ୍ଟି ସାଧନର ମାର୍ଗ ।" (ପୃ. ୨୮୫) । ଏଥିପାଇଁ ଆଉ ଜଣେ ସମାଲୋଚକ ଯଥାର୍ଥରେ ମତ ପ୍ରଦାନ କରିଛନ୍ତି—"ଗୋପବନ୍ଧୁଙ୍କ ଅମୂଲ୍ୟ ଜୀବନ ଯେତିକି ଦୀପ୍ତ ପ୍ରତିଭାରେ ସମୁଜ୍ଜ୍ୱଳ, ସେତିକି ମାନବତାର ମହାନ୍ ଆଦର୍ଶରେ ମହୀୟାନ୍ । ସାହିତ୍ୟ ସୃଷ୍ଟି ତାଙ୍କ ଜୀବନର ଅପୂର୍ବ କୀର୍ତ୍ତି ହେଲେ ସୁଦ୍ଧା ସେ ଏକାଧାରରେ କର୍ମୀ, ସମାଜନାୟକ, ରାଜନୀତିଜ୍ଞ, ଅଧ୍ୟାତ୍ମବାଦୀ ଏବଂ କବି । କବି ଗୋପବନ୍ଧୁ ଜୀବନର ସୁଖ-ଦୁଃଖ, ଆଶା-ନିରାଶା ମଧ୍ୟରେ ଜୀବନ-ଦେବତାର ଆରାଧନା କରିଛନ୍ତି । କବିଙ୍କର ଦେଶ ପ୍ରେମ ସୃଜନାତ୍ମକ ଏବଂ ତାଙ୍କ ସାହିତ୍ୟ ସାଧନା ମୂଳରେ ରହିଛି ଗଭୀର ଦେଶପ୍ରୀତି, ନିଷ୍ଠା, ତ୍ୟାଗ ଏବଂ ଆଧ୍ୟାତ୍ମିକ ଚେତନା । (ପୃ.୨୮୮) ।

ଗୋପବନ୍ଧୁଙ୍କ ସାହିତ୍ୟିକ କୃତିର ପରିମାଣ ସ୍ୱଳ୍ପ ହେଲେ ହେଁ ତାର ଗୋଟିଏ ଚିରନ୍ତନ ମୂଲ୍ୟ ଅଛି, ସ୍ୱାତନ୍ତ୍ର୍ୟ ଅଛି । ଜାତୀୟ ଚରିତ୍ର ଗଠନ କ୍ଷେତ୍ରରେ ତା'ର ଭୂମିକା ଗୁରୁତ୍ୱପୂର୍ଣ୍ଣ, ଜନମାନସରେ ସନ୍ଦିପ୍ତ ସାମାଜିକ ଚେତନା ଜାଗ୍ରତ କରିବା ଦିଗରେ ଗରୀୟାନ୍ । 'କବି ଗୋପବନ୍ଧୁ'ର ଲେଖକଙ୍କ ଭାଷାରେ—"ସେ ସ୍ୱଳ୍ପ ସାହିତ୍ୟ ଚିର ଦୀପ୍ତିମନ୍ତ ଆଲୋକ-ବର୍ତ୍ତିକା । ସେ କୃତିରେ କେବଳ ଦୀପ୍ତି ନାହିଁ, ନୂତନତ୍ୱର ଦିଗ୍‌ଦର୍ଶନ ଅଛି, ସର୍ବୋଦୟର ବ୍ୟାପ୍ତି ଅଛି, ସନ୍ନ୍ୟାସୀର ବୈରାଗ୍ୟ ସାଧନା ଅଛି, ଅହିଂସା-ଧର୍ମୀର ପୁରୁଷର 'ରଣହୁଙ୍କାର' ଅଛି, କର୍ମଯୋଗର ପ୍ରବୃଦ୍ଧ ସ୍ପନ୍ଦନ ଓ ଜାଗରଣ ଅଛି, ସାମ୍ପ୍ରାଦିକତା ସହିତ ଚିରନ୍ତନ ସାହିତ୍ୟର ସମ୍ମେଳନ ଅଛି, ଆଶା-ନୈରାଶ୍ୟର ଆଲୋକ ଛାୟା ଅଛି, ଜାତିର ସର୍ବତୋମୁଖୀ ଶ୍ରେୟବୋଧର କଲ୍ୟାଣ ଶ୍ରୀ ମଣ୍ଡିତ ଅଭିପ୍ରକାଶ ଅଛି; ଏବଂ ଅଛି ଏକ ସୂତ୍ରରେ ଗ୍ରଥିତ ମଣିଗଣପରି ମହାକାଳର ପ୍ରବହମାନ ଗତିଶୀଳତା—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗସାଧନା ।" ପୁଣି "ଗୋପବନ୍ଧୁଙ୍କ ସୃଷ୍ଟିର ହେତୁ ଅଭ୍ୟାସ ନୁହେଁ, ନୁହେଁ ଅଧ୍ୟୟନ । ଏଥିରେ ନାହିଁ ସ୍ୱପ୍ନାଲୋକର ନିବିଡ଼ତା, ନାହିଁ କେବଳ ଆବେଗକମ୍ପିତ ବିମୁଗ୍ଧ ଭାବର ଦ୍ୟୋତନା । ଏହାର ସୃଷ୍ଟି ଆତ୍ମାର ଅନ୍ତରାଳରୁ । ବିମୋକାଭ୍ୟାସୀ ଅନବସାଦ ପ୍ରାଣର ବିଗଳିତ କଲ୍ୟାଣଧାରାରୁ—ଏକ ଚିନ୍ମୟ ଚେତନାରୁ ।"

(ପୃ. ୧୭୩) । ତାହା ତାଙ୍କ ନିଜ ଜୀବନର ବିଷାଦ, ବିପର୍ଯ୍ୟୟ, ମାଧୁର୍ଯ୍ୟ, ପ୍ରାଚୁର୍ଯ୍ୟ, ଗାମ୍ଭୀର୍ଯ୍ୟ, ଔଦାର୍ଯ୍ୟ ଓ ବ୍ୟାପ୍ତିଶୀଳ ମନୋଭାବର ସରସ ପରିପ୍ରକାଶ ମାତ୍ର ।

ତେବେ ଗୋପବନ୍ଧୁଙ୍କ ସ୍ୱଳ୍ପ ସାହିତ୍ୟ ମଧ୍ୟରେ ଜୀବନୀମୂଳକ କବିତାଗୁଡ଼ିକର ସୃଷ୍ଟି ବେଶ ତାତ୍ପର୍ଯ୍ୟପୂର୍ଣ୍ଣ, 'ତାହା ଓଡ଼ିଆ ଜାତିର ବିଶିଷ୍ଟ ସମ୍ପଦ' । ସେ ଉତ୍କଳୀୟ ପୂର୍ବ-ସୂରିଙ୍କର ଜୀବନର ମହତ୍ତ୍ୱ ହୃଦୟଙ୍ଗମ କରିଥିଲେ ବୋଲି ତାକୁ କାବ୍ୟଧାରାର ଅବଲମ୍ବନରେ ପ୍ରକାଶ କରିବା ଲାଗି ପ୍ରୟାସୀ ହୋଇଥିଲେ । ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା ଶ୍ରୀ କିଶୋରଚନ୍ଦ୍ର ହରିଚନ୍ଦନଙ୍କ ନିମ୍ନୋଦ୍ଧୃତ କର୍ତ୍ତବ୍ୟବୋଧିନୀ ବାଣୀ—

"ଶତ ଶତ ଶୁଷ୍କ ଉପଦେଶ ଅପେକ୍ଷା ଗୋଟିଏ ସତ୍ ଉଦାହରଣ ଅଧିକ ମୂଲ୍ୟବାନ । ଜୀବନ୍ତ ଉଦାହରଣ ସମସ୍ତଙ୍କ ଭାଗ୍ୟରେ ସର୍ବଦା ଘଟି-ପାରେ ନାହିଁ । ସୁତରାଂ ଉଦାହରଣ ସ୍ୱରୂପ ଅନୁକରଣ କରି ସୁପଥରେ ଚାଲିବା ନିମନ୍ତେ ଜାତୀୟ ସାହିତ୍ୟରେ ମହଜ୍ଜନମାନଙ୍କ ଜୀବନଚରିତ ଲିଖିତ ହୋଇ ରହିବା ଉଚିତ । ୟୁରୋପ ପ୍ରଭୃତି ଦେଶରେ ଯେ କେହି ସତ୍କାର୍ଯ୍ୟ କରୁ ନା କାହିଁକି; ତାହାର ଖଣ୍ଡେ ଜୀବନଚରିତ ନିଶ୍ଚୟ ଲେଖାହୋଇ ରହିବ । ମାତ୍ର ଆମ୍ଭମାନଙ୍କ ଦେଶର ସାହିତ୍ୟଭଣ୍ଡାରରେ ଦେଶର ଉପଯୁକ୍ତ ବ୍ୟକ୍ତିମାନଙ୍କର ଜୀବନୀ ନାହିଁ । ସୁତରାଂ ଓଡ଼ିଶାର ମହାତ୍ମାମାନଙ୍କର ଜୀବନଚରିତ ସଙ୍କଳିତ ହେବା ନିତାନ୍ତ କର୍ତ୍ତବ୍ୟ ।"

(ପୃ. ୧୪୬—୧୪୭)

ଏତଦ୍‌ବ୍ୟତୀତ ପାଶ୍ଚାତ୍ୟ ମନୀଷୀ 'ଲଙ୍ଗ ଫେଲୋ'ଙ୍କର ନିମ୍ନଲିଖିତ ପଂକ୍ତି ଗୋପମାନସକୁ ପ୍ରବଳଭାବେ ଆନ୍ଦୋଳିତ ଓ ପ୍ରଭାବିତ କରିଥିଲା—

Lives of great men all remind us
We can make our lives sublime.
And, departing, leave behind us.
Foot prints on the sands of time.
Foot prints, that perhaps another,
Sailing o' er life's solemn main,
A forlon and shipwrecked brother
Seeing, shall take heart again"

ଏବଂ ତାହା ପୂର୍ଜ୍ୟପୂଜାର ଉତ୍କର୍ଷ ପ୍ରଚ୍ଚୁର ନମିତ୍ତ ତାଙ୍କୁ ଅନୁପ୍ରାଣିତ ଓ ଅନୁରଣିତ କରିଥିଲା ।

ଏହି ଦୃଷ୍ଟିରୁ ବିଚାର କଲେ ଆଲୋଚ୍ୟ ସଂକଳନର ଆବଶ୍ୟକତା ଅନସ୍ବୀକାର୍ଯ୍ୟ । କାରଣ, ଉତ୍କଳମଣିଙ୍କ ଜୀବନଚରିତ କେବଳ ବହୁବିଧ କାର୍ଯ୍ୟକଳାପ ତଥା କୀର୍ତ୍ତି ଓ କୃତିତ୍ୱରେ ପରିପୂର୍ଣ୍ଣ ନୁହେଁ, ତଦୁପରି ସେଥିରୁ ପ୍ରତିଭାତ ହୁଏ ନାନା ଅଲୌକିକତାର ଦୀପ୍ତ ଶିଖା ତଥା ଅତି ମାନବିକ କିଯ୍ୟାଶୀଳତାର ଆଲୋକ ବର୍ତ୍ତିକା । ଗୋପ ସାହିତ୍ୟର ପରିମାଣ ସ୍ୱଳ୍ପ ହେଲେହେଁ ତା'ର ମୂଲ୍ୟ ଅକଳନ, ତାର ସ୍ୱାତନ୍ତ୍ର୍ୟ ସର୍ବଜନସ୍ୱୀକୃତ, 'ତାର ସୌରଭ ଦିଗଦିଗନ୍ତ ବିଚ୍ଛୁରିତ', ତାହା 'ସୁନ୍ଦର, ମଧୁର, ଶ୍ରେୟଃ ଓ ମହତ୍ତ୍ୱର ଜାଗୃତି-ମନ୍ତ୍ର' । ଏଣୁ ତାଙ୍କର ଜୀବନ କାହାଣୀ, ସାହିତ୍ୟ-ସାଧନା, ବ୍ୟକ୍ତିତ୍ୱ ଓ ପ୍ରତିଭା ସମ୍ପର୍କରେ ବହୁ ପ୍ରବୁଦ୍ଧ, ପ୍ରବୀଣ, ଲବ୍ଧ-ପ୍ରତିଷ୍ଠ ଓ ପ୍ରତିଭାସମ୍ପନ୍ନ ନବାଗତଙ୍କର ଲେଖନୀସମୃଦ୍ଧ ଏଇ ସଂକଳନଟି ଏକାଧାରରେ ଯଥାକଥିତ ଇତିହାସ, ପୁରାଣ, କବିତା, ନାଟକ, ଉପନ୍ୟାସ, ଦୁଃସାହସିକ କାହାଣୀ, ଭ୍ରମଣ ବୃତ୍ତାନ୍ତ, ରମ୍ୟ ରଚନା ତଥା ସାମାଜିକ ରାଜନୈତିକ ଓ ଆଧ୍ୟାତ୍ମିକ ଆଲୋଚନାର ଆଧାର ରୂପେ ଉପଭୋଗ୍ୟ ଓ ଉପଜୀବ୍ୟ ହେବ ବୋଲି ଆଶା ।

ଏହି ଗ୍ରନ୍ଥରେ ସନ୍ନିବେଶିତ ଛତିଶଗୋଟି ପ୍ରବନ୍ଧ ମଧ୍ୟରୁ ଆଠଟି ଆଗରୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି ଏବଂ ଉପଯୋଗିତା ଦୃଷ୍ଟିରୁ ସମ୍ପୃକ୍ତ ଲେଖକ ତଥା ପ୍ରକାଶକଙ୍କ ସୌଜନ୍ୟକ୍ରମେ ସେଗୁଡ଼ିକୁ ଏଥିରେ ସଂଲଗ୍ନ କରାହୋଇଛି । ଅନ୍ୟ ଅଠାଇଶଟି ପ୍ରବନ୍ଧ ଏଯାବତ ଅନ୍ୟତ୍ର ଅପ୍ରକାଶିତ ଏବଂ ସତେ ଯେମିତି ଏ ସଂକଳନର ଶ୍ରୀବୃଦ୍ଧିସାଧନ ନିମିତ୍ତ ଏକାନ୍ତ ଅଭିପ୍ରେତ । ମୁଁ ଏ ସମସ୍ତ ଲେଖକ-ଲେଖିକାଙ୍କ ନିକଟରେ କୃତଜ୍ଞ । ତେବେ ଏହି ସଂକଳନ କାର୍ଯ୍ୟରେ ସର୍ବଶ୍ରୀ ରାଧାନାଥ ରଥ, ଉଦୟନାଥ ଷଡ଼ଙ୍ଗୀ, ମୁରଲୀଧର ମଲ୍ଲିକ, ବିଚିତ୍ରାନନ୍ଦ କର, ପ୍ରବୋଧ କୁମାର ମିଶ୍ର, ସତ୍ୟନାରାୟଣ ମହାପାତ୍ର ଓ ବନ୍ଧୁ ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟଙ୍କର ବିଶେଷ ସାହାଯ୍ୟ ଚିର ଅବିସ୍ମରଣୀୟ । ପ୍ରକାଶକ ବି ଏହି ଗ୍ରନ୍ଥଟିକୁ ଅପେକ୍ଷାକୃତ କମ୍ ମୂଲ୍ୟରେ ପରିବେଷଣ କରିବା ଯୋଗୁଁ ଧନ୍ୟବାଦାର୍ହ । ଅବଶ୍ୟ ଏହି ସଂକଳନରେ ସଂପୃକ୍ତ ସମସ୍ତ ଲେଖକଙ୍କର

ଫଟୋ ପରିଚୟ ପ୍ରକାଶ କରିବା ଅଭିପ୍ରାୟ ଥିଲା । କିନ୍ତୁ ତାହା ସମ୍ଭବ ହୋଇପାରିଲା ନାହିଁ, ଏଥିପାଇଁ ଦୁଃଖିତ ।

ଏଥିରେ ସନ୍ନିବିଷ୍ଟ ପ୍ରବନ୍ଧମାନଙ୍କରେ ଭାବ ଓ ବିଷୟଗତ ପୁନରାବୃତ୍ତି ଏଡ଼ାଇବା ଲାଗି ଆବଶ୍ୟକ ଚେଷ୍ଟା କରାଯାଇଛି ଏବଂ ସେହି କାରଣରୁ ସମ୍ପାଦନା ବେଳେ କେତେକ ପ୍ରବନ୍ଧରୁ କିଛି କିଛି ଅଂଶ ବାଦ ଦିଆଯାଇଛି । ଏତଦ୍ ବ୍ୟତୀତ ପ୍ରବନ୍ଧଗୁଡ଼ିକୁ ସୁନ୍ଦର, ଶାଳୀନ ଓ ସୁପାଠ୍ୟ କରିବା ଲାଗି ମୁଁ ମୋ ବିଚାରରେ ସ୍ଥଳବିଶେଷରେ କିଛି ଖଣ୍ଡନ-ମଣ୍ଡନ କରିଛି । ଏଥି ନିମିତ୍ତ ମୁଁ ସଂପୃକ୍ତ ଲେଖକ-ଲେଖିକାଙ୍କ ନିକଟରେ କ୍ଷମାପ୍ରାର୍ଥୀ । ତେବେ ଏହି ସଂକଳନର ସାର୍ଥକତାର ଚରମ ବିଚାରକ ଆମର ସୁଧୀ ପାଠକ-ପାଠିକାବୃନ୍ଦ ।

ବିନୀତ

**ସଂକଳକ**



## ଦ୍ୱିତୀୟ ପ୍ରକାଶନ ସମ୍ବନ୍ଧରେ ପଦେ

ପଣ୍ଡିତ ଗୋପବନ୍ଧୁଙ୍କ ବିଷୟରେ ଏହି ସଙ୍କଳନ ଗ୍ରନ୍ଥଟି ପ୍ରକାଶ ପାଇଲା ପରେ ଏଥିପ୍ରତି ପାଠକ ତଥା ସାହିତ୍ୟିକମାନଙ୍କର ସମଧିକ ଆଦର ମୋତେ ଆନନ୍ଦିତ କରିଛି, କହିବା ବାହୁଲ୍ୟ ହେବ । ତେବେ, ଏହି ଦ୍ୱିତୀୟ ପ୍ରକାଶନ ବେଳେ ଏଥିରେ କେତେକ ନୂତନ ବିଷୟ ସଂଯୋଜିତ ହେବା ସଙ୍ଗେ ସଙ୍ଗେ ସନ୍ନିବିଷ୍ଟ ଲେଖାଗୁଡ଼ିକୁ ସାମ୍ପ୍ରତିକ ତଥ୍ୟ ଓ ପରିସ୍ଥିତିର ପୃଷ୍ଠଭୂମିରେ ପୁଣି ଥରେ କେତେକ ସଂଶୋଧନ ଓ ଖଣ୍ଡନ-ମଣ୍ଡନ କରାଯାଇଥିବାରୁ ଏହା ଅଧିକ ଉପଯୋଗୀ ହେବ ବୋଲି ଆଶା । କିନ୍ତୁ ଏଥିନିମିତ୍ତ ମୁଁ ସମ୍ପୃକ୍ତ ଲେଖକ-ଲେଖିକା-ମାନଙ୍କ ନିକଟରେ ପୁଣି ଥରେ କ୍ଷମାପ୍ରାର୍ଥୀ ।

କଟକ — ବିମୀତ

ତା ୧ । ୪ । ୭୬ — ସଂକଳକ

# ଲେଖା ଓ ଲେଖକ

## —ମୁଖଶାଳା—



## —ଜୀବନୀ ଓ କାର୍ଯ୍ୟକଳାପ—

—ସାହିତ୍ୟ ସାଧନା—

## —ବ୍ୟକ୍ତିତ୍ୱ ଓ ପ୍ରତିଭା—

# ଉତ୍କଳମଣିଙ୍କ ଜୀବନକାହାଣୀ

ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ., ଓ. ଏଫ୍. ଏସ୍.

[ ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନୀ କେବଳ ଘଟଣାବଳୀ, କାର୍ଯ୍ୟକଳାପ ତଥା କୀର୍ତ୍ତି ଓ କୃତତ୍ୱରେ ପରିପୂର୍ଣ୍ଣ ନୁହେଁ, ତାହା ସଙ୍ଗେ ସଙ୍ଗେ ସେଥିରେ ନାନା ଅଲୌକିକତାର ସ୍ପୃହା ତଥା ଅତିମାନବିକତାର ଆଲୋକ ମଧ୍ୟ ପରିଦୃଷ୍ଟ ହୁଏ । ଏଣୁ ତାଙ୍କର ଜୀବନଗାଥା ଏକାଧାରରେ ଇତିହାସ, ପୁରାଣ, କବିତା, ଉପନ୍ୟାସ, ଦୁଃସାହସିକ କାହାଣୀ, ରମ୍ୟରଚନା ଏବଂ ଧାର୍ମିକ, ନୈତିକ ଓ ରାଜନୈତିକ ଆଲୋଚନାରୂପେ ଉପଜୀବ୍ୟ ।—ସଂ ]

"ସଭ୍ୟତା ଏକ ସ୍ୱପ୍ନ । ଏହାର ନୀତି, ନିୟମ, ଜୀବନଧାରଣ ପନ୍ଥା ଓ ମାନସିକ ଅବସ୍ଥା ସ୍ୱପ୍ନ ଉପରେ ପ୍ରତିଷ୍ଠିତ । ସ୍ୱପ୍ନର ସଫଳତାରେ ସଭ୍ୟତାର ସମୃଦ୍ଧି, ସ୍ୱପ୍ନର ବିଫଳତାରେ ସଭ୍ୟତାର ପତନ । ଯେତେବେଳେ ଜୀବନ ବିଷୟ ଚକ୍ରରେ ବିଶୃଙ୍ଖଳିତ ହୋଇପଡ଼େ, ଦାମ୍ଭିକତା ଓ ନିର୍ବୋଧତା ଆମ ଉପରେ ପ୍ରଭାବ ବିସ୍ତାର କରେ, ଯେତେବେଳେ ଆମେ ଆମର ଚତୁର୍ଦ୍ଦିଗରେ ଧ୍ୱଂସକାରିଣୀ ଶକ୍ତିର ଅନ୍ତର୍ଦ୍ଧାତୀ କ୍ରିୟା ଓ ବୃଥା ଅପ୍ରାକୃତିକ ଜୀବନ-ସଂଘର୍ଷ ସନ୍ଦର୍ଶନ କରୁ, ସେତେବେଳେ ପରିସ୍ଥିତି ଅନୁଧ୍ୟାନ କରି ମାନବ ସଭ୍ୟତାର ସ୍ଥିତି ନିରୂପଣ କରିବା ବେଳ ଆସିଯାଏ । × × × ×

ସେତେବେଳେ ଯଦି କେହି ପୁଣ୍ୟାତ୍ମା ପୁରୁଷ ପରିସ୍ଥିତିର ଦାସ ନହୋଇ ଦୁର୍ଦ୍ଦଶାଗ୍ରସ୍ତ ଜନତା ପ୍ରତି ସହୃଦୟତା ପ୍ରକାଶ କରି ସାଂପ୍ରତିକ ବିଶ୍ବ-ପରିସ୍ଥିତି ତଥା ଦ୍ୱନ୍ଦ୍ୱ ପ୍ରତିଦ୍ୱନ୍ଦ୍ୱ ଶ୍ରେଣୀବିଦ୍ୱେଷ ଓ ସଂଘର୍ଷରୁ ମୁହଁ ଫେରାଇ ଆଣି ସଙ୍କୀର୍ଣ୍ଣ ଓ ସଙ୍କଟପୂର୍ଣ୍ଣ ସଦ୍‌ମାର୍ଗରେ ଦୃଷ୍ଟି ନିବଦ୍ଧ କରିବାକୁ ଆହ୍ୱାନ ଦିଏ, ଆମର ଅଭ୍ୟନ୍ତର ପ୍ରଦେଶରେ ସେହି ବାଣୀ ପ୍ରତିଧ୍ୱନିତ ହୁଏ ଏବଂ ସୁପ୍ତ ମାନବିକତା ସଞ୍ଜୀବିତ ହୋଇଉଠେ ।"— ବିଶିଷ୍ଟ ଦାର୍ଶନିକ ଡକ୍ଟର ରାଧାକୃଷ୍ଣନଙ୍କ ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଉକ୍ତିଟି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଯଥାର୍ଥରେ ପ୍ରଯୁଜ୍ୟ । ସ୍ୱର୍ଗୀୟ ଗୋପବନ୍ଧୁ ଭାରତୀୟ ଇତିହାସର ଏକ ସନ୍ଧିକ୍ଷଣ ବେଳେ ଏହି ଧରା-ପୃଷ୍ଠରେ ଜନ୍ମଗ୍ରହଣ କରି ଜାତୀୟ-ଜୀବନକୁ ସୁମହତ କରି ଗଢ଼ି ବାସ୍ତବିକ ଅଦ୍ଭୁତପୂର୍ବ କୃତିତ୍ୱର ପରିଚୟ ପ୍ରଦାନ କରିଛନ୍ତି ।

## ଜନ୍ମ ଓ ବାଲ୍ୟାବସ୍ଥା

ବିଖ୍ୟାତ ସିପାହୀ ବିପ୍ଳବର କୋଡ଼ିଏ ବର୍ଷ ପରେ ସମଗ୍ର ଭାରତ ବର୍ଷର ରାଜନୀତିକୁ ଯେତେବେଳେ ବିଦେଶୀ ଶାସନର ଅଶାନ୍ତି, ଅରାଜକତା ଓ ଅତ୍ୟାଚାରର ଗ୍ରାସ କରିଥିଲା ଏବଂ ଯେତେବେଳେ ଭାରତୀୟ ଜନତା ଦମନ, ଶୋଷଣ ଓ ପେଷଣରେ ନିଷ୍ପେଷିତ ହେଉଥିଲେ, ସେତେବେଳେ ୧୭୯୯ ଶକାବ୍ଦ କନ୍ୟା ୨୬ ଦିନ (ଇଂରାଜୀ ୧୮୭୭ ମସିହା ଅକ୍ଟୋବର ମାସ ୯ ତାରିଖରେ) ପବିତ୍ର ନୀଳାଚଳପୀଠ ଅନ୍ତର୍ଗତ ସାକ୍ଷୀଗୋପାଳ ନିକଟସ୍ଥ ଭାର୍ଗବୀ ନଦୀ ଉପକୂଳବର୍ତ୍ତୀ ସୁଆଣ୍ଡୋ ଗ୍ରାମରେ ଜନଜୀବନର ଶ୍ରେଷ୍ଠ ପ୍ରତିନିଧି ଦିନବନ୍ଧୁ ଗୋପବନ୍ଧୁଙ୍କର ଆବିର୍ଭାବ ବାସ୍ତବରେ ଏକ ଦେବାଶୀର୍ବାଦ ସ୍ୱରୂପ । ଏପରିକି ପ୍ରବାଦ ଅଛି, ଦୀର୍ଘ ତିନି ଦିନ ଧରି ଅସହ୍ୟ ପ୍ରସବ ବେଦନା ଅନୁଭବ କରିବା ପରେ ଗୋପବନ୍ଧୁଙ୍କ ମାତା ସ୍ୱର୍ଣ୍ଣମୟୀ ଦେବୀ ସ୍ୱପ୍ନାବସ୍ଥାରେ ଏକ ଅଶରୀରୀ ବାଣୀ ଶୁଣିଥିଲେ ଯେ, ଅନାଗତ ସନ୍ତାନଟି ତାଙ୍କ ନିଜ ସନ୍ତାନ ନୁହେଁ । ତେଣୁ ସେ ନିଜ ଗୃହ ଛାଡ଼ି ତାଙ୍କ ପଡ଼ୋଶୀଙ୍କ ଗୃହକୁ ଚାଲିଗଲେ ପ୍ରସବବେଦନା ଲାଘବ ହୋଇଯିବ । ସତକୁ ସତ ସ୍ୱର୍ଣ୍ଣମୟୀ ଦେବୀ ଦୈତ୍ୟାରି ଦାସଙ୍କ ଗୃହରୁ ଚକ୍ରଧର ଦାସଙ୍କ ଗୃହକୁ ଚାଲିଯିବା ସଙ୍ଗେ ସଙ୍ଗେ ଗୋପବନ୍ଧୁଙ୍କର ଆବିର୍ଭାବ ହୋଇଥିଲା ।

ବିଧାତାଙ୍କର ନିର୍ଦ୍ଦେଶ ଏମିତି ନିଷ୍ଠୁର ଯେ, ଗୋପବନ୍ଧୁଙ୍କ ଜନ୍ମର ଅଳ୍ପଦିନ ମଧ୍ୟରେ ତାଙ୍କ ମାତାଙ୍କର ପରଲୋକ ଘଟିଥିଲା । ବଂଶରକ୍ଷା ଉଦ୍ଦେଶ୍ୟରେ ଦୈତାରି ଦାସ ସ୍ୱର୍ଣ୍ଣମୟୀଙ୍କୁ ତୃତୀୟା ପତ୍ନୀ ରୂପେ ଗ୍ରହଣ କରିଥିବାରୁ ସେ ଚତୁର୍ଥ ଥର ବିବାହ କରିବାକୁ ଅନିଚ୍ଛା ପ୍ରକାଶ କରୁଥିଲେ ହେଁ ସଦ୍ୟଜାତ ସନ୍ତାନ ଗୋପବନ୍ଧୁଙ୍କ ଭବିଷ୍ୟତକୁ ଆଖି ଆଗରେ ରଖି ତାହା କରିବାକୁ ବାଧ୍ୟ ହୋଇଥିଲେ । ତଥାପି, ତାତ୍କାଳୀନ ସାମାଜିକ ରୀତି ଅନୁସାରେ, ବିଶେଷତଃ ବ୍ରାହ୍ମଣ ସମାଜରେ, ବାଲ୍ୟବିବାହ ପ୍ରଥା ବାଧ୍ୟତାମୂଳକ ଭାବେ ପ୍ରଚଳିତ ଥିବାରୁ ସେ ହଠାତ୍ ଗୋଟିଏ ପତ୍ନୀକୁ ଘରକୁ ନେଇ ଆସିବା ପାଇଁ ସକ୍ଷମ ହୋଇ ନ ଥିଲେ । ବିବାହ ପରେ ନିମିତ୍ୟ ହୋଇ ଚତୁର୍ଥା ପତ୍ନୀ ଗୃହକୁ ଆସିବା ପର୍ଯ୍ୟନ୍ତ ଦୈତାରି ଦାସେ ନିଜର ବିଧବା ଭଗିନୀ କମଳା ଦେବୀଙ୍କ ହାତରେ ଶିଶୁପୁତ୍ର ଗୋପବନ୍ଧୁଙ୍କର ଲାଳନପାଳନ ଭାର ଗ୍ରୁତ୍ତ ଦେଇଥିଲେ । ଏହି ପିଉସୀଙ୍କ ପ୍ରତି ଆନ୍ତରିକ କୃତଜ୍ଞତା ଜ୍ଞାପନ କରି ପରେ ଗୋପବନ୍ଧୁ 'ମୋ ନାନୀ' ନାମକ ଏକ କ୍ଷୁଦ୍ର କବିତାରେ ଲେଖିଛନ୍ତି—

"ଆବାଲ୍ୟ ବିଧବା ଆହା ! କେବେ ମୋର ବାରେ
ହେଉଗିନାହିଁ ଦିବ୍ୟ ଶୁଦ୍ଧ ଦାମ୍ପତ୍ୟ ପ୍ରଣୟ,
ପର ସେବାବ୍ରତେ ନିଜ ଜୀବନ-ସଞ୍ଚୟ
ବ୍ୟୟ କରିବାକୁ ତବ ଜନ୍ମ ଏ ସଂସାରେ ।

× × ×

ତୁମ୍ଭ ରୀତି ଆଚରିଲେ ସକଳ କାମିନୀ
ଓହ୍ଲାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ୍ୟ ଜଗତେ ।
ତୁମ୍ଭର ନିଷ୍କାମ ସ୍ନେହ ସଦା ଥିବ ମନେ,
ଯହିଁ ଥିଲେ ସ୍ମରୁଥିବି ନିତ "ନାନୀ, ନାନୀ" ।"

ଗୋପବନ୍ଧୁ ତରୁଣ ବୟସରେ ତାଙ୍କ ଦୟାମୟୀ ବାଲ୍ୟଜୀବନର ଦୁଃଖ ଓ ନୈରାଶ୍ୟ ମନେ ପକାଇ କବିତା ମାଧ୍ୟମରେ ଅଶ୍ରୁମୋଚନ କରି ଗାଇଛନ୍ତି—

"ଦେଖିନାହିଁ ମୁଁ ମାତୃବଦନ
ପାନ କରି ନାହିଁ ମାତୃସ୍ତନ
ନେହା ଲେଣି ସତଯୁ ଦେଇ ନିଜ ପୟ
ବଞ୍ଚାଇଲୁ ମୋ ଶିଶୁ-ଜୀବନ, ଲୋ ଭଗିନୀ ।
ତନ୍ନାବଦ୍ଧନ ବାଲ୍ୟ ସମୟେ
ବହୁ ଖେଳିଅଛୁ ତୋ ହୃଦୟେ
ମୋର କେତେ ଅଳି ଅଛୁ ତୁ ସମ୍ଭାଳି
ମନେଥିବ ଜୀବ ଯିବାଯାଏ, ଲୋ ଭଗିନୀ ।" (ଭଗିନୀ ପ୍ରତି)

× × ×

' ପଚିଶ-ଛବିଶ ବର୍ଷ ହେଲା ଏବେ ଗତ,
ପଛକୁ ଚାହିଁଲେ ହୃଦ ଆହା କି ବିକଳ !
ଅତୀତ କେବଳ ମୋର ଧୂଷ ମରୁକତ,
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୁର୍ବାଦଳ !"
(ଛବିଶ ବର୍ଷ ପ୍ରବେଶ)

## ବିବାହ, ଶିକ୍ଷା ଓ ଛାତ୍ରାବସ୍ଥା

ଦୈତ୍ୟାରି ଦାସେ ଘରେ ଅବଧାନ ରଖି ଦୁଇ ପୁଅ ନାରାୟଣ ଓ ଗୋପବନ୍ଧୁଙ୍କର ବିଦ୍ୟାରମ୍ଭ କରିବାର ଅଳ୍ପଦିନ ମଧ୍ୟରେ ଗୋପବନ୍ଧୁ ଯେଉଁଭଳି ଭାଗବତ ପାଠ ଏବଂ କବିତା ରଚନା ଆରମ୍ଭ କରି ଦେଇଥିଲେ, ତାହା ଅବଧାନଙ୍କୁ ଅତ୍ୟନ୍ତ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଆଶ୍ଚର୍ଯ୍ୟାନ୍ୱିତ କରି ପକାଇଥିଲା । ତେଣୁ ପିତା ଦୈତ୍ୟାରି ଦାସ ଗୋପବନ୍ଧୁଙ୍କର ପାଠପଢ଼ା ଦିଗରେ ବିଶେଷ ଦୃଷ୍ଟି ଦେଇଥିଲେ ଏବଂ ତାଙ୍କର କବିତା ପ୍ରଣୟନ ଉଦ୍ୟମକୁ ଉତ୍ସାହିତ କରିଥିଲେ ।

ଗୋପବନ୍ଧୁ ସମସାମୟିକ ଉତ୍କଳୀୟ ଚଟଶାଳୀର ପ୍ରାଥମିକ ପାଠ୍ୟକ୍ରମ ଶେଷ କରିବା ପୂର୍ବରୁ ତଦାନୀନ୍ତନ ବ୍ରାହ୍ମଣ ସମାଜରେ ପ୍ରଚଳିତ ପ୍ରଥାନୁସାରେ ତାଙ୍କୁ ବାର ବର୍ଷ ବୟସରେ ପଡ଼ୋଶୀ ଗ୍ରାମର ମୋଚି ନାମକ 'ଜୀବନ-ପ୍ରଭାତ' ଅତିକ୍ରମ କରି ନ ଥିବା, 'ଭବ-ଦୁଃଖ ଝଡ଼ ଝଞ୍ଜା ବାତ'

ଭୋଗି ନ ଥିବା, 'ତରୁଣ ଛନ୍ଦକ ଗ୍ରବ ଅପାଙ୍ଗ-ଗୃହାଣୀ ଚତୁର ସୁହାସ' ଜାଣି ନ ଥିବା ଜଣେ ନଅ ବର୍ଷ ବୟସ୍କା ସରଳା ବାଳିକାର ପାଣିଗ୍ରହଣ କରିବାକୁ ପଡ଼ିଥିଲା । ଅବଶ୍ୟ ସେହି ବାଲ୍ୟ ବିବାହ ଏକ 'କଣ୍ଟେଇ ବିଷ୍ଣ' ଭଳି ଥିଲା ଏବଂ ତାହା ତାଙ୍କର ଭବିଷ୍ୟତ ଶିକ୍ଷା ପାଇଁ ପ୍ରତିବନ୍ଧକ ହୋଇ ନ ଥିଲା । ସେ ପ୍ରାଥମିକ ଶିକ୍ଷା ଶେଷ କରି ସୁଆଣ୍ଡୋଠାରୁ ପାଞ୍ଚ ମାଇଲ ଦୂରବର୍ତ୍ତୀ ରୂପଦେଈପୁର ମାଧ୍ୟମିକ ଭର୍ଣ୍ଣାକୁଲାର ସ୍କୁଲରେ ନାମ ଲେଖାଇଥିଲେ ଏବଂ ମାଧ୍ୟମିକ ଶିକ୍ଷା ପରେ ପୁରୀ ଜିଲ୍ଲା ସ୍କୁଲରେ ପଦାର୍ପଣ କରିଥିଲେ । ଗୋପବନ୍ଧୁ ସେତେବେଳକୁ ଇଂରାଜୀରେ ଦୁର୍ବଳ ଥିଲେ ସତ କିନ୍ତୁ ଅଳ୍ପକାଳ ମଧ୍ୟରେ ସ୍ୱୀୟ ଉଦ୍ୟମ ଓ ଅଧ୍ୟବସାୟ ବଳରେ ସେ ଇଂରାଜୀ ଓ ଓଡ଼ିଆ ସାହିତ୍ୟରେ ଅଗାଧ ପାରଦର୍ଶିତା ଲାଭ କରି ତାଙ୍କ ଶ୍ରେଣୀର ଜଣେ ଉତ୍କୃଷ୍ଟ ଛାତ୍ର ରୂପେ ବିବେଚିତ ହୋଇଥିଲେ ।

ସେତେବେଳେ ଗୋପବନ୍ଧୁ ସାମାନ୍ୟ ଖିନା ଥିଲେ । ତେଣୁ ସେ ରାତିରେ ଶୋଇଲାବେଳେ ପାଠିରେ ବାଲିଗରଡ଼ା ଭର୍ତ୍ତି କରୁଥିଲେ ଏବଂ ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ନିର୍ଜନ ପ୍ରାନ୍ତରେ ମହାଶୂନ୍ୟକୁ ଲକ୍ଷ୍ୟ କରି ବକ୍ତୃତା ଦେବା ଅଭ୍ୟାସ କରୁଥିଲେ । ତାଙ୍କର ଏତାଦୃଶ କାର୍ଯ୍ୟକୁ ବହୁ ପିଲା ସମାଲୋଚନା କରୁଥିଲେ ଏବଂ 'ଗୋପ ଦେଶକୁ ଠେକା ଧରିବ' ବୋଲି ଆକ୍ଷେପ କରୁଥିଲେ ସତ, କିନ୍ତୁ ଗୋପବନ୍ଧୁ ତାଙ୍କର ଉଦ୍ୟମରେ କୃତକାର୍ଯ୍ୟ ହୋଇଥିଲେ ଏବଂ ସେହି ପୁରୀ ଜିଲ୍ଲା ସ୍କୁଲରେ ଛାତ୍ର ଥିବାବେଳେ ହିଁ ବିଭିନ୍ନ ସଭାସମିତିର ଆବାହକ ହୋଇ ପାରିଥିଲେ । ସେହି ଅନୁଭୂତିରୁ ଭବିଷ୍ୟତ ଜୀବନରେ ଗୋପବନ୍ଧୁ ନେତୃତ୍ୱ ଓ ସହଯୋଗିତା ଧର୍ମକ୍ଷେତ୍ରରେ ଯଥେଷ୍ଟ ଶିକ୍ଷା ଲାଭ କରି ଜଣେ ବିଶିଷ୍ଟ ବକ୍ତା ଓ ବ୍ୟବସ୍ଥାପକ ହୋଇ ପାରିଥିଲେ ।

ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିବାବେଳେ ଥରେ ରଥଯାତ୍ରା ସମୟରେ ସେଠାରେ ହଇଜାର ପ୍ରାଦୁର୍ଭାବ ଭୟଙ୍କର ଭାବେ ବ୍ୟାପି ଯାଇଥିଲା । ଏପରିକି ପବିତ୍ର ନୀଳାଚଳ ପୀଠରେ ଇତସ୍ତତଃ ଶବ ସବୁ ଗଡ଼ୁଥିଲା । ସେହି ବୀଭତ୍ସ ଦୃଶ୍ୟରେ ବ୍ୟଥିତ ହୋଇ ତରୁଣ ଗୋପବନ୍ଧୁ 'ପୁରୀ ସେବା ସମିତି' ନାମରେ ଏକ ସ୍ୱେଚ୍ଛାସେବକ ଦଳ ଗଢ଼ି

ବସ୍ତି କଡ଼ରୁ ଶବ ଗୋଟାଇ ସେଗୁଡ଼ିକ ଦାହ କରିଥିଲେ ଏବଂ ମୁମୂର୍ଷୁ ବ୍ୟକ୍ତିଙ୍କର ସେବା ଶୁଶ୍ରୂଷା କରିଥିଲେ । ସେହି ସମୟରେ ତାଙ୍କର ଅନେକ ବନ୍ଧୁ ହରିହର ଦାସ ସ୍ୱାସ୍ଥ୍ୟ ବିଭାଗୀୟ ଅଫିସରଙ୍କର ଅବହେଳା ପ୍ରତି ଦୃଷ୍ଟି ଆକର୍ଷଣ କରି ଦୈନିକ 'ଷ୍ଟେଟସ୍‌ମ୍ୟାନ୍'ରେ କେତେକ ତଥ୍ୟ ପ୍ରକାଶ କରିବାରୁ ତତ୍କାଳୀନ ସିଭିଲ୍ ସର୍ଜନ୍ ଗ୍ଲାସ୍ ବେକ ତାଙ୍କୁ ଡାକନେଇ ଯେଉଁଭଳି ନିର୍ମମ ମାଡ଼ ଦେଇଥିଲେ, ତା'ର ଶାନ୍ତିପୂର୍ଣ୍ଣ ପ୍ରତିବାଦ କରି ଗୋପବନ୍ଧୁ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଅଦାଲତରେ ଅଭିଯୋଗ କରିଥିଲେ ଏବଂ ବେକ୍ ସାହେବ ସର୍ବସାଧାରଣଙ୍କ ଆଗରେ କ୍ଷମା ପ୍ରାର୍ଥନା କରନ୍ତୁ ବୋଲି ଦାବୀ କରିଥିଲେ । ସ୍କୁଲ ଛାତ୍ର ଥିବାବେଳୁ ଗୋପବନ୍ଧୁ ଥିଲେ ଏଭଳି ସମାଜସେବୀ, ଦୃଢ଼, ଶାନ୍ତ ଓ ନ୍ୟାୟପରାୟଣ ।

ସେହି ସ୍କୁଲର ଛାତ୍ର ଥିବାବେଳେ ହିଁ ୧୮୯୨ରେ ୧୭ ବର୍ଷ ବୟସରେ ଗୋପବଂଧୁଙ୍କର ବିବାହ କୃତ୍ୟ ସମ୍ପାଦିତ ହୋଇଥିଲା ଏବଂ ସେ ବିଦ୍ୟାର୍ଥୀ ଥାଇ ମଧ୍ୟ ଗୃହୀ ପାଲଟି ଯାଇଥିଲେ । ଅବଶ୍ୟ ସେ ତାଙ୍କର ଶିକ୍ଷା ପ୍ରତି ଅବହେଳା ପ୍ରଦର୍ଶନ କରି ନ ଥିଲେ । ସେ ଅତି ସରଳ ଓ ସାତ୍ତ୍ୱିକ ଜୀବନ ଯାପନ କରିଥିଲେ । ସେହି ସମୟରୁ ହିଁ ସେ କଲବୁଣା ସରୁ ଲୁଗା ପରିଧାନ କରିବା ପରିହାର କରି ଦେଇଥିଲେ ଏବଂ ଅନ୍ୟାନ୍ୟ ସହପାଠୀମାନଙ୍କୁ ସରଳ ଜୀବନଯାପନ କରିବାପାଇଁ ପରାମର୍ଶ ଦେଉଥିଲେ ।

୧୮୯୯ରେ ସେ ମାଟ୍ରିକୁଲେସନ ପାଶ୍ କରି ଏଫ୍. ଏ. ପଢ଼ିବା ପାଇଁ ରେଭେନ୍‌ସା କଲେଜରେ ନାମ ଲେଖାଇବା ପୂର୍ବରୁ ତାଙ୍କ ପିତାଙ୍କର ପରଲୋକ ଘଟିଥିଲା । ତେଣୁ ଗୋପବଂଧୁ ତାଙ୍କ ପରିବାରକୁ ଜ୍ୟେଷ୍ଠଭ୍ରାତା ଶ୍ରୀଯୁକ୍ତ ନାରାୟଣ ଦାସଙ୍କ ଦାୟିତ୍ୱରେ ରଖାଇ ନିଜ ଅଧ୍ୟୟନ ଅବ୍ୟାହତ ରଖିଥିଲେ ।

ଗୋପବଂଧୁ ପୁରୀ ଜିଲ୍ଲା ସ୍କୁଲରେ ପଢ଼ୁଥିବା ବେଳେ ବିଭିନ୍ନ କାବ୍ୟ କବିତା ପ୍ରଣୟନ କରୁଥିଲେ ଏବଂ ସାରଳା ଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ ପ୍ରମୁଖଙ୍କ କାବ୍ୟ କୃତିକୁ ପ୍ରଶଂସା କରି 'ଇନ୍ଦ୍ରଧନୁ'ରେ ଲେଖାମାନ ପ୍ରକାଶ କରୁଥିଲେ । ସେତେବେଳେ ତତ୍କାଳୀନ ଓଡ଼ିଶାର ସ୍କୁଲ ଇନସ୍‌ପେକ୍ଟର କବିବର ରାଧାନାଥ ରାୟଙ୍କୁ 'ବାଘସିଂହ ସାହାରେ ଶୃଗାଳ

କେଶରୀ ପରି ହେଉଥାଏ ଗଣ୍ୟ ରୂପେ ସମାଲୋଚନା କରି 'ଇନ୍ଦ୍ରଧନୁ'ରେ ଲେଖା ପ୍ରକାଶ କରିଥିଲେ ବୋଲି ତାଙ୍କର ବର୍ଷକର ବୃତ୍ତି କାଟି ଦିଆଯାଇଥିଲା । କଲେଜରେ ପଢ଼ିଲା ବେଳକୁ ତାଙ୍କର ଏହି କବିପ୍ରତିଭା ବହୁ ଗୁଣରେ ବଢ଼ିଯାଇଥିଲା । ସେହି ସମୟରେ ଲିଖିତ ତାଙ୍କର ଲୁହୁ କାବ୍ୟ* 'କଲ୍ଲଲତା'କୁ ଅନେକ ରାଧାନାଥଙ୍କର 'ମହାଯାତ୍ରା' ସହିତ ତୁଳନା କରିଥିଲେ ଏବଂ ନିଜେ ରାଧାନାଥ ମଧ୍ୟ ସେଥିରେ ମୁଗ୍ଧ ହୋଇ ଗୋପବନ୍ଧୁଙ୍କ ଦ୍ୱାରା ଦିନେ ଓଡ଼ିଆ ସାହିତ୍ୟ ଗୌରବମଣ୍ଡିତ ହେବ ବୋଲି ଆଶା ପ୍ରକାଶ କରିଥିଲେ ।

ଠିକ୍ ସେହି ସମୟରେ ସମଗ୍ର ଓଡ଼ିଆ ଜାତି ପ୍ରତି ଏକ ବିରାଟ ସଂକଟ ଦେଖା ଦେଇଥିଲା । ଓଡ଼ିଶାର କେତେଜଣ ବଙ୍ଗଭାଷୀ ବ୍ୟକ୍ତି ଓଡ଼ିଆ ଭାଷାକୁ ଲୋପ କରିବାକୁ ବସିଥିଲେ । ଏଣେ ସେତେବେଳେ ଓଡ଼ିଶାରେ ମାତ୍ର ତିନିଜଣ ଏମ୍. ଏ. ଥିଲେ—ମଧୁସୂଦନ ଦାସ, ଗୋପାଳବଲ୍ଲଭ ଦାସ ଏବଂ ଅଭିରାମ ଭଞ୍ଜ । ଏଭଳି ଦୟନୀୟ ପରିସ୍ଥିତିର ପ୍ରତିବାଦ ସ୍ୱରୂପ ଗୋପବନ୍ଧୁ 'କର୍ତ୍ତବ୍ୟ ବୋଧିନୀ ସମିତି' ସଙ୍ଗଠନ କରି ଜାତୀୟ ମମତାକୁ ଜାଗ୍ରତ କରିବାକୁ ଆହ୍ୱାନ ଦେଇଥିଲେ ଏବଂ ତାଙ୍କର ସେହି ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଫଳରେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ପ୍ରବେଶ କରି ପାରିଥିଲା । 'କର୍ତ୍ତବ୍ୟ ବୋଧିନୀ ସମିତି'ର ତିନି ଜଣ କର୍ମୀଙ୍କର ହରିହର, ବ୍ରଜସୁନ୍ଦର ଓ ଗୋପବନ୍ଧୁ ବନ୍ୟା ପ୍ରପୀଡ଼ିତ ଅଞ୍ଚଳରେ ସେବା ଶୁଶ୍ରୂଷା ଓ ସାହାଯ୍ୟ ଦାନ କରିବା କ୍ଷେତ୍ରରେ ମଧ୍ୟ ଅବାଧ କର୍ତ୍ତବ୍ୟନିଷ୍ଠାର ପରିଚୟ ଦେଇଥିଲେ ।

୧୯୦୧ରେ ଏଫ୍. ଏ. ପାଶ କଲାବେଳକୁ ସେ ତାଙ୍କର ଏକ ସନ୍ତାନ ହରାଇବାରୁ ସେଥିରେ ବ୍ୟଥିତ ହୋଇ ଗୋପବନ୍ଧୁ କଲେଜ ଛାଡ଼ିବାକୁ ବିଚାର କରିଥିଲେ । କିନ୍ତୁ ତାଙ୍କର ଜ୍ୟେଷ୍ଠ ଭ୍ରାତା ନାରାୟଣ ଦାସ ଏବଂ ଉମାଚରଣ ଦାସ, ଗୋପୀନାଥ ଦାସ, ହରିହର ପଣ୍ଡା, ଜଗବନ୍ଧୁ ସିଂହ ପ୍ରଭୃତି ବନ୍ଧୁ ତାଙ୍କୁ ବାଧ୍ୟ କରିବାରୁ ସେ ବି. ଏ.

* ଗୋପବନ୍ଧୁ କଟକରୁ ଘରକୁ ଫେରୁଥିବା ବେଳେ ତାଙ୍କର 'କଲ୍ଲଲତା' ପାଣ୍ଡୁଲିପିଟି ହଜି ଯାଇଥିଲା ।

ଶ୍ରେଣୀରେ ଯୋଗ ଦେଇଥିଲେ । ତଥାପି ସେ ପାଠ ପଢ଼ାରେ ଯେତିକି ମନ ଦେଇ ନ ଥିଲେ, ସେବା କାର୍ଯ୍ୟରେ ତାଠୁଁ ଅଧିକ ଧ୍ୟାନ ଦେଇଥିଲେ । ୧୯୦୩ରେ ମଧୁବାବୁଙ୍କ ଦ୍ୱାରା ଆହୂତ ଉତ୍କଳ ସମ୍ମିଳନୀର ପ୍ରଥମ ବୈଠକରେ ଯୋଗଦାନ କରି ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ପ୍ରସ୍ତାଲୋଚନାରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ତେଣୁ ଗୋପବନ୍ଧୁ ୧୯୦୩ରେ ବି. ଏ. ପରୀକ୍ଷାରେ କୃତକାର୍ଯ୍ୟ ହୋଇପାରି ନ ଥିଲେ । ବି. ଏ.ରେ ଅକୃତକାର୍ଯ୍ୟ ହେବା ସମ୍ବାଦ ପହଞ୍ଚିବା ସଙ୍ଗେ ସଙ୍ଗେ ତାଙ୍କର ଏକମାତ୍ର ପୁତ୍ରର ବିୟୋଗ ସମ୍ବାଦ ମଧ୍ୟ ତାଙ୍କଠାରେ ପହଞ୍ଚିଥିଲା । ସେଥିରେ ସେ ଖୁବ୍ ଭାଙ୍ଗି ପଡ଼ିଥିଲେ ସତ, କିନ୍ତୁ ଓଡ଼ିଶାରେ ଶିକ୍ଷାର ଅଧୋଗତିକୁ ଆଖି ଆଗରେ ରଖି ଗୋପବନ୍ଧୁ ତାଙ୍କ ଲକ୍ଷ୍ୟ ପଥରୁ ଟଳି ନ ଥିଲେ । ୧୯୦୪ରେ ସେ ବି. ଏ. ପାଶ କରିବା ପରେ ଏମ୍. ଏ. ଓ ଆଇନ ଶ୍ରେଣୀରେ ନାମ ଲେଖାଇଲେ । କିନ୍ତୁ ସରକାରୀ ଚାକିରି କରିବା ମନୋବୃତ୍ତି ନ ଥିବାରୁ ଅଳ୍ପଦିନ ପରେ ସେ ଏମ. ଏ. ପଢ଼ା ଛାଡ଼ିଦେଇ ଖାଲି ଆଇନ ପଢ଼ିଲେ ଏବଂ କଲିକତା ବିଶ୍ୱବିଦ୍ୟାଳୟରୁ ବି. ଏଲ. ହେଲେ । ଗୋପବନ୍ଧୁ ବି. ଏଲ. ପରୀକ୍ଷା ଦେବାକୁ ଯାଇ ଯେଉଁ ଛଅ ମାସ ପାଇଁ କଲିକତାରେ ରହିଥିଲେ, ସେତେବେଳେ ସେ ସହରର ଅନ୍ଧିସନ୍ଧି ବୁଲି ବୁଲି ଓଡ଼ିଆ ଶ୍ରମିକ-ମାନଙ୍କର ଅବସ୍ଥା ଅନୁଧ୍ୟାନ କରି ସେମାନଙ୍କ ପାଇଁ ସାଂଧ୍ୟସ୍କୁଲ ବସାଇ ଶିକ୍ଷା ବିତରଣ କରିଥିଲେ ଏବଂ ଶ୍ରମିକମାନଙ୍କୁ ଦଳବଦ୍ଧ କରି ଏକ 'ଓଡ଼ିଆ ଶ୍ରମିକ ସଂଘ' ମଧ୍ୟ ଗଢ଼ିଥିଲେ ।

୧୯୦୬ରେ ବି. ଏଲ. ହେବା ପୂର୍ବରୁ ୧୯୦୪ରେ ଯେତେବେଳେ ସମଗ୍ର ଓଡ଼ିଶା ବନ୍ୟାପ୍ଲାବିତ ହୋଇଥିଲା, ସେତେବେଳେ ଅତି ଦାରୁଣ ଭାବେ 'ଏକର ବିନାଶେ ଅନେକ ପ୍ରକାଶେ' ନୀତିରେ ଗୋପବନ୍ଧୁ ତାଙ୍କର ତୃତୀୟ ପୁତ୍ରକୁ ହରାଇଥିଲେ ଏବଂ ମାଳଗିରିଠାରେ ବି. ଏଲ୍. ପାଶ୍ ହେବା ସମ୍ବାଦ ପହଞ୍ଚିବା ଦିନ ହିଁ ତାଙ୍କ ନିକଟରେ ନିଜର ପ୍ରିୟତମା ପତ୍ନୀଙ୍କ ପରଲୋକ ସମ୍ବାଦ ପହଞ୍ଚିଥିଲା । ମାତା, ପିତା, ପୁତ୍ର, ପତ୍ନୀ ଗୋଟି ଗୋଟି କରି ସମସ୍ତେ ତାଙ୍କୁ ଛାଡ଼ି ଚାଲିଗଲେ । ତାଙ୍କର ସେହି 'ବିଷାଦ ସମୟରେ ଲିଖିତ କବିତାର ପଂକ୍ତି' ହେଉଛି—

"ମୋ ଜୀବନ-ବୀଣାଯନ୍ତ୍ର-ତାର, ସ୍ୱର ସ୍ଥାନ ବଇତମ ଅତି,
ଏବେ ହୃଦମ ହେଉଛି ଅସାର, ତେଜ ଆଦ୍ୟ ମୋହ୍ୱମୀ ଶକତି ।

+ + +

"ପ୍ରଭାତର ମୃଦୁ ଗନ୍ଧବହ ହରଉଛି ନଜ ଶୀତଲତା,
ଘୋର ଝଞ୍ଜା ପବନ-ପ୍ରବାହ ନାଶେ ଏବେ ହୃଦ-ସରସତା ।"

ଅବଶ୍ୟ ଏହା ପରେ ବହୁ ବଶିଷ୍ଟ ବ୍ୟକ୍ତି ଓ ବନ୍ଧୁ ତାଙ୍କୁ ଦ୍ୱିତୀୟ ଦାର ଗ୍ରହଣ କରିବାଲାଗି ଏକାଧିକବାର ଅନୁରୋଧ କରିଥିଲେ ଏବଂ ବଭିନ୍ନ ଉପାୟରେ ପ୍ରଭାବ ପକାଇଥିଲେ । ଏପରିକି ମିଦନାପୁରର ବଶିଷ୍ଟ ଓଡ଼ିଆ ଉକିଲ ଶ୍ରୀ ରାଧାନାଥ ପଣ୍ଡିତଙ୍କ କନ୍ୟାକୁ ପାତ୍ରୀ ମଧ୍ୟ ଠିକ୍ କରି ଦେଇଥିଲେ । କିନ୍ତୁ ଗୋପବନ୍ଧୁ ସମସ୍ତ ପ୍ରକାର ଅନୁରୋଧ ଓ ପ୍ରଭାବକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ତାଙ୍କର ଏକମାତ୍ର ଯୁକ୍ତି ଥିଲା, ଯଦି ସ୍ତ୍ରୀ କେବଳ ଏକମାତ୍ର ପତି ଗ୍ରହଣ କରିପାରୁଛି, କେଉଁ ମତରେ ପୁରୁଷ ଦ୍ୱିତୀୟ ଦାର ଗ୍ରହଣ କରିବ ? ଏବଂ ତାଙ୍କର ଅନ୍ତରର ଉକ୍ତି ହେଉଛି—

"ପ୍ରଣୟର ସୁହାସ ଲୋଚନ, ସୁଖ ଦୁଃଖ ଆହ୍ଲାଦ ଯାତନା,
ଜୀବନେ ମୁଁ ଭୋଗିଛି ଅନେକ, ନାହିଁ ଆଉ ଅଧିକ କାମନା !

+ + +

ଶୁଣି ଖଗ ମଧୁର କାକଳୀ, କଣ୍ଠ ବୀଣା ରଖିବ ସମ୍ବାଦ,
ପକ୍ଷୀ ଗୀତେ ଦେବ କରତାଳି, କେହି ମୋତେ ନ ଥିବେ ବିବାଦ ।"

## ଶିକ୍ଷକତା ଓ ଓକିଲାତି

ଛାତ୍ର ଜୀବନରୁ ୟୁରୋପୀୟ ଶିକ୍ଷା ପଦ୍ଧତି ପ୍ରତି ଗୋପବନ୍ଧୁଙ୍କର ଏକ ପ୍ରକାର ବିତୃଷ୍ଣା ଜନ୍ମିଥିଲା । ତେଣୁ ସେ ପ୍ରଥମେ ଶିକ୍ଷା କ୍ଷେତ୍ରରେ ସଂସ୍କାର ପ୍ରବର୍ତ୍ତନ କରିବା ମନୋଭାବ ନେଇ ନୀଳଗିରିଠାରେ ଏକ ନବ ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନରେ ପ୍ରଧାନ ଶିକ୍ଷକ ରୂପେ ଯୋଗ ଦେଲେ । ଅବଶ୍ୟ ଗୋପବନ୍ଧୁଙ୍କର ମହାନ୍ ଆଦର୍ଶ ତଥା ଉନ୍ନତ ପରିକଳ୍ପନାର ପରିପ୍ରକାଶ ଲାଗି ସାମାନ୍ୟ ଏକ ଉଚ୍ଚ ବିଦ୍ୟାଳୟ ଯଥେଷ୍ଟ ନଥିଲା ।

ସେଥିଯୋଗୁଁ ସେ ବି. ଏଲ. ପାଶ କରିବା ସମ୍ବାଦ ପାଇବା ପରେ ସେଠାରୁ ବିଦାୟ ନେଇ କଟକରେ ସର୍ବଶ୍ରୀ ମଧୁସୂଦନ ଦାସ, ଗୋକୁଳାନନ୍ଦ ଚୌଧୁରୀ ଓ ବୈକୁଣ୍ଠ ଦତ୍ତଙ୍କ ଅଧୀନରେ ରହି ଓକିଲାତି ଆରମ୍ଭ କଲେ । କିନ୍ତୁ ଏହି କ୍ଷେତ୍ରରେ ମଧ୍ୟ ମାନବସେବା କରିବା ଲାଗି କ୍ଷେତ୍ର ପ୍ରଶସ୍ତ ନ ଥିଲା । ଅବଶ୍ୟ ସେତେବେଳେ ୧୯୦୭ରେ ବ୍ରାହ୍ମଣୀ, ବୈତରଣୀ ଓ ଖରସୁଆଁ ନଦୀରେ ପ୍ରବଳ ବନ୍ୟା ହେବା ଫଳରେ କଟକ ଜିଲ୍ଲାର ଯାଜପୁର ଓ କେନ୍ଦ୍ରାପଡ଼ା ସବ୍‌ଡ଼ିଭିଜନର ଲୋକେ ଅତି ଦୟନୀୟ ଭାବେ ନିରାଶ୍ରିତ ଓ ନିଃସହାୟ ହୋଇ ପଡ଼ିଥିଲେ ଏବଂ ଗୋପବନ୍ଧୁ ସେମାନଙ୍କୁ ସେବା ଓ ସାହାଯ୍ୟ କରି ନିଜର ସେବା ମନୋବୃତ୍ତିକୁ ଚରିତାର୍ଥ କରିଥିଲେ ।

ଏହା ପରେ ଗୋପବନ୍ଧୁ ତାଙ୍କର ଉପଦେଷ୍ଟା ସ୍ୱର୍ଗତ ମୁକ୍ତାର ରାମଚନ୍ଦ୍ର ଦାସଙ୍କ ଘରେ ରହି ପ୍ରାୟ ଦେଢ଼ ବର୍ଷ ପାଇଁ ପୁରୀରେ ଓକିଲାତି କରିଥିଲେ । ସେତେବେଳେ ପୁରୀରେ ସେ ଜଣେ ମାତ୍ର ବିଶିଷ୍ଟ ଓକିଲ ଥିଲେ । ଇଚ୍ଛା କରିଥିଲେ ସେ ଅଜସ୍ର ଅର୍ଥୋପାର୍ଜନ କରି ପାରିଥାନ୍ତେ । କିନ୍ତୁ ତାହା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ନ ଥିଲା । ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ଜନସେବା । ଏପରିକି ମକଦ୍ଦମାମାନଙ୍କ ପାଇଁ କାଗଜପତ୍ର ଲେଖିବା ପରେ ମଧ୍ୟ ଯେ ମକ୍କେଲ ପ୍ରକୃତ ଅପରାଧୀ ବୋଲି ଜାଣି ପାରିଲେ ଆଉ ତା ପକ୍ଷରୁ ଓକିଲାତି କରୁ ନ ଥିଲେ ।

ପୁରୀରେ ଓକିଲାତି କରୁଥିବାବେଳେ ଗୋପବନ୍ଧୁ କୁଷ୍ଠାଶ୍ରମର ସେକ୍ରେଟାରୀ ଭାବେ ଚାନ୍ଦା ସଂଗ୍ରହ କରି ଏବଂ ନିଜେ ଆର୍ଥିକ ସାହାଯ୍ୟ ଦେଇ ଉକ୍ତ ଆଶ୍ରମକୁ ଚିରସ୍ଥାୟୀ କରିବା ଦିଗରେ ଉଦ୍ୟମ କରିଥିଲେ । ସେ ପୁରୀ ମ୍ୟୁନିସିପାଲ କାଉନ୍‌ସିଲର ସଭ୍ୟ ମନୋନୀତ ହୋଇଥିଲେ ଏବଂ ସାକ୍ଷୀଗୋପାଳ ମନ୍ଦିରର ଟ୍ରଷ୍ଟି ପଦରେ ମଧ୍ୟ ନିଯୁକ୍ତ ହୋଇଥିଲେ । ଏସବୁ କର୍ମକ୍ଷେତ୍ରରେ କୃତିତ୍ୱ ଅର୍ଜନ କରିବା ସଙ୍ଗେ ସଙ୍ଗେ ଗୋପବନ୍ଧୁ ତାଙ୍କ ଛାତ୍ର ଜୀବନକୁ ମଧ୍ୟ ଭୁଲି ନ ଥିଲେ । ସେ ବ୍ରାହ୍ମଣ ସମିତି ଛାତ୍ରାବାସରେ ସଭା ଡକାଇ ଦେଶର ସମସ୍ୟା ବିଷୟରେ ଆଲୋଚନା କରୁଥିଲେ । ଏପରିକି ଗୋଟିଏ ବ୍ୟାୟାମଶାଳା ପ୍ରତିଷ୍ଠା କରି ସେ ଯୁବସମାଜର ସ୍ୱାସ୍ଥ୍ୟ-ସଙ୍ଗଠନ ଦିଗରେ ମଧ୍ୟ ପ୍ରୟାସ କରିଥିଲେ ।

ସେତେବେଳେ ମୟୂରଭଞ୍ଜରେ ସରକାରୀ ଓକିଲଙ୍କ ସ୍ଥାନ ଖାଲି ପଡ଼ିବାରୁ ଏବଂ ମାତୃଭାଷା-ପ୍ରେମୀ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ ଜଣେ ଓଡ଼ିଆ ଓକିଲ ଖୋଜୁଥିବାରୁ ତଦାନୀନ୍ତନ ଓଡ଼ିଶାର ବିଶିଷ୍ଟ ଆଇନଜ୍ଞ ଶ୍ରୀଯୁକ୍ତ ମଧୁସୂଦନ ଦାସଙ୍କ ପରାମର୍ଶ କ୍ରମେ ଗୋପବନ୍ଧୁ ୧୯୧୦ ଜାନୁୟାରୀ ମାସରେ ମୟୂରଭଞ୍ଜରେ ସରକାରୀ ଓକିଲ ଭାବେ ନିଯୁକ୍ତ ହେଲେ । ତାଙ୍କ ମୟୂରଭଞ୍ଜ ଅବସ୍ଥାନ କାଳରେ ବିଶେଷତ୍ୱ ଏହି ଯେ, ସେ ସେଠାରେ କେବଳ ସରକାରୀ ଓକିଲ ଭାବେ କାର୍ଯ୍ୟ ନିର୍ବାହ କରି ନ ଥିଲେ, ମହାରାଜାଙ୍କର ଜଣେ ବିଶ୍ୱସ୍ତ ବନ୍ଧୁ ଏବଂ ଉପଦେଷ୍ଟା ମଧ୍ୟ ହୋଇଥିଲେ । ତେଣୁ ମୟୂରଭଞ୍ଜ ମହାରାଜ ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ ତାଙ୍କୁ ରାଜ୍ୟ ବ୍ୟବସ୍ଥାପକ ସଭା ଏବଂ କାଉନ୍‌ସିଲର ସଭ୍ୟ ନିଯୁକ୍ତ କରିଥିଲେ । ବାସ୍ତବରେ ଗୋପବନ୍ଧୁ ମୟୂରଭଞ୍ଜର ସରକାରୀ କର୍ମ-କ୍ଷେତ୍ରକୁ ପବିତ୍ର ଓ ପରିମାର୍ଜିତ କରିବାରେ ସାହାଯ୍ୟ କରିଥିଲେ ଏବଂ ତାଙ୍କର ଉପଦେଶକ୍ରମେ ରାଜାସାହେବ ରାଜ୍ୟରେ ନାନା ରାଜନୈତିକ ସଂସ୍କାର ପ୍ରବର୍ତ୍ତନ କରି ମୟୂରଭଞ୍ଜକୁ ଏକ ଆଦର୍ଶ ରାଜ୍ୟରେ ପରିଣତ କରିବାକୁ ସକ୍ଷମ ହୋଇ ପାରିଥିଲେ ।

ଏହା ବ୍ୟତୀତ ପଣ୍ଡିତ ଗୋପବନ୍ଧୁ ସ୍ଥାନୀୟ ସାଧାରଣ ଜୀବନକୁ ମଧ୍ୟ ବିଶେଷ ଭାବେ ପ୍ରଭାବିତ କରିଥିଲେ । ସେ ସେଠାରେ ଏକ ଯୁବ ଉତ୍କଳ ସମିତି ଗଠନ କରି ଯୁବକ ସମାଜର ମନରେ ଜାତୀୟ ମମତା ଓ ସେବା ମନୋଭାବ ଜନ୍ମାଇଥିଲେ । କିନ୍ତୁ ଫେବୃୟାରୀ ୨୨, ୧୯୧୨ରେ ଶ୍ରୀ ରାମଚନ୍ଦ୍ର ଭଂଜଦେଓଙ୍କ ପରଲୋକ ପରେ ତାଙ୍କ ପୁତ୍ର ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ନାବାଳକ ଥିବା କାରଣରୁ ଶାସନ କ୍ଷମତା ୟୁରୋପୀୟମାନଙ୍କ ହାତକୁ ଚାଲିଗଲା । ସରକାରୀ ଓକିଲ ଚାକିରୀ ଉଠାଇ ଦିଆଯିବାରୁ ୟୁରୋପୀୟମାନଙ୍କର ଅନ୍ୟାୟ, ଅମିତ ଓ ଅନାଚାରରେ ମର୍ମାହତ ହୋଇ ଗୋପବନ୍ଧୁ ସେହି ବର୍ଷ ମୟୂରଭଞ୍ଜ ଛାଡ଼ି କଟକ ଚାଲି ଆସିଥିଲେ ।

## ସତ୍ୟବାଦୀ ବନବିଦ୍ୟାଳୟ ପ୍ରତିଷ୍ଠା

ସତ୍ୟ ଓ ନ୍ୟାୟପରାୟଣ ଆଇନଜ୍ଞ ଗୋପବନ୍ଧୁ ଓକିଲାତି କରି ଆତ୍ମପ୍ରସାଦ ଲାଭ କରି ନ ଥିଲେ । ସେ ଜନତାର ସେବାରେ ଯେଉଁଳି

ବଦ୍ଧୋର ହୋଇ ପଡ଼ୁଥିଲେ, ଦେଶର ଯୁବ ସମାଜକୁ ଆଦର୍ଶ ମାର୍ଗରେ ଶିକ୍ଷିତ କରିବା ପାଇଁ ସେଇଭଳି ତତ୍ପର ଥିଲେ । ତେଣୁ ସେ ନୀଳଗିରିରେ ଶିକ୍ଷକତା କରିବା ପାଇଁ ଆଗ୍ରହର ହୋଇ ପଡ଼ିଥିଲେ ଏବଂ ପୁରୀରେ ଉତ୍କଳିତ କରୁଥିଲାବେଳେ ବାରିପଦା ଯାହାର ଅବ୍ୟବହିତ ପୂର୍ବରୁ ୧୯୦୯ ଅଗଷ୍ଟ ୧୨ ତାରିଖରେ ମାତ୍ର ଊଣେଇଶ ଜଣ ଛାତ୍ରଙ୍କୁ ନେଇ ସତ୍ୟବାଦୀ ମାଧ୍ୟମିକ ସ୍କୁଲ ପ୍ରତିଷ୍ଠା କରିଥିଲେ । ୧୯୧୧ରୁ ଆରମ୍ଭ କରି ୧୯୧୪ ମଧ୍ୟରେ ବର୍ଷାନୁକ୍ରମରେ ଏହି ଅନୁଷ୍ଠାନରେ ଶିକ୍ଷକ ରୂପେ ଯୋଗଦେଲେ ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ପଣ୍ଡିତ କୃପାସିନ୍ଧୁ ମିଶ୍ର । ଏ ସମସ୍ତ ଜାତୀୟ-ବାଦୀ ଶିକ୍ଷାବିଦ୍‌ଙ୍କର ଆନ୍ତରିକତା ଓ ସହଯୋଗିତା ଫଳରେ ବକୁଳ ବୁଣିଅନା କୁଞ୍ଜର ଶିକ୍ଷାନୁଷ୍ଠାନଟି ପ୍ରଗତି ପଥରେ ଅଗ୍ରଗତି କଲା ।

ଏହି ସ୍କୁଲର ସ୍ଥାନ ନିରୂପଣ କରିବା ଲାଗି ସମଗ୍ର ଓଡ଼ିଶାକୁ ପ୍ରତିନିଧିଦଳ ପଠାଯାଇଥିଲା; ମାତ୍ର ଶେଷରେ ଉତ୍କଳଗୌରବ ମଧୁସୂଦନ ରାଓଙ୍କ ପରାମର୍ଶକ୍ରମେ ସାକ୍ଷୀଗୋପାଳର ପବିତ୍ର ପୀଠ ନିରୂପିତ ହୋଇ-ଥିଲା । ସାକ୍ଷୀଗୋପାଳ ମନ୍ଦିରର ଏକ ଘରେ ପ୍ରଥମେ ଏହା କାର୍ଯ୍ୟକାରୀ ହୋଇଥିଲା ଏବଂ ପରେ ସେଠାରେ ଏକ ସ୍ୱତନ୍ତ୍ର ଛପର ଘର ତୋଳା ଯାଇଥିଲା । କିନ୍ତୁ ସ୍କୁଲର ନୂତନ ଆଦର୍ଶ ଓ ସଂସ୍କାରମୂଳକ କାର୍ଯ୍ୟ-କ୍ରମରେ ଉତ୍ତ୍ୟକ୍ତ ହୋଇ କେତେକ ଦୁର୍ବୃତ୍ତ ୧୯୧୨ ମସିହା ମାର୍ଚ୍ଚ ମାସ ୨୨ ତାରିଖରେ ସେଥିରେ ନିଆଁ ଲଗାଇ ଦେବାରୁ କିଛି ଦିନ ଲାଗି ମୁକ୍ତ ଆକାଶ ତଳେ ବକୁଳ ବୁଣିଅନା କୁଞ୍ଜ ମୂଳରେ ସ୍କୁଲ କାର୍ଯ୍ୟ ଚାଲିଥିଲା । * ଅବଶ୍ୟ ଏ ଘଟଣାର ବର୍ଷକ ମଧ୍ୟରେ 'ଗୁପ୍ତ-ବୃନ୍ଦାବନ'ରେ ଏକ ନୂତନ କୋଠା ଗୃହର ଭିତ୍ତି ସ୍ଥାପିତ ହୋଇଥିଲା ଏବଂ ୧୯୧୪ ବେଳକୁ ସ୍କୁଲ ଗୃହ ନିର୍ମାଣ କାର୍ଯ୍ୟ ଶେଷ ହୋଇ ଯାଇଥିଲା । ତାହା ପରେ ସ୍କୁଲର ମଞ୍ଜୁରୀ ଓ ବିଶ୍ୱବିଦ୍ୟାଳୟ ଅନ୍ତର୍ଗତକରଣ ପ୍ରଶ୍ନ ଜରୁରୀ ହୋଇ

---

* ସ୍କୁଲରେ ଜାତିବର୍ଣ୍ଣଭେଦ ନିର୍ବିଶେଷରେ ସହଶିକ୍ଷା ପ୍ରଚଳନ ଏବଂ ଛାତ୍ରାବାସରେ ମିଳିତ ଭୋଜନ ବ୍ୟବସ୍ଥା ଥିବାରୁ ରକ୍ଷଣଶୀଳ ବ୍ରାହ୍ମଣ-ମାନେ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେ ।

ଦେଉଥିଲା; କାରଣ ସେହି ସ୍କୁଲରେ ଛାତ୍ରମାନଙ୍କୁ ବିଦ୍ରୋହମୂଳକ ଓ ବିପ୍ଳବାତ୍ମକ ଶିକ୍ଷା ଦିଆଯାଉଛି ବୋଲି ସରକାରଙ୍କର ଧାରଣା ଜନ୍ମିବାରୁ ସେ ବିରୋଧ ମନୋଭାବ ପୋଷଣ କରିଥିଲେ । କିନ୍ତୁ ସୌଭାଗ୍ୟ ବଶତଃ ଶ୍ରୀ ରମାବଲ୍ଲଭ ମିଶ୍ର ଜିଲ୍ଲା କଲେକ୍ଟର ହୋଇ ଆସିବା ପରେ ତାଙ୍କ ଉଦ୍ୟମରେ ସ୍କୁଲଟି ୧୯୧୪ ନଭେମ୍ବର ମାସରେ କଲିକତା ବିଶ୍ୱ-ବିଦ୍ୟାଳୟ ସହିତ ସଂଯୁକ୍ତ ହୋଇଥିଲା ଏବଂ ତା'ର ତିନି ବର୍ଷ ପରେ ୧୯୧୭ରେ ପାଟନା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବାରୁ ଓଡ଼ିଶାର ଅନ୍ୟାନ୍ୟ ସ୍କୁଲ ସହିତ ଏହି ସ୍କୁଲଟି ମଧ୍ୟ ତା'ର ଅଧୀନକୁ ଚାଲି ଯାଇଥିଲା ।

## ରାଜନୀତିରେ ଅଂଶ ଗ୍ରହଣ

ଉତ୍କଳ ଗୌରବ ମଧୁସୂଦନଙ୍କର ପ୍ରରୋଚନାରେ ପଣ୍ଡିତ ଗୋପବନ୍ଧୁ ନିର୍ବାଚନରେ ପ୍ରାର୍ଥୀ ହୋଇ ୧୯୧୭ରେ ବିହାର ଓ ଓଡ଼ିଶା ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହେଲେ । ବ୍ୟବସ୍ଥାପକ ହିସାବରେ ତାଙ୍କର ବିଦ୍ୟାଳୟ ସମ୍ପାଦନାରେ ପ୍ରତିବନ୍ଧକ ସୃଷ୍ଟି ହେବାର ଆଶଙ୍କା କରି ସେ ଓକିଲାତି କରିବା ଛାଡ଼ି ଦେଇଥିଲେ । ଗୋପବନ୍ଧୁ ୧୯୧୭ରୁ ୧୯୨୧ ପର୍ଯ୍ୟନ୍ତ ବିହାର-ଓଡ଼ିଶା ବିଧାନ ସଭାର ସଦସ୍ୟ ଥିଲେ । ବିଧାନ ସଭା ବୈଠକରେ ଯୋଗଦେବା ପୂର୍ବରୁ ସେ ସେଥିପାଇଁ ପୂର୍ଣ୍ଣ ପ୍ରସ୍ତୁତ ହେଉଥିଲେ । ଏପରିକି ପାଟନା ଯିବା ରାସ୍ତାରେ କଲିକତା-ଠାରେ ବିଶେଷଜ୍ଞମାନଙ୍କ ସହିତ ଆଲୋଚନା କରୁଥିଲେ ଏବଂ ଜାତୀୟ ପାଠାଗାରରେ ଗ୍ରନ୍ଥାବଲୋକନ କରି ଦିନ ଦିନ କଟାଇ ଦେଉଥିଲେ ।

ବ୍ୟବସ୍ଥାପକ ହିସାବରେ ଗୋପବନ୍ଧୁ ମୁଖ୍ୟତଃ ଚାରୋଟି ପ୍ରଶ୍ନର ସମାଧାନ ପାଇଁ ଲଢ଼ିଥିଲେ—(୧) ବିଚ୍ଛିନ୍ନାଞ୍ଚଳର ସମ୍ମିଶ୍ରଣ; (୨) ବନ୍ୟା ଦୁର୍ଭିକ୍ଷର ନିରାକରଣ; (୩) ବିନା ଶୁଳ୍କରେ ଲବଣ ଉତ୍ପାଦନ ଓ (୪) ସର୍ବସାଧାରଣଙ୍କ ଭିତରେ ଶିକ୍ଷା ସମ୍ପ୍ରସାରଣ । ଏ ସମସ୍ତ କ୍ଷେତ୍ରରେ ଗୋପବନ୍ଧୁ କୃତକାର୍ଯ୍ୟ ହୋଇଥିଲେ ବୋଲି କୁହାଯାଇ ପାରେ । ସେ ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ବିହାରର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି

ଓଡ଼ିଆମାନଙ୍କ ମନରେ ଜାତୀୟ ମମତା ତଥା ଉତ୍କଳୀୟ ପ୍ରୀତି ଜାଗ୍ରତ କରାଇଥିଲେ । ସୁତରାଂ ୧୯୩୬ରେ ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶ ଗଠନ ହେବା ମୂଳରେ ଗୋପବନ୍ଧୁଙ୍କର ଉଦ୍ୟମ ନିହିତ ଥିବା ଅବିସମ୍ବାଦିତ । ବନ୍ୟା ଦୁର୍ଭିକ୍ଷ ନିବାରଣ କ୍ଷେତ୍ରରେ ତାଙ୍କ ଉଦ୍ୟମରେ ୧୯୨୨ରେ ଯେଉଁ ବନ୍ୟା ତଦନ୍ତ କମିଟି ବସିଥିଲା, ତା'ର କ୍ରମପର୍ଯ୍ୟାୟରେ ହିଁ ଭବିଷ୍ୟତରେ ହୀରାକୁଦ ବନ୍ଧ ନିର୍ମାଣ ସମ୍ଭବ ହୋଇଛି । ବିନା ଶୁଳ୍କରେ ଲବଣ ଉତ୍ପାଦନ ପାଇଁ ସେ ଯାହା ଲଢ଼ିଥିଲେ, ୧୯୩୧ରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ସ୍ୱାକ୍ଷରିତ ହେବା ଦ୍ୱାରା ତାହା ଫଳବତୀ ହୋଇଥିଲା ଏବଂ ଓଡ଼ିଶାର ଉପକୂଳ ଅଞ୍ଚଳରେ ବାସ କରୁଥିବା ଲୋକେ ବିନା ଶୁଳ୍କରେ ଲବଣ ଉତ୍ପାଦନ କରିବାପାଇଁ ସକ୍ଷମ ହୋଇଥିଲେ । ତାଙ୍କ ଉଦ୍ୟମରେ ରେଭେନ୍ସା କଲେଜରେ ଇଂରାଜୀରେ ଏମ୍. ଏ. ଓ ବି. ଏଲ୍. ଶ୍ରେଣୀ ଖୋଲା ଯାଇଥିଲା ଏବଂ କଟକରେ ଏକ ଇଞ୍ଜିନିୟରିଂ ସ୍କୁଲ ଓ ପୁରୀରେ ଏକ ସଂସ୍କୃତ କଲେଜ ପ୍ରତିଷ୍ଠିତ ହୋଇଥିଲା । ଏପରିକି, ଓଡ଼ିଶାରୁ ପ୍ରତିବର୍ଷ ଜଣକୁ ଆଇ. ସି. ଏସ୍. ପରୀକ୍ଷାରେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ଇଂଲଣ୍ଡ ପଠାଯାଉ ବୋଲି ମଧ୍ୟ ସେ ଦାବୀ କରିଥିଲେ । ଏହା ବ୍ୟତୀତ, ସେ ବହୁ ମାଧ୍ୟମିକ ଭର୍ଣ୍ଣାକୁଲର ସ୍କୁଲକୁ ମଧ୍ୟ-ଇଂରାଜୀ ସ୍କୁଲରେ ପରିଣତ କରାଇଥିଲେ ଏବଂ ପୁରୀ ସହରରେ କଳ ଜଳ ଯୋଗାଣ ପାଇଁ ଲଢ଼ିଥିଲେ ।

୧୯୦୩ରୁ ୧୯୨୦ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀ ଥିଲା ଗୋପବନ୍ଧୁଙ୍କ ଜନସେବାର ପ୍ରକୃଷ୍ଟ ମାଧ୍ୟମ । ତାହା ଥିଲା ଜାତୀୟ ଜୀବନର ମୂଳ ଉତ୍ସ । ଓଡ଼ିଆ ଭାଷାର ଅଭିବୃଦ୍ଧି ସାଧନ ଓ ବିଚ୍ଛିନ୍ନାଞ୍ଚଳର ସମ୍ମିଶ୍ରଣ ଥିଲା ତା'ର ଅନ୍ୟତମ ଆଭିମୁଖ୍ୟ । କିନ୍ତୁ ୧୯୨୦ରେ ଗୋପବନ୍ଧୁ ଭାରତୀୟ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରେ ଯୋଗଦାନ କରି ଫେରିବା ପରେ ଏହି ସମ୍ମିଳନୀର କର୍ମକ୍ଷେତ୍ର ବିସ୍ତାରିତ ହୋଇ ଯାଇଥିଲା । ନାଗପୁର କଂଗ୍ରେସ ଅଧିବେଶନରେ ଉତ୍କଳ ସମ୍ମିଳନୀର ପ୍ରତିନିଧି ଗୋପବନ୍ଧୁ ଭାଷା ଭିତ୍ତିରେ ପ୍ରଦେଶ ଗଠନ ନୀତି ଅନୁସରଣ କରିବା ଲାଗି ମହାତ୍ମା ଗାନ୍ଧୀଙ୍କୁ ପ୍ରବର୍ତ୍ତାଇ ଥିଲେ ଏବଂ ଜାତୀୟ

କଂଗ୍ରେସର ଲକ୍ଷ୍ୟ ଅସହଯୋଗ ଆନ୍ଦୋଳନକୁ ସ୍ୱାଗତ ଜଣାଇଥିଲେ । ୧୯୨୦ ଡିସେମ୍ବର ୩୦ ତାରିଖରେ ସ୍ୱର୍ଗତ ଜଗବନ୍ଧୁ ସିଂହଙ୍କ ସଭାପତିତ୍ୱରେ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଯେଉଁ ଅଧିବେଶନ ବସିଥିଲା, ସେଥିରେ ଗୋପବନ୍ଧୁ ପ୍ରସ୍ତାବ ଆଗତ କରିଥିଲେ ଯେ ଉତ୍କଳ ସମ୍ମିଳନୀର ଆଭିମୁଖ୍ୟ ସାଙ୍ଗକୁ ଭାରତୀୟ ଜାତୀୟ କଂଗ୍ରେସର ଲକ୍ଷ୍ୟ ଓ ଆଭିମୁଖ୍ୟକୁ ମଧ୍ୟ ଗ୍ରହଣ କରାଯିବା ଉଚିତ । ଉତ୍କଳ ସମ୍ମିଳନୀର ସେହି ଅଧିବେଶନରେ ଜାତୀୟ କଂଗ୍ରେସର ଭାଷା ଭିତ୍ତିରେ ପ୍ରଦେଶ ଗଠନ ପ୍ରସ୍ତାବ ମଧ୍ୟ ଗୃହୀତ ହୋଇଥିଲା ।

ଏହାପରେ ଗୋପବନ୍ଧୁ ଅସହଯୋଗକୁ କାର୍ଯ୍ୟରେ ପରିଣତ କରିବାକୁ ଯାଇ ବିହାର-ଓଡ଼ିଶା ବିଧାନସଭାରୁ ଇସ୍ତଫା ଦେଇ ପ୍ରତ୍ୟେକ ଜିଲ୍ଲାରେ କଂଗ୍ରେସ କମିଟି ଗଠନ କରିବା ଦିଗରେ ମନପ୍ରାଣ ଢାଳି ଦେଇଥିଲେ । ସେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ଓଜସ୍ୱିନୀ ବକ୍ତୃତା ବଳରେ ଯୁବପ୍ରାଣରେ ଜାତି-ପ୍ରେମ-ବହ୍ନି ପ୍ରଜ୍ୱଳିତ କରିବା ସଙ୍ଗେ ସଙ୍ଗେ ତାଙ୍କର ସଦ୍ୟ ପ୍ରତିଷ୍ଠିତ ସାପ୍ତାହିକ ସମାଜ ମାଧ୍ୟମରେ ଜାତୀୟ ଚିନ୍ତାଧାରକୁ ଗଭୀର ଭାବେ ପ୍ରଭାବିତ କରିଥିଲେ । ତାହା ଫଳରେ ଗ୍ରାମେ ଗ୍ରାମେ କଂଗ୍ରେସ କମିଟି ମୁଣ୍ଡ ଟେକିଲା । ଶହ ଶହ ସଂଖ୍ୟାରେ ଛାତ୍ରସମାଜ ସ୍କୁଲ କଲେଜ ଛାଡ଼ି ସେହି ମହାସୋତରେ ଝାସ ଦେଲେ । ସେମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ ଡକ୍ଟର ମହତାବ, ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ ପ୍ରମୁଖ ଅନ୍ୟତମ । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଡେପୁଟି କଲେକ୍ଟର ଚାକିରୀରୁ ଇସ୍ତଫା ଦେଇ ଚାଲି ଆସିଲେ ସେହି ମୁକ୍ତି-ଚରିଳ ଲକ୍ଷରେ । ଦେଶର ବିଭିନ୍ନ ସ୍ଥାନରେ ଜାତୀୟ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠା କରାଗଲା । ଜଗତସିଂହପୁରରେ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପଡ଼ିଆରୀଙ୍କ ଉଦ୍ୟମରେ ସ୍ଥାପିତ ହେଲା ଆଦର୍ଶ 'ଅଲକାଶ୍ରମ' । ଗୋପବନ୍ଧୁ ଚୌଧୁରୀ ପ୍ରତିଷ୍ଠା କଲେ ଉତ୍କଳ ସ୍ୱରାଜ ଶିକ୍ଷା ପରିଷଦ । ପଣ୍ଡିତ ଗୋପବନ୍ଧୁ ମଧ୍ୟ ସତ୍ୟବାଦୀ ସ୍କୁଲକୁ ଏକ ଜାତୀୟ ଶିକ୍ଷାନୁଷ୍ଠାନରେ ପରିଣତ କଲେ । ଏ ସବୁର ପରିଣତି ହେଲା ସହସ୍ର ସଂଖ୍ୟାରେ ଯୁବସମାଜର କାରାକକ୍ଷ ମଣ୍ଡନ ।

ଓଡ଼ିଶାରେ ଜାତୀୟ କଂଗ୍ରେସର ଲକ୍ଷ ଚରିତାର୍ଥ କରିବାକୁ ଯାଇ ଗୋପବନ୍ଧୁ ଏକ ଅଭୂତପୂର୍ବ ଜନଜାଗରଣ ସୃଷ୍ଟି କରିବା ପାଇଁ ସମର୍ଥ ହୋଇଥିଲେ ମଧ୍ୟ ସେ ଗାନ୍ଧିଜୀଙ୍କ ପର୍ଯ୍ୟଟନର ଆବଶ୍ୟକତା ଅନ୍ତରେ ଅନ୍ତରେ ଉପଲବ୍ଧି କରି ତାଙ୍କୁ ଓଡ଼ିଶାକୁ ନିମନ୍ତ୍ରଣ କଲେ ଏବଂ ମାର୍ଚ୍ଚ ୨୩, ୧୯୨୧ରେ ମହାତ୍ମାଜୀ କଟକରେ ପଦାର୍ପଣ କଲେ । ବସନ୍ତକାଳୀନ ସନ୍ଧ୍ୟାରେ କାଠଯୋଡ଼ି ନଦୀକୂଳରେ ଯେଉଁ ମୃଦୁ ମନ୍ଦ ସମୀରଣ ବହୁଥିଲା, ତାହା ସହିତ ମିଶିଗଲା ଗାନ୍ଧୀ-ଗୋପବନ୍ଧୁଙ୍କର ଉଗ୍ର ଜାତୀୟ ଭାବୋଦ୍ଦୀପକ ଉଦ୍‌ବୋଧନ ବାଣୀ । କାଠଯୋଡ଼ି କୂଳରେ ସଭା ଶେଷ କରି ବାପୁଜୀ ଗଲେ ସାକ୍ଷୀଗୋପାଳ, ପୁରୀ ଓ ବ୍ରହ୍ମପୁର । ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷାପ୍ରଣାଳୀରେ ଅତ୍ୟନ୍ତ ପ୍ରୀତ ହେବା ସଙ୍ଗେ ସଙ୍ଗେ ଗୋପବନ୍ଧୁଙ୍କ ନେତୃତ୍ୱରେ ଓଡ଼ିଶାରେ ଜାତୀୟ ଚିନ୍ତାଧାରର ଉଲ୍ଲେଖଯୋଗ୍ୟ ପ୍ରସାର ସାଧିତ ହୋଇପାରିଥିବାରୁ ସେ ପରମ ସନ୍ତୋଷ ଲାଭ କରିଥିଲେ । ଗାନ୍ଧିଜୀ ଓଡ଼ିଶାବାସୀଙ୍କର ଦାରିଦ୍ର୍ୟ ତଥା ଅଭାବଗ୍ରସ୍ତ ଜୀବନ ପ୍ରତି ସଚେତନ ହୋଇଥିଲେ ଏବଂ ସ୍ପଷ୍ଟ ହୃଦୟଙ୍ଗମ କରିଥିଲେ ଯେ, ଗୋପବନ୍ଧୁ "ବିଷାଦ ଲେତକ ପୂରିତ ଉତ୍କଳର ଜଣେ ଶ୍ରେଷ୍ଠ ସନ୍ତାନ ।"

## ସମାଜର କଲ୍ୟାଣ ପାଇଁ 'ସମାଜ' ପ୍ରତିଷ୍ଠା

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିର ସାୟଂକାଳ ସୁଦ୍ଧା "ବିଷାଦ ଲେତକ ପୂରିତ ଉତ୍କଳର ଜନସମାଜର ଅଭାବ, ଅସୁବିଧା ଓ ଅସନ୍ତୋଷର ପରିପ୍ରକାଶ ଲାଗି ଓଡ଼ିଶାରେ ଖଣ୍ଡେ ଉପଯୁକ୍ତ ପତ୍ରିକା ନ ଥିଲା । ଶ୍ରୀଯୁକ୍ତ ଗୌରିଶଙ୍କର ରାୟଙ୍କର ସମ୍ପାଦନାରେ ପ୍ରକାଶ ପାଉଥିବା 'ଉତ୍କଳ ଦୀପିକା' ତତ୍‌କାଳୀନ ଯୁବସମାଜର ବିପ୍ଳବ ମୂଳକ ଚିନ୍ତାଧାରାକୁ ପସନ୍ଦ କରୁ ନ ଥିଲା । ଶ୍ରୀଯୁକ୍ତ ଶଶିଭୂଷଣ ରଥଙ୍କୁ ପ୍ରବର୍ତ୍ତାଇବା ଫଳରେ ୧୯୧୩ରୁ ବ୍ରହ୍ମପୁରରୁ ଯେଉଁ 'ଆଶା' ପତ୍ରିକା ପ୍ରକାଶ ପାଉଥିଲା ୧୯୧୯ ପର୍ଯ୍ୟନ୍ତ ଗୋପବନ୍ଧୁ ସେହି ପତ୍ରିକାର ସମ୍ପାଦନା କରିଥିଲେ ଏବଂ ଏହା ବ୍ୟତୀତ ସେ ବ୍ରହ୍ମପୁର ଆଶା ପ୍ରେସରୁ 'ସତ୍ୟବାଦୀ' ନାମକ ଏକ ସାହିତ୍ୟ ମୂଳକ ମାସିକ ପତ୍ରିକା ମଧ୍ୟ ପ୍ରକାଶ

କରିଥିଲେ । ତଥାପି ଯୁଗର ଆବଶ୍ୟକତା ତୁଳନାରେ ଏହା ଯଥେଷ୍ଟ ନ ଥିଲା । ତେଣୁ ସେ ପୁରୀ ଏମାରମଠ ମହନ୍ତଙ୍କ ଠାରୁ ଗୋଟିଏ ହସ୍ତଚାଳିତ ମୁଦ୍ରାଯନ୍ତ୍ର କ୍ରୟ କରି ତାହା ସତ୍ୟବାଦୀଠାରେ ପ୍ରତିଷ୍ଠା କଲେ ଏବଂ ପୁରୀର ବିଖ୍ୟାତ ସାମ୍ବାଦିକ ଶ୍ରୀଯୁକ୍ତ ସତ୍ୟବାଦୀ ତ୍ରିପାଠୀ ସେହି ଛାପାଖାନାର ଦାୟିତ୍ୱରେ ରହିଲେ । ଶେଷରେ ୧୯୧୯ ଅକ୍ଟୋବର ୪ ତାରିଖ ଶନିବାର ଦଶହରା ଦିନ ସପ୍ତାହିକ 'ସମାଜ' ପ୍ରକାଶ ପାଇଲା ତଦାନୀନ୍ତନ ସାମାଜିକ ଜୀବନର ଆଶା, ନିରାଶା, ଅଭାବ, ଅସୁବିଧା ସମ୍ବାଦ ଓ ସନ୍ଦେଶ ବହନ କରି ।

ଏହାପରେ ୧୯୨୪ରେ 'ସମାଜ' ଅଫିସ ସାକ୍ଷୀଗୋପାଳରୁ ପୁରୀକୁ ଉଠାଇ ନିଆ ଯାଇଥିଲା ଏବଂ ୧୯୨୭ରେ ପ୍ରସାରର ସୁବିଧା ଦୃଷ୍ଟିରୁ ତାହା କଟକକୁ ଅଣାଯାଇଥିଲା । ଉନ୍ନତି ପଥରେ ଅଗ୍ରସର ହୋଇ କ୍ରମେ 'ସମାଜ' ୧୯୩୦ ମସିହାରୁ ଦୈନିକ ପତ୍ରିକାରେ ପରିଣତ ହେଲା ଏବଂ ପରେ ୧୯୬୦ ବେଳକୁ କେତେଦିନ ପାଇଁ ପ୍ରତ୍ୟେହ ଦୁଇଟି ସଂସ୍କରଣ ମଧ୍ୟ ପ୍ରକାଶ ପାଇଲା ।

## ଅନ୍ତିମ ପର୍ଯ୍ୟାୟର ସେବା ଓ ତ୍ୟାଗ

ସତ୍ୟ, ନ୍ୟାୟ ଓ ଶାନ୍ତିର ଉପାସକ ଗୋପବନ୍ଧୁ ଜୀବନର ଶେଷ ସାତ ବର୍ଷ ଜନତା ଜନାର୍ଦ୍ଦନର ସେବାରେ ଆତ୍ମୋତ୍ସର୍ଗ କରି ନିଜର 'ଉତ୍କଳମଣି' ନାମକୁ ସାର୍ଥକ କରିବା ସଙ୍ଗେ ସଙ୍ଗେ ଜାତୀୟ ଇତିହାସ ପୃଷ୍ଠାରେ ଏକ ଅମର ଅଧ୍ୟାୟ ରଚନା କରିଛନ୍ତି । ଏକ ପକ୍ଷରେ ବନ୍ୟା, ଦୁର୍ଭିକ୍ଷ, ମଡ଼କ ଓ ଦୁର୍ବିପାକ ପ୍ରପୀଡ଼ିତ ଜନତାର ସେବା କରି ଓ ଅନ୍ୟ ପକ୍ଷରେ, ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ବିଜୟ ହାସଲ କରିବା ଉଦ୍ଦେଶ୍ୟରେ ଉତ୍କଳୀୟ ଜନତାକୁ ସ୍ୱାର୍ଥତ୍ୟାଗ ପୂର୍ବକ ଜାତୀୟ ଲକ୍ଷ୍ୟ ସାଧନ ପଥରେ ଆଗୁଆନ୍ ହେବାପାଇଁ ବଜ୍ରଗମ୍ଭୀର ଉଦ୍‌ବୋଧନ ବାଣୀ ଶୁଣାଇ କର୍ମବୀର, ଧର୍ମବୀର, ନ୍ୟାୟବୀର ଓ ତ୍ୟାଗବୀର ଗୋପବନ୍ଧୁ ଏକ ମହାଜାତୀୟ ଦାନର ଅଭୂତପୂର୍ବ ଉଦାହରଣ ଦେଇଛନ୍ତି ।

ପଣ୍ଡିତ ଗୋପବନ୍ଧୁ ମହାତ୍ମାଗାନ୍ଧିଙ୍କ ଦ୍ୱାରା ଆରବ୍ଧ ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ସହଯୋଗ କରି ଉତ୍କଳୀୟ ଜନତାଙ୍କୁ ସ୍ୱାଧୀନତା-ସଂଗ୍ରାମ ପଥରେ ପରିଚାଳିତ କରିବା କାରଣରୁ ତାଙ୍କ ଉପରେ ୧୪୪ ଧାରା ଜାରି କରାଯାଇଥିଲା ଏବଂ ସେ ତାହା ଅମାନ୍ୟ କରି * ଦେଶ ମାତୃକାର ସେବାରେ ଅଟଳ ରହିବାରୁ ତାଙ୍କୁ କାରାକକ୍ଷରେ ନିକ୍ଷେପ କରାଯାଇଥିଲା । ତଥାପି ବନ୍ଦୀଶାଳାର ପ୍ରସ୍ତର ପ୍ରାଚୀର ଓ ଲୌହଦଣ୍ଡ ମଧ୍ୟରେ ରହିବାକୁ ସେ ବିଧାତାଙ୍କର ଆଶୀର୍ବାଦ ରୂପେ ଗ୍ରହଣ କରିଥିଲେ ଏବଂ ସୁଦୂର ହଜାରିବାଗ୍ ଜେଲରୁ 'କାରାକବିତା' ଓ 'ବନ୍ଦୀର ଆତ୍ମକଥା' ମାଧ୍ୟମରେ ସ୍ୱାଧୀନତା ସଂଗ୍ରାମର ଶାନ୍ତି-ସେନାଙ୍କୁ ଅମର ଉଦ୍‌ବୋଧନ ବାଣୀ ଶୁଣାଇ ଯାଇଥିଲେ—

"ଥିଲେ ଯହିଁ ତହିଁ ଭାରତ ବକ୍ଷରେ,
ମଣିବି ମୁଁ ଅଛି ଆପଣା କକ୍ଷରେ,
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ,
ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟଧାମ ।
+ + +
କର୍ମଭୂମେ କିଏ ନେତା ଅବା ମିତ
ସରବେ ନିମିତ୍ତ ବିଧି ନିୟୋଜିତ ।
+ + +

*—୧୯୨୧ ମସିହା ସେପ୍‌ଟେମ୍ବର ୧୦ ତାରିଖରେ ଗୋପବନ୍ଧୁଙ୍କ ଉପରେ ୧୪୪ ଧାରା ଅନୁସାରେ 'ମୁଖବନ୍ଦ' ଆଇନ ଜାରି କରାଯାଇଥିଲେ ମଧ୍ୟ ସେ ସଭାକୁ ଲିଖିତ ବକ୍ତୃତା ପଠାଇ ୧୪୪ ଧାରାର ଉଦ୍ଦେଶ୍ୟ ପଣ୍ଡ କରି ଦେଇଥିଲେ । ସେତେବେଳେ ସେ 'ସମାଜ'ରେ ନିଜର ଗୋଟିଏ ବ୍ୟଙ୍ଗାତ୍ମକ କବିତା ପ୍ରକାଶ କରି ଲେଖିଥିଲେ—

"ପୁରୀ ଆଉ କଟକର ଜିଲ୍ଲା ମେଜେଷ୍ଟର
ଏକଶତ ଚୌରାଳିଶ ଦଫାରେ ଅର୍ଡ଼ର
ଜାରି କରି ମୋର ମୁଖ କରିଛନ୍ତି ବନ୍ଦ
ସେଥିପାଇଁ ନୁହଁ ମୁହିଁ ତିଳେ ନିରାନନ୍ଦ ।

ହୁକୁମ ନ ମାନି କାର୍ଯ୍ୟ କରିବାକୁ ଭାଇ
ମୋ ହୃଦେ ଶକତି ଦେଇଛନ୍ତି ବିଶ୍ୱସାଇଁ ।"
ସେ ଦଳରେ ମୁହିଁ ଅକିଞ୍ଚନ ଜଣେ
ମୋଡ଼ୁଥିଲି ନାବ-ମଙ୍ଗ ପ୍ରାଣପଣେ ।
ସ୍ୱରାଜ୍ୟ ବଛିଲା ଦଳ ହାତେ ପଡ଼ି
ମୋ ହାତେ ଲଗିଛି ଏବେ ହାତକଡ଼ି ।

\+ \+ \+

କିର କି ଭାବନା କାଣ୍ଡାରି ବନ୍ଧୁନେ
ଚଳିବ ସ୍ୱରାଜ୍ୟ-ବୋଇତ କେସନେ ?
ନ ଅଟକେ କର୍ମ ନେତାର ଅଭାବେ
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।
ନୀଳାଚଳ ନାଥ ପ୍ରଭୁ ଶ୍ରୀନିବାସ
ପୂରାଇବେ ଆଶା ରଖ ଏ ବିଶ୍ୱାସ ।"

ଦୀର୍ଘ ଦୁଇ ବର୍ଷର ବନ୍ଦୀ ଜୀବନର ଅବସାନ ପରେ ୧୯୨୮ ମସିହା ଜୁନ୍ ମାସରେ ଗୋପବନ୍ଧୁ କଟକରେ ପଦାର୍ପଣ କରିବା ସଙ୍ଗେ ସଙ୍ଗେ ବିଶିଷ୍ଟ ଦେଶପ୍ରେମୀ ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ ପ୍ରାଦେଶିକ ରାଜନୈତିକ ସମ୍ମିଳନୀରେ ଯୋଗଦାନ କରିବାକୁ ଯାଇଥିଲେ ଏବଂ ସଭାପତି ମହୋଦୟ ତାଙ୍କୁ 'ଉତ୍କଳମଣି' ନାମରେ ସମ୍ବୋଧନ କରି ଦର୍ଶମଣ୍ଡପକୁ ସ୍ୱାଗତ ଜଣାଇ-ଥିଲେ । ଆଜି ଗୋପବନ୍ଧୁ ନାହାନ୍ତି କିମ୍ବା ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ନାହାନ୍ତି, କିନ୍ତୁ ସେହି 'ଉତ୍କଳମଣି' ନାମଟି ଅମର ରହିଯାଇଛି ଏବଂ ଯେତେବେଳେ ଆଜି ଏ ଦେଶବାସୀ ବନ୍ୟା, ଦୁର୍ଭିକ୍ଷ, ଅନ୍ନାଭାବ ଓ ମହାମାରୀ ପ୍ରାଦୁର୍ଭାବରେ ମ୍ରିୟମାଣ ହୋଇପଡ଼ୁଛନ୍ତି, ତାଙ୍କ ଆଖି ଆଗରେ ନାଚି ଯାଉଛି ୧୯୨୪—ଦୁର୍ଭିକ୍ଷ ଓ ୧୯୨୫, ୧୯୨୬ ଓ ୧୯୨୭ – ବନ୍ୟା-ପ୍ରପୀଡ଼ିତ ଜନତାର ସେବାରତ ପଣ୍ଡିତ ଗୋପବନ୍ଧୁଙ୍କର ଶାନ୍ତ, ସୌମ୍ୟ

ମୂର୍ତ୍ତି । ହେଉ ପୂର୍ବ ସ୍ମୃତି ସ୍ମରଣ କରି ଆଜିର କବି ଯେତେବେଳେ ବ୍ୟର୍ଥ ମନୋରଥରେ ଗାଇ ଯାଉଛନ୍ତି–

"ବିଶାଳ ଉତ୍କଳ ରାଜ୍ୟ ଗଠନର ପାଇଁ କାନ୍ଦୁଥିଲା ପ୍ରାଣ,
ତୁମେ ଯାଇଥିବ ଭାବି ଖୋଜିବାକୁ ଗଲି ଦଣ୍ଡକ ଅରଣ୍ୟ,
ପୁଚ୍ଛିଲି ସେଠାରେ ଯାଇ ଦେଖିଛ କି କେହି ଉତ୍କଳର ମଣି,
ଉତ୍ତରିଲେ ତହିଁ ଜଣେ 'କେବା ସେଇ ଜନ ଆମି ନାଇଁ ଜାନି' ।
ନିରାଶରେ ଫେରି ତହୁଁ ଗଲି କଳାହାଣ୍ଡି ଗାଆଁ ଗହଳରେ,
ପଳାନ୍ତି ସନ୍ତାନ ଛାଡ଼ି ପିତାମାତା ଯହିଁ ପେଟ ବିକଳରେ,
ବଳକା ରାଇଜ ବୋଲି ମନ୍ତ୍ରୀଙ୍କ ଭାଷାରେ ନାମ ଯେ ଦେଶର,
ଶୁଣିଲି ସେଠାରେ କେହି ନ ଖାଇ ମରିଲେ ନୁହେଁ ଅନାହାର !
+ + +
ବୁଲିଲି ରାଜଧାନୀରେ ତୁମକୁ ମୁଁ ଖୋଜି ଦେଖିଲି ଅଦ୍ଭୁତ,
ଆପୁର, ନାପୁର ଦଳ ଜଗିଛନ୍ତି ତହିଁ ଓଡ଼ିଶାର ସ୍ୱାର୍ଥ,
ରାଜ ରାଣୀ, ମୁକ୍ତେଶ୍ୱର ମନ୍ଦିରେ ଗ୍ଲୁଲିଛି ନୈଶ ଅଭିସାର,
ପଥର ପ୍ରତିମା କାନେ କହିଲେ ମୋହର ହୁଅ ଏଥୁ ଦୂର ।
କ୍ଷମତା-ଲାଳସା ଲୋଭ ମାତ୍ସର୍ଯ୍ୟର ମାୟା ସବୁଠି ବ୍ୟାପିଛି,
ତୁମ ନାମେ ଗୋପବନ୍ଧୁ ଓଡ଼ିଶା ଭୂଇଁଟା ମଦରେ ଭାସୁଛି,
କାହିଁ ତୁମ ସେବା, ତ୍ୟାଗ, ତିତିକ୍ଷା, ସଞ୍ଜମ ଜାଗଇ ସନ୍ଦେହ,
ତୁମେ କି ଏ ଦେଶେ ସତେ ଜନ୍ମ ଲଭିଥିଲ ହେ କରୁଣାମୟ !

ସେତେବେଳେ ଆମ କାନରେ ବାଜି ଉଠିଛି ତାଙ୍କର ସେହି ଆଶା, ଭରସାର ମୃଦୁ ଗମ୍ଭୀର ଅମର ସଙ୍ଗୀତ—

"ହେଉ ପଛେ ହେବ ଆଉ ଯେ ଯାତନା
ସତ୍ୟେ ଚଳି କର ସତ୍ୟର ସାଧନା ।
ସତ୍ୟେ ମାନବର ସତ୍ତ୍ୱ ପରକାଶେ
ଭୀମ ରାଜଶକ୍ତି ନାଶେ ସତ୍ୟ ପାଶେ ।
+ + +
ନ ହୁଅ ନିରାଶ, ନ ହୁଅ ଦୁଃଖିତ,
ଉତ୍କଳର ଦେଖି ଦୁଃଖମୟ ଚିତ୍ର !

ସୁଖ-ଦୁଃଖ ଚକ୍ର ଘୂରେ ନିରନ୍ତର,
ଏକ ପରେ ଆନ ଆସିବ ମୂକର ।"

ଚିରଦୁଃଖକାତର ଗୋପବନ୍ଧୁ ନିଜ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ନ ଦେଇ ଲୋକସେବକ ସମାଜର ନିଷ୍ଠାପର ସଭ୍ୟ ଭାବରେ ଜନସେବାରେ ଗୂଢ଼ ମନୋନିବେଶ କରିବା ଫଳରେ ୧୯୨୮ ମସିହା ଏପ୍ରିଲ ମାସରେ ଲାହୋର ଯାତ୍ରା କରିବା ସମୟରୁ ତାଙ୍କର ସ୍ୱାସ୍ଥ୍ୟଭଗ୍ନ ଘଟିବା ଆରମ୍ଭ ହେଲା ଏବଂ କ୍ରମେ ତାହା ଗୁରୁତର ହୋଇ ଜୁନ୍ ୧୬ ବେଳକୁ ଅବସ୍ଥା ଚରମ ସୀମା ସ୍ପର୍ଶ କଲା । ତାର ବାର୍ତ୍ତା ପାଇ ଶ୍ରୀଯୁକ୍ତ ରାଧାନାଥ ରଥ, ଅଧ୍ୟାପକ ରତ୍ନାକର ପତି, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରମୁଖ ବହୁ ବନ୍ଧୁ ଓ ସହକର୍ମୀ ସତ୍ୟବାଦୀ-ଠାରେ ପହଞ୍ଚିଲା ପରେ ଇଷ୍ଟିପତ୍ର (will) ସ୍ୱାକ୍ଷରିତ ହେବାର ମାତ୍ର ଦୁଇ ଘଣ୍ଟା ମଧ୍ୟରେ ୧୭-୬-୧୯୨୮ ରବିବାର ସନ୍ଧ୍ୟା ୭।୨୫ ମିନିଟ ସମୟରେ ସେ ଇହଧାମ ତ୍ୟାଗକରି ଚାଲିଗଲେ । ମାତ୍ର ଅର୍ଦ୍ଧଶତ ବର୍ଷ ବୟସରେ ସେହି ପୁଣ୍ୟାତ୍ମା ପୁରୁଷଙ୍କର ଶରୀରାବସାନ ଘଟିଥିଲା । ତଥାପି ସେହି ଯୁଗପୁରୁଷଙ୍କର କେତୋଟି ସୂକ୍ତି—

"ମାନବ ଜୀବନ ନୁହଇ କେବଳ ବର୍ଷ, ମାସ, ଦିନ, ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।"

× × ×

ମୁହୂର୍ତ୍ତେ ମାତର ଉଜ୍ଜ୍ୱଳ ପ୍ରଖର ଶିଖାଟେକ ହୁତାଶନ
ଜାଳି ଯେବେ କରେ ଆଲୋକ ଉତ୍ତାପ ତଡ଼ିଦ୍‌ବେଗେ ବିତରଣ
ଲିଭୁ ସେ କ୍ଷଣକେ ତଥାପି ଏ ଲୋକେ ରହେ ତା ଆଦର ଯଶ
କି ଲୋଡ଼ା ତହିଁରେ ରହେ ଯେ ମହୀରେ କୁହୁଳି ସହସ୍ର ବର୍ଷ ।"

ତାଙ୍କ ନିଜ ପ୍ରତି ପ୍ରୟୋଗ କଲେ ଉତ୍କଳମଣିଙ୍କର ନାତିଦୀର୍ଘ ନିଃସ୍ୱାର୍ଥପର କର୍ମମୟ ଜୀବନର ସାର୍ଥକତା ସ୍ପଷ୍ଟ ପ୍ରତିପାଦିତ ହୁଏ ।

—୦—

# ଗୋପବନ୍ଧୁଙ୍କ ଜୀବନରେ ବନ୍ଧୁତ୍ୱର ପ୍ରଭାବ

**ଶ୍ରୀ ରାଧାନାଥ ରଥ, ସମ୍ପାଦକ—‘ସମାଜ’**

[ ଓଡ଼ିଶାର ପ୍ରବୁଦ୍ଧ ଓ ପ୍ରବୀଣ ସାହିତ୍ୟିକ ତଥା ଦୈନିକ ‘ସମାଜ’ର ସମ୍ପାଦକ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ କାହାରି ଅପରିଚିତ ନୁହନ୍ତି । ସେ ସ୍ୱର୍ଗତ ଗୋପବନ୍ଧୁଙ୍କର ଶ୍ରେଷ୍ଠ ଶିଷ୍ୟ ଏବଂ ଉତ୍କଳମଣିଙ୍କର ସ୍ମୃତିକୁ ଅମର ରଖିବା ଦିଗରେ ତାଙ୍କର ଦାନ ଅଭିନନ୍ଦନୀୟ । ଦୈନିକ ‘ସମାଜ’ର ସମୃଦ୍ଧି ସାଧନ କ୍ଷେତ୍ରରେ ସେ ଯେଉଁଭଳି ଆତ୍ମନିୟୋଗ କରିଛନ୍ତି ତାହା ପଣ୍ଡିତ ଗୋପବନ୍ଧୁଙ୍କର ଲୋକାନ୍ତରିତ ଆତ୍ମା ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ଏବଂ ଏହା ବ୍ୟତୀତ ପ୍ରତି ବର୍ଷ ଗୋପବନ୍ଧୁଙ୍କ ଶ୍ରାଦ୍ଧ ବାସରରେ ପ୍ରକାଶିତ ‘ସମାଜ’ର ବିଶେଷ ସଂଖ୍ୟାରେ ତାଙ୍କ ସମ୍ପର୍କରେ ପ୍ରବନ୍ଧାକାରରେ ସେ ଯେଉଁସବୁ ଅଜଣା ଓ ଉପାଦେୟ ତଥ୍ୟମାନ ପରିବେଷଣ କରୁଛନ୍ତି, ତାହାର ମୂଲ୍ୟ କଳନାତୀତ । ଏହି ପ୍ରବନ୍ଧଟି ମଧ୍ୟ ଗୋପବନ୍ଧୁଙ୍କର ୩୭ତମ ଶ୍ରାଦ୍ଧ ଦିବସ ଉପଲକ୍ଷେ ‘ସମାଜ’ର ବିଶେଷ ସଂଖ୍ୟାରେ ପ୍ରକାଶ ପାଇଥିଲା । ଏଥିରେ ଶ୍ରୀଯୁକ୍ତ ରଥ ସ୍ୱର୍ଗତ ପଣ୍ଡିତ ବାସୁଦେବ ରଥଙ୍କଠାରୁ ସଂଗୃହୀତ ଗୋପବନ୍ଧୁଙ୍କ ଜୀବନୀ ବିଷୟରେ କେତେକ ଅଜଣା ତଥ୍ୟ ଉଲ୍ଲେଖ କରିଛନ୍ତି ।—ସଂ ]

ପୁଣ୍ୟାତ୍ମା ଗୋପବନ୍ଧୁ ତାଙ୍କ ଜନ୍ମସ୍ଥାନ ସୁଆଣ୍ଡୋର ଷୋଡ଼ଶବର୍ଷର ବେଳରୁ ବାହାର ପାଠପଢ଼ିବା ପାଇଁ ଯେତେବେଳେ ଭାରତର ସର୍ବପ୍ରଧାନ ତୀର୍ଥସ୍ଥାନ ପୁରୀ ବା ପୁରୁଷୋତ୍ତମ ଧାମକୁ ଗଲେ, ସେତେବେଳେ ସେଠାରେ ଛାତ୍ରାବସ୍ଥାରେ ସେ କେତେଜଣ ଅନ୍ତରଙ୍ଗ ବନ୍ଧୁ ଅର୍ଜିଥିଲେ । ସେମାନଙ୍କ ମଧ୍ୟରେ ପୁରୀର ତ୍ୟାଗବୀର ମୁକ୍ତ୍ୟାର ଶ୍ରୀ ରାମଚନ୍ଦ୍ର ଦାସ (ଭିଙ୍ଗାରପୁର), ପଣ୍ଡିତ ବାସୁଦେବ ରଥ, କାବ୍ୟତୀର୍ଥ (ଭିଙ୍ଗାରପୁର), ଶ୍ରୀ ରଘୁନାଥ ଦେଓ, ଶ୍ରୀ ଜଗବନ୍ଧୁ ସିଂହ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ପଣ୍ଡିତ ନୀଳକଣ୍ଠ, ହରିହର, ଗୋଦାବରୀଶ, କୃପାସିନ୍ଧୁ, ଜଗନ୍ନାଥ ମହାପାତ୍ର, ଅନନ୍ତ ମିଶ୍ର ପ୍ରମୁଖଙ୍କ ସହିତ ତାଙ୍କର ତା ଆଗରୁ ପ୍ରଗାଢ଼ ବନ୍ଧୁତ୍ୱ ଥିଲା । କିନ୍ତୁ ପୁରୀରେ ଥିବାବେଳେ ଦୈନନ୍ଦିନ ସମ୍ପର୍କ ତାଙ୍କର ଯେଉଁମାନଙ୍କ ସହିତ ଥିଲା, ସେମାନେ ତାଙ୍କ ଜୀବନର ବହୁତ କଥା ଜାଣିଥିଲେ ।

ସେମାନଙ୍କର ଏ ବନ୍ଧୁତା ଦାସେ ଆପଣଙ୍କର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା—ଯଦିବା ଶେଷବେଳକୁ ଜଗବନ୍ଧୁ ବାବୁଙ୍କ ସହିତ ରାଜନୈତିକ ଓ ବ୍ୟବସ୍ଥା ସଭାର ନିର୍ବାଚନ ସମ୍ପର୍କରେ ଟିକିଏ ମତଭେଦ ଘଟିଥିଲା; କିନ୍ତୁ ଏ ମତଭେଦ ଉଭୟଙ୍କର ବ୍ୟକ୍ତିଗତ ପ୍ରଗାଢ଼ ବନ୍ଧୁତା ଉପରେ କୌଣସି ଆଞ୍ଚ ଆଣି ନ ଥିଲା । ଏମାନଙ୍କ ମଧ୍ୟରୁ ପଣ୍ଡିତ ବାସୁଦେବ ରଥ କାବ୍ୟତୀର୍ଥ ଗୋପବନ୍ଧୁଙ୍କ ପ୍ରତି ଅତି ଘନିଷ୍ଠ ଭାବରେ ଆକୃଷ୍ଟ ହୋଇଥିଲେ । ମୁକ୍ତ୍ୟାର ରାମଚନ୍ଦ୍ର ଦାସ ସାଧାରଣ ଜୀବନରେ ଗୋପବନ୍ଧୁ ବାବୁଙ୍କର ଆଦିଗୁରୁ ଥିଲେ । ପଣ୍ଡିତ ବାସୁଦେବ ମୁକ୍ତ୍ୟାର ରାମଚନ୍ଦ୍ରଙ୍କର ପରମ ଭକ୍ତ ଥିଲେ ଓ ଅତି ଅନ୍ତରଙ୍ଗ ଥିଲେ । ରାମଚନ୍ଦ୍ରଙ୍କ ସହିତ ଗୋପବନ୍ଧୁଙ୍କର ପ୍ରଗାଢ଼ ସମ୍ପର୍କ ପ୍ରତିଷ୍ଠା କରିବାରେ ପଣ୍ଡିତ ବାସୁଦେବଙ୍କର ବିଶେଷ ଭାଗ ଥିଲା । ପଣ୍ଡିତ ବାସୁଦେବ ତାଙ୍କର ଜୀବନ ଓ ସାଧନାର ବହୁକଥା ଜାଣିଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ପରଲୋକ ପରେ ପଣ୍ଡିତ ପୂଜ୍ୟ ବାସୁଦେବଙ୍କଠାରୁ କେତେଗୁଡ଼ିଏ ତଥ୍ୟ ସଂଗ୍ରହ କରିବାର ସୁଯୋଗ ମିଳିଥିଲା । ଆଜି ପଣ୍ଡିତ ବାସୁଦେବ ନାହାନ୍ତି, ୩ ବର୍ଷ ତଳେ (୧୯୬୨ରେ) ୮୨ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଯାଇଛି । ତାଙ୍କଠାରୁ ସଂଗୃହୀତ ଗୋପବନ୍ଧୁଙ୍କ

ଜୀବନୀ ବିଷୟରେ କେତେଗୁଡ଼ିଏ ଅଜଣା ତଥ୍ୟ ଆଜି ଏ ପ୍ରବନ୍ଧରେ ତାଙ୍କର ଭାଷାରେ ଉଲ୍ଲେଖ କରାଯାଉଛି । ପଣ୍ଡିତ ବାସୁଦେବ ଯେ କେବଳ ଜଣେ ଉଚ୍ଚକୋଟୀର ପଣ୍ଡିତ ଥିଲେ ତାହା ନୁହେଁ. ସେ ଜଣେ ମାନବାନ, ଚରିତ୍ରବାନ, ଶିକ୍ଷକ, ସାହିତ୍ୟିକ ଓ ତାଙ୍କ ସୀମା ଭିତରେ ସାଧାରଣ ସେବକ ଥିଲେ । ସେ ସ୍ୱର୍ଗୀୟ ମୁକ୍ତ୍ୟାର ରାମଚନ୍ଦ୍ର ଦାସଙ୍କର ଗୋଟିଏ ଜୀବନୀ ଲେଖିଥିଲେ ଏବଂ 'ଆନନ୍ଦ ଲହରୀ' ପୁସ୍ତକର ଓଡ଼ିଆ ଅନୁବାଦ ପ୍ରକାଶ କରିଥିଲେ । ଆଜି ଏ ଅବକାଶରେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କଲାବେଳେ ପଣ୍ଡିତ ବାସୁଦେବଙ୍କ ପ୍ରତି ମଧ୍ୟ ଅନ୍ତରର ଗଭୀର ଭକ୍ତି ସ୍ୱତଃ ପ୍ରକାଶ ପାଏ । ତାଙ୍କଠାରୁ ଶୁଣିଥିବା କଥା ଆଜି ଏଠାରେ ସନ୍ନିବେଶ କରାଯାଉଛି ।

୧୯୮୫ ମସିହାରେ ପଣ୍ଡିତ ବାସୁଦେବ ରଥ ଇଚ୍ଛାପୁର ମଧ୍ୟ ଇଂରାଜୀ ସ୍କୁଲରୁ ଶିକ୍ଷା ସମାପ୍ତ କରି 'ପୁରୀ ସଂସ୍କୃତ ଟୋଲ'ରେ ଅଧ୍ୟୟନ କରିବାକୁ ପୁରୀ ଆସିଥିଲେ । ପୁରୀରେ ତାଙ୍କର ଆଉ କେହିଁ ଆତ୍ମୀୟ ନ ଥିବାରୁ ସେ ପୁରୀର ତତ୍କାଳୀନ ପ୍ରସିଦ୍ଧ ମୁକ୍ତ୍ୟାର ଦେଶପ୍ରେମୀ ରାମଚନ୍ଦ୍ର ଦାସଙ୍କ ଦଇତାପଡ଼ା ସାହିସ୍ଥ ବାସଭବନରେ ଆଶ୍ରୟ ନେଇଥିଲେ । ସେ ସମୟରେ ପୁରୀରେ ରାମଚନ୍ଦ୍ର ଦାସଙ୍କ ସମେତ ତିନ ଜଣ ମାତ୍ର ମୁକ୍ତ୍ୟାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ମୁକ୍ତ୍ୟାର ଥିଲେ ଓ ଜଣେ ମୁକ୍ତ୍ୟାର ଅଧ୍ୟୟନ ନ କରି ମଧ୍ୟ ମୁକ୍ତ୍ୟାରି କରୁଥିଲେ ।

ପଣ୍ଡିତ ବାସୁଦେବ ରଥଙ୍କର ପଣ୍ଡିତ ଗୋପବନ୍ଧୁ ସହିତ ୧୮୯୫ ମସିହାରେ ମୁକ୍ତ୍ୟାର ରାମଚନ୍ଦ୍ର ଦାସଙ୍କ ଘରେ ପ୍ରଥମ ସାକ୍ଷାତ ହୋଇଥିଲା । ସେତେବେଳେ ଗୋପବନ୍ଧୁ ବାବୁ ପୁରୀ ଜିଲ୍ଲା ସ୍କୁଲର ଚତୁର୍ଥ କି ପଞ୍ଚମ ଶ୍ରେଣୀର ଛାତ୍ର । ସେ ଆଗରୁ ପ୍ରତ୍ୟହ ରାମଚନ୍ଦ୍ର ଦାସଙ୍କ ଘରକୁ ଆସୁଥିଲେ ଓ ବହୁରାତ୍ର ପର୍ଯ୍ୟନ୍ତ ଆଉ କେତେକ ଛାତ୍ରଙ୍କ ସହ ମିଶି ଦେଶରେ କପରି ଶିକ୍ଷା ବିସ୍ତାରଲାଭ କରିବ, ସେ ସମ୍ପର୍କରେ ଆଲୋଚନା କରୁଥିଲେ । ରାମଚନ୍ଦ୍ର ଦାସଙ୍କର ବୟସ ସେ ସମୟକୁ ପ୍ରାୟ ୨୦ ବର୍ଷ ଏବଂ ସେ ପୁରୀର ଜଣେ ପ୍ରସିଦ୍ଧ ଆଇନଜୀବୀ ।

ତାହା ସତ୍ତ୍ୱେ ସେ ଅଳ୍ପ ବୟସରେ ଛାତ୍ରମାନଙ୍କ ସହିତ ମିଶି ନାନା ଆଲୋଚନା କରୁଥିଲେ ଏବଂ ଦେଶ ଓ ଦଶର କାମରେ ସେମାନଙ୍କୁ ପ୍ରେରଣା ଦେଉଥିଲେ । ସନ୍ଧ୍ୟାରେ ସମ୍ବାଦପତ୍ର ସବୁ ପଢ଼ାଯାଏ, ତା ଉପରେ ଆଲୋଚନା ସମାଲୋଚନା ହୁଏ । ରାମଚନ୍ଦ୍ର ଦାସ 'ବଙ୍ଗବାସୀ' 'ବସୁମତୀ' ଓ ସଞ୍ଜୀବନୀ' ନାମକ ତିନୋଟି ବଙ୍ଗଳା ପତ୍ରିକା ଏବଂ 'ଉତ୍କଳ ଦୀପିକା' ଓ ବାଲେଶ୍ୱରରୁ ପ୍ରକାଶିତ 'ସମ୍ବାଦ ବାହିକା' ପତ୍ରିକା ମଗାଉଥାନ୍ତି ।

କଥାବାର୍ତ୍ତା ଛଳରେ ପଣ୍ଡିତ ବାସୁଦେବ ରଥ ସେ ସମୟର ଯେଉଁ ଚିତ୍ର ବର୍ଣ୍ଣନା କରିଥିଲେ, ଏଠିକି ତାଙ୍କର ଭାଷାରେ ତାହା କୁହାଯାଉଛି—

ପୁରୀର ସଂସ୍କୃତ ଟୋଲର ପ୍ରତିଷ୍ଠାତା ହରିହର ଦାସ ଶାସ୍ତ୍ରୀ । ସେ ଜଣେ ବଡ଼ ବିଦ୍ୱାନ ପଣ୍ଡିତ, ଦାର୍ଶନିକ ଓ ଦେଶହିତୈଷୀ ବ୍ୟକ୍ତି ଥିଲେ । ସେ ଅଯୋଧ୍ୟାରେ ବିଶେଷ ଖ୍ୟାତି ଲାଭ କରିଥିଲେ ଓ ବଳରାମପୁର ରାଜାଙ୍କଠାରୁ ଦାନ ସ୍ୱରୂପରେ ପାଇଥିବା ଲକ୍ଷେ ଟଙ୍କା ଆଣି ପୁରୀରେ ସଂସ୍କୃତ ଟୋଲ ବସାଇଥିଲେ । ମୁଁ ଯେତେବେଳେ ସେ ଟୋଲର ଛାତ୍ର ସେତେବେଳେ ହେଡପଣ୍ଡିତ ଥିଲେ ପଣ୍ଡିତ ହରିହର ଦାଶ ଶାସ୍ତ୍ରୀ (ପ୍ରତିଷ୍ଠାତା ନୁହନ୍ତି—ଅନ୍ୟ ଜଣେ ବ୍ୟକ୍ତି) । ପୁରୀ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଥା'ନ୍ତି ଗୋପାଳ ଦାସ ସରକାର ।

ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲରେ ପ୍ରଥମ ୭ମ 'ବି' ଶ୍ରେଣୀରେ ନାମ ଲେଖାଇଥିଲେ, ୭ ମାସ ପରେ ୭ମ 'ଏ' ଶ୍ରେଣୀକୁ ଏବଂ ସେଠାରୁ ଡବଲ ପ୍ରମୋଶନ ପାଇ ୫ମ ଶ୍ରେଣୀ (ବର୍ତ୍ତମାନ ୭ମ ଶ୍ରେଣୀ)କୁ ଉଠିଥିଲେ ।

ମୁଁ ଓ ଗୋପବନ୍ଧୁ ପ୍ରତିଦିନ ସ୍କୁଲରୁ ଆସି ରାମଚନ୍ଦ୍ର ଦାସଙ୍କ ପାଖକୁ ଯାଉ । ଅଧିକାଂଶ ସମୟରେ ସେ ଆମକୁ ଜଳଖିଆ ମଗାଇ ଖାଇବାକୁ ଦିଅନ୍ତି ଏବଂ ସ୍କୁଲର ପଢ଼ାପଢି କଥା ପଚାରନ୍ତି । ତାହାପରେ ଅନ୍ୟାନ୍ୟ ବିଷୟରେ ରାତି ପ୍ରାୟ ୧୨ଟା ପର୍ଯ୍ୟନ୍ତ ଆଲୋଚନା ଚାଲେ ।

ଗୋପବନ୍ଧୁ ଓ ମୁଁ ଉଭୟେ ଯେଉଁଦିନ ପ୍ରଥମେ ରାମଚନ୍ଦ୍ର ଦାସଙ୍କ ନିକଟରେ ଉପସ୍ଥିତ ହେଲୁ, ସେ ଆମ ଦୁହିଁଙ୍କ ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ କଲେ ଏବଂ କହିଲେ, ମୁଁ "ତୁମ ଦୁହିଙ୍କୁ ମିଶାଇ ଦେଇ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମ୍ମିଳନୀ କରାଇଲି।"

୧୮୯୭ ମସିହାରେ କୁକ୍ ସାହେବ ପୁରୀର କଲେକ୍ଟର ହୋଇ ଆସିଥିଲେ। କଲେକ୍ଟର ହେଉଛନ୍ତି 'ପୁରୀ ସଂସ୍କୃତ ସ୍କୋଲ୍'ର ସୁପରିଂଟେଣ୍ଡେଣ୍ଟ। ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ଲାଗି ରାମଚନ୍ଦ୍ର ଦାସ ନିଜ ବସାକୁ ଡାକିଥିଲେ। ଆୟୋଜନର ଦାୟିତ୍ୱ ଆମେ ଦୁଇ ଜଣ ଛାତ୍ର ଗୋପବନ୍ଧୁ ଓ ମୋ ଉପରେ ପଡ଼ିଥିଲା। କଲେକ୍ଟରଙ୍କୁ କିପରି ସମ୍ବର୍ଦ୍ଧନା କରିବାକୁ ହେବ, କିଭଳି ବକ୍ତୃତା ହେବ, ତାହା ରାମଚନ୍ଦ୍ର ଦାସ ଆଗରୁ ଆମକୁ ଶିକ୍ଷା ଦେଇଥାନ୍ତି। ତାଙ୍କର ଶିକ୍ଷା ଅନୁସାରେ ଗୋପବନ୍ଧୁ ଇଂରାଜୀରେ ଓ ମୁଁ ସଂସ୍କୃତରେ କେତୋଟି ପଦ କହି ସମ୍ବର୍ଦ୍ଧନା ଜଣାଇଥିଲୁ। ରାମଚନ୍ଦ୍ର ଦାସ ତାଙ୍କ ବକ୍ତୃତାରେ ଦାବୀ କରିଥିଲେ ଯେ, ସଂସ୍କୃତ ସ୍କୋଲରେ ଗୋଟିଏ ଲାଇବ୍ରେରୀର ବ୍ୟବସ୍ଥା ହେଉ ଓ ସମୁଦ୍ରକୂଳ ବାଲିରେ ଝାଉଁଗଛ ଲଗାଯାଉ। କଲେକ୍ଟର ସାହେବ ଲାଇବ୍ରେରୀ ପାଇଁ ଟଙ୍କା ମଞ୍ଜୁର କରିଥିଲେ ଓ ଲକ୍ଷେ ଝାଉଁଗଛ ଆଣି ଲଗାଇବାର ବ୍ୟବସ୍ଥା ମଧ୍ୟ କରି ଦେଇଥିଲେ।

୧୮୯୭ ମସିହାରେ ପ୍ରଥମେ ଦକ୍ଷିଣରୁ ଖୋର୍ଦ୍ଧା ବାଟ ଦେଇ ପୁରୀକୁ ରେଳଗାଡ଼ି ଯାଇଥିଲା। ସେତେବେଳେ ଗୁଣ୍ଡିଚା ନଳା ଗ୍ରାମ ପାଖରେ ଷ୍ଟେସନ ବସିଥିଲା। ବର୍ତ୍ତମାନ ପୁରୀ ଷ୍ଟେସନ ତାହାର ବହୁତ ପରେ ନିର୍ମିତ ହୋଇଛି। ସେତେବେଳେ ରେଳରସ୍ତାର ନାମ ଥିଲା 'ଇଷ୍ଟ କୋଷ୍ଟ ରେଲୱାଇ'। ୧୯୦୪ ମସିହାରେ ଖୋର୍ଦ୍ଧାଠାରୁ ବାରଙ୍ଗ ପର୍ଯ୍ୟନ୍ତ ରେଳରାସ୍ତା ପଡ଼ିଥିଲା। କଟକ ଆସୁଥିବା ଯାତ୍ରୀ ମାନେ ବାରଙ୍ଗରୁ ଓହ୍ଲାଇ ଚାଲି ଚାଲି କଟକ ଆସୁଥିଲେ।

ଓଡ଼ିଆ ସାହିତ୍ୟ ଜଗତରେ ସେହି କାଳରେ ତୁମୁଳ ଆଲୋଡ଼ନ ସୃଷ୍ଟି ହୋଇଥାଏ। 'ଇନ୍ଦ୍ରଧନୁ' ଓ 'ବିଜୁଳି' ଦୁଇଟି ପତ୍ରିକା ପ୍ରାଚୀନ

ଓ ଆଧୁନିକ ସାହିତ୍ୟର ପୃଷ୍ଠପୋଷକ ରୂପେ ପ୍ରକାଶ ପାଉଥାଏ । ଆଧୁନିକ ସାହିତ୍ୟର ପୃଷ୍ଠପୋଷକ 'ବିଜୁଳି'ରେ ଥରେ ଗୋଟିଏ କବିତା ପ୍ରକାଶ ପାଇଥିଲା । ସେଥିରେ ଟୋଟିଏ ଧାଡ଼ି ହେଉଛି –

"ଠେଙ୍ଗା ଗଙ୍ଗାଧର ଫେଙ୍ଗା ମାୟାଧର
ନକଲିଆ ମଧୁ କଳା ବାରିଷ୍ଟର ।"

ସେହି ସମୟରେ ଗୋପବନ୍ଧୁ ଇନ୍ଦ୍ରଧନୁରେ ଆଧୁନିକ ସାହିତ୍ୟ ଓ ସାହିତ୍ୟିକଙ୍କୁ ବ୍ୟଙ୍ଗ କରି ଏକ କବିତା ଲେଖି ପ୍ରକାଶ କରିଥିବାରୁ ସ୍କୁଲ ଇନ୍‌ସପେକ୍ଟର କବିବର ରାଧାନାଥ ରାୟଙ୍କ କୋପ ଦୃଷ୍ଟିରେ ପଡ଼ିଲେ । ଇନ୍‌ସ୍‌ପେକ୍ଟର ରାଧାନାଥ ରାୟ ସ୍କୁଲ ପରିଦର୍ଶନ କରିବା ଛଳରେ ଆସି ଗୋପବନ୍ଧୁଙ୍କୁ ଜୋରିମାନା କଲେ । ମୁକ୍ତ୍ୟାର ରାମଚନ୍ଦ୍ର ଦାସ ଏହା ଶୁଣି ପ୍ରଧାନ ଶିକ୍ଷକ ଗୋପାଳ ଦାସ ସରକାରଙ୍କ ନିକଟକୁ ଗଲେ ଓ ସ୍କୁଲରୁ ଗୋପବନ୍ଧୁଙ୍କ ନାମ କଟାଇ ଆଣିବାକୁ ଜିଦ୍ କଲେ । ପ୍ରଧାନ ଶିକ୍ଷକ ଇନ୍‌ସପେକ୍ଟରଙ୍କୁ ଜଣାଇବାରୁ ପରେ ଇନ୍‌ସପେକ୍ଟରଙ୍କ ନିର୍ଦ୍ଦେଶରେ ସେ ଜୋରିମାନା ଦଣ୍ଡରୁ ତାଙ୍କୁ ମୁକ୍ତି ମିଳିଥିଲା ।

ସେତେବେଳେ ରଘୁନାଥ ରାଓ, ହରିହର ଦାସ ଓ ହରିସିଂହ ମିଶ୍ର ଆସି ଆମ ସହିତ ମିଶିଲେ ଓ ରାମଚନ୍ଦ୍ର ଦାସଙ୍କ ଘରେ ପ୍ରତ୍ୟହ ରାତିରେ ବସୁଥିବା ଆଲୋଚନା ସଭାର ସଭ୍ୟ ସଂଖ୍ୟା ବଢ଼ିଗଲା । ରଘୁନାଥ ରାଓ ୧୮୯୭ରେ ଏଣ୍ଟ୍ରାନସ୍ ପାଶ୍ କରି ଆସି ପୁରୀରେ ରହିଲେ ଓ 'ଷ୍ଟେଟସ୍‌ମ୍ୟାନ' ସମ୍ବାଦପତ୍ରକୁ ସମ୍ବାଦ ଯୋଗାଇଲେ । ହରିସିଂହ ମିଶ୍ର ବି. ଏ. ପାଶ କରି ପୁରୀ ଜିଲ୍ଲା ସ୍କୁଲର ସହକାରୀ ଶିକ୍ଷକ ଥାଆନ୍ତି । ସେତେବେଳେ ଏ ସ୍କୁଲରେ ବି. ଏ. ପାଶ କରିଥିବା ଓଡ଼ିଆ ଶିକ୍ଷକ ଏକମାତ୍ର ସେହି ଥିଲେ ।

ପୁରୀର ଗୋରା ସିଭିଲସର୍ଜନଙ୍କ ବିରୋଧରେ 'ଷ୍ଟେଟସ୍‌ମ୍ୟାନ' ସମ୍ବାଦପତ୍ରରେ ଗୋଟିଏ ସଂକ୍ଷିପ୍ତ ସମ୍ବାଦ ପ୍ରକାଶ ପାଇଥିଲା, ସେଥିପାଇଁ ସିଭିଲସର୍ଜନ ଉତ୍ତକ୍ତ ହୋଇ ହରିହର ଦାସଙ୍କୁ ସାଧାରଣ ରାସ୍ତା

ଉପରେ ଅପମାନ ଦେଲେ ଓ ପ୍ରହାର କଲେ । ଏହା ଜାଣି ମୁକ୍ତାର ରାମଚନ୍ଦ୍ର ଦାସ ଓ ଗୋପବନ୍ଧୁ ଏପରି ପରିସ୍ଥିତି ସୃଷ୍ଟି କଲେ ଯେ ସିଭିଲସର୍ଜନ ପରେ ବାଧ୍ୟ ହୋଇ ଆସି ସେହି ସ୍ଥାନରେ ହରାକର ଦାସଙ୍କ ପାଖରେ କ୍ଷମାପ୍ରାର୍ଥନା କରିଥିଲେ । ସେ ସମୟରେ ସାହେବଙ୍କ କ୍ଷମାପ୍ରାର୍ଥନା ପୁରୀ ଲୋକଙ୍କ ଉପରେ ଗୋଟାଏ ବଡ଼ ପ୍ରଭାବ ପକାଇଥିଲା । ଅନ୍ୟ ଅଫିସରମାନେ କୌଣସି ଅନ୍ୟାୟ କାର୍ଯ୍ୟ କରିବାକୁ ଭୟ ପାଇଗଲେ ।

୧୮୯୯ ମସିହାରେ ରାମଚନ୍ଦ୍ର ଦାସଙ୍କର ପ୍ରଥମ ପୁତ୍ର ସନ୍ତାନ ହୋଇଥିଲା, ବର୍ଷକ ମଧ୍ୟରେ ତା'ର ମୃତ୍ୟୁ ହୋଇଗଲା । ଏ ସମ୍ବାଦ ପାଇ ମୁଁ କାନ୍ଦ ପକାଇଥିଲି, ମାତ୍ର ରାମଚନ୍ଦ୍ର ଦାସ ଆଣ୍ଠୁମାଡ଼ି ବସି ପ୍ରାର୍ଥନା କରି କହୁଥିଲେ, "ଠାକୁରେ ମୋତେ ଆଉ ପିଲା ଦିଅ ନାହିଁ, ପିଲା ହେଲେ ମୁଁ ସଂସାରରେ ଜଡ଼ିତ ହୋଇପଡ଼ିବି ।"

ଗୋଟିଏ ସନ୍ଧ୍ୟାର କଥା ମନେପଡ଼େ । ଗୋପବନ୍ଧୁ, ମୁଁ ଓ ଆଉ ତିନି ଜଣ ରାମଚନ୍ଦ୍ର ଦାସଙ୍କ ପାଖରେ ବସିଥାଉ । ରାମଚନ୍ଦ୍ର ଦାସ ଆମ ଆଡ଼କୁ ଚାହିଁ କହିଲେ, "ତୁମେ ଅଛ ପାଞ୍ଚ ଜଣ । ତୁମେ ଶପଥ ନିଅ ଯେ, ପ୍ରତ୍ୟେକେ ଅନ୍ତତଃ ପାଞ୍ଚ ଜଣଙ୍କୁ ଶିକ୍ଷିତ କରାଇବାରେ ସାହାଯ୍ୟ କରିବ । ତୁମ ଶିଷ୍ୟମାନେ ଏପରି ଶିକ୍ଷା ପାଇବେ ଯେ, ତୁମ ଆଦର୍ଶରେ ସେମାନେ ପ୍ରତ୍ୟେକ ପାଞ୍ଚ ଜଣଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା କରିବେ । ତାହାହେଲେ ପାଞ୍ଚ ବର୍ଷ ଭିତରେ ଆମ ଓଡ଼ିଶାରେ ଶିକ୍ଷିତଙ୍କ ସଂଖ୍ୟା ବହୁତ ବଢ଼ିଯିବ ।"

୧୯୦୪ ମସିହାରେ ଗୋପବନ୍ଧୁ ବି. ଏ. ପାଶ କଲେ । ସେ ସମୟକୁ ଓଡ଼ିଶାରେ ମାତ୍ର ୧୭ ଜଣ ବି. ଏ. ଡିଗ୍ରୀଧାରୀ ବ୍ୟକ୍ତି ଥିଲେ । ଗୋପବନ୍ଧୁଙ୍କ ସାଙ୍ଗରେ ବୈଦ୍ୟନାଥ ମିଶ୍ର, ଗୋପିନାଥ ଦାସ ଓ ବ୍ରଜସୁନ୍ଦର ଦାସ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ରାମଚନ୍ଦ୍ର ଦାସ, ବୈଦ୍ୟନାଥ ବାବୁ, ଗୋପୀନାଥ ବାବୁ ଓ ଗୋପବନ୍ଧୁଙ୍କୁ ହସି ହସି ପଚାରିଲେ, "ଏହାପରେ କ'ଣ କରିବ ?" ବୈଦ୍ୟନାଥ ମିଶ୍ର ଓ ଗୋପୀନାଥ ଦାସ କହିଲେ, "ଆମ ମୁରବିମାନଙ୍କ ଇଚ୍ଛା, ଆମେ ସରକାରୀ

ଗୃହକର୍ମ କରିବୁ ।" ଗୋପବନ୍ଧୁଙ୍କୁ ଏହି ପ୍ରଶ୍ନ ହେବାକ୍ଷଣି ସେ କାନ୍ଦି ପକାଇଲେ । ତାଙ୍କ ଆଖିରୁ କେବଳ ଝର ଝର ଲୁହ ବହିଯାଇ ତାଙ୍କ ମନ କଥା ପ୍ରକାଶ କରିଦେଲା । ରାମଚନ୍ଦ୍ର ଦାସ ତାଙ୍କୁ କୁଣ୍ଢାଇ ଦେଇ କହିଲେ, "ତୁମେ ହିଁ ଠିକ୍ ବାଟ ବାଛିଛ । କେବଳ ପଢ଼, ତାପରେ ଦେଶସେବାରେ ନିଜକୁ ନିୟୋଜିତ କର ।"

ଗୋପବନ୍ଧୁ ବି. ଏ. ପରୀକ୍ଷା ଦେଇ ପୁରୀକୁ ଆସିବା ସଙ୍ଗେ ସଙ୍ଗେ "ବିଶ୍ୱବିଦ୍ୟାଳୟ" ନାମ ଦେଇ ଗୋଟିଏ ସାହିତ୍ୟ ଆଲୋଚନା ଅନୁଷ୍ଠାନ ଗଢ଼ିଲେ । ସେଥିରେ ରାମଚନ୍ଦ୍ର ଦାସ ନିୟମିତ ଉପସ୍ଥିତ ରହୁଥିଲେ । ଗୋପବନ୍ଧୁ ତା'ର ପରିଚାଳକ ଥିଲେ । ସେ ରଘୁନାଥ ରାଓ, ହରିହର ପ୍ରମୁଖ ଏବଂ ରେଢ଼ଙ୍ଗ ବକ୍ସିପରିବାରର ଲୋକନାଥ ବିଦ୍ୟାଧର ବିଭିନ୍ନ ବିଷୟରେ ପ୍ରବନ୍ଧ, କବିତା ଆଦି ଲେଖିଆଣି ପାଠ କରୁଥିଲେ, ତା' ଉପରେ ଆଲୋଚନା କରାଯାଉଥିଲା । ସମ୍ବାଦପତ୍ର ପାଠ ହୋଇ ଦେଶ ବିଦେଶର ବିଭିନ୍ନ ସମସ୍ୟା ସମ୍ପର୍କରେ ମଧ୍ୟ ଯୁକ୍ତିତର୍କ ଆଲୋଚନା ଚାଲୁଥିଲା । ସଂସ୍କୃତ ଟୋଲ୍‌ରେ ପ୍ରତିଷ୍ଠିତ 'ଲିଟ୍‌ରାରୀ କ୍ଲବ' ଓ ଲାଇବ୍ରେରୀରେ ସମସ୍ତ ସମୟରେ ଆଲୋଚନାସଭା ବସେ । ତତ୍କାଳୀନ ଓଡ଼ିଶା କମିଶନର ଓ ପ୍ରସିଦ୍ଧ ସାହିତ୍ୟିକ ରମେଶଚନ୍ଦ୍ର ଦତ୍ତ, ପୁରୀର ସିନିୟର ମାଜିଷ୍ଟ୍ରେଟ ନିତ୍ୟାନନ୍ଦ ଭଟ୍ଟାଚାର୍ଯ୍ୟ ପ୍ରମୁଖ ଅନେକ ଥର ଉକ୍ତ ଆଲୋଚନା ସଭାରେ ଯୋଗ ଦେଉଥିଲେ ଓ ଆଲୋଚନାରେ ମଧ୍ୟ ଭାଗ ନେଉଥିଲେ । ଥରେ କୌଣସି ବିଷୟରେ ଗୋପବନ୍ଧୁଙ୍କର କମିଶନର ରମେଶଚନ୍ଦ୍ର ଦତ୍ତଙ୍କ ସହିତ କେତେକ ସମୟ ଧରି ଯୁକ୍ତିତର୍କ ଚାଲିଥିବା କଥା ମୋର ସ୍ପଷ୍ଟ ମନେଅଛି । ବିଭିନ୍ନ ଆଲୋଚନା ସଭାରେ ଗୋପବଂଧୁଙ୍କ ଲିଖିତ ପ୍ରବନ୍ଧ ସମସ୍ତଙ୍କ ଦ୍ୱାରା ବିଶେଷ ଆଦୃତ ହେଉଥିଲା ।

ସେ ସମୟରେ ଦ୍ୱୀପାନ୍ତର ଦଣ୍ଡ ପାଇଥିବା ଦିବ୍ୟସିଂହ ଦେବଙ୍କ ପୁତ୍ର ମୁକୁନ୍ଦଦେବ ପୁରୀର ରାଜା ଥିଲେ । ଜଣେ ଗୋରା ସାହେବ ଶ୍ରୀମନ୍ଦିରର ମ୍ୟାନେଜର ନିଯୁକ୍ତ ହୋଇଥିଲେ । ପୂର୍ବରୁ ପ୍ରତିବର୍ଷ ରଥଟଣା ପାଇଁ ରହାଙ୍ଗ ଗଡ଼ର ଲୋକେ କତାଦଉଡ଼ା ଯୋଗାଇ ଆସୁଥିଲେ ।

ତାହା ଅତି ମୋଟା ଓ ଘନ ହୋଇଥିବାରୁ ତାକୁ ଚେକିବା ଅସମ୍ଭବ ହୋଇ ପଡ଼ୁଥିଲା । ମ୍ୟାନେଜର କଥା ସତ୍ତ୍ୱ କରି କଲିକତା ପଠାଇଲେ ଏବଂ ସେଠାରୁ କଳରେ ମଜଭୁତ ଦଉଡ଼ା ବନାଇ ଆଣିଲେ ।

ରଥଯାତ୍ରା କଥା କହିବାବେଳେ ରଥଯାତ୍ରା ସମୟରେ ହଇଜା କପରି ମହାମଉଳ ସୃଷ୍ଟି କରେ, ତା'ର ଗୋଟିଏ ବର୍ଷର ଚିତ୍ର ମନେ ପଡ଼ୁଯାଉଛି । ୧୮୯୯ ମସିହା ବେଳକୁ ପୁରୀକୁ ରେଳଗାଡ଼ି ଚଳାଚଳର ସୁବିଧା ହୋଇଯିବାରୁ ଭାରତର ସବୁ ଅଞ୍ଚଳରୁ ଲକ୍ଷ ଲକ୍ଷ ଯାତ୍ରୀ ରଥଯାତ୍ରା ଦେଖିବାକୁ ଆସିଲେ । ଅତ୍ୟଧିକ ଲୋକଭିଡ଼ ହେତୁ ହଇଜା ପ୍ରତିବର୍ଷ ଅତି ପ୍ରବଳ ହେଉଥିଲା । ଗୋଟିଏ ବର୍ଷ ରଥ ସମୟରେ ହଇଜା ରୋଗ ଏଭଳି ବ୍ୟାପକ ଆକାର ଧାରଣ କଲା ଯେ, ପୁରୀ ସହରର ପ୍ରତ୍ୟେକ ରାସ୍ତା, ଗଳି କନ୍ଦି ଓ ପୋଖରୀ ହୁଡ଼ାରେ ଶହ ଶହ ମୃତ ଦେହ ପଡ଼ି ରହିଥିବାର ଦେଖାଗଲା । ବଡ଼ଦାଣ୍ଡରେ ନରେନ୍ଦ୍ର ପୋଖରୀ ପର୍ଯ୍ୟନ୍ତ ଯିବାକୁ ଅନ୍ତତଃ ଶତାଧିକ ମୃତ ଦେହ ଡେଇଁ ବା ଗୋଡ଼ରେ ମାଡ଼ି ଯିବାକୁ ପଡୁଥିଲା । ପୁରୀ ଆସିବା ରାସ୍ତା କଡ଼ରେ ମଧ୍ୟ ସ୍ଥାନେ ସ୍ଥାନେ ଅସଂଖ୍ୟ ମୃତ ଦେହ ପଡ଼ି ରହିଥାଏ । ମୁଁ ଶୁଣିଛି, ସେବର୍ଷ ୭୫ ହଜାର ପର୍ଯ୍ୟନ୍ତ ଯାତ୍ରୀ ହଇଜାରେ ପ୍ରାଣ ହାରିଥିଲେ ବୋଲି କୁଆଡ଼େ ସରକାରୀ ହିସାବରେ କୁହାଯାଇଥିଲା ।

ରାମଚନ୍ଦ୍ର ଦାସ ସେ ସମୟରେ ପୁରୀ ମ୍ୟୁନିସିପାଲ ବୋର୍ଡ଼ର ଜଣେ ସଭ୍ୟ ଥିଲେ । ଗୋପବନ୍ଧୁ ପ୍ରଭୃତି ତାଙ୍କ ଅନୁଗତ ଛାତ୍ରମାନଙ୍କୁ ଧରି ରୋଗୀ ସେବା, ବିପନ୍ନ ଲୋକଙ୍କୁ ସାହାଯ୍ୟ ଓ ଶବ ସତ୍କାରରେ ଲାଗି ପଡ଼ିଥିଲେ । ଅବସ୍ଥା ଅସମ୍ଭାଳ ହୋଇ ଉଠିବାରୁ କଲିକତାରୁ ଜଣେ ସ୍ୱାସ୍ଥ୍ୟ ବିଭାଗର ଅଫିସର ଗୋରା ସାହେବ ଆସିଲେ । ବାଟରେ ଘାଟରେ ଯେଉଁଠି ଯେତେ ମୃତ ଦେହ ପଡ଼ିଥିଲା, ମେହେନ୍ତରଙ୍କ ଦ୍ୱାରା ସେମାନଙ୍କ ମୁହଁରେ ଚୂନ ବୋଳି ସେଗୁଡ଼ିକୁ ବଳଭଦ୍ର ବଲ୍ଲଭରେ (ବର୍ତ୍ତମାନ ଯେଉଁଠାରେ ମାର୍କେଟ ହୋଇଛି) ଥିବା ୧୭ ବଖରା ବଡ଼ ବଡ଼ ଘରେ ରୁଣ୍ଡ କରାଗଲା । ତାପରେ ଦରିଆ ମହାବୀର ପାଖରେ ଗୋଟାଏ ଅତି ବଡ଼ ଖନ୍ଦକ ଖୋଳାଇ ତଳେ ଓ କଡ଼ରେ କାଠ ଝିଞ୍ଜି ମୁର୍ଦ୍ଦାରଗୁଡ଼ିକୁ

ତା' ଭିତରେ ପୂରାଗଲା ଓ ଉପରେ କାଠ ଲଦି କିରାସିନି ତାଳି ନିଆଁ ଲଗାଇ ଦିଆଯାଇଥିଲା । ସେ ନିଆଁ ୧୭ ଦିନ ଧରି ଜଳୁଥିଲା ।

ନରେନ୍ଦ୍ର ପୋଖରୀର ଉତ୍ତର କୋଣରେ ଥିବା ମିଠିକାଣୀ ଶ୍ମଶାନରେ ମଧ୍ୟ ଏହିପରି ଏକ ଖନ୍ଦକ ଖୋଳି ମୁର୍ଦ୍ଦାର ସତ୍କାର କରାଯାଇଥିଲା । ଏହି ମୁର୍ଦ୍ଦାର ପୋଡ଼ା ଆଗରୁ ଗୋଟିଏ ଅତି କରୁଣ ଦୃଶ୍ୟ ଦେଖିବାକୁ ମିଳୁଥିଲା ।

ରାମଚନ୍ଦ୍ର ଦାସ ପ୍ରତ୍ୟୁଷରୁ ନରେନ୍ଦ୍ର ପୋଖରୀକୁ ସ୍ନାନ କରିବାକୁ ଯାଆନ୍ତି । ସେଦିନ ସେ ଯେଉଁ ତୁଠରେ ସ୍ନାନ କରୁଥିଲେ, ତା'ପାଖରେ ଗୋଟିଏ ପଶ୍ଚିମା ମହିଳା ଯାତ୍ରୀ ବସି ବିକଳରେ କାନ୍ଦୁଥିବାର ଦେଖିଲେ । ସେ ତା' ପାଖରେ ଟିକଏ ଠିଆ ହୋଇଯିବାରୁ ମହିଳାଟି ତାଙ୍କ ପାଦତଳେ ପଡ଼ିଯାଇ କାନ୍ଦି କାନ୍ଦି କହିଲା, "ମୁଁ ଓ ମୋ ସ୍ୱାମୀ ଏହି ପାହାଚ ଉପରେ ଶୋଇଥିଲୁ, ସକାଳୁ ସ୍ୱାମୀଙ୍କୁ କୌଣସିଠାରେ ପାଉନାହିଁ । ବୋଧହୁଏ ମେହେନ୍ତରମାନେ ନେଇ ଖାତରେ ପକାଇ ଦେଇଛନ୍ତି ।" ମ୍ୟୁନିସିପାଲିଟି କମିଶନର ରାମଚନ୍ଦ୍ର ଦାସ ସଙ୍ଗେ ସଙ୍ଗେ ତାଙ୍କୁ ସାଙ୍ଗରେ ଧରି ଖନ୍ଦକ ପାଖକୁ ଗଲେ । ତାଙ୍କ ଆଦେଶରେ ଖନ୍ଦକରେ ପଡ଼ିଥିବା ମୃତ ଦେହ ସବୁ ମେହେନ୍ତରମାନେ କାଢ଼ି ଉପରକୁ ଉଠାଇ ଆଣିଲେ । ୧୭୫ଟା ମୃତ ଦେହ କଢ଼ାଗଲା ପରେ ଯେଉଁ ଲୋକଟି ପଡ଼ିଥିବାର ଦେଖାଗଲା, ମହିଳା ତାଙ୍କୁ ଦେଖି ଅତି ବିକଳ ହୋଇ ସଙ୍ଗେ ସଙ୍ଗେ ଖାତ ଭିତରକୁ ଡେଇଁ ପଡ଼ିବାକୁ ଚେଷ୍ଟା କଲେ । କୌଣସିମତେ ତାଙ୍କୁ ଅଟକାଇ ରଖାଗଲା । ସେ ଲୋକଟିକୁ ଉପରକୁ ଉଠାଇ ସାମାନ୍ୟ ଶୁଶ୍ରୂଷା କରାଗଲା ପରେ ଦେଖାଗଲା ଯେ, ସେ ଜୀବିତ ଅଛନ୍ତି । ପରେ ସ୍ୱାମୀ ଓ ସ୍ତ୍ରୀ ଉଭୟେ କିଛିଦିନ ଚିକିତ୍ସିତ ହୋଇ ଘରକୁ ଫେରି ଯାଇଥିଲେ ।

ଗୋପବନ୍ଧୁ ପ୍ରତିବର୍ଷ ଗ୍ରୀଷ୍ମ ଛୁଟିରେ ଗ୍ରାମକୁ ଯାଆନ୍ତି । ପ୍ରତିବର୍ଷ ଜ୍ୟେଷ୍ଠ ପୂର୍ଣ୍ଣିମାର ସାତ ଦିନ ପୂର୍ବରୁ ତାଙ୍କ ଠାକୁରାଣୀଙ୍କ

ମନ୍ଦିରରେ ଭାଗବତ ସପ୍ତାହ ବସେ । ଭାଗବତଘରର ଅଶ୍ୱତ୍ଥ ଗଛମୂଳରେ ଏହି ମନ୍ଦିରଟି ଅବସ୍ଥିତ । ଜଣେ ବ୍ରାହ୍ମଣ ବରଣ ହୋଇ ଭାଗବତ ପାରାୟଣ କରନ୍ତି । ଗୋପବନ୍ଧୁ ଓ ମୁଁ ଦିବସ୍ପୀ ପାଳି ଶ୍ରୋତା ଭାବରେ ପ୍ରତ୍ୟେକ ଭାଗବତ ଶୁଣୁ । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ 'ଭାଗବତ ବଡ଼ା' ହୁଏ । ସେଦିନ ଗ୍ରାମବାସୀ ଓ ଆଖପାଖ ଅଞ୍ଚଳର ପଣ୍ଡିତ ଓ ବିଶିଷ୍ଟ ବ୍ୟକ୍ତିମାନେ ନିମନ୍ତ୍ରିତ ହୋଇ ଆସି ପ୍ରସାଦ ସେବନ କରନ୍ତି । ଥରେ ଭାଗବତ ବଡ଼ା ପୂର୍ବଦିନ ସେଠାରେ ବହୁଲୋକ ରୁଣ୍ଡ ହୋଇଥିଲେ । ନଦୀ ବନ୍ଧ ଉପରେ ଗୋଟିଏ ଗୋପାଳ ନିଜ ଗାଈ ଚରାଉଥାଏ । ଗୋପବନ୍ଧୁ ଜଣେ ଲୋକ ଦ୍ୱାରା ତାକୁ ଡକାଇ ପଠାଇଲେ । ଲୋକଟି ଯାଇ କହିଲା, "ଦିଅଁ ଘରକୁ ଆସ, ଭାଗବତ ଶୁଣିବ ।" ଗୋପାଳ ଉତ୍ତରରେ କହିଲା, ସବୁଦିନ ସକାଳେ ଯେ ମୋତେ କଂସାଏ ଭାତ ଖାଇବାକୁ ଦିଅନ୍ତି, ମୋର କେବଳ ସେହି ଦିଅଁ, ଆଉ ସବୁ ମିଛ ।" ଲୋକଟିଠାରୁ ଗୋପବନ୍ଧୁ ଗୋପାଳର ଏହି ଉତ୍ତର ଶୁଣି ପ୍ରଥମେ ଟିକିଏ ହସି ଦେଲେ । ପର ମୁହୂର୍ତ୍ତରେ ଗମ୍ଭୀର ହୋଇ କହିଥିଲେ—

"କର୍ମ ମୋହର ନିଜ ଗୁରୁ, ଉଦ୍ଧବ କେତେ ତୁ ପଚାରୁ ।"
"କର୍ମ ହିଁ ଦିଅଁ । ବିନା କର୍ମରେ କିଛି ହେବ ନାହିଁ ।"

ଥରେ ଗ୍ରୀଷ୍ମଛୁଟି ପରେ ରଜ ସମୟରେ ଆମେ ଦୁହେଁ ତାଙ୍କ ଗ୍ରାମରୁ ପୁରୀ ଆସିଥିଲୁ । ବଳଭଦ୍ରପୁର ଗମ୍ଭୀର ଜମିରେ ଶ୍ରେଷ୍ଠ ଶ୍ରେଷ୍ଠ ଧାନ ଗଛଗୁଡ଼ିକ ପବନରେ ଦୋହଲି ଅତି ସୁନ୍ଦର ଦିଶୁଥାଏ । ତାକୁ ଦେଖି ଗୋପବନ୍ଧୁ ମୁଗ୍ଧ ହୋଇଗଲେ । ମୋତେ ରହିଁ କହିଲେ, "ମୁଁ କଅଣ ଭାବୁଛି ଜାଣ ? ଆମ ଦେଶରେ ସ୍ଥାନେ ସ୍ଥାନେ ସ୍କୁଲ ବସନ୍ତା । ସେ ସବୁ ସ୍କୁଲର ଏହିପରି ବହୁତ କୃଷି ଜମି ଥାଆନ୍ତା । ପିଲାମାନେ ପାଠ ପଢ଼ିବା ସଙ୍ଗେ ସଙ୍ଗେ କୃଷି କାମ କରନ୍ତେ । ସେଥିରୁ ଉତ୍ପନ୍ନ ଫସଲରେ ଖାଦ୍ୟ, ପୋଷାକ ଓ ସ୍କୁଲ ଖର୍ଚ୍ଚ ଉଠନ୍ତା । ପିଲାମାନେ ମଧ୍ୟ କୃଷି କାମ ଶିଖନ୍ତେ । ତାହେଲେ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଆସିଲା ପରେ ସେମାନେ ଆଉ ଶରୀର ଶ୍ରମକୁ ଘୃଣା କରନ୍ତେ ନାହିଁ ।" ଏହା ବୋଧହୁଏ ୧୮୯୭ ମସିହା କଥା ! ସେତେବେଳେ ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ।

୧୮୯୯ ମସିହାରେ ଗୋପବନ୍ଧୁ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଏଣ୍ଟ୍ରାନସ୍ ପାଶ କଲେ । ମୁଁ ମଧ୍ୟ ସେହି ବର୍ଷ କାବ୍ୟ ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲି । ରାମଚନ୍ଦ୍ର ଦାସ ଆମ ଦୁହିଁଙ୍କୁ ତାଙ୍କ ଆଶୀର୍ବାଦ କଲେ ଏବଂ ଖୁସି ମନରେ କହିଲେ—"ଆଜି ମୋ ମନ-କାମନା ପୂର୍ଣ୍ଣ ହେଲା । ୧୮୮୭ରୁ ଏଠାରେ ମୁଁ ମୁକ୍ତ୍ୟାର କରୁଛି । ମୋ ଅର୍ଜିତ ଧନରେ ମୁଁ ୧୮ ଗୁଣ୍ଠ ଜମି କିଣି ପକାଇ ରଖିଛି । ପ୍ରଥମେ ଭାବିଥିଲି, ଘର କରି ରହିବି । କିନ୍ତୁ ପରେ ଠିକ୍‌କଲି ଏ ପବିତ୍ର ପୀଠରେ ହିଁ ଭୁମିକୁ ଧରି ରହିବା ସଙ୍ଗତ ନୁହେଁ । ଦେଶର ଅଭାବଗ୍ରସ୍ତ ଦରିଦ୍ର ପିଲାମାନେ ଯେପରି ସୁବିଧାରେ ରହି ବିଦ୍ୟା ଶିକ୍ଷା କରିବେ—ସେଥିପାଇଁ ଏଠାରେ ଗୋଟିଏ ଛାତ୍ରାବାସ କରିବି । ଗୋପବନ୍ଧୁ ବି. ଏ., ବି. ଏଲ୍. ପାଶ୍ କରି ସମାଜସେବାରେ ଯୋଗଦେଉ—ଏହା ହିଁ ମୋର ଇଚ୍ଛା । ତୁମେ ଏ ଛାତ୍ରାବାସର ପରିଚାଳକ ହେବ । ମୁଷ୍ଟି ଭିକ୍ଷା ଆଣି ପିଲାଙ୍କ ଖର୍ଚ୍ଚ ତୁଲାଇବାକୁ ହେବ । ଅବଶ୍ୟ ଚେଷ୍ଟା କଲେ ଧନୀ, ରାଜା, ମହାରାଜାଙ୍କଠାରୁ ବହୁତ ଟଙ୍କା ମିଳିବ; ମାତ୍ର ସେ ଟଙ୍କାରେ ଅନୁଷ୍ଠାନ ଗଢ଼ିଲେ ମୋର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ନାହିଁ ।"

ସେହି ଜମିରେ ବର୍ତ୍ତମାନ ବ୍ରାହ୍ମଣ ସମିତି ଛାତ୍ରାବାସ ତିଆରି ହୋଇଛି । ୧୮୯୯ରେ ଏହା ପ୍ରଥମେ ଆରମ୍ଭ ହୋଇଥିଲା ।

୧୯୦୧ରେ ପୁରୀଠାରେ ବ୍ରାହ୍ମଣ ସମିତି ପକ୍ଷରୁ ବ୍ରାହ୍ମଣ ମହାସମ୍ମିଳନୀ ବସିଥିଲା । ସେଥିରେ ମେଦିନୀପୁର, ବାଙ୍କୁଡ଼ା, ରାୟପୁର, ଗଞ୍ଜାମ, କୋରାପୁଟ, ସମସ୍ତ ଗଡ଼ଜାତ ଓ ଓଡ଼ିଶାର ସମସ୍ତ ଜିଲ୍ଲାରୁ ୧୭ ଶହ ପ୍ରତିନିଧି ଆସି ଯୋଗ ଦେଇଥିଲେ । ତିନି ଦିନ ଯାଏ ଏ ବୈଠକ ବସିଥିଲା । ମେଦିନୀପୁରର ଜମିଦାର ଦିଗମ୍ବର ନନ୍ଦ ଏଥିରେ ସଭାପତିତ୍ୱ କରିଥିଲେ । ସେଥିରେ ପ୍ରସ୍ତାବ ହୋଇଥିଲା ଯେ, "ପ୍ରାକୃତିକ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳର ବ୍ରାହ୍ମଣମାନେ ଅନ୍ୟ ଅଞ୍ଚଳର ବ୍ରାହ୍ମଣମାନଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରନ୍ତୁ ।"

୧୯୦୩ରେ ପ୍ରଜା ପ୍ରତିନିଧି ସଭା ନାମରେ ଏକ ଅନୁଷ୍ଠାନ ଗଢ଼ା ଯାଇଥିଲା । ମଧୁବାବୁ ନିମନ୍ତ୍ରିତ ହୋଇ ସେଥିରେ ଯୋଗ ଦେଇଥିଲେ ।

ରାମଚନ୍ଦ୍ର ଦାସ ଏହି ଅନୁଷ୍ଠାନରେ ଥରେ ବକ୍ତୃତା ଦେଇ କହିଥିଲେ—"ବ୍ରାହ୍ମଣ ସମିତି, କରଣ ସମିତି, କାୟସ୍ଥ ସମିତି - ଏପରି ଭିନ୍ନ ଭିନ୍ନ ଅନୁଷ୍ଠାନ ଗଢ଼ିବାର ଉଦ୍ଦେଶ୍ୟ ନୁହେଁ ଯେ, ଦେଶର ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଉଦ୍ୟମ କରିବା । ଏହାର ଉଦ୍ଦେଶ୍ୟ ହେଉଛି, ପ୍ରଥମେ ଦଳ ଦଳ ହୋଇ ସଙ୍ଘବଦ୍ଧ ହେବା । ଗୋଟିଏ ଗୋଟିଏ ସଂଗଠନ ଦୃଢ଼ ହୋଇଗଲେ ସମସ୍ତେ ମିଳିମିଶି ଦେଶ ଓ ଜାତିର ସର୍ବବିଧ ଉନ୍ନତି ପାଇଁ ଏମାନେ ଏକ ଧ୍ୟାନରେ ଲାଗି ପଡ଼ିବେ ।"

୧୯୦୨ରେ ଗୋପବନ୍ଧୁ ବି. ଏ. ପଢ଼ୁଥିବା ସମୟରେ "କବି କଳ୍ପଲତା" ନାମରେ ଖଣ୍ଡିଏ ବଡ଼ କାବ୍ୟ ରଚନା କରିଥିଲେ । ପାଣ୍ଡୁଲିପିଟିକୁ କବିବର ରାଧାନାଥ ରାୟଙ୍କୁ ସେ ପଢ଼ିବାକୁ ଦେଇଥିଲେ । ରାଧାନାଥ ରାୟ ତାହା ପଢ଼ିସାରି ନିଜେ ପାଣ୍ଡୁଲିପିଟିକୁ ଧରି ଗୋପବନ୍ଧୁଙ୍କ ପାଖକୁ ଆସିଲେ ଏବଂ କହିଲେ, "ଗୋପବନ୍ଧୁ ! ତୁମ ଲେଖା ପଢ଼ି ମୁଁ ବଡ଼ ପ୍ରୀତ ହେଲି । ତୁମର ଏ ରଚନା ଅନ୍ତଃନିସୃତ । ଏଭଳି ଲେଖା ମୁଁ ଆଉ ଦେଖି ନ ଥିଲି ।" ଏହି "କବି କଳ୍ପଲତା" ପାଣ୍ଡୁଲିପିଟି ଗୋପବନ୍ଧୁ ରେଳଯାତ୍ରା ସମୟରେ ଗାଡ଼ିରେ କେଉଁଠାରେ ହଜାଇ ଦେଇଥିଲେ । ତାହାପରେ ବ୍ୟସ୍ତ ହୋଇ କହି ପକାଇଥିଲେ, "ବୋଧହୁଏ ମୁଁ କବିତା ଲେଖିବି—ଏହା ବିଧାତାଙ୍କର ଇଚ୍ଛା ନୁହେଁ । ମୁଁ ଆଉ ଲେଖା ଲେଖି କରିବି ନାହିଁ ।"

ଏହି ସମ୍ପର୍କରେ ଆଉ ଗୋଟିଏ କଥା ମନେ ପଡ଼ୁଛି । 'ମୁକୁର'ରେ ଗୋପବନ୍ଧୁଙ୍କର ଗୋଟିଏ କବିତା ପ୍ରକାଶ ପାଇଥାଏ । ତା'ର ଗୋଟିଏ ପଦ—

"ଅବନ୍ଧୁ ଜୀବନ ଅସୂର୍ଯ୍ୟ ମହୀ,
ଦେହ ଧରି କିଏ ପାରିବ ସହି ।"

କବିବର ରାଧାନାଥ ମୁକୁର ଖଣ୍ଡି ହାତରେ ଧରି ସନ୍ଧ୍ୟା ସମୟରେ ଗୋପବନ୍ଧୁଙ୍କ ବସାରେ ଆସି ପହଞ୍ଚିଲେ ଏବଂ କାଠଯୋଡ଼ି

ସ୍କୁଲକୁ ତାଙ୍କ ସହିତ ବୁଲାଯିବା ପାଇଁ ଡାକିଲେ । ବାଟରେ ଗୋପବନ୍ଧୁଙ୍କୁ କୁଣ୍ଢାଇ ପକାଇ କହିଲେ, "ମୁଁ ଏତେ ଦିନେ କବିତା ଭଳି ଗୋଟିଏ କବିତା ପଢ଼ିବାକୁ ପାଇଲି ।" ସେହିଦିନୁ ଅନେକ ଥର ସେ ଗୋପବନ୍ଧୁଙ୍କ ବସାକୁ ଆସି ନଈକୂଳରେ ବୁଲିବା ପାଇଁ ତାଙ୍କୁ ସଙ୍ଗରେ ଡାକି ନେଉଥିଲେ ଓ ତାଙ୍କ ସହିତ ସାହିତ୍ୟ ସମ୍ପର୍କରେ ନାନା ଆଲୋଚନା କରୁଥିଲେ ।

୧୯୦୨ରେ ବ୍ରହ୍ମପୁରଠାରେ ଗଞ୍ଜାମ ଜିଲ୍ଲା ସମ୍ମିଳନୀ ବସିଲା । ହରଡ଼ାଖଣ୍ଡି ନିବାସୀ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ ସଭାପତିତ୍ୱ କରିଥିଲେ । ମୁକ୍ତାର ରାମଚନ୍ଦ୍ର ଦାସ ସେଠାରେ ପ୍ରସ୍ତାବ କଲେ ଯେ, "ସମଗ୍ର ଓଡ଼ିଶାର ସବୁ ସମ୍ପ୍ରଦାୟର ଲୋକଙ୍କୁ ନେଇ ଗୋଟିଏ ସମ୍ମିଳନୀ ହେଉ; ସେଥିରେ ରାଜନୀତି ଚର୍ଚ୍ଚାକୁ ମୁଖ୍ୟ ସ୍ଥାନ ଦିଆଯାଉ । ଏଥିପାଇଁ ମଧୁସୂଦନ ଦାସ ଉପଯୁକ୍ତ ବ୍ୟକ୍ତି, ତାଙ୍କୁ ତୁରନ୍ତ ଡକାଯାଉ ।"

ସେହି ପ୍ରସ୍ତାବ ଅନୁସାରେ ଦ୍ୱିତୀୟ ଦିନ ମଧୁବାବୁ ଯାଇ ସେଠାରେ ପହଞ୍ଚିଥିଲେ । ତାହାହିଁ ଉତ୍କଳ ସମ୍ମିଳନୀର ଭିତ୍ତିସ୍ଥାପନ । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନଠାରୁ ୧୯୦୮ ମସିହା ଅଧିବେଶନ ପର୍ଯ୍ୟନ୍ତ ସମ୍ମିଳନୀର ଯେତେ ବିବରଣୀ ଛପା ଯାଇଛି, ସେଥିରେ ଅଛି 'ପ୍ରତିଷ୍ଠାତା ରାମଚନ୍ଦ୍ର ଦାସ' । ୧୯୦୯ ମସିହାର ବିବରଣୀରେ ତାଙ୍କ ନାମ ନ ଥିବାରୁ ମଧୁବାବୁ ଉଦ୍ୟୋକ୍ତା ଓ ସମ୍ପାଦକଙ୍କ ଉପରେ ଘୋର ବିରକ୍ତି ପ୍ରକାଶ କରିଥିଲେ ।

ସେହି ୧୯୦୨ରେ ରମ୍ଭା ସମ୍ମିଳନୀ ରମ୍ଭାଠାରେ ଖଲ୍ଲିକୋଟ ରାଜନବରରେ ଅନୁଷ୍ଠିତ ହୋଇଥିଲା । ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଏଥିରେ ସଭାପତିତ୍ୱ କରିଥିଲେ । ସମ୍ମିଳନୀର ପ୍ରଧାନ ଉଦ୍ୟୋକ୍ତା ଓ ପରିଚାଳକ ରାମଚନ୍ଦ୍ର ଦାସ ଓ ଗୋପବନ୍ଧୁ । 'ପ୍ରଜାବନ୍ଧୁ'ର ସମ୍ପାଦକ ମାଳମତି ବିଦ୍ୟାରତ୍ନ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ ।

୧୯୦୬ରେ ଗୋପବନ୍ଧୁ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେହି ବର୍ଷ ଜୁଲାଇ ୩୧ ତାରିଖ ଶ୍ରାବଣ ଶୁକ୍ଳ ଝୁଲଣ ଏକାଦଶୀରେ

ମୁକ୍ତାର ରାମଚନ୍ଦ୍ର ଦାସ ଦେହତ୍ୟାଗ କରିଥିଲେ । ତା'ର ଅଳ୍ପଦିନ ପୂର୍ବରୁ ବାଲେଶ୍ୱରରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ଯୋଗଦେବାକୁ ସେ ଯାଇଥିଲେ । ସେ ସେତେବେଳେ ଏତେ ଦୁର୍ବଳ ହୋଇ ପଡ଼ିଥିଲେ ଯେ, ଦୁଇ ଜଣ ତାଙ୍କୁ ଧରି ମଣ୍ଡପରେ ଠିଆ କରାଇବାରୁ ସେ ବକ୍ତୃତା ଦେଲେ । ତାହାପରେ ଘରକୁ ଫେରି ଆସିଥିଲେ ।

୧୯୦୬ରେ କଲିକତାରେ କଂଗ୍ରେସ ଅଧିବେଶନ ଦାଦାଭାଇ ନାଓରୋଜିଙ୍କ ନେତୃତ୍ୱରେ ବସିଥିଲା । ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ସାଧୁଚରଣ ମହାନ୍ତି, ବୈଦ୍ୟନାଥ ମିଶ୍ରଙ୍କ ପିତା ସିଦ୍ଧେଶ୍ୱର ମିଶ୍ର ପ୍ରଥମ ହୋଇ ଏହି କଂଗ୍ରେସରେ ଯୋଗ ଦେଇଥିଲେ । ସେହି ବର୍ଷଠାରୁ ଗୋପବନ୍ଧୁ ବରାବର କଂଗ୍ରେସ ଅଧିବେଶନରେ ଯୋଗଦେବାକୁ ଯାଉଥିଲେ ।

ଗୋପବନ୍ଧୁ କେତେଦିନ ନୀଳଗିରି ହାଇସ୍କୁଲର ପ୍ରଧାନ ଶିକ୍ଷକ ହୋଇଥିଲେ । ଦେଶରେ ଶିକ୍ଷା ବିସ୍ତାର ଓ ପ୍ରକୃତ ମନୁଷ୍ୟ ଗଠନ ତାଙ୍କର ଏ କାର୍ଯ୍ୟ ଗ୍ରହଣର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେହିଠାରେ ସେ ମୁକ୍ତାର ରାମଚନ୍ଦ୍ର ଦାସଙ୍କ ତିରୋଧାନ ସମ୍ବାଦ ପାଇ ମର୍ମାହତ ହୋଇ ପଡ଼ିଥିଲେ ।

ଗୋପବନ୍ଧୁ ନୀଳଗିରିରେ ମାତ୍ର ୩।୪ ମାସ ରହି କଟକ ଚାଲି ଆସିଲେ ଏବଂ ଏଠାରେ ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀଙ୍କ ପିତା ଗୋକୁଳାନନ୍ଦ ଚୌଧୁରୀଙ୍କ ପାଖରେ ରହି ଓକିଲାତି କଲେ । ୧୯୦୭ ମସିହାରେ ପୁରୀ ଯାଇଁ ସେଠାରେ ରହିଲେ । ସେ ସମୟରେ ସ୍ୱର୍ଗୀୟ ଜଗବନ୍ଧୁ ସିଂହ ମଧ୍ୟ କଟକରୁ ଯାଇ ପୁରୀରେ ଓକିଲାତି ଆରମ୍ଭ କରିଥାନ୍ତି । ମୁକ୍ତାର ରାମଚନ୍ଦ୍ର ଦାସ ଏ ଦୁହିଙ୍କଠାରୁ ବହୁତ ଆଗରୁ ଶପଥ କରାଇ ନେଇଥିଲେ ଯେ, ଯେଉଁ ପକ୍ଷ ପ୍ରକୃତ ସତକଥା କହିବ, ସେ କଚେରୀରେ ତା'ର ପକ୍ଷ ଗ୍ରହଣ କରିବେ । ଉଭୟେ ତାଙ୍କ କାର୍ଯ୍ୟକାଳ ମଧ୍ୟରେ ଏହି ଶପଥ ପୂରାପୂରି ପାଳନ କରି ଚାଲିଥିଲେ ।

୧୯୦୯ ମସିହାରେ ଗୋପବନ୍ଧୁ ପୁଣି କଟକ ଫେରି ଆସିଥିଲେ ଓ ମଧୁବାବୁଙ୍କ ପାଖରେ ରହି ଓକିଲାତି କଲେ ।

ଉତ୍କଳ ସମ୍ମିଳନୀରେ ଆଗତ ଗୋଟିଏ ପ୍ରସ୍ତାବ ଉପରେ ପ୍ରଥମେ ମଧୁବାବୁ ଓ ଗୋପବନ୍ଧୁ ବାବୁଙ୍କ ମଧ୍ୟରେ ମତଭେଦ ଦେଖା ଦେଇଥିଲା । ସେତେବେଳେ ବଙ୍ଗ-ବିହାର-ଓଡ଼ିଶା ଗୋଟିଏ ପ୍ରଦେଶ ହୋଇ ରହିଥିଲା । ଓଡ଼ିଶା ବଙ୍ଗଳା ସହିତ ଯେପରି ଅଛି ସେହିପରି ମିଶି ରହୁ ବୋଲି ମଧୁବାବୁ, ବିଶ୍ୱନାଥ କର ପ୍ରମୁଖ ଯୁକ୍ତି କରିଥିଲେ । ଗୋପବନ୍ଧୁଙ୍କ ମତ ଓଡ଼ିଶା ବଙ୍ଗଳା ସହିତ ରହି ନିଜର ସତ୍ତା ହରାଇବାକୁ ବସିଲାଣି, ଏହା ବରଂ ମଧ୍ୟ ପ୍ରଦେଶ ସହିତ ଯୁକ୍ତ ହେଉ । ଏହି ପ୍ରସ୍ତାବ ଉପରେ ବହୁସମୟ ଧରି ବାଦପ୍ରତିବାଦ ଚାଲିଥିଲା ଓ ଅଧିକ ଭୋଟ ହେବାରୁ ମଧୁବାବୁଙ୍କ ପ୍ରସ୍ତାବ ଗୃହୀତ ହୋଇଗଲା । ଗୋପବନ୍ଧୁ ସେଦିନ ରାତିରେ ନିଜର ଯୁକ୍ତି ଦର୍ଶାଇ ଚାରି ପୃଷ୍ଠାବିଶିଷ୍ଟ ଏକ ନିବେଦନ ପତ୍ର ଲେଖି ତାହା ଛପାଇଥିଲେ ଓ ପରଦିନ ଉତ୍କଳ ସମ୍ମିଳନୀରେ ତାହା ବଣ୍ଟାଗଲା । ଗୋପବନ୍ଧୁ ସମ୍ମିଳନୀ ପାଇଁ ଲିଖିତ ତାଙ୍କ ସଙ୍ଗୀତରେ ଲେଖିଥିଲେ "ଭାରତର ମହାସମ୍ମେଳନରେ ଓଡ଼ିଶା ମିଶୁ" । ତାଙ୍କର ଏ ସଙ୍ଗୀତ ଓ ନିବେଦନ ପତ୍ରରେ ବିଚଳିତ ହୋଇ ବିଶ୍ୱନାଥ କର, ଶଶିଭୂଷଣ ରଥ ପ୍ରମୁଖ ମଧୁବାବୁଙ୍କ ନିର୍ଦ୍ଦେଶରେ "ଜ୍ଞାନାଞ୍ଜନ ଶଳାକା" ନାମକ ଏକ ପ୍ରଶ୍ନପତ୍ର ବାଣ୍ଟିଲେ । ତାର ଉତ୍ତର 'ସତ୍ୟ ମୁଦ୍‌ଗର' ନାମରେ ପ୍ରଚୁର ପୁସ୍ତିକାରେ ଦିଆଯାଇଥିଲା ଏବଂ ଏହା ଲେଖିଥିଲେ ନିଜେ ଗୋପବନ୍ଧୁ ।

ସେ ସମୟରେ ଉଏଲସ୍ ନାମକ ଜଣେ ବିଦ୍ୱାନ୍ ପାଦ୍ରୀ କଟକରେ ଥିଲେ । ସେ ଗୋପବନ୍ଧୁଙ୍କ ମତକୁ ସମର୍ଥନ କରି ତାଙ୍କୁ ଉତ୍ସାହିତ କରୁଥିଲେ ।

୧୯୧୨ ମସିହାରେ ଯେତେବେଳେ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା, ସେତେବେଳେ ମଧୁବାବୁ ପ୍ରମୁଖ ଏକ ସାଧାରଣ ସଭାରେ ତାକୁ ସ୍ୱାଗତ ଜଣାଇଥିଲେ । ଗୋପବନ୍ଧୁ ତା'ର ପ୍ରତିବାଦ କରି କହିଥିଲେ, "ଓଡ଼ିଶା ସବ୍-ପ୍ରଭିନ୍ସ (Sub Porvince) ହେଲା ନାହିଁ ଯେ, 'ଶବ ପ୍ରଦେଶ' ହେଲା । ସରକାର ଓଡ଼ିଆ ଜାତିକୁ ଗୋଟିଏ ଫେଣ୍ଡୁ କରି ରଖିଛନ୍ତି; ଯେତେବେଳେ ଯେଉଁ ପାଖକୁ ଇଚ୍ଛା ଗୋଡ଼ରେ ଗଡ଼ାଇ ଦେଉଛନ୍ତି ।"

୧୯୦୦ ଖ୍ରୀଷ୍ଟାବ୍ଦରେ ମୁକ୍ତାର ରାମଚନ୍ଦ୍ର ଦାସ, ଗୋପବନ୍ଧୁ ଓ ମୁଁ ଶ୍ରୀରାମଚନ୍ଦ୍ରପୁରକୁ ଯାଉଥିଲୁ । ସେଠାରେ ପଣ୍ଡିତ ହରିହର ଦାଶ ଶାସ୍ତ୍ରୀଙ୍କ ସ୍କୁଲ ସଙ୍ଗ ହେବାର ଥିଲା । ଆଉ ମଧ୍ୟ ବ୍ରାହ୍ମଣ ସମିତି ଗୃହାବାସ ପାଇଁ ମୁଷ୍ଟିଭିକ୍ଷା ସଂଗ୍ରହ କରିବା ଆମର ଲକ୍ଷ୍ୟ ଥିଲା । ସାକ୍ଷୀଗୋପାଳ ମନ୍ଦିର ପଛରେ ବିରାଟ ବକୁଳବନ ଦେଖି ମୁକ୍ତାର ମୁଗ୍ଧ ହୋଇଗଲେ । ମୁହୂର୍ତ୍ତେ ସେଠାରେ ଠିଆ ହୋଇଯାଇ କହିଲେ, "ଏହା ଏକ ସିଦ୍ଧାଶ୍ରମ । ଏଠାରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିଯିବା ଉଚିତ ।"

ସତ୍ୟବାଦୀ ସ୍କୁଲ ପ୍ରଥମେ ୧୯୦୯ ମସିହାରେ ପ୍ରତିଷ୍ଠା କରାଗଲା । ଶ୍ରୀରାମଚନ୍ଦ୍ରପୁରରେ ଥିବା ଉଚ୍ଚ ପ୍ରାଥମିକ ସ୍କୁଲକୁ ମଧ୍ୟଇଂରାଜୀ ସ୍କୁଲରେ ପରିଣତ କରାଯାଇ ପାରିଥିଲା । ତାକୁ ହିଁ ସତ୍ୟବାଦୀକୁ ଉଠାଇ ଅଣାଯାଇଥିଲା । ସ୍କୁଲ ପ୍ରତିଷ୍ଠା ଦିନ ସାକ୍ଷୀଗୋପାଳଠାରେ ଯେଉଁ ଉତ୍ସବ ଅନୁଷ୍ଠିତ ହୋଇଥିଲା, ସେଥିରେ ପୁରୋଧା ହୋଇଥିଲେ ସ୍ୱର୍ଗୀୟ ବ୍ରଜସୁନ୍ଦର ଦାସ ।

କେଉଁ ସ୍ଥାନରେ ସ୍କୁଲ ପ୍ରତିଷ୍ଠା କରାଯିବ, ସେଥିପାଇଁ ଆଗରୁ ଶ୍ରୀରାମଚନ୍ଦ୍ରପୁର ଓ ବିଶ୍ୱନାଥପୁର ଗ୍ରାମବାସୀଙ୍କ ମଧ୍ୟରେ ଟିକିଏ ଟଣାଓଟରା ଲାଗିଥିଲା । ବିଶ୍ୱନାଥପୁରବାସୀ କହୁଥିଲେ, ବଜାର ନିକଟରେ ରାସ୍ତା କଡ଼ରେ (ବର୍ତ୍ତମାନ ଯେଉଁଠାରେ ଡାକ୍ତରଖାନା ଅଛି) ସ୍କୁଲ କରାଯାଉ; ଶ୍ରୀରାମଚନ୍ଦ୍ରପୁରର ଲୋକେ ଏଥିରେ ଏକମତ ହୋଇପାରୁ ନ ଥିଲେ ।

ସ୍କୁଲ ଇନ୍‌ସ୍‌ପେକ୍ଟର ମଧୁସୂଦନ ରାଓ ସେହି ସମୟରେ ସ୍କୁଲ ପରିଦର୍ଶନ କରିବାକୁ ଆସିଥିଲେ । ଗୋପବନ୍ଧୁ, ନୀଳକଣ୍ଠ ଓ ଆଚାର୍ଯ୍ୟ ହରିହର ତାଙ୍କ ସଙ୍ଗେ ସଙ୍ଗେ ରହିଥାନ୍ତି । ସ୍କୁଲର ସ୍ଥାନ ନିରୂପଣ ସମ୍ପର୍କରେ ତାଙ୍କୁ ପ୍ରଶ୍ନ ହେବାରୁ ସେ ମନ୍ଦିର ପଛପାଖ ବକୁଳ ଛୁରିଅନା କୁଞ୍ଜକୁ ଉପଯୁକ୍ତ ସ୍ଥାନ ବୋଲି ମତ ଦେଲେ ଏବଂ ତାହା ବିଶ୍ୱନାଥପୁର, ଶ୍ରୀରାମଚନ୍ଦ୍ରପୁର ଲୋକେ ବିନା ଦ୍ୱିଧାରେ ଗ୍ରହଣ କରିନେଲେ । ତାହାପରେ ସେଠାରେ ସ୍କୁଲ ନିର୍ମାଣର ଦାୟିତ୍ୱ ସ୍ୱର୍ଗତ ବିହାରୀ ହୋତାଙ୍କ ଉପରେ ନ୍ୟସ୍ତ କରାଗଲା ।

ସ୍କୁଲ ହାଇସ୍କୁଲ ଗୋଟାଏ ଉଠି ଆସିଲା । ପରେ ବିଶ୍ୱନାଥପୁରର ସ୍ୱର୍ଗୀୟ ଗୋପୀନାଥ ମିଶ୍ର ପ୍ରଥମ ପ୍ରଧାନ ଶିକ୍ଷକ ଓ ପଣ୍ଡିତ ଆର୍ତ୍ତତ୍ରାଣ ଦାସ ପ୍ରଥମ ସଂସ୍କୃତ ପଣ୍ଡିତ ହୋଇଥିଲେ ।

ପୁରୀରେ ଥିବାବେଳେ ଛାତ୍ରାବସ୍ଥାରେ ଏବଂ ଛାତ୍ରଜୀବନ ପରେ ପରେ ସାଂସାରିକ ଜୀବନର ପ୍ରାରମ୍ଭରେ ଗୋପବନ୍ଧୁ ଯେଉଁମାନଙ୍କୁ ଗୁରୁ, ହିତୈଷୀ, ବନ୍ଧୁ, ସଖା ଓ ସହୋଦର ରୂପେ ପାଇଥିଲେ ଏବଂ ଯେଉଁମାନଙ୍କ ସ୍ନେହ ସୌହାର୍ଦ୍ଦ୍ୟ ତାଙ୍କ ଜୀବନକୁ ଉଚ୍ଛ୍ୱସିତ ଓ ଉଦ୍ଦୀପିତ କରିଥିଲା, ସେଥିଭିତରୁ ଜଣେ ସମଦୁଃଖୀ ସାଥୀ ପଣ୍ଡିତ ବାସୁଦେବ ରଥ କାବ୍ୟତୀର୍ଥଙ୍କ ସ୍ମୃତି ଭଣ୍ଡାରରୁ ଯେଉଁ କେତେଗୁଡ଼ିଏ ଅତି ହୃଦୟସ୍ପର୍ଶୀ ଘଟଣାବଳୀ ଓ ଉତ୍କଳରେ ଜାତୀୟ ଜୀବନ ଉନ୍ମେଷର ସୁଖଦୁଃଖ କାହାଣୀ ସଂଗୃହୀତ ହୋଇଥିଲା, ତାହା ଏଠାରେ ପ୍ରକାଶ କରାଯାଇଛି । ଏଭଳି ଅନ୍ୟାନ୍ୟ କେତେକ ବନ୍ଧୁ ଓ ସଖାଙ୍କଠାରୁ ମଧ୍ୟ ବହୁ ପ୍ରାଣସ୍ପର୍ଶୀ ଘଟଣାବଳୀ ସଂଗୃହୀତ କରାଯାଇଛି ଓ କରାଯାଉଛି । ଗୋପବନ୍ଧୁ ବାବୁ ବଡ଼ ବନ୍ଧୁପ୍ରିୟ ଥିଲେ । ମଧୁବାବୁ ତାଙ୍କଠାରୁ ବୟସରେ ଯଥେଷ୍ଟ ବଡ଼ । ତାଙ୍କ ସହିତ ତାଙ୍କର ପ୍ରଗାଢ଼ ଭକ୍ତିପୂର୍ଣ୍ଣ ବନ୍ଧୁତା ଥିଲା । ସେହିଭଳି ତାଙ୍କର ଶିକ୍ଷାଗୁରୁ ପୁରୀର ଶିକ୍ଷକ ସ୍ୱର୍ଗୀୟ ହରିବଂଶ ମିଶ୍ରଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ଭକ୍ତି ଥିଲା । ପଣ୍ଡିତ ବାସୁଦେବଙ୍କଠାରୁ ସଂଗୃହୀତ କେତେକ ବିଷୟ ଉପରେ ଉଲ୍ଲିଖିତ ହୋଇଛି । ବନ୍ଧୁପ୍ରେମୀ ଗୋପବନ୍ଧୁ ବନ୍ଧୁଭାବରେ କିପରି ମୁଗ୍ଧ ଓ ବନ୍ଧୁ ବିୟୋଗରେ କିପରି ମର୍ମାହତ ହୁଅନ୍ତି, ତା'ର ଗୋଟିଏ ନିଦର୍ଶନ ଦିଆଯାଉଛି । ହଜାରିବାଗ ଜେଲରେ ଥିବାବେଳେ ଶିକ୍ଷାଗୁରୁ ହରିବଂଶଙ୍କ ପରଲୋକରେ କବିତାର ମୂର୍ଚ୍ଛନାରେ ତାଙ୍କ ପ୍ରତି ନିଜର ଅଶ୍ରୁତର୍ପଣ । ତାଙ୍କ ବିୟୋଗ ବାର୍ତ୍ତା ଶୁଣି ଗୋପବନ୍ଧୁ ଲେଖିଥିଲେ—

"ତରୁଣ ବୟସେ ଯେବେ ବସି ତବ ପାଶେ
ଲଭିଥିଲି ଜ୍ଞାନାଲୋକ ପ୍ରଥମ ସଞ୍ଚାର,
ସେହିକଥା ଏଯାଏ ସବୁ ସ୍ମୃତି ମନେ ଆସେ
ଶୁଣି ଆଜ ତବ ମୃତ୍ୟୁ ଶୋକ-ସମାଚାର ।

ଭାଗ୍ୟ ହେଲନାହିଁ ତବ ରୁଚି ଅନୁକୂଳ
ଜାଣେ ମୁଁ କାଟିଛ କାଳ ଚିର ହାହାକାରେ,
ଜୀବନର କର୍ମକ୍ଷେତ୍ରେ ସତତ ବ୍ୟାକୁଳ
ପାଇନାହିଁ ସୁଖଶାନ୍ତି କ୍ଷଣେ ପରିବାରେ ।
ଦେଖିଛୁ ଅନ୍ତରେ ତବ ଥିଲ ଅଗ୍ନିକଣା
ଜଳଥାନ୍ତା ଲଗିଥିଲେ ଯଥାକାଳେ ବାୟୁ,
କୁହୁଳ କୁହୁଳ ତାହା ଲଭିଲ ଅଜଣା
ନିରାଶାର ଉଷ୍ଣଶ୍ୱାସେ ତରଳିଲ ବାୟୁ ।
କିପାଇଁ ପ୍ରଗାଢ଼ ସ୍ନେହ ଆଦର ବିଶ୍ୱାସ
ପୋଷିଥିଲ ନିରନ୍ତର ଅନ୍ତରେ ମୋ ପ୍ରତି,
ଅନ୍ତିମ ମୁହୂର୍ତ୍ତେ ମୋର ଦୂର କାରାବାସ
ସୁମରି ମରଣ ବ୍ୟଥା ପାଇଥିବ ଅତି !

+ + +

ଅଳପ ବୟସେ ମୋର ବହୁ ଅନୁଭବ
ହୃଦ-ନିଷ୍ପେଷିତ ମୋର ବିରହ କଷଣେ,
ତୁଟିଛି ମୋ କଳ୍ପନାର ବିଳାସ-ବୈଭବ
ଦେଖେ ମୁଁ ଜୀବନ ଗତି ବାସ୍ତବ-ନୟନେ ।
ତୃଣ ଫେନ ଯଥା ମହା ସାଗର ତରଙ୍ଗେ
ଭାସି ଆସି କ୍ଷଣେ ମିଳି ହୁଏ ଅନ୍ତର୍ହିତ,
ପିତାପୁତ୍ର ପତିପତ୍ନୀ ମିଳି ଏକ ସଙ୍ଗେ
କାଳସ୍ରୋତେ କାହିଁ ପୁଣି ଚଳନ୍ତି ଭ୍ରମିତ !
ଏହି କି ପ୍ରଣୟ ଗତି, ଏହି ପରିଣାମ ?
ଅପାର ଜୀବନ ସ୍ରୋତେ ମୁହୂର୍ତ୍ତେ ମିଳନ ?
ଭେଟ ସ୍ଥାନ ଏକମାତ୍ର କ୍ଷୁଦ୍ର ଧରାଧାମ ?
ତେବେ କିମ୍ପା ଏ ମମତା ଏତେ ଆୟୋଜନ ?

+ + +

ଚିତାନଳେ ଭସ୍ମ ନୁହେଁ ସେନେହ-ବନ୍ଧନ
ଶ୍ମଶାନ ନୁହେଁ ଏ ଜୀବ ଶେଷ ପରିସୀମା,
କେବେ କାହିଁ ହେବ ନଷ୍ଟେ ଶୁଭ ସମ୍ମିଳନ
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ-ମାଧୁରିମା ।"

ଆଜି ପୁଣ୍ୟାତ୍ମା ଗୋପବନ୍ଧୁ ନାହାନ୍ତି, ପଣ୍ଡିତ ବାସୁଦେବ ନାହାନ୍ତି, ଶିକ୍ଷାଗୁରୁ ହରିସିଂହ ଓ କର୍ମଗୁରୁ ରାମଚନ୍ଦ୍ର କି ମଧୁବାବୁ ନାହାନ୍ତି । କିନ୍ତୁ ଏମାନଙ୍କ ଭିତରେ ଥିବା ପ୍ରଗାଢ଼ ବନ୍ଧୁତ୍ୱ ଓ ଜୀବନ-ବ୍ୟାପୀ ସ୍ନେହ ମମତା ଏବେ ମଧ୍ୟ ସେମାନଙ୍କର ପବିତ୍ର ସ୍ମୃତିକୁ ଚିର ଜାଗ୍ରତ କରି ରଖିଛି । ସେମାନେ ଇହଧାମରୁ ଚାଲିଯାଇଛନ୍ତି ସତ; କିନ୍ତୁ ଗୋପବନ୍ଧୁଙ୍କ ଭାଷାରେ ଆଜି ଏମାନଙ୍କର ସ୍ୱର୍ଗଧାମରେ ଶୁଭ ମିଳନ ଘଟିଥିବ ଏବଂ ଏ ଅବକାଶରେ ଇହଲୋକ ଓ ପରଲୋକରେ ତାଙ୍କର ସେହି ଆଶାବାଣୀ ଏବେ ହୃଦୟତନ୍ତ୍ରୀରେ ନିନାଦିତ ହୋଇଥିବ –

"ଚିତାନଳେ ଭସ୍ମ ନୁହେଁ ସେନେହ-ବନ୍ଧନ
ଶ୍ମଶାନ ନୁହେଁ ଏ ଜୀବ ଶେଷ ପରିସୀମା,
କେବେ କାହିଁ ହେବ ନଷ୍ଟେ ଶୁଭ ସମ୍ମିଳନ
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ-ମାଧୁରିମା ।"

[ 'ସମାଜ' ସୌଜନ୍ୟରୁ ]



# ଉତ୍କଳମଣିଙ୍କ ଜୀବନର ଏକ ମହାନ୍ ଅଧ୍ୟାୟ

## ଉତ୍କଳ ସମ୍ମିଳନୀ

—ଅଧ୍ୟାପକ ଶ୍ରୀ ଚନ୍ଦ୍ରମଣି ଦାସ, ଏମ୍. ଏ.

[ ସତ୍ୟବାଦୀ ବନବିଦ୍ୟାଳୟର ପୂର୍ବତନ ଛାତ୍ର, ଖଲ୍ଲିକୋଟ କଲେଜର ମୁଖ୍ୟ ଓଡ଼ିଆ ଅଧ୍ୟାପକ ଶ୍ରୀଯୁକ୍ତ ଦାଶଙ୍କର ସାହିତ୍ୟ ସେବାର ଶୁଭାରମ୍ଭ ହୁଏ ଉପନ୍ୟାସ ରଚନାରେ । ଉପନ୍ୟାସ, ଗଳ୍ପ, ଅନୁବାଦ, ଜୀବନୀ ଓ ଶିଶୁ ସାହିତ୍ୟ ସ୍ତର ଅତିକ୍ରମ କରି ବର୍ତ୍ତମାନ ସେ ଜଣେ ସୁ-ପ୍ରତିଷ୍ଠିତ ସମାଲୋଚକ । 'ଉଷା', 'ସୁରେଖା' ପ୍ରଭୃତି ଉପନ୍ୟାସ, 'ଜୀବନୀ କଥା', 'ବଡ଼ ମଣିଷଙ୍କ ପିଲାଦିନ', 'ଇତିହାସ' ପ୍ରସୂନ', 'ଆମ ଦେଶର କବି', 'କବି ଗୋଦାବରୀଶ', 'କବି ଗୋପବନ୍ଧୁ', ସାହିତ୍ୟ ସାଧକ ଫକୀର ମୋହନ', 'ଐତିହାସିକ କୃପାସିନ୍ଧୁ' ପ୍ରଭୃତି ବହୁ ଅମୂଲ୍ୟ ଗ୍ରନ୍ଥ ସାହିତ୍ୟ ଭଣ୍ଡାରକୁ ତାଙ୍କର ଅନୁପମ ଦାନ । ଆଲୋଚ୍ୟ ପ୍ରବନ୍ଧରେ ଅଧ୍ୟାପକ ଶ୍ରୀ ଦାଶ ପରାଧୀନ ଓଡ଼ିଶାରେ ଉତ୍କଳ ସମ୍ମିଳନୀର ଭୂମିକା ତଥା ଗୋପବନ୍ଧୁଙ୍କ ମହାଭାରତୀୟ ଭାବର ଏକ ତଥ୍ୟମୂଳକ ଆଲୋଚନା ଉପସ୍ଥାପନ କରିଛନ୍ତି—ସଂ ]

୧୯୦୩ଠାରୁ ୧୯୨୧ରେ କଂଗ୍ରେସର ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ଯୋଗ ଦେବା ପର୍ଯ୍ୟନ୍ତ ଉତ୍କଳ-ସମ୍ମିଳନୀ ଥିଲା ନିଃସ୍ୱାର୍ଥ, ନିରାଡ଼ମ୍ବର ଓ ଉଦାର ଜାତୀୟଭାବାପନ୍ନ ଗୋପବନ୍ଧୁଙ୍କର ପ୍ରାଣ-ପିଣ୍ଡ,

ଜୀବନର ପ୍ରଶସ୍ତ କର୍ମକ୍ଷେତ୍ର ଓ ଲୋକସେବାର ପ୍ରକୃଷ୍ଟ ମାଧ୍ୟମ । ଗୋପବନ୍ଧୁଙ୍କ ପ୍ରତି ଉତ୍କଳ-ସମ୍ମିଳନୀ କେବଳ ଗୋଟିଏ ଜାତୀୟ ମିଳନ-ମଣ୍ଡପ ନ ଥିଲା, ତାଙ୍କ ପ୍ରତି ଏ ସମ୍ମିଳନୀ ଥିଲା ମହାଭାରତୀୟ ଭାବର ଅଦମ୍ୟ ପ୍ରେରଣାର ଅଫୁରନ୍ତ ଉତ୍ସ । ଉତ୍କଳ-ସମ୍ମିଳନୀର ବିଭିନ୍ନ ଅଧିବେଶନରେ ସେ ଯେଉଁ ଅଭିଭାଷଣମାନ ଦେଇଅଛନ୍ତି, କିମ୍ବା ଉତ୍କଳ-ସମ୍ମିଳନୀର କାର୍ଯ୍ୟ କଳାପ ଓ ଭବିଷ୍ୟତ ସମ୍ବନ୍ଧରେ ନିଜର ମନ୍ତବ୍ୟ ଏବଂ ସୁଚିନ୍ତିତ ଯୋଜନା ଉପସ୍ଥାପିତ କରିଅଛନ୍ତି, ସେଥିରୁ କେବଳ ତାଙ୍କର ଲୋକସେବା କିମ୍ବା ଦେଶହିତୈଷିଣାର ପରିଚୟ ମିଳେ ନାହିଁ, ମିଳେ ତାଙ୍କର କବିଜନସୁଲଭ ଭାବାବେଗ, ଦେଶ ଓ ଦଶ ପାଇଁ ତାଙ୍କ ପ୍ରାଣର ଗଭୀର ସ୍ପନ୍ଦନ, ସୁ-ଗଭୀର ଆଦର୍ଶନିଷ୍ଠା, ଅଚଳ ଅଟଳ ଧର୍ମବୋଧ ଏବଂ ତାଙ୍କର ଅପୂର୍ବ ଲିଖନଶୈଳୀ ଓ ଅଦ୍ୱିତୀୟ ବାଗ୍ମିତା । ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ଚିରନ୍ତନ ଏବଂ ଯୁଗ ଯୁଗ ଧରି ଆମ୍ଭମାନଙ୍କୁ ତାହା ଉଦାର ମାନବିକତାରେ ଉଦ୍‌ବୁଦ୍ଧ କରୁଥିବ । ଏଗୁଡ଼ିକ 'ଗୋପବନ୍ଧୁ-ଉପନିଷଦ'ର ମର୍ମବାଣୀ ।

୧୯୦୩ରେ ସର୍ବପ୍ରଥମେ ଗଞ୍ଜାମରେ ଜାତୀୟ ସମିତି ପ୍ରତିଷ୍ଠିତ ହୋଇଥିଲା । ଓଡ଼ିଶା ସହିତ ଗଞ୍ଜାମ ଜିଲାର ମିଶ୍ରଣ ଏହି ସମିତିର ପ୍ରଧାନ ଲକ୍ଷ୍ୟ ଥିଲା । ଗୋପବନ୍ଧୁ ସେତେବେଳେ ମାତ୍ର ୨୫ ବର୍ଷ ବୟସର ଯୁବକ । ସେ କେବଳ ଏଥିରେ ଯୋଗ ଦେଇ ନ ଥିଲେ, ଏଠାରେ ସମବେତ ହୋଇଥିବା କର୍ମୀମାନଙ୍କର ପ୍ରୋତ୍ସାହ, ନିଷ୍ଠା, ଜାତୀୟ ଉନ୍ମାଦନା ଦେଖି ଓଡ଼ିଶାର ଭବିଷ୍ୟତ ସମ୍ବନ୍ଧରେ ବିଶେଷ ଆଶାନ୍ୱିତ ହୋଇଥିଲେ । ଦେଶସେବାର ପାବନ ମନୋବୃତ୍ତିର ଅଙ୍କୁର ଏହି ଗଞ୍ଜାମ ଜାତୀୟ ସମିତିରେ ଯେପରି ଗୋପବନ୍ଧୁଙ୍କ ହୃଦୟରେ ପତ୍ରପୁଷ୍ପ ନେଇ ପଲ୍ଲବିତ ଓ ବିକଶିତ ହୋଇ ଉଠିଲା । "ଗଞ୍ଜାମ ଜାତୀୟ ସମିତି" * କବିତାରେ ତାଙ୍କର କେବଳ ଉତ୍କଳୀୟ ପ୍ରେମ ନୁହେଁ, ବରଂ ମହାଭାରତୀୟ ଭାବର ଦ୍ୟୋତନା ଦେଖିବାକୁ ମିଳେ ।

* ଗଞ୍ଜାମବାସୀଙ୍କୁ ଏହି ଜାତୀୟ-ସମିତି ଅନୁଷ୍ଠାନ କରିଥିବା ନିମନ୍ତେ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ସେ ଏହା ଲେଖିଥିଲେ ।

"ହେଲ ଯେ ଜାଣସୂ ଭବ ଦୃଢ଼ ପଶଚପୂ
ଚିରଦିନ ଗାଇବେ ତା ଉତ୍କଳ-ତନପୂ ।
ଉତ୍କଳର ଇତିହାସେ ହୋଇବ ତା ସ୍ଥାନ,
ଭବୀ ବଂଶ ଦେଖାଇବେ ସାଦର ସମ୍ମାନ ।

+ + +

ଫଳିଲା ପାଶ୍ଚାତ୍ୟ ଶିକ୍ଷା ସୁମଙ୍ଗଳ ଫଳ,
ସମବେତ ଉଦ୍ୟମର ଅଦ୍ଭୁତ ବଳ ।
ସ୍ୱଦେଶ, ସ୍ୱଜାତି ହିତେ ସାଧୁ ସ୍ୱାର୍ଥତ୍ୟାଗ,
ସୁ-ସମାଜ ସ୍ୱଧରମେ ଗାଢ଼ ଅନୁରାଗ ।"

ଏହି 'ସମବେତ ଉଦ୍ୟମ' ଏବଂ 'ସ୍ୱଦେଶ, ସ୍ୱଜାତି ହିତେ' ମଧ୍ୟରେ ଗୋପବନ୍ଧୁଙ୍କ ମାନସ-ପ୍ରକ୍ରିୟାର ବିଶ୍ୱବୀଜର ବ୍ୟଞ୍ଜନା ଅଛି । ଗୋପବନ୍ଧୁ 'ସ୍ୱଦେଶ' 'ସ୍ୱଜାତି' ବୋଇଲେ କେବଳ ଉତ୍କଳକୁ ବୁଝୁ ନ ଥିଲେ, ବୁଝିଥିଲେ ଭାରତବର୍ଷକୁ ଏବଂ ଭାରତବର୍ଷର ପୃଷ୍ଠଭୂମିରେ ବୁଝୁଥିଲେ ବିଶ୍ୱ ମନୋଭାବକୁ । କାରଣ ସେ ବାରମ୍ବାର ଆମ୍ଭମାନଙ୍କୁ ଏହି କଥାଟି କହିଯାଇ ଅଛନ୍ତି "ଦେଶାନୁରାଗ ବିଶ୍ୱ ପ୍ରୀତିର ବିରୋଧୀ ନୁହେଁ, ବରଂ ବିଶ୍ୱ ପ୍ରୀତିବିହୀନ ପ୍ରାଣରେ ଜାତିପ୍ରୀତି ଏବଂ ସ୍ୱଦେଶ ବାତ୍ସଲ୍ୟ ଅସମ୍ଭବ ।"

ଏହି 'ବିଶ୍ୱସେବା' ଓ 'ବିଶ୍ୱପ୍ରୀତି'ର ସ୍ପଷ୍ଟ ଉଦ୍‌ବୋଧନ ଆମ୍ଭେମାନେ ଦେଖିବାକୁ ପାଉ ଏହି ଯୁବକ ବୟସରେ ପ୍ରତିଷ୍ଠିତ "ବ୍ରାହ୍ମଣ ସମିତି ଛାତ୍ରାବାସରେ ସମବେତ ବ୍ରାହ୍ମଣ ଛାତ୍ରମାନଙ୍କ ପ୍ରତି" ନାମକ ଏକ କବିତାରେ । ଏ କବିତାଟି ପ୍ରଧାନତଃ ବ୍ରାହ୍ମଣ ଛାତ୍ରମାନଙ୍କ ପ୍ରତି ଲକ୍ଷ୍ୟ କରି ରଚିତ ହେଲେହେଁ ଏଥିରେ ଗୋପବନ୍ଧୁଙ୍କର ବିଶ୍ୱ-ଭାବର ଜ୍ୱଳନ୍ତ ପ୍ରମାଣ ମିଳେ । ବିନ୍ଦୁରେ ସିନ୍ଧୁର ଅସୀମତା ଦେଖିବାର ଶକ୍ତି ତାଙ୍କର ଥିଲା । ଅଣୁ ପରମାଣୁ ମଧ୍ୟରେ ସେ ଭୂମାଙ୍କର ବିରାଟ ବିସ୍ତାର ଅନୁଭବ କରିପାରୁଥିଲେ । ତେଣୁ ବ୍ରାହ୍ମଣ ସମିତିର ଛାତ୍ରମାନଙ୍କୁ ସେ ଉଦ୍‌ବୋଧନ ଦେଇ ଲେଖିଅଛନ୍ତି—

"ଫୂତ 'କର୍ମଭୂମି' ଏ ଭାରତ ଧାମେ
ଆର୍ଯ୍ୟ ଅଭିମାନ କର କାହିଁ ନାମେ ?
ପ୍ରେମେ ଆଲିଙ୍ଗନ କର ସର୍ବଜନେ,
ଉଚ୍ଛୁଳାଅ ପ୍ରେମ-ଉଚ୍ଛ୍ୱାସ ଜୀବନେ ।
ତୁମ୍ଭ ଆଦରଶେ ଅନ୍ୟ ଯେତେ ଜାତି
ଉଠିବେ ପଲକେ ସାଧୁ କାର୍ଯ୍ୟେ ମାତି ।

\+ \+ \+

ନିଜ ସୁଖ ଲାଗି ଜାତି ନୁହେ ବନ୍ଧୁ
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।"

ସେହି 'ବିଶ୍ୱଜନ ପ୍ରୀତି' ମଧ୍ୟ ଅପରୂପ ଅଭିବ୍ୟକ୍ତି ଲଭ କରିଛି ହଜାରିବାଗ ଜେଲରେ । 'ବନ୍ଦୀର ଆତ୍ମକଥା'ରେ ସେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ ଲେଖିଅଛନ୍ତି—

"ଜାତୀୟ ମମତା ବିଶ୍ୱଜନ-ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି
ମରିବେ ନିଶ୍ଚିନ୍ତେ ବସି ବନ୍ଦୀ ଘରେ
ମାଗେ ଏହି ଭିକ୍ଷା ପ୍ରଭୁ ଶ୍ରୀପୟରେ ।"

'ଜାତୀୟ ମମତା' ଏବଂ ଉତ୍କଳ ସମ୍ମିଳନୀର ପରିସର ସମ୍ବନ୍ଧରେ ଗୋପବନ୍ଧୁଙ୍କର ଚିନ୍ତାଧାରା ଉପଲବ୍ଧି କରିବାକୁ ହେଲେ ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ (୧୯।୪।୧୯) ସଭାପତି ରୂପେ ସେ ଯେଉଁ ଅଭିଭାଷଣ ଦେଇଥିଲେ, ତାହା ଅନୁଧ୍ୟାନ କରିବା ଉଚିତ । ଏହି ଅଧିବେଶନରେ ସେ ସ୍ପଷ୍ଟରୂପେ କହିଥିଲେ, ବିଚ୍ଛିନ୍ନ ଭାଷାଭାଷୀ ଅଞ୍ଚଳମାନଙ୍କୁ ଏକତ୍ର କରି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ସମ୍ମିଳନୀର ଏକମାତ୍ର ଲକ୍ଷ୍ୟ ନୁହେଁ । ତାଙ୍କ ଭାଷାରେ, "ଓଡ଼ିଆଭାଷୀ ପ୍ରଦେଶର ମିଳନ ସମ୍ମିଳନୀର ଅବାନ୍ତର କ୍ରିୟା" ଅଥଚ ୧୯୦୩ ମସିହା ଡିସେମ୍ବର ମାସ ୩୦ ତାରିଖ ବୁଧବାର ଦିନ ୧୧ଟା ବେଳେ କଟକରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେସନର ବିବରଣୀରେ ଉଲ୍ଲେଖ ଅଛି,—"ଏ ସମ୍ମିଳନୀର ନାମ

ଉତ୍କଳ-ସମ୍ମିଳନୀ । ଏଥିରେ ସମସ୍ତ ଉତ୍କଳଭାଷୀ ଅଞ୍ଚଳର ମଙ୍ଗଳଜନକ ପ୍ରସ୍ତାବମାନ ଉପସ୍ଥାପିତ ହୋଇ କାର୍ଯ୍ୟରେ ପରିଣତ ହେବ ।" କିନ୍ତୁ ଏ 'ମଙ୍ଗଳଜନକ ପ୍ରସ୍ତାବମାନଙ୍କ' ମଧ୍ୟରେ ଅଗ୍ରାଧିକାର ଲାଭ କରନ୍ତୁ ଦେଶ ମିଶ୍ରଣ ପ୍ରସ୍ତାବ । କାରଣ ଉକ୍ତ ବିବରଣୀରେ ସ୍ପଷ୍ଟଭାବରେ ଉଲ୍ଲିଖିତ ଅଛି; 'ବର୍ତ୍ତମାନ ସରକାର ବାହାଦୁରଙ୍କ ରାଜତ୍ୱରେ ଓଡ଼ିଶାର ସୀମା ଢେର କମିଯାଇଛି । ଫଳରେ ମଧ୍ୟ ଦେଖାଯାଉଛି ଯେ ସମ୍ବଲପୁର, ଛୋଟ-ନାଗପୁର, ମେଦିନୀପୁର, ଗଞ୍ଜାମ ଇତ୍ୟାଦି ସ୍ଥାନମାନ ଓଡ଼ିଶାର ବାହାରେ ଥାଇ ସୁଦ୍ଧା ସେ ଅଞ୍ଚଳରେ ଓଡ଼ିଆଙ୍କ ସଂଖ୍ୟା ବହୁତ । ସେଥିପାଇଁ ସମସ୍ତ ଉତ୍କଳଭାଷୀ ଅଞ୍ଚଳକୁ ଉତ୍କଳ ବୋଲି ନାମ ଦିଆ ହୋଇଅଛି ଏବଂ ଏହି ସମ୍ମିଳନୀର ନାମ ଉତ୍କଳ-ସମ୍ମିଳନୀ ହୋଇଅଛି ।

କିନ୍ତୁ ଆଶାବାଦୀ ଗୋପବନ୍ଧୁ ତାଙ୍କର ସଭାପତି-ଅଭିଭାଷଣରେ ସମଗ୍ର ଓଡ଼ିଆ ଜାତିକୁ ଉତ୍ସାହ ଓ ଆଶ୍ୱାସନାର ବାଣୀ ଶୁଣାଇ କହିଥିଲେ, "ଖଣ୍ଡ ବିଖଣ୍ଡିତ ହେଲେ ସୁଦ୍ଧା ଓଡ଼ିଆ ଜାତି ବର୍ତ୍ତମାନ ବିଦ୍ୟମାନ ରହିଛି । ରାଜନୈତିକ ବିଚ୍ଛେଦ ତାହାର ବାହ୍ୟ କଳେବରର ବିଭଙ୍ଗ ଘଟାଇଅଛି, ମାତ୍ର ଜାତୀୟ ଆତ୍ମା ଅଦ୍ୟାପି 'ଅକ୍ଷୁର୍ଣ୍ଣ ।" ଓଡ଼ିଆ ଜାତିର ଏ ଆତ୍ମା ଅମର, ଅବିଚ୍ଛେଦ୍ୟ, ଅକ୍ଷୟ, ଅଦାହ୍ୟ ଓ ଅଶୋଚ୍ୟ । କୌଣସି ରାଜନୈତିକ ବିଧିଂଶକ୍ତି ଏ ଜାତିର ଆତ୍ମାର ବିଲୋପ ସାଧନ କରି ନ ପାରେ । ତେଣୁ ଏଥିରୁ ପ୍ରତିଭାତ ହୁଏ, ଗୋପବନ୍ଧୁଙ୍କ ଜାତୀୟତାବୋଧ ଅନ୍ତର୍ମୁଖୀ—ବହିର୍ମୁଖୀ ନୁହେଁ । ଏ ବଳିଷ୍ଠ ଦେଶାତ୍ମବୋଧ ବାହ୍ୟ ଘାତ ପ୍ରତିଘାତରେ ବ୍ୟାହତ ହେବାର ନୁହେଁ, କିମ୍ବା ଜାତିର କେତେଟା ବାହ୍ୟ ଉନ୍ନତି, ଯଥା—ଶିକ୍ଷାନୁଷ୍ଠାନର ସଂଖ୍ୟାବୃଦ୍ଧି, କଳକାରଖାନା ପ୍ରତିଷ୍ଠା ଦ୍ୱାରା ଶିଳ୍ପୋନ୍ନତି, କିମ୍ବା କେତୋଟି ବଡ଼ବଡ଼ ସରକାରୀ ଚାକିରୀ ପ୍ରଭୃତି ଦ୍ୱାରା ଜାତୀର ପ୍ରକୃତ ସ୍ଥାୟୀ ଅଭିବୃଦ୍ଧି ଘଟେ ନାହିଁ । ଜାତୀୟ ଚରିତ୍ର ଉନ୍ନତ ନ ହେଲେ, ଜାତୀୟ ଆତ୍ମାର ଅଭ୍ୟୁତ୍ଥାନ ନ ଘଟିଲେ କିମ୍ବା ଜାତୀୟ ଜୀବନ ସୁଦୃଢ଼ରୂପେ ଗଠିତ ନ ହେଲେ ଏସବୁ ବାହ୍ୟ ଉନ୍ନତିର କୌଣସି ସ୍ଥାୟୀ ମୂଲ୍ୟ ନାହିଁ । ଅବଶ୍ୟ ଏହାର ଯେ ସାମୟିକ ମୂଲ୍ୟ ନାହିଁ, ତାହା

ନୁହେଁ । କିନ୍ତୁ ଜାତିକୁ ଗଢ଼ିବାକୁ ହେବ ଭିତରୁ—ବାହାରୁ ନୁହେ । ଗୋପବନ୍ଧୁଙ୍କ ମତରେ ଉତ୍କଳ ସମ୍ମିଳନୀ ହେବ କର୍ମୀର ସାଧନା ସ୍ଥଳୀ । ଏହାଠାରେ ଜାତିର ସର୍ବୋତୋମୁଖୀ ମଙ୍ଗଳ ନିମନ୍ତେ ସର୍ବସ୍ୱ ତ୍ୟାଗ କରି ସନ୍ନ୍ୟାସୀର ବ୍ରତ ଧାରଣ କରିବାକୁ ହେବ । ଅଳ୍ପରେ ତୃପ୍ତି ନାହିଁ । ଭୂମାର ଉପାସନା ଦେଶବାସୀଙ୍କ ଜୀବନର ପରମ ମନ୍ତ୍ର ହେଉ । ଅଭିଭାଷଣର ପ୍ରଥମ ଭାଗରେ ସେ ଯେପରି ନିର୍ଭୀକ ଭାବରେ କହିଅଛନ୍ତି, "ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିର ଏହି ଅଖଣ୍ଡ ଅବିନଶ୍ୱର ଆତ୍ମାର ଇନ୍ଦ୍ରିୟଗ୍ରାହ୍ୟ ମୂର୍ତ୍ତି, ସୁତରାଂ ଆମ୍ଭମାନଙ୍କର ଜାତୀୟ ଆକାଂକ୍ଷାର ପ୍ରକାଶକ," ସେହିପରି ଅଭିଭାଷଣର ମଧ୍ୟଭାଗରେ କହିଅଛନ୍ତି, "ବସ୍ତୁତଃ ଜାତୀୟତା ହିଁ ଆମ୍ଭମାନଙ୍କର ଧର୍ମ । ଈଶ୍ୱର ଆମ୍ଭର ଜାତି ରୂପରେ ଆମ୍ଭମାନଙ୍କ ନିକଟରେ ଉପସ୍ଥିତ । ନରନ ବପୁଶଙ୍କ ରୂପ ଛଡ଼ା ଅନ୍ୟ କୌଣସି ପ୍ରକାରେ ତାଙ୍କର ଧାରଣା ଆମ୍ଭମାନଙ୍କ ପକ୍ଷେ ଅସମ୍ଭବ ।"

୧୯୧୯ ମସିହା ପୂର୍ବରୁ ଜାତୀୟ ମିଳନମଣ୍ଡପ ଉତ୍କଳ ସମ୍ମିଳନୀରେ ଏପରି ଆଧ୍ୟାତ୍ମିକ ବାଣୀ କାହାର ମୁଖରୁ ନିଃସୃତ ହୋଇ ନ ଥିଲା । ଜାତୀୟତାକୁ ଧର୍ମ-ଧାରଣା ଉପରେ ପ୍ରତିଷ୍ଠିତ କରି ଜାତିକୁ ଈଶ୍ୱର ରୂପେ କଳ୍ପନା କରି ସେହି ଈଶ୍ୱର-ସେବାରେ ସର୍ବତୋଭାବରେ ଜୀବନ ଉତ୍ସର୍ଗ କରିବାକୁ ଜାତିକୁ ଏପରି ସ୍ପନ୍ଦନମୟ ଓ ଜାଗରଣାତ୍ମକ ଉଦ୍‌ବୋଧନ ଆଉ କିଏ ଦେଇ ପାରିଥିଲା ? କିଏ ଏପରି ନିର୍ଭୀକ ଭାବରେ କହିଥିଲା *, "ସ୍ୱଦେଶ ସେବା ହିଁ ପ୍ରକୃତରେ ମନୁଷ୍ୟ ପକ୍ଷରେ ଭଗବତ୍ ସେବା । ଏହି ପୁଣ୍ୟ ଜାତୀୟ ପୀଠରେ ସେହି ସେବାକାର୍ଯ୍ୟରେ ମୋତେ ଆପଣମାନେ ପ୍ରଧାନ ପୂଜକର ଭାର ଦେଇଛନ୍ତି ।"

ଗୋପବନ୍ଧୁଙ୍କର ଦେଶସେବା ଭଗବତ୍ ସେବାଠାରୁ ପୃଥକ୍ ନ ଥିବାରୁ ଏବଂ ତାଙ୍କର ଦେଶାତ୍ମବୋଧ ସଙ୍କୀର୍ଣ୍ଣ ପରିସର ମଧ୍ୟରେ ଆବଦ୍ଧ ନ ରହି ବିଶ୍ୱମୁଖୀ ଏବଂ ଧର୍ମଭିତ୍ତିକ ହୋଇଥିବାରୁ ସେ ଉତ୍କଳ-ସମ୍ମିଳନୀର ବର୍ତ୍ତମାନକୁ ନୁହେଁ ଏହାର ଭବିଷ୍ୟତ ସମ୍ବନ୍ଧରେ କଦାପି

* ଉତ୍କଳରେ ଜାତୀୟ ଜୀବନର ପ୍ରତିଷ୍ଠାତା ମନସ୍ୱୀ ମଧୁସୂଦନଙ୍କୁ ବାଦ୍ ଦେଲେ ଏପରି କଥା ଆଉ କିଏ କହିନାହିଁ ।

ନୈରାଶ୍ୟ ଜଡ଼ିତ ହୋଇ ନ ଥିଲେ । ଉତ୍କଳ ସମ୍ମିଳନୀର ଅଷ୍ଟମ ଅଧିବେଶନ ୧୯୧୨ ମସିହା ଏପ୍ରିଲ ୬ ଓ ୭ ତାରିଖରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନର ସଭାପତି ସୁରଙ୍ଗୀର ରାଜା ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ କ୍ଷୋଭ ପ୍ରକାଶ କରି କହିଥିଲେ, "ପ୍ରଥମ କେତେବର୍ଷ ସମ୍ମିଳନୀ ପୂର୍ଣ୍ଣ ଆଡ଼ମ୍ବରରେ ଦେଖା ଦେଇ ଆଶାର ଉଜ୍ଜ୍ୱଳ ଆଲେଖ୍ୟ ପ୍ରଦର୍ଶନ କରିଥିଲା । ମାତ୍ର ତାହା ଏବେକ 'ବହ୍ୱାରମ୍ଭେ ଲଘୁକ୍ରିୟା'ରେ ପରିଣତ ହେଲା । + + + ବ୍ୟକ୍ତିଗତ ମନୋମାଳିନ୍ୟ ଏହି ଦୁର୍ଦ୍ଦଶାର କାରଣ··· ।" କିନ୍ତୁ 'ଜାତୀୟାତ୍ମବାଦୀ' ଧର୍ମପ୍ରାଣ ଗୋପବନ୍ଧୁ ସମ୍ମିଳନୀ ମଣ୍ଡପରେ କିମ୍ବା ସମ୍ମିଳନୀ ସମ୍ବନ୍ଧରେ ତାଙ୍କର ସମ୍ପାଦକୀୟ ମନ୍ତବ୍ୟରେ କେଉଁଠାରେ ହେଲେ ଏପରି ନିରାଶାର ବାଣୀ ଉଚ୍ଚାରଣ କରି ନାହାନ୍ତି ।

ସତ୍ୟବାଦୀରୁ ତାଙ୍କ ସମ୍ପାଦନାରେ ପ୍ରକାଶିତ 'ସତ୍ୟବାଦୀ' ମାସିକ ପତ୍ରିକାର ଦ୍ୱିତୀୟ ଖଣ୍ଡରେ (୮ମଠାରୁ ୧୨ଶ ସଂଖ୍ୟା) 'ଉତ୍କଳ ସମ୍ମିଳନୀ' ଶୀର୍ଷକ ଆଲୋଚନାରେ ସେ ଏହି ଆଶାବାଦିତାର ପରିଚୟ ଦେବାକୁ ଯାଇ ଲେଖିଛନ୍ତି "ଅନେକ ପ୍ରଶ୍ନ କରନ୍ତି ସମ୍ମିଳନୀ କ'ଣ କଲା ? କିଛି କରି ନାହିଁ । ତେବେ ଏହାକୁ ଛାଡ଼ିଦିଅ । କିନ୍ତୁ ଛାଡ଼ିଦେଇ ହେଉଛି କହିଁ ? ଏହା ଯେ ଜାତିର ଧନ ହୋଇଅଛି । ଜାତୀୟ ପ୍ରାଣ ଅଲକ୍ଷିତ ଭାବେ ବହୁଦିନୁଁ ଯାହା ଲୋଡ଼ୁଥିଲା ପାଇଛି, ଆଉ ସହଜରେ ଛାଡ଼ୁଛି କାହିଁ ? + + + ଏବର୍ଷ ବାଲେଶ୍ୱରରେ ଅଜ୍ଞାତ ପଲ୍ଲୀବାସୀମାନେ ସମ୍ମିଳନୀ କାମନ୍ତେ ଅନୁଷ୍ଠିତ ଭାବରେ ଯେ ଅର୍ଥ ସାହାଯ୍ୟ କରିଥିଲେ, ତାହା କି ଜାତୀୟଜୀବନ ବିକାଶର ପରିଚୟ ଦେଉ ନାହିଁ ? ଏହାସବୁ ଦେଖି ଯେଉଁମାନେ ଉତ୍କଳ ସମ୍ମିଳନୀର ମହତ୍ତ୍ୱ ଏବଂ ଶକ୍ତି ଉପଲବ୍ଧି କରିପାରୁ ନାହାନ୍ତି, କିମ୍ବା ତାହାର କାର୍ଯ୍ୟରେ ବାଧା ଘଟାଇବାକୁ ପ୍ରୟାସୀ, ସେମାନେ କୃପାର ପାତ୍ର; କିନ୍ତୁ ନିରାଶାର କାରଣ ନାହିଁ । ଭଗବାନ ଦିନେ ସେମାନଙ୍କୁ ଦିବ୍ୟଦୃଷ୍ଟି ଦେବେ ।"

ବାଲେଶ୍ୱର ସମ୍ମିଳନୀର ସଭାପତି ମଞ୍ଜୁଷାର ରାଜା ଶ୍ରୀ ଶ୍ରୀନିବାସ ରାଜମଣି ରାଜଦେବଙ୍କ ଅଭିଭାଷଣରୁ କେତେକ ଅଂଶ ଏହି ସମ୍ପାଦକୀୟ

ଆଲୋଚନାରେ ଉଦ୍ଧାର କରି ସେ ସେହି ବଳିଷ୍ଠ ଜାତୀୟତାବାଦରେ ଉଦ୍‌ବୁଦ୍ଧ ହେବାକୁ ପୁଣି ଆଶା ଓ ଆଶ୍ୱାସନାର ବାଣୀ ଶୁଣାଇ ଲେଖିଛନ୍ତି—"ସଭାପତି ଆମ୍ଭମାନଙ୍କ ଜାତିର ବର୍ତ୍ତମାନ ଅବସ୍ଥାର ଯେ ଚିତ୍ର ଦେଇଛନ୍ତି, ତାହା ଭାବିଲେ କ୍ଷଣକାଳ ନିରାଶ ହେବାକୁ ହୁଏ, କିନ୍ତୁ ଜାତିର ଭବିଷ୍ୟତରେ ବିଶ୍ୱାସ ରଖି କାର୍ଯ୍ୟ କରିବାକୁ ହେବ। ଆମ୍ଭମାନଙ୍କର ବିସ୍ତର କାର୍ଯ୍ୟ କରିବାର ସୁଯୋଗ ଅଛି, ଏହା ଭାବି ଆନନ୍ଦ ଓ ଉତ୍ସାହ ଅନୁଭବ କରିବାକୁ ହେବ। ଯାହା ଶକ୍ତିରେ ଯାହା ଅଛି, ସେ ତାହା 'ଜଗଦ୍ଧିତାୟ କୃଷ୍ଣାୟ' ସାଧନ କଲେ ସ୍ଥୂଳରେ ଜାତିର ସମୂହ କଲ୍ୟାଣ ସମ୍ପାଦିତ ହେବ। ସମାଜର ଉନ୍ନତି କୌଣସି ଏକ ନିର୍ଦ୍ଦିଷ୍ଟ ସମୟ ବା ଅବସ୍ଥାରେ ଶେଷ ହେବ ନାହିଁ। ଏହା ଅନନ୍ତକାଳ ପର୍ଯ୍ୟନ୍ତ ଅଧିକରୁ ଅଧିକତର ହୋଇ ସମାଗତ ଚାଲିଥିବ। ବ୍ୟକ୍ତିବିଶେଷଙ୍କ ଜୀବନୀ ଚାଲିଯିବ; କିନ୍ତୁ ଜାତିର କାର୍ଯ୍ୟ କେବେ ସରିବ ନାହିଁ। ବର୍ତ୍ତମାନରେ ଥିଲେ ମଧ୍ୟ ହିନ୍ଦୁର ସମସ୍ତ କ୍ରିୟା କାମନା, ଆଶା ଭରସା ଭବିଷ୍ୟତ ଲାଗି। ଭବିଷ୍ୟତ ଉପରେ ବିଶ୍ୱାସ ଏବଂ ଭବିଷ୍ୟତ ଉଦ୍ଦେଶ୍ୟରେ ଆତ୍ମବିନିଯୋଗ ଆମ୍ଭମାନଙ୍କର ଜାତୀୟ ଧର୍ମ। ସେହି ଧର୍ମରେ ଆସ୍ଥା ଓ ବିଶ୍ୱାସ ରଖି ଜାତୀୟ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ "କ୍ଷୁଦ୍ର ହୃଦୟଦୌର୍ବଲ୍ୟ" ଅପସାରିତ ହେବ। ଏହି ଭାବରେ ଅନୁପ୍ରାଣିତ ହୋଇ କାର୍ଯ୍ୟ କଲେ ଆତ୍ମଶକ୍ତି ବିକାଶିବ ଏବଂ ସମ୍ମିଳନୀ ଏକ ମହାଶକ୍ତିରେ ପରିଣତ ହେବ।"

ସମ୍ମିଳନୀରେ ବ୍ୟକ୍ତିଗତ ବିଦ୍ୱେଷ ଭାବକୁ ଲକ୍ଷ୍ୟ କରି ଏବଂ ଏହି ବ୍ୟକ୍ତିଗତ ମନୋମାଳିନ୍ୟ ଯେ ଦିନେ ଉତ୍କଳ ସମ୍ମିଳନୀ ପରି ଏକ ଜାତୀୟ ଅନୁଷ୍ଠାନକୁ ରସାତଳଗାମୀ କରିଦେଇ ଦେଶର ବିକାଶ ପଥକୁ କଣ୍ଟକମୟ କରିଦେବ, ଏହି ଚିନ୍ତାରେ ବ୍ୟାକୁଳ ହୋଇ ଗୋପବନ୍ଧୁ ଦେଶବାସୀଙ୍କୁ ଆତ୍ମଶକ୍ତି ଉପରେ ନିର୍ଭର କରିବାକୁ ଏହି ଉତ୍ସାହବାଣୀ ଦେଇ ଅଛନ୍ତି। ଏହି ଆଶାପୂର୍ଣ୍ଣ ବାଣୀ ସତେ ଯେପରି ସମ୍ମିଳନୀର ଅଷ୍ଟମ ଅଧିବେଶନର ସଭାପତିଙ୍କ ନିମ୍ନଲିଖିତ ଉକ୍ତିର ବଳିଷ୍ଠ ଅଥଚ ବିନମ୍ର ପ୍ରତିବାଦ। "କାହିଁ ଉତ୍କଳ-ସମ୍ମିଳନୀ ଉତ୍କଳର ସମବେତ ଶକ୍ତି ରୂପେ ଦଣ୍ଡାୟମାନ ହୋଇ ଉତ୍କଳୀୟମାନଙ୍କୁ ଆତ୍ମନିର୍ଭରଶୀଳ ଏବଂ କର୍ମଠ କରିବ, ନା ଶିଶୁ

ଜୀବନରେ ଦାରୁଣ ଆଘାତ ଦାଇ ନି ପ୍ରମାଣ ହୋଇଉଠିବ । ଏହା କି ମର୍ମାନ୍ତିକ ଦୁଃଖ ଓ ଦୁର୍ଭାଗ୍ୟର ବିଷୟ ନୁହେଁ ? ବ୍ୟକ୍ତିଗତ ମନୋମାଳିନ୍ୟ ଏହି ଦୁର୍ଘଟଣାର କାରଣ । ବ୍ୟକ୍ତିଗତ ବିଦ୍ୱେଷ ଅନେକଙ୍କର ଥାଇପାରେ; ମାତ୍ର ସାଧାରଣ କାର୍ଯ୍ୟ ବେଳେ ସେ ଭାବ ମନରେ ରଖିବା ଉଚିତ ନୁହେଁ ।''

ସମ୍ମିଳନୀରେ ଏହି ବ୍ୟକ୍ତିଗତ ମନୋମାଳିନ୍ୟ କିମ୍ବା ବିଦ୍ୱେଷର ଆଉ ଗୋଟିଏ ପ୍ରଚ୍ଛନ୍ନ କାରଣ ଥିଲା । 'ସତ୍ୟବାଦୀ'ର ଉପରୋକ୍ତ ସମ୍ପାଦକୀୟ ଆଲୋଚନାରୁ ସେହି କାରଣଟି ସ୍ପଷ୍ଟ । ଗୋପବନ୍ଧୁ ଉତ୍କଳ ସମ୍ମିଳନୀର ନିନ୍ଦୁକମାନଙ୍କୁ ଲକ୍ଷ୍ୟ କରି ଲେଖିଥିଲେ, ''ଉତ୍କଳ-ସମ୍ମିଳନୀର ନିନ୍ଦୁକମାନେ ଇତିପୂର୍ବେ କହୁଥିଲେ, ସମ୍ମିଳନୀ ଜଣଙ୍କର ପ୍ରଦର୍ଶନୀ । ଅର୍ଥାତ୍ ସମ୍ମିଳନୀର ସ୍ରଷ୍ଟା ମାନ୍ୟବର ମଧୁସୂଦନ ଦାସଙ୍କୁ ବାଦ ଦେଲେ ସମ୍ମିଳନୀର ଅସ୍ତିତ୍ୱ ନାହିଁ ।'' ଲୋକଙ୍କ ମନରୁ ଏ ବିଦ୍ୱେଷ ଭାବ ଏବଂ ଭ୍ରାନ୍ତ ଧାରଣା ଅପସାରିତ କରି ଉତ୍କଳ ସମ୍ମିଳନୀର କାର୍ଯ୍ୟକଳାପରେ ସେହି ଅସନ୍ତୁଷ୍ଟ ଗୋଷ୍ଠୀଙ୍କୁ ଆଶାନ୍ୱିତ ଓ ଆସ୍ଥାବାନ କରିବା ନିମନ୍ତେ ସେ ଯେଉଁ ଆଧ୍ୟାତ୍ମିକ ଓ ଦାର୍ଶନିକ ମତବାଦ ପ୍ରଖ୍ୟାପନ କରିଅଛନ୍ତି, ତାହାହିଁ ଉତ୍କଳ-ସମ୍ମିଳନୀର ପୁରୋଭାଗରେ ଥିବା ନେତୃସ୍ଥାନୀୟ ବ୍ୟକ୍ତିଙ୍କଠାରୁ ତାଙ୍କର ବୈଶିଷ୍ଟ୍ୟ । ଭଗବତ୍ ବିଶ୍ୱାସୀ ଗୋପବନ୍ଧୁଙ୍କର କୌଣସି ବ୍ୟକ୍ତିବିଶେଷଙ୍କ ନେତୃତ୍ୱ କିମ୍ବା ପୌରୁଷ ଉପରେ ବିଶ୍ୱାସ ନ ଥିଲା । ସେ ବୁଝିଲେ, ମନୁଷ୍ୟର ବ୍ୟକ୍ତିଗତ ଜୀବନ ଏବଂ ଜାତୀୟ ଜୀବନର ଏକମାତ୍ର ପରିଚାଳକ, କାଣ୍ଡାରୀ କିମ୍ବା କର୍ଣ୍ଣଧାର ସ୍ୱୟଂ ଭଗବାନ । ବ୍ୟକ୍ତିବିଶେଷ ସେହି ଭଗବଦିଚ୍ଛାର ନିମିତ୍ତ ମାତ୍ର । ତେଣୁ ସେ ଲେଖିଛନ୍ତି, ''କୌଣସି ଉଚ୍ଚ ସାଧୁଚିନ୍ତା ଏବଂ ଉନ୍ନତ ଜାତୀୟ ଅନୁଷ୍ଠାନର ଯେ କେହି ସୂତ୍ରପାତ କରନ୍ତୁ, ତାହା ବ୍ୟକ୍ତିବିଶେଷର ସୃଷ୍ଟି ନୁହେଁ । ତାହା ସମସ୍ତ କଲ୍ୟାଣର ଆଧାର ସେହି ବିଧାତାଙ୍କଠାରୁ ଆସେ । ତାହାଁର ପ୍ରକାଶରେ ବ୍ୟକ୍ତିବିଶେଷ ନିମିତ୍ତ ମାତ୍ର । ଏତଦପେକ୍ଷା ଅଧିକ ଦାବୀ କରିବା ତାହାର ଉଚିତ ନୁହେଁ । ଅବଶ୍ୟ କୌଣସି ଦଳଗତ ବା ଜାତୀୟ ଅନୁଷ୍ଠାନରେ ବ୍ୟକ୍ତିବିଶେଷଙ୍କ ନେତୃତ୍ୱ ସ୍ୱୀକାର କରିବାକୁ ହେବ, ତାହା ନ ହେଲେ ଶୃଙ୍ଖଳା ବା ନିୟମ ରହିବ ନାହିଁ । ମାତ୍ର ସେଥିରେ କାହାର କର୍ତ୍ତୃତ୍ୱ ବା ସ୍ରଷ୍ଟୃତ୍ୱ ନାହିଁ ।''

ଉତ୍କଳ-ସମ୍ମିଳନୀର ଉପଗତି-ଅଭିଭାଷଣରେ ମଧ୍ୟ ସେହି ଶୃଙ୍ଖଳପୂତ ଅହମିକା ବର୍ଜିତ ଉକ୍ତି—"ମା ଉତ୍କଳ ଜନନୀ ! ଏ ଅଧମ ସନ୍ତାନଠାରେ ତୁମ୍ଭର ଏତେ ଦୟା, ଏହାର କର୍ତ୍ତବ୍ୟପଥରେ ତୁମେଇ ସହାୟ ହୁଅ । ମା, ମୁଁ ଉପସ୍ଥିତ ଘଟଣାରେ ଦେଶର ନାୟକ ନୁହେଁ. ତାହା ମୋର କେବେ ବାଞ୍ଛା ନୁହେଁ, ତୁମର ନିଯୁକ୍ତ ସେବକ ହେବା ହିଁ ମୋ ଜୀବନର ଚିର ଆକାଂକ୍ଷା । ଆଜ ବିଶେଷ ଭାବରେ ସେ ସେବା କରିବାକୁ ମୋତେ ସୁଯୋଗ ଦେଇଅଛ; ତହିଁରେ ମୁଁ ଧନ୍ୟ ଏବଂ ପୂର୍ଣ୍ଣ ହୋଇଛି । ମା, ଏ ଅଧମ ଅଜ୍ଞାନ ସନ୍ତାନ ତୋର କି ସେବା କରିବ ?

'ତୋତେ ହିଁ ତୁହି ରକ୍ଷା କର । ମୁଁ ଗୁର ମନୁଷ୍ୟ ମାତର !'

ଭଗୀରଥଙ୍କ ପରି ଗୋପବନ୍ଧୁ ତାଙ୍କ ସାଧନା ବଳରେ ଉତ୍କଳ ଭୂମିରେ ଅସହଯୋଗ ଆନ୍ଦୋଳନର ଜାହ୍ନବୀ ସ୍ରୋତ ପ୍ରବାହିତ କଲେ, ତାଙ୍କର ଧର୍ମବଳରେ ନବତେଜରେ ଉତ୍କଳ ଜାଗିଉଠିଲା ଏବଂ ଶତ ଶତ ନରନାରୀ ଆନନ୍ଦରେ ଦେଶର ମୁକ୍ତି ପାଇଁ କାରାବରଣ କଲେ; ତଥାପି ଘୃଣାକ୍ଷରରେ ଗୋପବନ୍ଧୁ ନିଜକୁ ଏ ଦେଶର 'ନେତା' ବୋଲି ଭାବି ନାହାନ୍ତି । ତ୍ୟାଗବୀର ସ୍ୱଦେଶ କର୍ମୀର ଏହି ଆତ୍ମୋତ୍ସର୍ଗ ଏବଂ ଆତ୍ମ-ବିସ୍ମୃତି ତାଙ୍କର 'ବନ୍ଦୀର ଆତ୍ମକଥା'ର ନିମ୍ନଲିଖିତ ଉଦ୍ଧୃତିରୁ ଜାଜ୍ଜ୍ୱଲ୍ୟମାନ ହୋଇ ରହିଛି ।

"କର୍ମଭୂମେ କିଏ ନେତା ହେବା ମତ
ସରବେ ନିମିତ୍ତ ବିଧି-ନିୟୋଜିତ ।"

ଗୋପବନ୍ଧୁଙ୍କ ଜୀବନର ଆଉ ଗୋଟିଏ ନୀତି ଥିଲା— 'ସର୍ବଦେବ ନମସ୍କାର କେଶବଂ ପ୍ରତିଗଚ୍ଛତି' । ଏହି ଆଦର୍ଶ ମଧ୍ୟରେ ଅଛି ତାଙ୍କର ଉଦାର ମାନବିକତା ଓ ସୁବିସ୍ତୃତ ବିଶ୍ୱଜନୀନ ମହାଭାବ । ତେଣୁ ଉତ୍କଳ ସମ୍ମିଳନୀରେ ଥାଇ ଯାହା କରିବାକୁ ହେବ, ତାହା ବ୍ୟାପକ ଭାବରେ କରିବାକୁ ହେବ; ଉତ୍କଳକୁ ଭାରତଠାରୁ ବିଚ୍ଛିନ୍ନ କରି ନୁହେଁ, ଏହାକୁ ଭାରତ ତଥା ବିଶ୍ୱର ଏକ ଅବିଚ୍ଛେଦ୍ୟ ଅଙ୍ଗ ବୋଲି ମନେକରି । ତାଙ୍କର ସ୍ପଷ୍ଟ ଅଭିମତ, "ସଂକୀର୍ଣ୍ଣ ସୀମା ମଧ୍ୟରେ ପ୍ରକୃତ ଜାତୀୟତାର

ପୂର୍ଣ୍ଣ ବିକାଶ ଅସମ୍ଭବ । ସେ ଯେଉଁ ଜାତିର ହୁଅନ୍ତୁ, ସେ ସର୍ବପ୍ରଥମେ ମନୁଷ୍ୟ, ଈଶ୍ୱରଙ୍କର ସନ୍ତାନ । ଏହି ମମତା ଓ ଭ୍ରାତୃଭାବ ପ୍ରତ୍ୟେକ ଜାତିର ଧର୍ମଶାସ୍ତ୍ରରେ ପ୍ରତିପାଦିତ ହୋଇଅଛି ଏବଂ ଏହା ହିଁ ଜାତୀୟ ଜୀବନର ମୂଳମନ୍ତ୍ର ହେବା ଉଚିତ ।" ଗୋପବନ୍ଧୁଙ୍କ ମତରେ ଉତ୍କଳ-ସମ୍ମିଳନୀ ଯଦି ଉତ୍କଳ ଜାତିର ପବିତ୍ର ମୂର୍ତ୍ତି ହୁଅନ୍ତି ଏବଂ ଏହି ସମ୍ମିଳନୀ ଯଦି ଆମ୍ଭମାନଙ୍କର ଆରାଧ୍ୟ ଈଶ୍ୱର, ତେବେ ଆମର ସକଳ ଚେଷ୍ଟା କମ୍ବା ଆକାଂକ୍ଷାକୁ ଯଦି ଉତ୍କଳର ସଙ୍କୀର୍ଣ୍ଣ ଗଣ୍ଡୀ ମଧ୍ୟରେ ଆବଦ୍ଧ ରଖି କେବଳ ଉତ୍କଳୀୟ ଭାବରେ ଅନୁପ୍ରାଣିତ ହୋଇ ଜାତୀୟ ଜୀବନକୁ କ୍ଷୁଦ୍ର ପରିସର ମଧ୍ୟକୁ ଟାଣି ନିଆଯାଏ, ତେବେ ତାହା ମାନବ-ଧର୍ମର ଅନୁକୂଳ ହେବ ନାହିଁ, ମାନବାତ୍ମାର ବିକାଶରେ ତାହା ସାହାଯ୍ୟ କରିବ ନାହିଁ, ଫଳତଃ ଉଦାର ମାନବିକତାର ପରିଚୟ ସେଥିରୁ ମିଳିବ ନାହିଁ । ତେଣୁ "ଉଦାର ମାନବିକତା ପ୍ରତୀକ ଜାତୀୟ 'ଅନୁଷ୍ଠାନର ଲକ୍ଷ୍ୟ ହେବା ଉଚିତ । ଅନେକ କ୍ଷୁଦ୍ର ଜଳପ୍ରବାହର ମିଳନରେ ନଦୀର ଉତ୍ପତ୍ତି, ପୁଣି ଏହିପରି ଅନେକ ଗୁଡ଼ିଏ ନଦୀ ମିଶି ମହାନଦୀରେ ପରିଣତ ଏବଂ ପରିଶେଷରେ ସମସ୍ତ ମହାନଦୀର ପ୍ରବେଶ ମହାସମୁଦ୍ରରେ । ଆମ୍ଭମାନଙ୍କର ବ୍ୟକ୍ତିଗତ ଏବଂ ଜାତିଗତ ଆତ୍ମାର ପୂର୍ଣ୍ଣ ପରିଣତି ମାନବ ଆତ୍ମାର ମିଳନରେ । ପ୍ରତ୍ୟେକ ବ୍ୟକ୍ତିର କାର୍ଯ୍ୟ ଏପରି ହେବା ଉଚିତ ଯେ, ସମସ୍ତ ବ୍ୟକ୍ତିଗତ ନିଃସ୍ୱାର୍ଥ ସମଷ୍ଟିରେ ସମୂହ ଜାତିର କଲ୍ୟାଣ ସାଧିତ ହେବ, ପୁଣି ଭିନ୍ନ ଭିନ୍ନ ଜାତିର କାର୍ଯ୍ୟ ଏବଂ ଗତି ପରିମାଣରେ ସମଗ୍ର ମାନବ ଜାତିର କଲ୍ୟାଣରେ ସହାୟ ହେବ । × × × ସାର୍ବଜନୀନ ମାନବସମାଜ ଭଗବାନଙ୍କର ଅଭିବ୍ୟକ୍ତି । ମାନବସେବା ହିଁ ଭଗବତ୍ ସେବା । ମାତ୍ର ବ୍ୟକ୍ତିବିଶେଷର ଶକ୍ତି କ୍ଷୀଣ, ବାହୁ କ୍ଷୁଦ୍ର, ଦୃଷ୍ଟି ସଙ୍କୀର୍ଣ୍ଣ, ଗତି ସୀମାବଦ୍ଧ, ସୁତରାଂ ବିଶ୍ୱଜନୀନ ସମଗ୍ର ମାନବ ସମାଜର ସେବା ତା ପକ୍ଷରେ ଅସମ୍ଭବ । ସେ ଯେଉଁ ନିର୍ଦ୍ଦିଷ୍ଟ ଦେଶରେ ଏବଂ ଜାତି ମଧ୍ୟରେ ବାସ କରନ୍ତି, ସେହି ଦେଶ ତାଙ୍କର ପୂଜାପୀଠ ଏବଂ ସେହି ଜାତିର ସେବା ହିଁ ତାଙ୍କର ମାନବସେବା ।" ଏହି ବିରାଟ ଜାତୀୟତାବୋଧ ଏବଂ ଉଦାର ମାନବିକତା ଉତ୍କଳୀୟମାନଙ୍କ ପକ୍ଷରେ ନୂତନ ନୁହେଁ । ଏହା ତାହାର ଐତିହାସିକ ପରମ୍ପରା । ଏହାର ପ୍ରମାଣ ଲିପି ଅମରାକ୍ଷରରେ

ଲିପିବଦ୍ଧ ହୋଇ ରହିଛି ଓଡ଼ିଶାର ଇତିହାସରେ । ଓଡ଼ିଶାର ଶିଳ୍ପସ୍ଥାପତ୍ୟ ଏହାର ପରିଚୟ ପ୍ରଦାନ କରେ । ଗୋପବନ୍ଧୁ ଉତ୍କଳୀୟମାନଙ୍କର ଏହି ବିଶ୍ୱଜନନୀ ମହାଭାବ ଓ ଉଦାର ପ୍ରଶସ୍ତ ମାନବିକତା ସମ୍ବନ୍ଧରେ ଉତ୍କଳ-ଦକ୍ଷିଣ ସୀମାର ସମସ୍ୟା-ଅଭିଭାଷଣରେ ଯାହା ଉଲ୍ଲେଖ କରିଥିଲେ, ଭାଷା, ଭାବ, ଜାତୀୟ ଉଦ୍ଦୀପନା ଏବଂ କବିତ୍ୱ ଛଟା; ଏ ସକଳ ଦିଗରୁ ଏହା ଓଡ଼ିଆ ଗଦ୍ୟସାହିତ୍ୟର ଏକ ପରମ ଗୌରବମୟ ଓ ଉପଭୋଗ୍ୟ ସାମଗ୍ରୀ । ତେଣୁ ଉତ୍କଳର ବିଶ୍ୱପ୍ରୀତି ସମ୍ବନ୍ଧରେ ଯେ ଯେଉଁଠାରେ ଆଲୋଚନା କରନ୍ତି, ସେମାନେ ସମସ୍ତେ ପ୍ରାୟ ଗୋପବନ୍ଧୁଙ୍କର ଏହି ଉକ୍ତିର ଉଦ୍ଧାର କରିଥାନ୍ତି । ଏ ସମ୍ପର୍କରେ ଗୋପବନ୍ଧୁ କହିଥିଲେ, "ବିଶ୍ୱପ୍ରୀତି ହିଁ ଓଡ଼ିଆର ଜାତୀୟତା, ପୂର୍ଣ୍ଣପ୍ରାଣ ଓଡ଼ିଆର ମନୁଷ୍ୟତା । + + + ଓଡ଼ିଆର ଏହି ଭାବ ନୀଳାଚଳ ଧାମରେ ପ୍ରକଟିତ । ତେଣୁ ଜଗନ୍ନାଥ ଓଡ଼ିଆର ଜାତୀୟ ଦେବତା । ବଦ୍ରିନାଥ, ରାମନାଥ, ଦ୍ୱାରକାନାଥ, ସ୍ଥାନ ବିଶେଷରେ ନାଥ । ମାତ୍ର ଜଗତର ନାଥ ନୁହନ୍ତି ! + + + ବାସ୍ତବିକ ଉତ୍କଳଭୂମି, ସଂକୀର୍ଣ୍ଣ ଭୂମି ନୁହେଁ । ଏହା କେବେ କ୍ଷୁଦ୍ରରେ ସୀମାବଦ୍ଧ ନୁହେଁ । ପୁରୀ, ଭୁବନେଶ୍ୱର, କୋଣାର୍କ ମନ୍ଦିରର ବିଶାଳତା ଏହାର ପରିଚୟ । + + + ଯେଉଁ ଦେଶର ଦେବତା ଜଗନ୍ନାଥ, ସେ ଦେଶର ନଦୀ, ଗିରି, ସାଗର, ଶ୍ମଶାନରେ ଯେ ସେହି ମହା ଉଦାରଭାବ ବିକାଶ ପାଇବ ତାହା ସ୍ୱାଭାବିକ । ଓଡ଼ିଶାର ନଦୀ ମହାନଦୀ, ସମୁଦ୍ର ମହୋଦଧି, ଗିରି ମହେନ୍ଦ୍ର, ବୃକ୍ଷ କଳ୍ପବଟ, ଏମନ୍ତ କି ଶ୍ମଶାନ ମାନବର ଅନ୍ତିମ ସ୍ଥାନ ନୁହେଁ, ବରଂ ଅନନ୍ତ ଧାମର ପ୍ରବେଶଦ୍ୱାର -ସ୍ୱର୍ଗଦ୍ୱାର । + + + । ଶିଳ୍ପରେ ଏବଂ ଦେବ ମୂର୍ତ୍ତିରେ ଓଡ଼ିଆ ହୃଦୟର ଯେ ଭାବ ବ୍ୟକ୍ତ କରିଅଛି, ଏହିପରି ଗୋଟିଏ ଗୋଟିଏ ଶବ୍ଦରେ ତାହାର ପ୍ରାଣର କବିତା ସେହି ଉଦାର ମହାଭାବ ପ୍ରକାଶ କରିଅଛି ।"

ଓଡ଼ିଆ ଜାତିକୁ ଚିହ୍ନି, ଚିହ୍ନାଇବାର ଅସାମାନ୍ୟ ଶକ୍ତି ଥିଲା ଗୋପବନ୍ଧୁଙ୍କର । ଉତ୍କଳର ଏହି ମହାଭାବରେ ତାଙ୍କର ଚିତ୍ତ ଯେପରି ସ୍ପନ୍ଦିତ, ଉଦ୍ଦୀପିତ, ଜାଗରିତ ଓ ପୁଲକିତ ହେଉଥିଲା, ସେପରି ଆଉ

କାହାର ହେଜ ନ ଥିଲା । ସେଥିପାଇଁ ତ ସେ 'ଉତ୍କଳ-ମଣି' ଓ 'ନବ୍ୟ' ଉତ୍କଳର ପ୍ରତିଷ୍ଠାତା ।'

ଭାରତରେ ଜାତୀୟ ସଂହତି ଓ ଐକ୍ୟର ଅଭାବ ଦେଖି ସ୍ୱର୍ଗତ ନେହେରୁ ବାରମ୍ବାର ଏ ଦେଶବାସୀଙ୍କୁ ଚେତାଇବାକୁ କହୁଥିଲେ "ପ୍ରଥମେ ଭାରତ କଥା ଭାବ, ପରେ ନିଜ ଅଞ୍ଚଳ କିମ୍ବା ପ୍ରଦେଶର କଥା ଭାବିବ ।" ଏବେ ମଧ୍ୟ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦେଶବାସୀଙ୍କୁ ଆହ୍ୱାନ ଦେଇ କହୁଅଛନ୍ତି ' Nation first and party next ।" କିନ୍ତୁ ୧୯୧୯ ମସିହାରେ ଉତ୍କଳୀୟମାନଙ୍କୁ ଏହି ଭାରତୀୟ ମହାଭାବ ଏବଂ ଉଦାର ମାନବିକ ଧର୍ମରେ ଉଦ୍‌ବୁଦ୍ଧ କରିବା ନିମନ୍ତେ ଗୋପବନ୍ଧୁ କହିଥିଲେ, "ଅତଏବ ଭାରତୀୟ ଆକାଂକ୍ଷା ସଙ୍ଗେ ଆମ୍ଭମାନଙ୍କର ଜାତୀୟ ଆକାଂକ୍ଷା ମିଳାଇ ସମଗ୍ର ଭାରତ ମହାଜାତିର କଲ୍ୟାଣରେ ଯଥାଶକ୍ତି ଆତ୍ମନିୟୋଗ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ମନେ ରଖିବାକୁ ହେବ, ଆମ୍ଭେମାନେ ପ୍ରଥମେ ମନୁଷ୍ୟ, ପରେ ଭାରତୀୟ ଏବଂ ସର୍ବଶେଷରେ ଓଡ଼ିଆ ।"

ଏପରି ପରିସ୍ଥିତିରେ ଭାରତ ଜାତୀୟ ଆନ୍ଦୋଳନରୁ ଉତ୍କଳ-ସମ୍ମିଳନୀ କିପରି ପୃଥକ୍ ରହିପାରେ ? ଗୋପବନ୍ଧୁ ଉତ୍କଳ-ସମ୍ମିଳନୀର ସଭାପତି ରୂପେ ସମବେତ ସଭ୍ୟ ଓ ଦର୍ଶକମାନଙ୍କୁ ସେହି ପ୍ରଶ୍ନ ପଚାରିଥିଲେ । ଏହା ପୂର୍ବରୁ ଉତ୍କଳ-ସମ୍ମିଳନୀ ଭାରତୀୟ ରାଜନୀତିରେ କୌଣସି ଭାଗ ନେଉ ନ ଥିଲା । ଦେଶମିଶ୍ରଣକୁ ଅଗ୍ରାଧିକାର ଦେଇ ଓଡ଼ିଶାର କେତେକ ଲୋକହିତକର କାର୍ଯ୍ୟାନୁଷ୍ଠାନ କରିବା ଥିଲା ଏହାର ଲକ୍ଷ୍ୟ । କିନ୍ତୁ ଗୋପବନ୍ଧୁ ଭାରତୀୟ ରାଜନୀତିରେ ଯୋଗ ଦେବାପାଇଁ ତାଙ୍କର ଅଭିଭାଷଣରେ ଅନେକ ଯୁକ୍ତି ଉପସ୍ଥାପିତ କରିଅଛନ୍ତି । ଏ ବିଷୟରେ ତାଙ୍କର ପ୍ରଥମ କଥା ହେଲା—"ଆମ୍ଭେମାନେ ଭାରତୀୟ ଅନୁଷ୍ଠାନ ସଙ୍ଗେ ସଂଯୁକ୍ତ ହେଉ ବା ନ ହେଉ, ଭାରତର ସୁଖଦୁଃଖରେ ଆମ୍ଭମାନଙ୍କୁ ଅଳ୍ପାଧିକ ପରିମାଣରେ ଭାଗୀ ହେବାକୁ ପଡ଼ିବ । ଏକ ଶରୀରର ଅବୟବ ବିଶେଷ ଶରୀରର ସମୂହ କ୍ରିୟାରେ ନିଜର କର୍ମ କରୁ ବା ନ କରୁ ପଛକେ ଶରୀରର ରୋଗବ୍ୟାଧି ସ୍ୱାସ୍ଥ୍ୟ ସୁଖରେ ତାହାର ଭାଗ ନିଶ୍ଚିତ ହିଁ ରହିବ । ଆମ୍ଭମାନଙ୍କର ଏ ଉଦାସୀନତାରେ ଯେ ରାଜଭକ୍ତିର

ପଣ୍ଡିତମାନେ ନାମ୍ୟ ଉପରେ ଯାହା ମିଳୁଅଛି, ତାହାର ବିଶେଷ କିଛି ମୂଲ୍ୟ ଅଛି କି ନାହିଁ, ସନ୍ଦେହ । କେହି ରାଜପୁରୁଷ ଏ ପର୍ଯ୍ୟନ୍ତ ମଧ୍ୟ କହୁଛନ୍ତି ଯେ, Orissa is hot bed of loyalty" ଅର୍ଥାତ୍ ଓଡ଼ିଶା ରାଜଭକ୍ତିରେ ସଢ଼ିଯାଉଛି । ଏ ଭକ୍ତିର ବା ଦେବତାଙ୍କ ନିକଟରେ ଆଦର କ'ଣ ? ଏତେ ଭକ୍ତି ଥିଲେ India Defence Act ଓଡ଼ିଶାରେ ଜାରି ହେଲା କି ?" ଏହିପରି ଭାବରେ ଉତ୍କଳ-ସମ୍ମିଳନୀକୁ ଭାରତୀୟ ରାଜନୈତିକ ଆନ୍ଦୋଳନ ସହିତ ସଂଯୁକ୍ତ କରିବାପାଇଁ ସେ ନାନା ଯୁକ୍ତିର ଅବତାରଣା କରି ଶେଷରେ କହିଲେ, "ସମଗ୍ର ଭାରତର ଆନ୍ଦୋଳନରେ ଭାରତ ଯାହା ସମୂହ ଭାବରେ ଲାଭ କରୁଛି, ଓଡ଼ିଶା ବା ଓଡ଼ିଆ ଜାତି ତା'ର ଫଳଭୋଗୀ ହେଉ ନାହାନ୍ତି କି ? ଅତଏବ ଭାରତୀୟ ଆକାଂକ୍ଷା ସଙ୍ଗେ ଆମ୍ଭମାନଙ୍କର ଜାତୀୟ ଆକାଂକ୍ଷା ମିଳାଇ ସମଗ୍ର ଭାରତ ମହାଜାତିର କଲ୍ୟାଣରେ ଯଥାଶକ୍ତି ଆତ୍ମନିୟୋଗ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।"

କିନ୍ତୁ ଏ ବିଷୟରେ ଅନ୍ୟମାନେ ଗୋପବନ୍ଧୁଙ୍କ ସହିତ ଏକମତ ହେଲେ ନାହିଁ । ନାନା ବାଦାନୁବାଦ ଚାଲିଲା । ଉତ୍କଳ-ସମ୍ମିଳନୀରେ ରାଜନୀତିର ଗନ୍ଧ ବାଜିଲେ କେବଳ ଯେ ଦେଶମିଶ୍ରଣ ଆନ୍ଦୋଳନ ବିପର୍ଯ୍ୟସ୍ତ ହୋଇପଡ଼ିବ, ଯେତିକି ନୁହେଁ, ନାନା ଅନିବାର୍ଯ୍ୟ କାରଣରୁ ଉତ୍କଳ-ସମ୍ମିଳନୀର ଅସ୍ତିତ୍ୱ ପର୍ଯ୍ୟନ୍ତ ଲୋପ ପାଇ ଯାଇପାରେ । ଏପରି ଅମୂଳକ ଆଶଙ୍କା ମଧ୍ୟ କାହାରି କାହାରି ମନରେ ଜାତ ହେଲା । ଫଳରେ ୧୯୨୯ର ଉତ୍କଳ-ସମ୍ମିଳନୀରେ ଏ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ପ୍ରସ୍ତାବ ଆଗତ ହୋଇ ଗୃହୀତ ହୋଇପାରିଲା ନାହିଁ । ଅବଶ୍ୟ ଏହା ପୂର୍ବରୁ ୧୯୧୮ ମସିହା ଉତ୍କଳ-ସମ୍ମିଳନୀର ଅଧିବେଶନରେ ମଣ୍ଟେଗୁ ଚେମସ୍‌ଫୋର୍ଡ଼ଙ୍କ ଶାସନ ସଂସ୍କାରର ପ୍ରସ୍ତାବ ବିଚାର କରିବାକୁ ଯେଉଁ ଆଲୋଚନା ହୋଇଥିଲା, ତାହାକୁ ଲକ୍ଷ୍ୟ କରି ଗୋପବନ୍ଧୁ ଲେଖିଥିଲେ, "ଉତ୍କଳ-ସମ୍ମିଳନୀ ଜୀବନରେ ଏହି ଯେ ନୂତନ ପନ୍ଥା ଫିଟିଲା, ଏଣିକି ତାହା ଅକୁଣ୍ଠିତ ଚିତ୍ତରେ ଅବଶ୍ୟ ଦେଶକାଳପାତ୍ର ବିବେଚନା ସହିତ ସାବଧାନ ଭାବରେ ଅନୁସୃତ ହେବ ବୋଲି ଆଶା କରାଯାଏ ।

କିନ୍ତୁ ମହାଭାରତୀୟ ପ୍ରବାହରେ ଉତ୍କଳ-ସମ୍ମିଳନୀକୁ ମିଶାଇ ଦେବାକୁ ୧୯୧୯ ମସିହା ଉତ୍କଳ-ସମ୍ମିଳନୀର ସଭାପତି ରୂପେ ଗୋପବନ୍ଧୁ

ଯେତେ ଯୁକ୍ତି ତର୍କ ବାଢ଼ିଲେ ମଧ୍ୟ, ଆଶାନୁରୂପ ଫଳ ଫଳି ନ ଥିଲା । ଏ ଫଳ ଅପେକ୍ଷା କରିଥିଲା ୩୦।୧୨।୧୯୨୦ରେ ଉତ୍କଳ ସମ୍ମିଳନୀର ଚକ୍ରଧରପୁର ଅଧିବେଶନକୁ । ଏ ବିଷୟରେ ଗୋପବନ୍ଧୁଙ୍କର ଜଣେ ସହକର୍ମୀ କହିଛନ୍ତି, "ସେତେବେଳେ ଗୋପବନ୍ଧୁଙ୍କର କି ଦୁଃଖ, କଂଗ୍ରେସ ଅଧିବେଶନରେ ଓଡ଼ିଶା ପାଇଁ ସ୍ଥାନ ନାହିଁ । ଆଗାମୀ ନାଗପୁର କଂଗ୍ରେସରେ ଯେ କୌଣସିମତେ ଓଡ଼ିଶାର ସ୍ୱତନ୍ତ୍ର ସ୍ଥାନ ବଜାୟ ରଖିବାକୁ ହେବ । ଫଳତଃ ନାଗପୁର କଂଗ୍ରେସରେ ଓଡ଼ିଶା ଏକ ସ୍ୱତନ୍ତ୍ର କଂଗ୍ରେସ-ପ୍ରଦେଶ ରୂପେ ଗୃହୀତ ହେଲା ।" ନାଗପୁରରୁ ଫେରି ସେହି ବର୍ଷରେ ଚକ୍ରଧରପୁର ଉତ୍କଳ-ସମ୍ମିଳନୀ ଅଧିବେଶନରେ ଗୋପବନ୍ଧୁ ପ୍ରସ୍ତାବ କଲେ ଯେ, ସମ୍ମିଳନୀ କଂଗ୍ରେସ ମତ ଗ୍ରହଣ କରୁ ଓ ସେ ପ୍ରସ୍ତାବ ଗୃହୀତ ହୋଇଗଲା । ଏ ସମ୍ମିଳନୀର ସଭାପତି ହୋଇଥିଲେ ଜଗବନ୍ଧୁ ସିଂହ । ଗୋପବନ୍ଧୁ ପ୍ରସ୍ତାବ ଆଗତ କଲେ—"ସମ୍ମିଳନୀର ବର୍ତ୍ତମାନ ଯେ ଉଦ୍ଦେଶ୍ୟ ନିରୂପିତ ହୋଇଅଛି, ତାହା ସ୍ଥିର ରଖାଯାଇ, ଭାରତ ଜାତୀୟ ମହାସମିତିର ଯେ ଉଦ୍ଦେଶ୍ୟ ଓ ଆକାଂକ୍ଷା, ତାହା ଏହି ସମ୍ମିଳନୀର ଉଦ୍ଦେଶ୍ୟ ଓ ଆକାଂକ୍ଷା ରୂପେ ଗୃହୀତ ହେଉ ।" ପ୍ରସ୍ତାବର ଅନୁମୋଦକ ଥିଲେ ଚନ୍ଦ୍ରଶେଖର ବେହେରା । ସେତେବେଳେ ଭାରତ ଜାତୀୟ ମହାସମିତିର ଉଦ୍ଦେଶ୍ୟ ଓ ଆକାଂକ୍ଷା—ଅସହଯୋଗ ଆନ୍ଦୋଳନ ଦ୍ୱାରା ଭାରତରେ ସ୍ୱାଧୀନତାପ୍ରାପ୍ତି । ଯେଉଁ ଜଗବନ୍ଧୁ ସିଂହ ଏହି ଅଧିବେଶନର ସଭାପତି ଥିଲେ, ସେ ନିଜେ ପୂର୍ଣ୍ଣାକାରରେ ଗୋପବନ୍ଧୁଙ୍କର ଏହି ପ୍ରସ୍ତାବ ଓ ମହାଭାରତୀୟ ପ୍ରଚେଷ୍ଟାକୁ ଲିପିବଦ୍ଧ କରି ଯାଇଛନ୍ତି—

"ସିଂହଭୂମି ଜିଲ୍ଲା ଚକ୍ରଧରପୁରଠାରେ
ସମ୍ମିଳନୀ ବଇଠକ ହେଲା ଯେ କାଳରେ ।
ସିଂହ ଜଗବନ୍ଧୁ ସଭାପତି ହୋଇଥିଲେ
ଗୋପବନ୍ଧୁ ଯାଇ ସେ ସଭାରେ ଯୋଗ ଦେଲେ ;

\+ \+ \+

ଗୋପବନ୍ଧୁ ବୋଇଲେ ଭାରତ ସଙ୍ଗେ ଯିବା
ଭାରତଠାରୁ କିମ୍ପାଇ ଅଲଗା ହୋଇବା ?

ଅନ୍ୟହେଯୋଗ ସମର ଲାଗିବ ଭାରତେ
ଉତ୍କଳ କମାଇ ଲୁଚି ରହିବ କି ପଛେ ?
ଉତ୍କଳ ଯେବେ ଭାରତ ସଙ୍ଗେ ନ ମିଳିବ
ଭାରତ ସହାନୁଭୂତି କେବେ ନ ପାଇବ ।
ଉତ୍କଳ ଭାରତ ଅଙ୍ଗ ଏକଥା ନିଶ୍ଚିତ
ଭାରତରୁ ପୃଥକ୍ ରହିବା ଅନୁଚିତ ।
ଭାରତ ମହାଜାତୀୟ ଭାବ ନ ଛାଡ଼ିବ
ଭାରତ ସୁଖ ଦୁଃଖରେ ସମଭାଗୀ ହେବ ।

+ + +

ସଭାପତି-ଭାଷଣରେ ଏମନ୍ତ ବୋଇଲେ
ଭାରତ ସଙ୍ଗେ ମିଶିବା ଜଣାଯାଏ ଭଲେ ।
ସଭାରେ ଅଧିକ ମତେ ସିଦ୍ଧାନ୍ତ ହୋଇଲା
କଂଗ୍ରେସରେ ଯୋଗ ଦେବା କଥା ସ୍ଥିର ହେଲା ।”

ଗୋପବନ୍ଧୁ ଅନେକ ସମୟରେ କହୁଥାନ୍ତି 'ଧର୍ମୋ ରକ୍ଷତି ଧାର୍ମିକଂ ।' ଗୋପବନ୍ଧୁଙ୍କର ମହାମାନବିକତାର ଧର୍ମ ତାଙ୍କୁ ଶେଷରେ ଯଶସ୍ବୀ କରିଥିଲା । ୧୯୨୧ ମାର୍ଚ୍ଚ ମାସରେ ବେଜୱାଡ଼ାଠାରେ ନିଖିଳ ଭାରତ କଂଗ୍ରେସ କମିଟି ବସିଥିଲା । ସେହି କମିଟିରେ ସର୍ବପ୍ରଥମେ ସାତଜଣ ଓଡ଼ିଆ ସ୍ଥାନ ପାଇଥିଲେ । ଫେରିବେଳେ ସେ ବେଜୱାଡ଼ାଠାରେ କହିଥିଲେ,—"ଭାରତୀୟ ଜାତୀୟ ପାର୍ଲାମେଣ୍ଟରେ ଓଡ଼ିଶା ଏତେଦିନେ ସ୍ଥାନ ପାଇଲା; ଅନ୍ୟ କୋଡ଼ିଏଟି ପ୍ରଦେଶ ଏହାର ସ୍ୱାତନ୍ତ୍ର୍ୟ ସ୍ୱୀକାର କଲେ ।' ଗୋପବନ୍ଧୁଙ୍କ ମହାଭାରତୀୟ ଭାବ-ସାଧନାର ସିଦ୍ଧି ଏଇଠାରେ ।

# ମୟୂରଭଞ୍ଜ
# ଷ୍ଟେଟ କାଉନ୍‌ସିଲର ସଭ୍ୟ
# ଗୋପବନ୍ଧୁ ଦାସ

## ୰ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ

[ଅର୍ଦ୍ଧଶତାବ୍ଦୀର ଓଡ଼ିଶାକୁ ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱ ବିଶେଷଜ୍ଞ ଓ ଇତିହାସ ଗବେଷକ ସ୍ୱର୍ଗତ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର ଯାହା ଦାନ ରହିଛି, ସଂକ୍ଷେପରେ ତାହା କଳନା କରିବା ଅସମ୍ଭବ । ତେବେ, ତାଙ୍କ ଗବେଷଣା ବଳରେ ବୈଜ୍ଞାନିକ ପ୍ରଣାଳୀରେ ଆମର ଇତିହାସ ପ୍ରଣୟନ ସମ୍ଭବ ହୋଇଥିବାରୁ, ତାଙ୍କୁ ଯଥାର୍ଥରେ 'ଆଧୁନିକ ଓଡ଼ିଶା ଇତିହାସର ଜନ୍ମଦାତା' ରୂପେ ଧରାଯାଇ ପାରେ । ତାଙ୍କର ଆଲୋଚ୍ୟ ପ୍ରବନ୍ଧଟି ମଧ୍ୟ ଗବେଷଣା ଉପାଦାନରେ ଭରପୂର । ଏହା ସମାଜର ୩୪ଶ ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାରେ ପ୍ରକାଶ ପାଇଥିଲା ।—ସ ]

୧୯୧୦ ଜାନୁୟାରୀରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ମୟୂରଭଞ୍ଜର ସରକାରୀ ଓକିଲ ନିଯୁକ୍ତ ହୋଇ ବାରିପଦା ଆସିଥିଲେ । ସରକାରୀ ଓକିଲ ହିସାବରେ ମୟୂରଭଞ୍ଜ ଷ୍ଟେଟ କାଉନ୍‌ସିଲରେ ସେ ଜଣେ ବେସରକାରୀ ସଭ୍ୟ ହିସାବରେ ମହାରାଜାଙ୍କ ଦ୍ୱାରା ମନୋନୀତ ହୋଇଥିଲେ ।

ମୟୂରଭଞ୍ଜ ଷ୍ଟେଟ କାଉନ୍‌ସିଲର ପହିଲି ଅଗଷ୍ଟ ୧୯୮୨ଠାରୁ ବାରିପଦାରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସଭାପତିତ୍ୱରେ ସ୍ଥାପିତ

ହୋଇଥିଲା । ଏଥିରେ ସରକାରୀ ବଡ଼ ବଡ଼ ରାଜକର୍ମଚାରୀମାନେ ମୟୂରଭଞ୍ଜର ରାଜବଂଶୀୟ ଓ ଭଦ୍ରବ୍ୟକ୍ତିମାନେ ବେସରକାରୀ ସଭ୍ୟ ରୂପେ ମହାରାଜାଙ୍କ ଦ୍ୱାରା ମନୋନୀତ ହେବାର ବ୍ୟବସ୍ଥା ଥିଲା । ଏଠାରେ ସ୍ମରଣୀୟ ଯେ, ୧୮୯୨ରେ ମହାରାଜା ଶ୍ରୀରାମଚନ୍ଦ୍ର ନାବାଳକୀ ପରେ ମୟୂରଭଞ୍ଜର ଶାସନଭାର ପାଇଥିଲେ ଓ ସେହି ୧୮୯୨ରେ 'ଇଣ୍ଡିଆ କାଉନ୍‌ସିଲ ଆକ୍ଟ' (The India Council Act of 1892) ବ୍ରିଟିଶ ପାର୍ଲିଆମେଣ୍ଟରେ ସ୍ୱୀକୃତ ହୋଇଥିଲା । ଏହି ଆକ୍ଟ ଦ୍ୱାରା ଭାରତୀୟ ବ୍ୟବସ୍ଥାସଭାରେ ବେସରକାରୀ ସଭ୍ୟସଂଖ୍ୟା ବର୍ଦ୍ଧିତ ହେବାର ବ୍ୟବସ୍ଥା ଥିଲା ଓ ବ୍ୟବସ୍ଥାପକ ସଭାର ସଭ୍ୟମାନେ ସରକାରଙ୍କ ବଜେଟ ସମ୍ବନ୍ଧୀୟ ଆୟ ବ୍ୟୟ ଉପରେ ଓ ସାଧାରଣ ଶାସନ କାର୍ଯ୍ୟର ଆଲୋଚନା କରିବାର ଅଧିକାର ପାଇଥିଲେ । ମହାରାଜା ଶ୍ରୀରାମଚନ୍ଦ୍ର ଠିକ୍ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ମୟୂରଭଞ୍ଜରେ ବ୍ୟବସ୍ଥାପକ ସଭା ଗଠନ କରିଥିଲେ । ଏହାର ଆଉ ଏକ ଉଦ୍ଦେଶ୍ୟ ମଧ୍ୟ ଥିଲା । ୧୮୮୨ରେ କଲିକତା ହାଇକୋର୍ଟର ଫୁଲ୍‌ବେଞ୍ଚ ନିଷ୍ପତ୍ତି କଲେ ଯେ, ମୟୂରଭଞ୍ଜ ରାଜ୍ୟ ବ୍ରିଟିଶ-ଭାରତଭୁକ୍ତ ନୁହେଁ, ଏଣୁ ଏଠାରେ ବ୍ରିଟିଶ ଭାରତୀୟ ଆଇନ ପ୍ରଚଳିତ ହେବା ଅସଙ୍ଗତ । କିନ୍ତୁ ୧୮୮୨ଠାରୁ ମୟୂରଭଞ୍ଜ ରାଜ୍ୟ ନାବାଳକୀ ଶାସନରେ ବ୍ରିଟିଶ ସରକାରଙ୍କ ଦ୍ୱାରା ଶାସିତ ହେବାରୁ ବ୍ରିଟିଶ ଆଇନ ମୟୂରଭଞ୍ଜରେ ପ୍ରଚଳିତ ହୋଇଥିଲା । ରାଜ୍ୟ ଶାସନ ଦୃଷ୍ଟିରୁ ସାମଞ୍ଜସ୍ୟ ରକ୍ଷାପାଇଁ ସେହିସବୁ ଆଇନକୁ ମୟୂରଭଞ୍ଜରେ ପ୍ରଚଳିତ ରଖିବା ପାଇଁ ବ୍ୟବସ୍ଥାପକ ସଭାର ଆବଶ୍ୟକତା ନିତାନ୍ତ ଜରୁରୀ ହୋଇଥିଲା ।

ବ୍ୟବସ୍ଥାପକ ସଭାର ଆଲୋଚନା ସଂକ୍ଷେପରେ ଏକ ଚମଡ଼ାବନ୍ଧା ବଡ଼ ଖାତାରେ ପ୍ରୋସିଡ଼ିଂ ଭାବରେ ଲିଖିତ ହେଉଥିଲା ଓ ପ୍ରତ୍ୟେକ ସଭାର ବିବରଣୀ ଶେଷରେ ସଭାପତି ମହାରାଜା ରାମଚନ୍ଦ୍ର ସ୍ୱାକ୍ଷର କରି ଅନୁମୋଦନ କରୁଥିଲେ । ୧୯୫୯ରେ ଗୋପବନ୍ଧୁଙ୍କର ସରକାରୀ ଓକିଲ ନିଯୁକ୍ତି ସମ୍ପର୍କରେ ବାରିପଦାରେ ଥିବା ରେକର୍ଡ଼ ରୁମ୍‌ରେ ଫାଇଲ ତଲାସ କରିବା ସମୟରେ ମୋର ବନ୍ଧୁ ଶ୍ରୀ ମହେଶଚନ୍ଦ୍ର

ମହାପାତ୍ର ଏହି ବ୍ୟବସ୍ଥାପକ ସଭାର ଲିଖିତ ବିବରଣୀ ଖାତାର ସନ୍ଧାନ ଦେଲେ ଓ ମୁଁ ତାହା ପ୍ରଥମ ଥର ପଢ଼ିବାର ସୁଯୋଗ ପାଇଲି । ତେଣୁ ମୁଁ ତାଙ୍କଠାରେ ଋଣୀ । ଏହି ଖାତାରେ ୨୦ ବର୍ଷର ମୟୂରଭଞ୍ଜ ବ୍ୟବସ୍ଥାପକ ସଭାର ବିବରଣୀ ଲିଖିତ ଅଛି । ମହାରାଜା ଶ୍ରୀ ରାମଚନ୍ଦ୍ରଙ୍କର ମୃତ୍ୟୁପରେ ବ୍ୟବସ୍ଥାପକ ସଭା ଭାଙ୍ଗିଗଲା । ମୟୂରଭଞ୍ଜ ଜିଲାର ଗେଜେଟିଅର ଲେଖା ସମ୍ପର୍କରେ ଡକ୍ଟର ନବୀନକୁମାର ସାହୁଙ୍କୁ ମୁଁ ଏହି ବିବରଣୀ ଖାତାର କଥା କହିବାରୁ, ସେ ତାହା ବାରିପଦାର ଜିଲା ଜଜ୍‌ଙ୍କ ଲାଇବ୍ରେରୀରୁ ଭୁବନେଶ୍ୱର ନେଇଥିଲେ ଓ ତହିଁର ଟାଇପ ନକଲ ଅନୁଗ୍ରହ କରି ମତେ ଦେଇଥିଲେ । ଏହି ବିବରଣୀର ଉପକରଣ ଉପରେ ମୋର ଏ ପ୍ରବନ୍ଧ ଲିଖିତ ହୋଇଅଛି ।

ଗୋପବନ୍ଧୁ ଦାସଙ୍କ ବାରିପଦା ଅବସ୍ଥାନ କାଳରେ କେବଳ ତିନୋଟି ବ୍ୟବସ୍ଥାପକ ସଭା ବସିଥିଲା ଓ ସେସବୁ ସଭାରେ ସେ ଯୋଗ ଦେଇ ଆଲୋଚନାରେ ନିଜର ହୃଦୟବତ୍ତା ଓ ନିର୍ଭୀକ ମତ ବ୍ୟକ୍ତ କରିଥିଲେ । ତଳେ ତିନୋଟି ସଭାର ବିବରଣୀରୁ ଦାସେ ଆପଣଙ୍କର କଥା ଓ ତତ୍‌ସମ୍ପର୍କରେ ଅନ୍ୟାନ୍ୟ ଆଲୋଚନା ଉଦ୍ଧାର କରାଗଲା ।

( ୧ )

୧୯୧୦ ଫେବୃୟାରୀ ୨୫ ତାରିଖରେ ରାଜବାଡ଼ିରେ ମୟୂରଭଞ୍ଜ ଷ୍ଟେଟ୍ କାଉନ୍‌ସିଲ୍‌ର ଏକ ବୈଠକ ଦିନ ୩ଟା ସମୟରେ ବସିଥିଲା । ଏଥିରେ ଯୋଗ ଦେଇଥିବା ସଭ୍ୟଙ୍କର ନାମ ତଳେ ଦିଆଗଲା—

୧ । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ—ସଭାପତି ।
୨ । ମି: ଏଇଚ: ବି: କଣ୍ଡେଲ—ଉପଦେଷ୍ଟା ସଭ୍ୟ ଓ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ।
୩ । ବାବୁ ମୋହିନୀ ମୋହନ ଧର—ଉପଦେଷ୍ଟା ସଭ୍ୟ ଓ ଦେଓ୍ୟାନ ।
୪ । ବାବୁ ହରିଦାସ ବୋଷ—ଉପଦେଷ୍ଟା ସଭ୍ୟ ଓ ଷ୍ଟେଟ୍ ଜଜ୍ ।
୫ । ବାବୁ ରମହରିଜନ୍ମ ବାବୁ—ଅତିରିକ୍ତ ସଭ୍ୟ ।
୬ । ବାବୁ ଗୋପବନ୍ଧୁ ଦାସ—ଅତିରିକ୍ତ ସଭ୍ୟ ।

ଏହି ସଭାରେ ତିନୋଟି ରେଗୁଲେସନ ଆଲୋଚିତ ଓ ଗୃହୀତ ହେବାର ଥିଲା । ହରିଦାସ ବୋଷ ଅସ୍ତ୍ର ଆଇନ (Arms Regulation) ଚଳାଇବାପାଇଁ ପ୍ରସ୍ତାବ କଲେ । ଏହା ଉପରେ ପ୍ରଥମେ ଗୋପବନ୍ଧୁ ଦାସ ଯାହା କହିଥିଲେ ଓ ଯାହାର ସାରାଂଶ ପ୍ରୋସିଡ଼ିଂରେ ଲିଖିତ ହୋଇଥିଲା, ତାହା ତଳେ ଉଦ୍ଧୃତ ହେଲା—

" Babu Gopabandhu Das said that the bill had been intended to forearm danger, but he did not think that any event had occurred in Mayurbhanj to justify its introduction. He said that among the non-aboriginal population there were rich men who had done notting and yet could come under the operation of the law. He enquired if the foreigners from whom dangers were apprehended were only to come under the operation of the law and not any of the non-aboriginal people of the State.

Babu H. D. Bose replied that the object of the regulation was to control the importation into the state of arms by and body whether he was an inhabitant of the state or not. He further pointed out that no aboriginal people were to be exempted from the Act, but from the licence for arms locally manufactured."

ଏହାପରେ ସଭାପତି ରେଗୁଲେସନର ଆବଶ୍ୟକତା ସମ୍ପର୍କରେ ବିଶଦ ଭାବରେ ଆଲୋଚନା କରିଥିବାର କଥା ବିବରଣୀରେ ଲିଖିତ ଅଛି । ଶେଷରେ ଷ୍ଟେଟ୍ ଜଜ୍‌ଙ୍କ ପ୍ରସ୍ତାବ ଉପରେ ଭୋଟ ନଆସିବାରେ ତାହା ସର୍ବସମ୍ମତିକ୍ରମେ ଗୃହୀତ ହୋଇ ୧୯୧୦ର ରେଗୁଲେସନ-୧ ପ୍ରଚଳିତ ହେଲା ।

ତତ୍ପରେ Court Fees Act ପ୍ରଚଳନର ପ୍ରସ୍ତାବ ହରିଦାସ ବୋଷ ଆଗତ କଲେ । ଏ ସମ୍ପର୍କରେ ଗୋପବନ୍ଧୁ ଦାସ ଯାହା

କହିଥିଲେ, ତାହାର ସାରାଂଶ ରିପୋର୍ଟରେ ନିମ୍ନଲିଖିତ ଭାବରେ ଲିଖିତ ଅଛି—

"Babu Gopabandhu Das said that he had talked with many people and discussed with them and litigants about the introduction of the British Indian Court Fees Act. He was as yet, he said, a stranger to the state and he was voicing their sentiment. He said that according to them litigation has increased not because the Court Fees Regulation not being enforced but because to increase of machinery in administrations. Increased fee would give the richer opportunity to oppress the poor. Poor people, the speaker said, are unable to pay fees according to the existing arrangement Considering the condition of the people most of whom were poor the Court Fees Act, he said. had many latches. He advocated the system of Village Panchyats. He was, he said, also opposed to the introduction of the Co-operative Credit Societies Act. No law should be passed till the circumstances arise. He said that the institution could be worked by executive order till it had made sufficient progress. He is not for strangling it at that stage."

ଏହାଉତରେ ଲିଖିତ ଅଛି :—

"Babu H. D. Bose replied that the poor certainly deserve sympathy. Whether all people deserve sympathy was worth consideration. He pointed out that by increasing the rate of fees, frivolous and vexations cases would be stopped. Fees according to the rates prevailing in British-

India had been adopted in Nilagiri, Keonjhar and Kolhan. It was a tax and could not be avoided. As for Co-operative Credit Societies Act, it, he said, had to be legalised from the very beginning. The thing must be proposed up by law."

"Babu M. M. Dhar said that the introduction of the Co-operative Societies Act would far from hampering the people would rather help them."

"Then the Act was passed. No stamp and no registration woud be necessary"

ତତ୍ପରେ ଲିଖିତ ଅଛି :—

"The President said that it was no use beating about the bush. He did not doubt that it was fiscal measure. No State could exist without taxation and no people would welcome taxation. But it had to be faced. They must take the administration as it was based on British system. People must pay for the increased expenditure and revenue of the State was to be expended for the benefit of the People. It, the President pointed out, was the democratic and not the autocratic principle. There was famine expenditure and big irrigation project had to be undertaken. Where was, the money to come from to meet these ? Time had come to findout the way and means for increasing the revenue. It was not clear to him why they (i. e. the people) should forego the increased revenue when in Nilgirl, Keonjhar and Kolhan the increased rates of fees had been adopted. About

Co-operative Credit Societies Act he said that its object was palpable as put forth by the Dewan and the State Judge.

"Babu Gopabandhu Das then moved an amendment that the introduction of the Court Fees Act should be postponed. The President allowed the amendment although no previous notice was given. The amendment was then put to the vote and lost, the two additional members voting for it and the four advisory members voting against it.'

× × ×

"The bill was then passed as Regulation II of 1910"

× + ×

"IV. Babu H. D. Bose be leave to introduce the Mutation Regulation. In doing so he read out the object and reasons appended to the Bill. He then proposed that the bill might be referred to a Select Committee, composed of the Dewan, the State Pleader (Babu G. Das) and himself, with instruction to report at the sitting of Council. The Council adjurned *sinedie.*"

( ୨ )

ତତ୍ପରେ ଏପ୍ରିଲ ୭ ତାରିଖ ୧୯୧୦ରେ ୧୯୧୦-୧୧ର ବଜେଟ୍ ଆଲୋଚନା ଓ ଦାଖଲଖାରଜ ଆଇନ ଉପରେ ସିଲେକ୍ଟ କମିଟିର ରିପୋର୍ଟ ଆଲୋଚନା ପାଇଁ ସଭା ବସିଲା । ଏ ସଭାରେ ନିମ୍ନଲିଖିତ ସଭ୍ୟମାନେ ଉପସ୍ଥିତ ଥିଲେ :—

୧ । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ—ସଭାପତି ।
୨ । ଏଇଚ. ବି. କଣ୍ଡେଲ—ଉପଦେଷ୍ଟା ସଭ୍ୟ ।
୩ । ବାବୁ ଏମ୍. ଏମ୍. ଧର ଉପଦେଷ୍ଟା ସଭ୍ୟ ।
୪ । ଜେ. ଏ. ମାର୍ଟିନ୍—ଉପଦେଷ୍ଟା ସଭ୍ୟ ।
୫ । ବାବୁ ହରିଦାସ ବୋଷ—ଉପଦେଷ୍ଟା ସଭ୍ୟ ।
୬ । ରାଜକୁମାର ସାହେବ ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ—ଅତିରିକ୍ତ ସଭ୍ୟ ।
୭ । ବାବୁ ଗୋପବନ୍ଧୁ ଦାସ—ଅତିରିକ୍ତ ସଭ୍ୟ ।

ଏ ସଭାର ବିବରଣୀରେ ସଭାପତିଙ୍କ ବଜେଟ୍ ଭାଷଣ ବ୍ୟତୀତ ଆଉ କୌଣସି ସଭ୍ୟଙ୍କର ଭାଷଣ ବଜେଟ ଉପରେ ନାହିଁ । ତତ୍ପରେ ସିଲେକ୍ଟ କମିଟି ଦ୍ୱାରା ସଂଶୋଧିତ ଦାଖଲଖାରଜ ଆଇନ ଆଲୋଚିତ ହୋଇ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

( ୩ )

ତତ୍ପରେ ଏପ୍ରିଲ ୭ ତାରିଖ ୧୯୧୧ରେ ବଜେଟ୍ ଆଲୋଚନା ପାଇଁ ଷ୍ଟେଟ୍ କାଉନ୍‌ସିଲ ବସିଲା । ସଭାରେ ନିମ୍ନଲିଖିତ ସଭ୍ୟମାନେ ଉପସ୍ଥିତ ଥିଲେ ।

୧ । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ—ସଭାପତି ।
୨ । ବାବୁ ଏମ୍. ଏମ୍. ଧର—ଉପଦେଷ୍ଟା ସଭ୍ୟ ।
୩ । ଜେ. ଏ. ମାର୍ଟିନ୍—ଉପଦେଷ୍ଟା ସଭ୍ୟ ।
୪ । ବାବୁ ହରିଦାସ ବୋଷ—ଉପଦେଷ୍ଟା ସଭ୍ୟ ।
୫ । ବାବୁ ରାମହରି ଜେନା—ଅତିରିକ୍ତ ସଭ୍ୟ ।
୬ । ବାବୁ ଗୋପବନ୍ଧୁ ଦାସ—ଅତିରିକ୍ତ ସଭ୍ୟ ।
୭ । ବାବୁ ଗୋପବନ୍ଧୁ ପଟ୍ଟନାୟକ—ଅତିରିକ୍ତ ସଭ୍ୟ ।

ପ୍ରଥମେ ସଭାପତି ବଜେଟ ଉପରେ ଭାଷଣ ଦେଇଥିଲେ । ତତ୍ପରେ ଗୋପବନ୍ଧୁ ଦାସ ଓ ଅନ୍ୟ ସଭ୍ୟମାନଙ୍କର ମନ୍ତବ୍ୟ ଓ ସଭାପତିଙ୍କର ଶେଷ ଭାଷଣ ବିବରଣୀରେ ଯାହା ଲିଖିତ ଅଛି, ତାହା ପରପୃଷ୍ଠାରେ ଉଦ୍ଧୃତ ହେଲା—

"He (the President) then briefly reviewed the financial condition of the State in respect of the year the account of which had been closed; i. e. (1909-10), of the year that had just passed away, i. e. (1910-11) and of the year that was to come i. e. (1911-12). The account of 1909-10 had shown that the revenue expanded and had a tendency to keep pace with the expenditure that the opening balance on 1. 4. 1910 was far in excess of that on 1. 4. 1909 and that the railway had proved profitable concern yielding a dividend of 3½ percent. In the year that had just passed away the land revenue had gone on increasing, thanks to the steps of the Dewan. It was a record year in the point of land revenue collection. The stamp revenue had increased owing to the jntroduction of the British Indian Court Fees Act in the State. The forest revenue was however show a falling of owing to the termination of leases previously granted. But he hoped better result would be awaiting the state next year where with the introduction of Forest Manual better organisation was expected. There was an item of unusual expenditure—Chief's foreign travels during the year which exceeded the estimate provided therefor, as such travels are unusually expensive.'

× × ×

"He further pointed out to the unusual expenditure the state would have to incur in connection with the forth coming coronation Darbar at Delhi and for which provision has been made in the budget. As regards P. W. D. expenditure he regretted that no useful scheme beyond the irrigation pr ject in progress could be undertaken. He further hinted at the proposed Canal Regulation buying water rates which he hoped to yield a

certain return on the capital expenditure incurred. He also said that it was in contemplation to have a Local Board on education cess the yields from which would be spent purely on education and sanitation."

ଏଥିରେ ଗୋପବନ୍ଧୁ ଦାସ ଯାହା କହିଥିଲେ ତାହାର ସାରାଂଶ ବିବରଣୀରେ ଇଂରାଜୀରେ ଯାହା ଲିଖିତ ଅଛି, ତାହା ତଳେ ଉଦ୍ଧୃତ ହେଲା--

"Gopabandhu Das congratulated the Chief on behalf of the subjects of Mayurbhanja on his successful tours round the world and remarked that the people would have been glad if more money had been spent in connection with tour. He took the opportunity to point out that for the non-official members then had been little opportunity to express their view as they had met for the first time since the Chief's return to Baripada. He said, he read the budget as an educated Mayurbhanj youth would read it with all the aspirations natural to such a youth. He was unable to admit economy in matters of education and sanitation. So closely connected with the moral and material well-being of the people sufficient attention. he said, had not been paid to them. In Tokeyo, London and New York which the Chief visited they made education their watch-ward. It is the foundation of the good government. Though he admitted the progress in education was already, but it was not what was expected from a wise and good ruler—grown wiser by his foreign travels. He pointed out that the incidence of expenditure on education on the estimated receipts was 3.5 %.This figure compared with Dhenkanal and Baroda and remarked that he did not compare favourably with either. Though Mayurbhanj is Baroda of Orissa in some respects,

he said, it was not in respect of education. In Baroda the percentage of expenditure on eduction was 10. He was aware of the limited resources of the State. But the expenditure on education he would give his unestimated support. He said much improvement could be expected if officers of rank and influence exercise their influence to the spread of education. An endeavour in his opinion should be made to make education free and compulsory in Baripada where 600 pupils are school going age went without education. With further education the people would appreciate the State Council and the local Boards. The people are the best treasurers of the state and not timbers and mines and the constitutional government existed for the benefit of the people would be better understood by them where they would be educated. The people would learn to have some right for themselves and this could be possible only by defusion of education.

"As regards sanitation, he laid strss on the want of pure water; the supply of which is considered pious work by the Hindus.

"Mr J. A. Martin pointed out that the State had not neglected the People. He said there were 100 wells and 200 tanks in the State for the supply of water. Babu M. M. Dhar pointed out that the allotment of expenditure on education was Rs.9000/- when the State was under Government management .Since then it had raised to Rs. 40,000/-.

"Babu H. D. Bose said that the State should provide for the living of the People first then for education. The big irrigation works were intended for the material advancement of the People. As for education 16% of the. population were undergoing instructions. He advocated compulsory and free primary education for the town Baripada.

"President before bringing the debate to a close thanked Babu Gopabandhu Das for his congratulations which he offered to him thrice, once in Calcutta, then in Baripada and for the third time in the council chamber. As for the opportunity presented to the non-official members for discussion of the affairs of the State, he said, the presidet backward State of the people who did not understand civic rights would not allow more frequent meeting for exchange of views and criticism of the action of the State. He would always be prepared to accept the criticism in the sprit in which it was offered. Next year there would be more rooms for the better study of the budget, he hoped. He had heared with interest the long essay on education and sanitation which the speaker had delivered. He himself had not been less enthusiastic on education. But experience had succeeded in rubbing out the idealism. All know the value of education and they are doing their best for its furtherence, but to bring about a millenium was, he said, an impossibility at least within two or three generations to come. The Population of the state was, he said, most backward and the case of Baroda would not be in all forms with Mayurbhanj. The speaker had not taken into account the population of Baroda which would be 20-25 lakhs, nor the revenue and the area of the state. Fertility of the soil and the advanced condition of the people of Baroda would be in startling contrast to the barren soil and back ward condition of the population in Mayurbhanj. The question of compulsory education was once thoughtout, but had to be abandoned owing to the back ward condition of the people.

As regards sanitation, he said, the people should also contribute something and the non-official members would use their influence and enthusiasm on their contributions for the improvement of sanitation and education. By so doing they would be doing a service in sanitation and education. 16% of school going age was not unsatisfactory compared to 24% of British India. The number of primary schools increased by 10 every year. He hoped that compulsory education in Baripada would receive one consideration. It was no use of drawing a picture of people dying for want of good water. They all knew it, but want of money stood in the way. He would not be ashamed of a surplus treasury because nothing could be done without money.

"The President also pointed out, the budget dealt with the financial statement. It was not an administration report. It was impossible therefore to touch on education in greater details."

ପୂର୍ବୋକ୍ତ ଉଦ୍ଧୃତାଂଶରୁ ବେଶ୍ ବୁଝାଯାଏ ଯେ, ଗରିବଙ୍କ ପ୍ରତି ଗୋପବନ୍ଧୁଙ୍କର କେତେ ସହାନୁଭୂତି ଥିଲା । ତା ଛଡ଼ା ଦେଶରେ ଶିକ୍ଷା-ପ୍ରଚାର ଓ ସ୍ୱାସ୍ଥ୍ୟରକ୍ଷା ପ୍ରତି ତାଙ୍କର ମଧ୍ୟ ବିଶେଷ ଦୃଷ୍ଟି ଥିଲା । ମୟୂରଭଞ୍ଜ ରାଜ୍ୟ ସଦୃଶ ଏକ କ୍ଷୁଦ୍ର ପରିସରରେ ସେ ପ୍ରବନ୍ଧ ଯେଉଁ ଆଦର୍ଶ ଦେଖାଇଥିଲେ, ତାହା ତାଙ୍କର ଭବିଷ୍ୟତ ଜୀବନରେ ବିରାଟ ଆକାରରେ ବହୁମୁଖୀ ହୋଇଥିଲା ।



# ହସ-କାନ୍ଦର ସମାରୋହରେ ସେବକ ଗୋପବନ୍ଧୁ

## ଅନନ୍ତ ଚରଣ ଶତପଥୀ

[ ସତ୍ୟବାଦୀ ବିଦ୍ୟାଳୟର ଭୂତପୂର୍ବ ଛାତ୍ର ସ୍ୱର୍ଗତ ଶତପଥୀ ବୃତ୍ତିଗତ ଜୀବନରୁ ସାହିତ୍ୟ ପ୍ରତି ଆକର୍ଷିତ । ସ୍ୱର୍ଗତ ବାଳକୃଷ୍ଣ କରଙ୍କ ଶିଶୁସାହିତ୍ୟ ମୂଳକ ମାସିକ 'ଜହ୍ନମାମୁଁ'ରେ ଧାରାବାହିକଭାବେ ଲେଖକଙ୍କର କେତୋଟି ଗଳ୍ପ ପ୍ରକାଶ ପାଇଥିଲା । ତାଙ୍କର 'କ୍ଷେତିର ସାଥୀ', 'କୁଳବଧୂ' 'ସପ୍ତଧାରା' ଆଦି ଗଳ୍ପ ପୁସ୍ତକ ଓ 'ମାତୃ ଗୌରବ', କୋଟିଜନତାର ମଣ୍ଡଳମଣି' ପ୍ରଭୃତି ଜୀବନୀ ଏବଂ 'ନନ୍ଦ ରାଜ୍ୟ ପତନ', 'ଯୁବରାଜ କୁନାଳ' ଆଦି ଶିଶୁନାଟକ ପ୍ରକାଶ ପାଇଛି । ଆଲୋଚ୍ୟ ପ୍ରବନ୍ଧରେ ଶିଶୁ-ସାହିତ୍ୟିକ ସ୍ୱର୍ଗତ ଶତପଥୀ ଗୋପବନ୍ଧୁଙ୍କ ହାସ୍ୟରସ ଓ ନିଃସ୍ୱାର୍ଥସେବାର ଏକ ଆଭାସ ପ୍ରଦାନ କରିଛନ୍ତି ।—ସଂ ]

**ଗୋପବନ୍ଧୁ** ଦାସ ବି. ଏ. ପାସ କରି ପୁରୀସ୍ଥ ବ୍ରାହ୍ମଣ ସମିତି ଛାତ୍ରାବାସରେ ରହି ଓକିଲାତି କରିବା ପାଇଁ ଯେତେବେଳେ ବସ୍ଥିର କରୁଥିଲେ, ସେତେବେଳେ ପୁରୀ ଜିଲ୍ଲା ସ୍କୁଲର କେତେକ ଉଚ୍ଚଶିକ୍ଷିତ ଯୁବକ ଓ ଛାତ୍ର ଗୋପବନ୍ଧୁଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କ ନିକଟକୁ ପ୍ରତିଦିନ ଯିବାଆସିବା କରୁଥିଲେ । ସେମାନଙ୍କ ମଧ୍ୟରୁ ଆମ୍ଭମାନଙ୍କର ସ୍ୱର୍ଗୀୟ କବି ଗୋଦାବରୀଶ ମିଶ୍ର ଜଣେ ଥିଲେ । ଗୋପବନ୍ଧୁ ପ୍ରତିଦିନ ଗୋଟିଏ ଲେଖାଏଁ କଉତୁକପୂର୍ଣ୍ଣ ଅଥଚ ଉପଦେଶାତ୍ମକ ଗଳ୍ପ ଶୁଣାଇ

ଛାତ୍ରମାନଙ୍କ ମନକୁ ମୁଗ୍ଧ ଓ ଚକିତ କରୁଥିଲେ । ଗୋପବନ୍ଧୁଙ୍କ ନିଜ ଗ୍ରାମରୁ ଅନେକ ପାଚିଲା ପଣସ ବ୍ରାହ୍ମଣ ସହିତ ଛାତ୍ରାବାସକୁ ଆସେ । ଏତେ ଆସେ ଯେ ବାଣ୍ଟିଲେ ମଧ୍ୟ ସରେ ନାହିଁ । ପ୍ରତି ଦୁଇ ତିନି ଦିନରେ ପାଚିଲା ପଣସର ଭୋଜି ହୁଏ । ଗୋପବନ୍ଧୁ ଗଳ୍ପ କହି ସମସ୍ତଙ୍କୁ ଭାରି ହସାନ୍ତି । ଏହି ହସ ଭିତରେ ପିଲାଙ୍କ ସ୍ୱଭାବ ଲକ୍ଷ୍ୟ କରିବା ଥିଲା ତାଙ୍କର ରୀତି । ଏହି ରୀତି ଅବଲମ୍ବନ କରି କବି ଗୋଦାବରୀଶଙ୍କ ପରି ଜନୈକ ମେଧାବୀ ଛାତ୍ରଙ୍କୁ ଲାଭ କରି ପାରିଥିଲେ । ଦରିଦ୍ରନାରାୟଣ ସେବକ, ଆଜନ୍ମ ତ୍ୟାଗୀ, ପଣ୍ଡିତ ଗୋପବନ୍ଧୁଙ୍କୁ ଗୋଦାବରୀଶ ଛାତ୍ର ଜୀବନରୁ ଚିହ୍ନି ପାରିଥିଲେ । ଗୋପବନ୍ଧୁଙ୍କର ଅତି ଅଦ୍ଭୁତ ଆକର୍ଷଣ ଶକ୍ତି ଥିଲା । ସେ ଚୁମ୍ବକ ଲୁହାକୁ ଟାଣିଲା ଭଳି ଅନ୍ୟମାନଙ୍କୁ ନିଜର କରିପାରୁଥିଲେ ।

ଗୋପବନ୍ଧୁଙ୍କର କଳ୍ପନା ଥିଲା ସତ୍ୟବାଦୀ ବନବିଦ୍ୟାଳୟର ମୁକ୍ତ ବାତାବରଣ ଭିତରେ ବର୍ଷକୁ ବର୍ଷ ମନୁଷ୍ୟ ଗଢ଼ା ହୋଇ ବାହାରିବେ, ଯେପରିକି ସେମାନେ ଦେଶ ଓ ଦଶର ସେବାରେ ନିୟୋଜିତ ହୋଇ ପାରିବେ । ସେଥିପାଇଁ ଛାତ୍ରମାନଙ୍କୁ ସ୍ୱାବଲମ୍ବୀ ହୋଇ ଜୀବନ ନିର୍ବାହ କରିବା ଅଭିପ୍ରାୟରେ ନାନାପ୍ରକାର ବୈଷୟିକ ଶିକ୍ଷା ଦିଆଯାଉଥିଲା । ସୂତାକଟା, ବଢ଼େଇ କାମ ଓ କୁଟୀରଶିଳ୍ପ ଲାଗି ଶିକ୍ଷାର ବ୍ୟବସ୍ଥା ରହିଥିଲା । କି ଶିକ୍ଷକ, କି ଛାତ୍ର ସମସ୍ତେ ଏକାଠି ମିଶି କାନ୍ଧକୁ କାନ୍ଧ ଲଗାଇ କାମ କରୁଥିଲେ । ଗୃହ ନିର୍ମାଣ କାର୍ଯ୍ୟ ସମ୍ପନ୍ନ କରିବାରେ ଛାତ୍ର ଶିକ୍ଷକଙ୍କ ମଧ୍ୟରେ କୌଣସି ଭେଦାଭେଦ ରହି ନ ଥିଲା । ଗ୍ରାମସଙ୍ଗଠନ କାର୍ଯ୍ୟ ସାଧନ ଦିଗରେ ଅର୍ଥାତ ଗୃହଦାହ, ବସନ୍ତ, ହଇଜା ପ୍ରଭୃତି ସଂକ୍ରାମକ ରୋଗରେ ଆକ୍ରାନ୍ତ ହେଲେ ଛାତ୍ରଗଣ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ରହି ସ୍ୱେଚ୍ଛାସେବକ ରୂପେ କାମ କରୁଥିଲେ । ସ୍କୁଲରେ ଯେ କେବଳ ନିର୍ଦ୍ଧାରିତ ପାଠ ପଢ଼ା ଯାଉଥିଲା ସେତିକି ନୁହେଁ, ତା ଛଡ଼ା ଇଟାଲୀ, ଜର୍ମାନୀ, ଆମେରିକା ପ୍ରଭୃତି ଦେଶ କିପରି ବିଦେଶୀ ଶାସନ କବଳରୁ ସ୍ୱାଧୀନତା ଲାଭ କଲେ, ସେ ବିଷୟରେ ଆଲୋଚନା କରାଯାଉଥିଲା । ଏଠାକୁ ବାହାରୁ ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ ନିମନ୍ତ୍ରିତ ହେଉଥିଲେ । ଶିକ୍ଷକମାନଙ୍କ ମଧ୍ୟରେ ଭଲ ବକ୍ତୃତା ଦେଉଥିଲେ ପଣ୍ଡିତ

ନୀଳକଣ୍ଠ ଦାସ । ଆଗ୍ରହ୍ୟ ହରହର ଅଳ୍ପ କହ୍ପ ପିଲାମାନଙ୍କ ଉପରେ ବହୁତ ପ୍ରଭାବ ବିସ୍ତାର କରି ପାରୁଥିଲେ ।

ନିଜେ ଉତ୍କଳମଣି ଗୋପବନ୍ଧୁ କୌଣସି କୌଣସି ସପ୍ତାହରେ ବକ୍ତୃତା ଦେବାପାଇଁ ଆସନ୍ତି । ତାଙ୍କ ବକ୍ତୃତାରେ କି ଅମୀୟ ମାଧୁରୀ ପୁରୀ ରହିଥିଲା ତାହା କଳ୍ପନା କରିବା ଅସମ୍ଭବ । ସେ ଗୋଟିଏ ସମାଜକୁ କ୍ଷଣକେ ହସାଇ ପାରୁଥିଲେ ଓ କ୍ଷଣକେ କନ୍ଦାଇ ପାରୁଥିଲେ । ସଭାସ୍ଥଳଟି ଯେପରି ହାସ୍ୟରସରେ ଆମୋଦିତ ହୋଇପାରୁଥିଲା, ସେହିପରି କ୍ରନ୍ଦନର ଆତିଶଯ୍ୟରେ କମ୍ପିତ ରହୁଥିଲା । ଘଡ଼ି ସମୟ ଧରି କାହାରି ପାଟିରୁ କଥା ପଦେ ବାହାରି ପାରୁ ନ ଥିଲା । ସମସ୍ତେ ଯେପରି ଚକ୍ଷୁରୁ ଅବାରିତ ଲୋତକ ବିସର୍ଜନ କରୁଥିଲେ । ପରମୁହୂର୍ତ୍ତରେ ପୁଣି ଆନନ୍ଦରେ ଯମୁନାଜାହ୍ନବୀ-ଧାରା ପ୍ରବାହିତ ହେଉଥିଲା । ଗୋପବନ୍ଧୁଙ୍କ ପାଟିରୁ ପିଲାମାନେ ହସ କଥା ଶୁଣି ହସି ହସି ବେଦମ ହୋଇ ଯାଇଥିବାବେଳେ ସେ ହଠାତ୍ ଗମ୍ଭୀର ହୋଇ ପଡୁଥିଲେ । ତାଙ୍କଠାରେ ଏହି ପ୍ରକାର ହାସ୍ୟରସର ଭାବ ଯେପରି ଭାବରେ ତାଙ୍କ ହୃଦୟକୁ ଆଲୋଡ଼ିତ କରି ପାରିଥିଲା ସେପରି ଭାବ ଅନ୍ୟ କାହାଠାରେ ଆଉ ଦେଖାଯାଏ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ବିଦ୍ୟାଳୟ ପରି ବିଚିତ୍ର ଅନୁଷ୍ଠାନ କୁତ୍ରାପି ଦୃଷ୍ଟିଗୋଚର ହୁଏ ନାହିଁ ।

ସେତେବେଳେ ଗ୍ରୀଷ୍ମାବକାଶ ଶେଷ ହୋଇ ଯାଇଥାଏ । ପିଲାମାନେ ବିଦ୍ୟାଳୟକୁ ଫେରି ଆସିଥାନ୍ତି । ଗୋପବନ୍ଧୁ ପିଲାମାନଙ୍କୁ ପାଖକୁ ଡାକି ପଚାରିଲେ, "ତମେସବୁ ଏହି ଗ୍ରୀଷ୍ମ ଛୁଟି ଭିତରେ ଘରେ କଅଣ କଅଣ କରିଥିଲ କହ ।" ପ୍ରତ୍ୟେକ ନିଜ ନିଜର କଥା କହିଗଲେ ; କିଏ ଛୁଟି ଭିତରେ ବଣଭୋଜି କରିଥିଲା, କିଏ ଗ୍ରାମରେ ହରିଶ୍ଚନ୍ଦ୍ର ନାଟକ ଅଭିନୟରେ ହରିଶ୍ଚନ୍ଦ୍ର ସାଜିଥିଲା, କିଏ ପିଠାପଣା ଖାଇ ଆନନ୍ଦରେ ଛୁଟି କଟାଇଥିଲା; ସେ ସବୁ କଥା ଗୋଟି ଗୋଟି କରି ସେମାନେ ବର୍ଣ୍ଣନା କରିଗଲେ । ପିଲାମାନଙ୍କ ଉତ୍ତର ଶୁଣି ଗୋପବନ୍ଧୁଙ୍କ ଉଦାର ହୃଦୟ ଦୁଃଖରେ ଅଭିଭୂତ ହେଲା । ଆଖି ଦୁଇଟି ଛଳଛଳ ହେବାକୁ ଲାଗିଲା । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ତମେ ସମସ୍ତେ

ଗ୍ରାମରେ ଦୀର୍ଘ ସମୟ କଟାଇଲ; କିନ୍ତୁ କେହି ଜଣେ ହେଲେ ଗ୍ରାମର ଗରିବ ରୋଗୀମାନଙ୍କର ସେବା କରିବା କଥା କହିଲ ନାହିଁ କିମ୍ବା ଗ୍ରାମରେ ପାଠ ପଢ଼ି ନ ଥିବା ନିରକ୍ଷର ଲୋକଙ୍କୁ ପାଠ ପଢ଼ାଇବା କଥା ବର୍ଣ୍ଣନା କଲ ନାହିଁ । ଭାବିଲ ଦେଖି, ଗ୍ରାମର ଉନ୍ନତି ହେବ କପରି ? ଗ୍ରାମର ଲୋକେ ଉନ୍ନତ ନ କଲେ ଦେଶର ମଙ୍ଗଳ ସାଧିତ ହୋଇପାରେ କି ?”

ଛାତ୍ରମାନେ ଗୋପବନ୍ଧୁଙ୍କ କଥାର ପ୍ରକୃତ ମର୍ମ ନିଜେ ନିଜେ ବୁଝିପାରି ଲଜ୍ଜାରେ ମସ୍ତକ ଅବନତ କଲେ ଓ ସପଥ କଲେ ଯେ, ଅବସର ଦିନମାନଙ୍କରେ ଗ୍ରାମସଙ୍ଗଠନ କାର୍ଯ୍ୟ କରିବା ସେମାନଙ୍କର ଏକାନ୍ତ କର୍ତ୍ତବ୍ୟ ।

ଉତ୍କଳମଣି ଗୋପବନ୍ଧୁ ନିଜେ ପିଲମାନଙ୍କୁ ଶିକ୍ଷାଦାନ କରୁଥିଲେ । ତାଙ୍କ ଶିକ୍ଷାଦାନ ପଦ୍ଧତିରେ ଯଥେଷ୍ଟ ମୌଳିକତା ପୂରି ରହିଥିଲ । ସେ ବିଦ୍ୟାଳୟକୁ ଆସିଗଲ ମାତ୍ରକେ ଗୃହରେ ଗୋଟାଏ ସରସତାର ଢେଉ ଖେଳଯାଉଥିଲ । କେଉଁ ପିଲ କପରି ଅଧ୍ୟୟନରେ ଲିପ୍ତ, କାହାର ଆଚରଣ କପରି, କେଉଁ ପିଲର ଭାବଭଙ୍ଗୀ କପରି ଗତିରେ ପ୍ରବାହିତ ହେଉଛି ସେସବୁ ତନ୍ନ ତନ୍ନ କରି ବୁଝୁଥିଲେ । ପିଲମାନଙ୍କ ସହିତ ଏକତ୍ର ଭୋଜନ କରି ହାସ୍ୟରସର ତରଙ୍ଗ ଛୁଟାଇ କଥା ପ୍ରସଙ୍ଗରେ ସେମାନଙ୍କର ଆଦର୍ଶଭାଜନ ହୋଇପାରିଥିଲେ । କେତେକାଳ ରହିବା ପରେ ଏହି ବିଦ୍ୟାଳୟ ସମ୍ପର୍କରେ ଆସିଥିବା ଦୁଷ୍ଟ ଛାତ୍ରଗଣ ନିଜର ଦୁର୍ଗୁଣ, ଦୁଷ୍ପ୍ରବୃତ୍ତି ଛାଡ଼ି ପଚିତ୍ର ହୋଇପାରିଛନ୍ତି, ତାହା ହିଁ ମନରେ ଗଭୀର ସନ୍ତୋଷ ପ୍ରଦାନ କରେ । ଏ ଦିଗରେ ଶିକ୍ଷକମାନଙ୍କର ସ୍ବଭାବ, ସରଳ ଜୀବନ ଓ ସୁଦୃଷ୍ଟି ବିଶେଷ କାର୍ଯ୍ୟ କରୁଥିଲ ଏଥିରେ ସନ୍ଦେହ ନାହିଁ ।

ଗୋପବନ୍ଧୁଙ୍କ “ଦେଶ ଓ ଦଶସେବା”, “ଦରିଦ୍ର ନାରାୟଣ ସେବା” ଓ “ନର-ନାରାୟଣ ସେବା” ପ୍ରଭୃତି ସେବାମନ୍ତ୍ର ଏପରି କୌତୁକଜନକ ଭାବରେ ଛାତ୍ରମାନଙ୍କ ହୃଦୟରେ ଛାପ ପକାଇ ପାରୁଥିଲ ଯେ, ତାହା ବର୍ଣ୍ଣନା କରିବା ଅତ୍ୟନ୍ତ ଦୁରୂହ ବ୍ୟାପାର । ଏହି ଦେଶ ଓ ଦଶର ସେବା ଲଗି ତାଙ୍କର ସରଳ ଜୀବନ କପରି ପ୍ରଧାବିତ ହେଉଥିଲ, ତହିଁର ଏକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲ ।

ଥରେ ପୁଣି ଜିଲ୍ଲାରେ ବନ୍ୟା ହୋଇ ଅସଂଖ୍ୟ ଘର ଦ୍ୱାର ଭାଙ୍ଗି ନଷ୍ଟ ହୋଇଗଲା । କଅଁାସମାନଙ୍କରୁ ଧାନ ସବୁ ଧୋଇଗଲା । ଚତୁର୍ଦ୍ଦିଗ ଖାଲି ପାଣିରେ ପୂର୍ଣ୍ଣହୋଇ ଚିଲିକା ପରି ଦେଖାଗଲା । ବର୍ଷାର ମଧ୍ୟ ବିରାମ ନାହିଁ । ଖାଦ୍ୟାଭାବ ଲୋକଙ୍କ ପ୍ରାଣକୁ କଲବଲ କରୁଥାଏ । ଏହି ଘଟନାରେ କେତେକ ଭଦ୍ରଲୋକ କେତେଜଣ କଲେଜ ଛାତ୍ରଙ୍କୁ ସଙ୍ଗରେ ଧରି ସେହି ନିରାଶ୍ରୟ ଲୋକଙ୍କ ପାଇଁ ସାହାଯ୍ୟ ଭିକ୍ଷା କଲେ । ଟଙ୍କା ପଇସା, ଚୂଡ଼ା ଚାଉଳ ବହୁତ ଆଦାୟ ହେଲା । ପ୍ରବଳ ବନ୍ୟାରେ ଯେଉଁ ଅଞ୍ଚଳର ଘର ଦ୍ୱାର ନଷ୍ଟ ହୋଇଯାଇଥିଲା, ସେଠାକୁ ଯିବାପାଇଁ କୌଣସି ପ୍ରକାର ସୁବିଧା ନ ଥିଲା । ବିପତ୍ତି ଉପରେ ବିପତ୍ତି । ବିପଦ ଯେତେବେଳେ ଆସେ, ଏକାକୀ ଆସେ ନାହିଁ । ସେ ତାର ବନ୍ଧୁବର୍ଗ ସହିତରେ ଲହ ଲହ ମୁଖବ୍ୟାଦାନ କରି ଧାଇଁଆସେ । ହଠାତ୍ ବନ୍ୟା ଅଞ୍ଚଳରେ ମହାମାରୀ ପ୍ରକୋପ ଦେଖାଗଲା । ଲୋକମାନଙ୍କ ପାଖରୁ ଚାନ୍ଦା ଆଦାୟ ହେଲା ସତ, କିନ୍ତୁ ସେଠାକୁ ଯିବାକୁ କେହି ଦୃଢ଼ ସାହସର ସହିତ ଅଗ୍ରସର ହେଲେ ନାହିଁ । ପରିଶେଷରେ ଉତ୍କଳମଣି ଗୋପବନ୍ଧୁ ହିଁ ଏଥିକୁ ନ ଡରି ଆଗେଇ ଆସିବାରୁ କେତେକ କଲେଜ ଛାତ୍ର ତାଙ୍କ ସଙ୍ଗେ ଯାତ୍ରା କଲେ । ଗୋପବନ୍ଧୁ ସେହି ଯାତ୍ରାପଥରେ ଅଗ୍ରଣୀ ହେଲେ ।

ସମସ୍ତେ ଚୂଡ଼ା, ଚାଉଳ, ଔଷଧ ଇତ୍ୟାଦି ବୋଝଟିମାନ ନିଜ ନିଜ ପିଠିରେ ଧରି ଚାଲିଥାନ୍ତି । ସଙ୍ଗରେ ନିଜ ଲାଗି ଚାଉଳ ମଧ୍ୟ ବାନ୍ଧିଥାନ୍ତି । ଅନେକ ଦୁଃଖ କଷ୍ଟ ମଧ୍ୟଦେଇ ଚାଲି ଚାଲି ସେହି ଗ୍ରାମରେ ପହଞ୍ଚିଲେ । ଦେବତାଗଣ ସ୍ୱର୍ଗର ଦେବର୍ଷି ନାରଦଙ୍କୁ ଘେରିଗଲା ପରି ମର୍ତ୍ତ୍ୟରେ ଲୋକମାନେ ଗୋପବନ୍ଧୁଙ୍କୁ ଦେଖିବା ମାତ୍ରେ ଘେରିଗଲେ । ସେମାନଙ୍କ ଅବସ୍ଥା ଦେଖି ଗୋପବନ୍ଧୁଙ୍କ ଚକ୍ଷୁରୁ ଝରି ଝରି ଅଶ୍ରୁ ପ୍ରବାହିତ ହେଲା । ସଙ୍ଗେ ସଙ୍ଗେ ଚୂଡ଼ାଚାଉଳ ଓ ଔଷଧ ବିତରଣ କରିଗଲା । ସ୍ୱେଚ୍ଛାସେବକ ଦଳ ନିଜ ଖାଦ୍ୟ ସଙ୍ଗରେ ଯେଉଁ ଚାଉଳ ନେଇଯାଇଥିଲେ, ଦୁଇ ତିନି ଦିନ ସେଠାରେ ରହିଯିବା ପରେ ସେତକ ସରିଗଲା । ସେମାନେ କ'ଣ ଖାଇବେ ବୋଲି ଚିନ୍ତା କଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲା, "ଆମ ଚାଉଳ ସିନା ସରି ଯାଇଛି, ବଣ୍ଟାହେବା

ଲାଗି ଗୁଡ଼ଲ ତ ଅଛି । ଗୁଲ ସେଥିରୁ କିଛି ବାନ୍ଧି ଖାଇବା ।” ତାହା ହିଁ ହେଲା । ଖଲିପତ୍ରରେ ଭାତ ବଢ଼ା ହେଲା । ନେତା ଗୋପବନ୍ଧୁ ଏହା ଜାଣି ନ ଥିଲେ । ସେ ହଠାତ୍ ଆସି ପତ୍ରରେ ଅନ୍ନ ଦେଖି ଚମକି ପଡ଼ି କହିଲେ, “ଆମ ଲାଗି ତ ଗୁଡ଼ାଳ ନ ଥିଲା । ଏ ଗୁଡ଼ଲ ଆସିଲା କେଉଁଠୁ ?” ଗୁଡ଼ି ଜଣେ ଉତ୍ତର କଲା, “ଆଜ୍ଞା, ଆମେ ବଣ୍ଟା ଗୁଡ଼ଲରୁ କିଛି ରଖିଛୁ ।”

ଅତି ଦୁଃଖରେ ତାଙ୍କ ଚକ୍ଷୁରୁ ଧାର ଧାର ଅଶ୍ରୁ ନିର୍ଗତ ହେଲା । ମୁଖରୁ ପଦେ ବୋଲି କଥା ବାହାରିଲା ନାହିଁ । ସେ ଆଉ ପତ୍ରରେ ବସିଲେ ନାହିଁ । ଏହା ଦେଖି ଅନ୍ୟମାନେ ମଧ୍ୟ ନ ଖାଇ ଉଠିଗଲେ । ଫଳରେ ଗୋପବନ୍ଧୁ ନିଜେ ସେହି ଗ୍ରାମ ଭିତରକୁ ଯାଇ କେତେକ ଲୋକଙ୍କୁ ସଙ୍ଗରେ ଡାକି ଆଣି ଖାଇବାକୁ ଦେଲେ । ପିଲାମାନେ ନିଜର ଭୁଲ ବୁଝିପାରି ଅପ୍ରତିଭ ହେଲେ ।

ସେଦିନ ଅପରବେଳା ଅନ୍ୟ ଗୋଟିଏ ଗ୍ରାମକୁ ସାହାଯ୍ୟ କରିବା ପାଇଁ ଯାତ୍ରା କଲେ । ଚୂଡ଼ା, ଗୁଡ଼ଲ ଓ ଔଷଧ ବଣ୍ଟାଗଲା ପରେ କର୍ମୀମାନଙ୍କ ଖାଇବା ପାଇଁ ଗୁଡ଼ଲ ସହରରୁ ଆସି ସେଠାରେ ପହଞ୍ଚିଲା । ପୂର୍ବରୁ ତ ସମସ୍ତେ ଉପବାସରେ ଯନ୍ତ୍ରଣା ଭୋଗ କରୁଥିଲେ । ଔଷଧ ପ୍ରଭୃତି ବଣ୍ଟନ ପରେ ରନ୍ଧନ କାର୍ଯ୍ୟରେ ଯୋଗଦେଲେ । ପତ୍ର ପଡ଼ି ଭାତ ବଢ଼ା ହେଲା । ପ୍ରଥମେ ନେତାଙ୍କ ନିର୍ଦ୍ଦେଶ ଅନୁସାରେ ପିଲାମାନେ ଭୋଜନ କଲେ । ତତ୍ପରେ ନେତା ଖାଇବାକୁ ଅଗ୍ରସର ହେଉଛନ୍ତି ଏପରି ସମୟରେ ଜନୈକ କ୍ଷୁଧାର୍ତ୍ତ ସ୍ତ୍ରୀଲୋକ ନିଜର ରୋଗୀ ସନ୍ତାନକୁ କୋଳରେ ଧରି ଆସି ତାଙ୍କ ସମ୍ମୁଖରେ ଠିଆହୋଇ ଭାତକୁ ଚାହିଁ ରହିଲା ଏବଂ କହିଲା, “ବାବୁ, ପାଞ୍ଚ ଦିନ ହେଲା ଭାତ ଦେଖିନାହିଁ, ଆଉ ବଞ୍ଚି ପାରିବି ନାହିଁ କି ପୁଅକୁ ବଞ୍ଚାଇ ପାରିବି ନାହିଁ ।” ଗୋପବନ୍ଧୁ ଅମ୍ଳାନ ବଦନରେ ସେହି ପତ୍ରଟି ଉଠାଇ ନେଇ ସ୍ତ୍ରୀ ଲୋକଟି ପାଖରେ ଥୋଇଦେଲେ । ସ୍ତ୍ରୀ ଲୋକଟି ଅତି ଆନନ୍ଦରେ ଗ୍ରହଣ କଲା । ତାହାର ଆନନ୍ଦ ଦେଖି ଗୋପବନ୍ଧୁଙ୍କ ଖାଲି ପେଟଟି ମଧ୍ୟ ପୂରି ଉଠିଲା ।

ଗୋପବନ୍ଧୁ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରାବାସରେ ରହୁଥିବା ବେଳେ ଦିନେ ସକାଳୁ ଉଠି ଦେଖିଲେ, ଧୋବା ଘରୁ ଆସିଥିବା ତାଙ୍କର

ବସ୍ତ୍ର ଖଣ୍ଡିକ ଚିରି ଯାଇଛି । ତହୁଁ ସେ ତାଙ୍କର ଜଣେ ବନ୍ଧୁଙ୍କୁ ବଜାରରୁ ଖଣ୍ଡେ ନୂଆଲୁଗା କିଣି ଆଣିବାକୁ କହି ଗାଧୋଇ ଗଲେ । ଫେରିଲା ପରେ ସେ ବେଞ୍ଚ ଉପରେ ଦେଖିଲେ ଖଣ୍ଡେ ସରୁ ମିଲ୍ ଲୁଗା ତାଙ୍କ ପାଇଁ ଥୁଆ ହୋଇଛି । ଦାମିକା ସରୁ ଲୁଗା ଖଣ୍ଡିକ ଦେଖି ଗୋପବନ୍ଧୁ ଯେ ନିଶ୍ଚୟ ଖୁସିହେବେ, ଏ କଥା ତାଙ୍କର ବନ୍ଧୁ ଭାବୁଥିଲେ ଓ ଏଥିଲାଗି ସେ ଯେ ପ୍ରଶଂସାର ବାଣୀ ଶୁଣିବାକୁ ଆଶା କରିଥିଲେ । କିନ୍ତୁ ଲୁଗା ଖଣ୍ଡିକ ଦେଖିବା ମାତ୍ରେ ଗୋପବନ୍ଧୁଙ୍କ ମୁହଁ ବିରକ୍ତିରେ କଳାକାଠ ପଡ଼ିଗଲା । ଏହି ଘଟନା ଦେଖି ବନ୍ଧୁ ଜଣକ ପଚାରିଲେ, "ମୁଁ ତ ଆପଣଙ୍କ ପାଇଁ ଖଣ୍ଡେ ଭଲ ସରୁ ଲୁଗା ଆଣିଛି, ଆପଣ ତାକୁ ପିନ୍ଧି ଦେଖନ୍ତୁ କିପରି ହୋଇଛି, ରାଗ କରୁଛନ୍ତି କାହିଁକି ?

ଏହି କଥାଟି ଗୋପବନ୍ଧୁଙ୍କୁ ନିଆଁ ପରି ତତାଇ ଦେଲା । ସେ ଅତିଶୟ ଦୁଃଖିତ ହୋଇ କହିଲେ, "ଆମ ଦେଶବାସୀ ପଇସା ଅଭାବରୁ ଚିରା କନା ଖଣ୍ଡେ ନ ପାଇ ଲଜ୍ଜା ନିବାରଣ କରିପାରୁ ନାହାନ୍ତି । ଶୀତରେ ଦେହ ଥରି ଯାଉଥିଲେ ସୁଦ୍ଧା ଘୋଡ଼ାଇ ହେବା ପାଇଁ ପୋଷାକ ପାଉ ନାହାନ୍ତି । ସେହି ଗରିବ ଦେଶର ଲୋକ ହୋଇ ମୁଁ ଏତେ ମୂଲ୍ୟବାନ ସରୁ ଲୁଗା ପିନ୍ଧିବି । ଏହାଠାରୁ ବଳି ଲଜ୍ଜା ମୋ ପକ୍ଷରେ ଆଉ କ'ଣ ଅଛି ?" ଏତିକି କହିସାରି ସେ ସାଙ୍ଗେ ସାଙ୍ଗେ ବଜାରରୁ ଖଣ୍ଡେ ଅଣଓସାରିଆ ଖଦଡ଼ ଲୁଗା ମଗାଇ ପଠାଇଲେ । ସେହି ଖଦଡ଼ ଲୁଗା ପିନ୍ଧିଲାରୁ ଆଣ୍ଠୁ ଲୁଚୁ ନ ଥାଏ । ଲୁଗା ଖଣ୍ଡିକ ପିନ୍ଧିସାରି କହିଲେ, ଏହି ଲୁଗା ଆମ ପାଇଁ ଠିକ୍ । ଲୋକେ ଖାଦ୍ୟବିନା ଭୋକ ଉପବାସରେ ମରୁଥିବାବେଳେ ସରୁ ମିଲ୍ ଲୁଗା ଆମ ଦେହରେ କଦାପି ଶୋଭା ପାଇବ ନାହିଁ । ଏହିପରି ସରଳ ଆଡ଼ମ୍ବରଶୂନ୍ୟ ଜୀବନ ଥିଲା ତାଙ୍କର ଆକାଙ୍କ୍ଷା । ସେଥିଲାଗି ସେ ଗ୍ରାମର ଲୋକଙ୍କ ସହିତ ସହଜରେ ମିଶି ପାରୁଥିଲେ ।

ଆମ ଦେଶ ସେତେବେଳେ ପରାଧୀନ ଥିଲା । ଆମର ଏହି ପରାଧୀନ ଦେଶକୁ ସ୍ୱାଧୀନ କରିବା ପାଇଁ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସମଗ୍ର ଭାରତରେ ଯେତେବେଳେ ଘୋର ଆନ୍ଦୋଳନ ଚାଲିଲା, ସେତେବେଳେ ସ୍ୱାଧୀନତା ଲଢ଼େଇରେ ଗୋପବନ୍ଧୁ ଜଣେ ବଡ଼ ସୈନିକ

ଥିଲେ । ଏହି ସ୍ୱାଧୀନତା ଆନ୍ଦୋଳନରେ ପ୍ରଶ୍ନରକ ଅନନ୍ତ ମିଶ୍ର ନାମକ ଜଣେ କର୍ମୀ ଗୋପବନ୍ଧୁଙ୍କର ପ୍ରଧାନ ସହଚର ଥିଲେ । ସେ ପ୍ରଶ୍ନରକ ନାମରେ ଉତ୍କଳରେ ଜଣାଶୁଣା । ସେ ଗ୍ରାମେ ଗ୍ରାମେ ବୁଲି ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ବୁଝିଥିଲେ । ଗ୍ରାମ ଲୋକଙ୍କ ପାଖରେ ମହାତ୍ମା ଗାନ୍ଧିଙ୍କ ବାଣୀ ପ୍ରଚାର କରୁଥିଲେ । ଏହି କାର୍ଯ୍ୟ ସୁରୁଖୁରୁରୂପେ ନିର୍ବାହ କରିବା ପାଇଁ ପ୍ରଶ୍ନରକ ମିଶ୍ରେ ଖଣ୍ଡିଏ ସାଇକେଲ କିଣିବାକୁ ସ୍ଥିର କଲେ । ନିଜ ଖର୍ଚ୍ଚରୁ କମାଇ ସାଇକେଲ କିଣିବାକୁ ସେ କିଛି ଟଙ୍କା ମଧ୍ୟ ସଞ୍ଚୟ କରି ରଖିଥିଲେ । ଏହି ଖବରଟି ଗୋପବନ୍ଧୁଙ୍କ କାନରେ ଆସି ବାଜିଲା । ପ୍ରଶ୍ନରକ ମିଶ୍ରେ ସାଇକେଲ କିଣିବା ଆଗରୁ ଗୋପବନ୍ଧୁ ତାଙ୍କ ପାଖରୁ ସେ ଟଙ୍କାତକ ଉଧାର ନେଇଗଲେ ।

ମିଶ୍ରେ ଭାବିଥିଲେ, କିଛିଦିନ ପରେ ଗୋପବନ୍ଧୁ ସେ ଟଙ୍କାତକ ଫେରାଇ ଦେଲେ ସେ ତାଙ୍କ କଳ୍ପିତ ସାଇକେଲ ଖଣ୍ଡି କିଣିବେ । କିନ୍ତୁ ମାସ ପରେ ମାସ ବିତିଗଲେ ସୁଦ୍ଧା ଗୋପବନ୍ଧୁ ସେ ଉଧାର ଟଙ୍କା ଆଉ ଫେରାଇଲେ ନାହିଁ । ଗୋପବନ୍ଧୁ କେବେ ଟଙ୍କା ଧାର ନେଲେ ସୁବିଧା ଅନୁସାରେ ଯଥାଶୀଘ୍ର ଫେରାଇ ଦିଅନ୍ତି । କିନ୍ତୁ ସାଇକେଲ କିଣିବା ଟଙ୍କା ଫେରାଇବାରେ ଏତେ ବିଳମ୍ବ ଦେଖି ଅନନ୍ତ ମିଶ୍ରଙ୍କ ମନରେ ଘୋର ସନ୍ଦେହ ଜାତ ହେଲା । ଦିନେ ସେ ଗୋପବନ୍ଧୁଙ୍କ ପାଖକୁ ଯାଇ ଟଙ୍କାଟା ଫେରସ୍ତ ମାଗିଲେ ।

ଗୋପବନ୍ଧୁଙ୍କ କଥା ଶୁଣି ମିଶ୍ରେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ପଚାରିଲେ, "ସାଇକେଲ କିଣିବାପାଇଁ ଆପଣ ଟଙ୍କା ଦେବେ ନାହିଁ କାହିଁକି ?"

ଗୋପବନ୍ଧୁ ମିଶ୍ରଙ୍କ ପିଠିରେ ହାତମାରି କହିଲେ, "ତୁମେ ବୁଲି ବୁଲି ପାଦରେ ଯାଉଛ ବୋଲି ପ୍ରତି ଗାଆଁ ଭିତରକୁ ଯାଇ ଗ୍ରାମ ଲୋକଙ୍କ ଅବସ୍ଥା ନିଜ ଆଖିରେ ଦେଖିପାରୁଛ । ସେମାନଙ୍କ ଦୁଃଖ କଷ୍ଟ ଅଭାବ ବେଦନା ଆଦି ସବୁ ଶୁଣିପାରୁଛ । ସେମାନଙ୍କର ସେବା ପାଇଁ ତମ ମନରେ ଉତ୍କଟ ଆଗ୍ରହ ଆସୁଛି । କିନ୍ତୁ ତମେ ଯଦି ସାଇକେଲ କିଣି,

ତେବେ ତମେ କେବଳ ସଡ଼କ ରାସ୍ତାରେ ଯିବା ଆସିବା କରିବ । କାଦୁଅ ପଙ୍କ, ବଣ ବିଲ ଭିତରେ ପଶିପାରିବ ନାହିଁ । କାରଣ ସେବାଟେ ସାଇକେଲ ଯିବାରେ ଅସୁବିଧା ହେବ । ତାହାହେଲେ ଯେଉଁମାନେ କାଦୁଅ ପଙ୍କ, ବଣ ବିଲ ଭିତରେ ଘର କରି ଅଛନ୍ତି, ସେମାନଙ୍କର ହାଲଚାଲ ବୁଝିବ କିଏ ?

ପ୍ରଚାରକ ମିତ୍ରେ ଗୋପବନ୍ଧୁଙ୍କ ଅସଲ ଉଦ୍ଦେଶ୍ୟ ବେଶ୍ ବୁଝି ପାରିଲେ । ଗାଁ ଗହଳ ଭିତରେ ଥିବା ଲୋକଙ୍କ ପାଇଁ ତାଙ୍କ ପ୍ରାଣ କିପରି ବ୍ୟାକୁଳ ହେଉଥିଲା ତାହା ମଧ୍ୟ ସେ ଅନୁଭବ କରି ପାରିଲେ । ଉତ୍କଳର ଲକ୍ଷ ଲକ୍ଷ ଗରିବ ଲୋକଙ୍କ ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିବାରୁ ଲୋକେ ତାଙ୍କୁ 'ଉତ୍କଳମଣି' ବୋଲି କହୁଥିଲେ ।

ଥରେ କୁଶଭଦ୍ରା ନଈର ବନ୍ଧ ବନ୍ୟାରେ ଭାଙ୍ଗିଗଲା । ଏଥିରେ ଅସଂଖ୍ୟ ଘରଦ୍ୱାର ଓ ବହୁ ଖାଦ୍ୟଦ୍ରବ୍ୟ ନଷ୍ଟ ହୋଇଗଲା । ଚାରିଆଡ଼େ ଦୁର୍ଭିକ୍ଷ ପଡ଼ିଲା । ଲୋକମାନେ ଖାଇବା ବିନା ଅନାହାରରେ ଛଟପଟ ହେବାକୁ ଲାଗିଲେ ।

ଏତିକବେଳେ ଗୋପବନ୍ଧୁଙ୍କ ଏକମାତ୍ର ପୁଅ ଜ୍ୱରାକ୍ରାନ୍ତ ହୋଇ ବହୁ ଯନ୍ତ୍ରଣା ଭୋଗ କରୁଥାଏ । ଘରେ ସମସ୍ତଙ୍କ ମୁହଁରେ ଆଶଙ୍କାର ଚିହ୍ନ ଫୁଟି ଉଠୁଥାଏ । ଉଦ୍‌ବିଗ୍ନ ଭାବରେ ସମସ୍ତେ ଅନାଇ ବସିଥାନ୍ତି । ନିଜେ ଗୋପବନ୍ଧୁ ପୁତ୍ରର ରୋଗଶଯ୍ୟା ନିକଟରେ ବସି ପୁତ୍ରର ମସ୍ତକରେ ନିଜର ହସ୍ତ ସଞ୍ଚାଳନ କରୁଥାନ୍ତି । ହଠାତ୍ ସେଠାରେ ଜଣେ ବନ୍ୟା ଅଞ୍ଚଳର ମଫସଲିଆ ଲୋକ ପାଦ ଚାପି ଚାପି ଘର ଭିତରକୁ ପ୍ରବେଶ କଲା । ଗୋପବନ୍ଧୁ ଆସିବାର କାରଣ ପଚାରିଲେ । ଲୋକଟି ଥରେ ରୋଗ ଶେଯରେ ଶୋଇଥିବା ପିଲା ମୁହଁକୁ ଏବଂ ଆଉ ଥରେ ବାପାଙ୍କ ମୁହଁକୁ ଚାହିଁଲା । ତାପରେ କରୁଣ କଣ୍ଠରେ ଉତ୍ତର ଦେଲା, କୁଶଭଦ୍ରା ନଈର ବନ୍ଧ ଭାଙ୍ଗିଯାଇ ପ୍ରବଳ ବେଗରେ ସୁଅ ଛୁଟିଛି । ସେହି ସୁଅରେ ଗାଁ-ଗଣ୍ଡା, ମଣିଷ, ଗୋରୁ, ଗାଈ, ଛେଳି ଭାସି ହୋଇ ଯାଉଛନ୍ତି । ଲୋକଙ୍କ ଦୁଃଖରେ "ଆହା ପଦେ" କହିବାକୁ କେହି ନାହାନ୍ତି ।

ଗୋପବନ୍ଧୁ କାଳ ବିଳମ୍ବ ନ କରି ସେହି ଲୋକକୁ କହିଲେ, "ହଉ ତାହାହେଲେ ଶୀଘ୍ର ଯିବା ଚାଲ ।" ଲୋକଟି ଆବାକ ହୋଇ ତାଙ୍କ ମୁହଁକୁ ଚାହିଁ ରହିଲା । ଗୋପବନ୍ଧୁଙ୍କ ବେଦନାଜଡ଼ିତ ମୁଖରେ ହସର ଏକ କ୍ଷୀଣ ଆଭାସ ଦେଖାଗଲା । ସେ କହିଲେ, "ଭଗବାନଙ୍କର ଯାହା ଇଚ୍ଛା, ତାହା ହିଁ ଅବଶ୍ୟ ହେବ । ଚାଲ, ବନ୍ୟା ଅଞ୍ଚଳରେ ଆମ କାମ ଆମେ କରିବା ।" ଏତିକି କହି ସେ ଆଉ ରୋଗ ଶଯ୍ୟାଶାୟୀ ପୁଅ ମୁହଁକୁ ଫେରି ଚାହିଁଲେ ନାହିଁ ।

ବନ୍ୟା ଅଞ୍ଚଳରେ ଲୋକଙ୍କ ସେବା କରି ଫେରୁ ଫେରୁ କିଛିଦିନ ଚାଲିଗଲା । ଘରକୁ ଫେରି ସେ ଶୁଣିଲେ ଯେ ପୁଅଟି ତାଙ୍କର ଆଉ ଇହଧାମରେ ନାହିଁ । ସେ ଯେଉଁଠାରୁ ଆସିଥିଲା ସେହିଠାକୁ ଫେରି ଯାଇଛି । ସମସ୍ତେ ଭାବିଥିଲେ ପୁତ୍ରର ମରଣରେ ଗୋପବନ୍ଧୁ ଅଧୀର ଅସ୍ଥିର ହୋଇଯିବେ—କନ୍ଦାକଟା କରିବେ, କିନ୍ତୁ ଆଶ୍ଚର୍ଯ୍ୟର କଥା, ତାଙ୍କ ଆଖିରେ ଦୁଇ ବିନ୍ଦୁ ଲୁହ ସୁଦ୍ଧା ଦେଖାଗଲା ନାହିଁ । ସେ ତାଙ୍କ ପରିବାରବର୍ଗଙ୍କୁ ସାନ୍ତ୍ୱନା ଦେଇ କହିଲେ, "ମୋର ଗୋଟିଏ ପୁଅ ସିନା ରୋଗରେ ପଡ଼ି ଜୀବନର ଶେଷ ନିଶ୍ୱାସ ପରିତ୍ୟାଗ କଲା; କିନ୍ତୁ ଆଜି ବନ୍ୟା ଅଞ୍ଚଳରେ ଶହ ଶହ ପୁଅଙ୍କୁ ମୁଁ ମରଣ ମୁହଁରୁ ବଞ୍ଚାଇ ରଖି ଆସିଛି ।"

ପରପାଇଁ ସେ ନିଜର ସମସ୍ତ ସ୍ୱାର୍ଥକୁ ଆହୁତି ଦେଇ ପାରିଥିଲେ । ଦେଶ ସେବା ତାଙ୍କ ଜୀବନର ପ୍ରଧାନ ବ୍ରତ ଥିଲା ।

ଗୋପବନ୍ଧୁ ବି. ଏଲ୍. ପାସ୍ କରି ଅଳ୍ପ ସମୟ ଓକିଲାତି କରିଥିଲେ । ମାତ୍ର ସେପରି କୌଣସି ରୋଜଗାର କରି ନ ଥିଲେ । କୌଣସି ମହକିଲ ତାଙ୍କ ନିକଟକୁ ଆସିଲେ ସେ ବରାବର କହୁଥିଲେ—ଦେଖ, ଏ ମକଦ୍ଦମାରେ ବୃଥାରେ ଟଙ୍କା ନାହିଁ । ଟଙ୍କାତକ ଯେମିତି କାନିରେ ବାନ୍ଧି ଆଣିଛ ସେମିତି ଘରକୁ ଧରି ଫେରିଯାଅ । ପୁଅ, ଝିଅ, ଦୁଃଖୀ, ଗରିବ କେତେ ଅଛନ୍ତି । ସେମାନଙ୍କ ସେବାରେ ବ୍ୟସ୍ତ କର । ମନେ ରଖିବ—ପଡ଼ୋଶୀ ବାଧା, ବାଧା ନୁହେଁ । ହେଥିରେ ଦେହ ସରିଯାଏ ନାହିଁ କି ମେରୁଦଣ୍ଡ ଭାଙ୍ଗିଯାଏ ନାହିଁ । ସଂସାରରେ ରହିବା ଲୋକ ବଡ଼ଲୋକ ।

'କାହାକୁ ଦଣ୍ଡ ମିଳିଲେ ତମକୁ କ'ଣ ମିଳିବ ? ତମ ଘର ତ ଛନ୍ଦ୍ରଭିନ୍ନ ହୋଇଛି ଯିବନାହିଁ ? ଫଳରେ ସେହି ଲୋକ ମନରେ ରାଗ ରଖି ସବୁବେଳେ ତମର ଖରାପ ଚିନ୍ତା କରୁଥିବ । ବରଂ ତମେ ଯଦି ତାକୁ କ୍ଷମା ଦିଅ, ତେବେ ସେ ନିଜେ ନିଜର ଭୁଲ ବୁଝିପାରି ଲଜ୍ଜାରେ ସଢ଼ି ଯିବ । ମନର ପାପ ନାଶ କର ! ତୁମେ ଆଜିଠାରୁ ନିଜର ନାମ୍ରତାପୂର୍ଣ ହୁଅ । ଗୋପବନ୍ଧୁଙ୍କଠାରୁ ଏପରି ଉପଦେଶାତ୍ମକ ବାଣୀ ଶୁଣି କେତେକ ମହାକାଳ ନିଜ ଗ୍ରାମକୁ ଫେରି ଯାଉଥିଲେ । ଆଉ କେତେକ ତାଙ୍କ ଆଗରେ ସ୍ୱୀକାର କରି ଅନ୍ୟ ଓକିଲର ଦ୍ୱାରସ୍ଥ ହେଉଥିଲେ ।

ଉତ୍କଳମଣି ଗୋପବନ୍ଧୁ ଜୀବନରେ ଏତେ ସାଧୁ ଓ ମହତ୍କାର୍ଯ୍ୟ କରି ଜୀବିତାବସ୍ଥାରେ ଜନସମାଜରେ ଦେବତା ପରି ପୂଜା ପାଉଥିଲେ ସୁଦ୍ଧା ସେ ନିଜର କୃତିତ୍ୱ ଯୋଗୁଁ ଲେଶମାତ୍ର ଗର୍ବ ଓ ଅହଙ୍କାର କେଉଁଠାରେ ପ୍ରକାଶ କରି ନାହାନ୍ତି । ସେ ଥିଲେ ସୌଜନ୍ୟ, ଶିଷ୍ଟତା ଓ ବିନମ୍ରତାର ମୂର୍ତ୍ତି ପ୍ରତୀକ । ଧର୍ମପ୍ରାଣ ଗୋପବନ୍ଧୁ ଦେଶକୁ ଯଥେଷ୍ଟ ନେତୃତ୍ୱ ଦେଇ ଏହାର ସର୍ବାଙ୍ଗୀନ ଉନ୍ନତି ସାଧନ କଲେ ନିଜର ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିଥିଲେ ମଧ୍ୟ 'ମୁଁ ଏ ଦେଶର ନେତା', ଏହିପରି ଅହମିକା ତାଙ୍କଠାରେ ଆଦୌ ନ ଥିଲା । ସେହି ଧର୍ମ ଓ ଅମୃତ ପ୍ରେରଣାରୁ ସେ ଯେଉଁ ଅଫୁରନ୍ତ ଆତ୍ମଶକ୍ତି ଅର୍ଜନ କରିଥିଲେ, ସେହି ବଳିଷ୍ଠ ଆତ୍ମଶକ୍ତିରେ ସେ ପ୍ରାଣବନ୍ତ ହୋଇ କୌଣସି ପ୍ରକାର ଭେଦଭାବ ନ ରଖି ଜୀବନକୁ ପରିପୂର୍ଣ୍ଣ ରୂପେ ସେବାମୟ କରି ପାରିଥିଲେ । ଚିତ୍ତଶୁଦ୍ଧି ଓ ଧର୍ମ ବିଶ୍ୱାସରେ ବଳୀୟାନ୍ ନ ହେଲେ ମନୁଷ୍ୟ ଜୀବନଟା ଯେ ନିତାନ୍ତ ଅସାର, ମୂଲ୍ୟହୀନ ଓ ନିରର୍ଥକ ଏହା ସେ ପିଲାଦିନୁ ଭାଗବତ, ପୁରାଣ ଓ ଭଗବଦ୍ ଗୀତା ପ୍ରଭୃତି ଅତ୍ୟନ୍ତ ନିଷ୍ଠା ଓ ତନ୍ମୟତାର ସହିତ ପାଠ କରି ଗଭୀର ଭାବରେ ଉପଲବ୍ଧି କରି ପାରିଥିଲେ ।

ଗୋପବନ୍ଧୁ ଥିଲେ ଆଜୀବନ ଋଷିପ୍ରାଣ, ତ୍ୟାଗୀ, ସାଧୁ ଓ ସାଧକ । ଉତ୍କଳର ସେବାପୀଠରେ ରହି ବିଶ୍ୱସେବାରେ ନିଜକୁ ନିୟୋଜିତ କରିବା ନିମନ୍ତେ ଭଗବାନ ଯେପରି ତାଙ୍କୁ ଏ ମର୍ତ୍ତ୍ୟମଣ୍ଡଳକୁ ପ୍ରେରଣ

କରିଥିଲେ । ତାଙ୍କ ମନରେ ଦୁଃଖ ଓ କ୍ଷୋଭର ଅବକାଶ ନ ଥିଲା । ସମଗ୍ର ବିଶ୍ୱବାସୀ ତାଙ୍କର ସନ୍ତାନ । ସାଧନାରେ ଆତ୍ମବିସ୍ମୃତି, କର୍ମରେ ନିରଭିମାନତା ଓ ସ୍ୱଭାବରେ ନମ୍ରତା ଥିଲା ତାଙ୍କ ଚରିତ୍ରର ବିଶେଷତ୍ୱ । ସେ ଥିଲେ ଉଦାର ଓ ମନସ୍ୱୀ । କୌଣସି କ୍ଷୁଦ୍ର ସ୍ୱାର୍ଥର କାମନା ମନରେ ପୋଷଣ ନ କରି ସେ ନିଜର ସାଧନା ବଳରେ ନିଜକୁ ନିୟୋଜିତ କରୁଥିଲେ, ଦେଶ ଓ ଦଶର କଲ୍ୟାଣ ନିମନ୍ତେ ଅକାତର ଭାବରେ ଜନ ସମାଜରେ ନିଜ ସାଧନାର ଅମୃତମୟ ଫଳ ପରିବେଷଣ କରୁଥିଲେ । ସାଧକଠାରୁ ସାଧନା ବଡ଼ ଓ ମନୁଷ୍ୟଠାରୁ ତା'ର କାର୍ଯ୍ୟ ହିଁ ବଡ଼, ସେ ଏହା ନିବିଡ଼ ଭାବରେ ଉପଲବ୍ଧି କରୁଥିଲେ ।



# ପୁରପଲ୍ଲୀର ବନ୍ଧୁ ଗୋପବନ୍ଧୁ

## ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀ

[ ଶ୍ରୀ ପାଣିଗ୍ରାହୀ ଲେଖକ ହିସାବରେ ସୁପରିଚିତ ନ ହେଲେ ମଧ୍ୟ ଛାତ୍ରାବସ୍ଥାରୁ ତାଙ୍କର ଲେଖକ ହେବାର ସ୍ପୃହା ବଳିଷ୍ଠ ଏବଂ ସେ କେତୋଟି କବିତା, ଗଳ୍ପ ଓ ଏକାଂକିକାର ପ୍ରଣେତା ମଧ୍ୟ । ଗଞ୍ଜାମ ଜିଲ୍ଲାର ଏକ କ୍ଷୁଦ୍ରପଲ୍ଲୀରେ ଲେଖକଙ୍କର ଜନ୍ମ ଏବଂ ଶିକ୍ଷିତ ଯୁବକ ହିସାବରେ ନିଜ ଗାଁକୁ ଏକ ଆଦର୍ଶ ଗ୍ରାମରେ ପରିଣତ କରିବା ଲାଗି ତାଙ୍କର ଉଦ୍ୟମ ଅଭିନନ୍ଦନୀୟ । ବିଭିନ୍ନ ରଚନାର ଆଧାରରେ ଆଲୋଚ୍ୟ ପ୍ରବନ୍ଧରେ ସେ ଆଧୁନିକ ପଲ୍ଲୀଚିତ୍ରର ପୃଷ୍ଠଭୂମିରେ ଗୋପବନ୍ଧୁଙ୍କ ପଲ୍ଲୀପ୍ରାଣତାର ଉତ୍କର୍ଷ ପ୍ରତିପାଦନ କରିବାକୁ ପ୍ରୟାସ କରିଅଛନ୍ତି ।—ସ ]

ଗୋପବନ୍ଧୁ ପଲ୍ଲୀରୁ ଆବିର୍ଭୂତ । ପଲ୍ଲୀର ପ୍ରାକୃତିକ ପରିବେଶରେ ଲାଳିତପାଳିତ । ସରଳ, ଅକୃତ୍ରିମ ପଲ୍ଲୀଜୀବନ-ସହିତ ଓତଃପ୍ରୋତଃ ଭାବେ ଜଡ଼ିତ । ସୁତରାଂ ଦୀନ-ଦରିଦ୍ର ପଲ୍ଲୀ-ବାସୀର ସେବା ତଥା ପଲ୍ଲୀ-ପ୍ରାଣତା ତାଙ୍କ ଜୀବନର ଚରମ ପରକାଷ୍ଠା । ଗୋପବନ୍ଧୁ ପ୍ରଥମରୁ ଦୃଢ଼ ମତ ପୋଷଣ କରି ଆସିଛନ୍ତି ଯେ, ନିରାଡ଼ମ୍ବର, ସରଳ, ପ୍ରାକୃତିକ ପଲ୍ଲୀଜୀବନ ହିଁ ଶ୍ରେଷ୍ଠ ଜୀବନ । ସେଥିରେ ନାହିଁ ସହର ସଭ୍ୟତାର କୃତ୍ରିମତା, ପରମୁଖାପେକ୍ଷିତା ବା ବସ୍ତୁତାନ୍ତ୍ରିକତା; କିନ୍ତୁ ସରଳତା, ସହିଷ୍ଣୁତା, ସାଧୁତା ଓ ଆଧ୍ୟାତ୍ମିକତା ବିଦ୍ୟମାନ । ପୁରପଲ୍ଲୀର ଭଗବତ ଘର ଧର୍ମଭାବର ପୀଠସ୍ଥଳୀ । ତେଣୁ ପଲ୍ଲୀବାସୀ ଯେତେବେଳେ ଦେଶର ଆହ୍ୱାନରେ ମନ୍ତ୍ରମୁଗ୍ଧ ହୋଇ କମ୍ପା ବନ୍ୟା ଦୁର୍ଭିକ୍ଷର କଷାଘାତରେ

ମ୍ରିୟମାଣ ହୋଇ କଳକାରଖାନାରେ କାମ କରିବାପାଇଁ ନିଜର ସୁଜଳା, ସୁଫଳା, ଶସ୍ୟଶ୍ୟାମଳା କ୍ଷେତ୍ର ଛାଡ଼ି କଲିକତା ଓ ରେଙ୍ଗୁନ ଅଭିମୁଖେ ଦୌଡ଼ନ୍ତି, ସେତେବେଳେ ଗୋପବନ୍ଧୁଙ୍କ ସରଳ ପ୍ରାଣରେ ଆଘାତ ଲଗେ ଏବଂ ସେ ତା'ର ପ୍ରତିକାର ବିଧାନ କରିବା ପାଇଁ ତତ୍ପର ହୁଅନ୍ତି । ପଲ୍ଲୀବାସୀଙ୍କର ଏହି ଶ୍ରମ-କାତରତା ଓ ସହର ମନତାରେ ମର୍ମାହତ ହୋଇ ସେ ତାଙ୍କର ଶାଣିତ ମସୀର ସଦ୍‌ବ୍ୟବହାର ପୂର୍ବକ ୧୯୧୪ରେ 'ସତ୍ୟବାଦୀ'ର ସ୍ତମ୍ଭରେ ଏ ପ୍ରସଙ୍ଗରେ କ୍ରମାଗତ ଲେଖିଥିଲେ—

"ପଲ୍ଲୀ ସମାଜର ପୂର୍ବ ପ୍ରକୃତି ସଙ୍ଗେ ବର୍ତ୍ତମାନ ଲୋକଙ୍କ ଗତିବିଧି ତୁଳନା କରି ଦେଖିଲେ ଆମ୍ଭେମାନେ କ୍ରମେ ସ୍ୱର୍ଗଆଡ଼ୁ ନରକକୁ ଗତି କରୁଅଛୁ ବୋଲି ମନେହୁଏ ।"

+ + +

"ଆଜକାଲି ଅଳ୍ପ ବହୁତ ଦେଶରେ ଯେ କିଛି ଶିକ୍ଷା ପାଇଲେ, ତାଙ୍କ ମୁହଁ ସହର ଆଡ଼କୁ । ଯେଉଁମାନେ ବିଶ୍ୱବିଦ୍ୟାଳୟର ଉପାଧି ପାଇଲେ, ସେମାନେ ପଢ଼ିବା ଅବସ୍ଥାରେ ପନ୍ଦର ସତର ବର୍ଷ ସହରରେ ରହି ଏପରି ଅଭ୍ୟସ୍ତ ହେଲେ ଯେ, ମଫସଲ ଆଉ ସୁଖ ଲଗୁନାହିଁ ।... ଯେଉଁମାନେ ଉପାଧି ପର୍ଯ୍ୟନ୍ତ ପାଇ ନାହାନ୍ତି, ବିଶ୍ୱବିଦ୍ୟାଳୟର ଗୋଟିଏ ଅଧେ ପରୀକ୍ଷାରେ ମାତ୍ର ଉତ୍ତୀର୍ଣ୍ଣ ହୋଇଛନ୍ତି କିମ୍ବା ସେଠାରେ ସୁଦ୍ଧା ପହଞ୍ଚି ନପାରି ଅଧାବାଟରେ ରହିଛନ୍ତି, ସେମାନଙ୍କ ମଧ୍ୟରୁ କେହି କିରାଣି ହେବା ଲାଗି, କେହି ଗୁମାସ୍ତା ହେବା ଲାଗି, କେହି ବା କାହାର ଗୃହଶିକ୍ଷକ ହେବା ଲାଗି ଅଥବା ଏହିଭଳି ଅନ୍ୟ କୌଣସି କର୍ମ ଉପଲକ୍ଷରେ ସହରରେ ରହୁଅଛନ୍ତି ।......ପଲ୍ଲୀ ସହିତ ଶିକ୍ଷିତମାନଙ୍କ ସମ୍ପର୍କ, ସହାନୁଭୂତି, ସ୍ନେହ ମମତା କ୍ରମେ ଲୋପ ପାଉଛି । 'ଦେଶର ଉନ୍ନତି' ପ୍ରଭୃତି କଥାମାନ ଏହି ଶିକ୍ଷିତ ଲୋକଙ୍କ ମୁଖରେ ଅସାର ବଡ଼ିମ୍ବନା ବୋଲି ବୋଧହୁଏ ନାହିଁକି ?"

+ + +

"ଦେଶକୁ ବୁଝିବାକୁ ହେଲେ ସହର, ପ୍ରାନ୍ତର, ଗ୍ରାମ, ଗୁହା, ପଡ଼ା, ପାଟଣା, ପୁରପଲ୍ଲୀ, ଗ୍ରୋଟବଡ଼ ସମସ୍ତ ଜନପଦକୁ ହିସାବକୁ

ନେବାକୁ ହେବ ।……ଆମ୍ଭମାନଙ୍କ ଜାତୀୟ ଶକ୍ତିର ମୂଳ ପଲ୍ଲୀରେ । ଭାରତୀୟ ସଭ୍ୟତାର କେନ୍ଦ୍ର ସହର ନୁହେଁ, ପଲ୍ଲୀଗ୍ରାମ, ନଗରର କୃତ୍ରିମତାରେ ନୁହେଁ, ପଲ୍ଲୀର ସ୍ୱାଭାବିକତାରେ ।"

\+ \+ \+

"ଅଭାବର ଆକ୍ରମଣରୁ ପଲ୍ଲୀବାସୀଙ୍କୁ ଉଦ୍ଧାର କରି ନ ପାରିଲେ ଆଉ ଦୀର୍ଘକାଳ ଆମ୍ଭମାନଙ୍କ ଜାତୀୟତା ରକ୍ଷା କରିବା ଅସମ୍ଭବ । ତେଣୁ ପ୍ରତ୍ୟେକ ପଲ୍ଲୀର ଅବସ୍ଥା ଅନୁସନ୍ଧାନ କରି ତହିଁର ଯଥାସମ୍ଭବ ପ୍ରତିକାର କରିବା ଏକାନ୍ତ ଆବଶ୍ୟକ ।…ଏହି ପଲ୍ଲୀର ଉନ୍ନତି ବିଧାନ ହିଁ ବର୍ତ୍ତମାନ ଜାତୀୟ କର୍ମ । ଏ କାର୍ଯ୍ୟରେ ଜାତିର ସକଳ ଶ୍ରେଣୀର ଲୋକେ ଯୋଗଦେବା ଆବଶ୍ୟକ ।"

୧୯୧୯ରେ ଉତ୍କଳ ସମ୍ମିଳନୀର ୧୪ଶ ଅଧିବେଶନରେ ଭାଷଣ ଦେଇ ମଧ୍ୟ ଏ ପ୍ରସଙ୍ଗରେ ସେ କହିଥିଲେ—

"ଆଜି ଆମ୍ଭମାନଙ୍କ ପଲ୍ଲୀର ଜନସାଧାରଣଙ୍କ ଅବସ୍ଥା ଦେଖିଲେ ହୃଦୟ ଫାଟିଯାଏ । ଏହି ଅବସ୍ଥା ଅଧିକ ଦିନ ଗଲେ ଆମ୍ଭମାନଙ୍କ ଜାତିର କି ଦୁର୍ଗତି ହେବ, ଭାବି ହୃଦୟରେ ବେଳେ ବେଳେ ନିରାଶା ଆସେ । ଶ୍ରମଶୀଳାକୁଳ କ୍ରମେ ଭିକାରୀ ହୋଇ ଯାଉଛନ୍ତି । ଖାଦ୍ୟର ଅଭାବ, ଜଳର ଅଭାବ, ବସ୍ତ୍ରର ଅଭାବ; ସ୍ୱାସ୍ଥ୍ୟ ନାହିଁ, ଶିକ୍ଷା ନାହିଁ ଏବଂ ସାହସ ନାହିଁ ।……ମାନ ଯେଉଁମାନଙ୍କ ପ୍ରାଣ ଉପରେ ପ୍ରତିଷ୍ଠିତ ନ ହେବାଯାଏ ଆମ୍ଭମାନଙ୍କ ସମ୍ମିଳନୀ ପ୍ରକୃତ ଓଡ଼ିଆ ଜାତିର ସମ୍ମିଳନୀ ନୁହେ । ନଗର, ଗ୍ରାମ, ପଲ୍ଲୀ, ପାଟଣା, ବିଲ, ହାଟ, ବାଟ, ରାଜପଥ ସବୁଠି ଜାତୀୟତାର ଭାବସ୍ରୋତ ବୁହାଇବାକୁ ହେବ ।……ଜାତୀୟ କାର୍ଯ୍ୟରେ ମାହାର ମହାରାଜା ମଧ୍ୟରେ ଭେଦ ରହିବା ଉଚିତ ନୁହେଁ ।"

କିନ୍ତୁ ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଏହି ଯେ, ଗୋପବନ୍ଧୁ କେବଳ ଶ୍ରମକାତର, ସହରମୁହାଁ, କଳହପ୍ରିୟ, ପର ପ୍ରବଞ୍ଚକ ପଲ୍ଲୀବାସୀଙ୍କର କଠୋର ସମାଲୋଚନା କରି ଅଧଃପତିତ ପଲ୍ଲୀର 'ନିଦାରୁଣ ଚିତ୍ର' ଅଙ୍କନ କରି ଗାଇନାହାନ୍ତି—

"ପଶିଗଲେ ଗ୍ରାମେ ନ ଶୁଟଭ ଶବଦ,
ବେଦମନ୍ତ୍ର କମ୍ୱା ଭଗବତ ପଦ ।
ଗ୍ରାମବାସୀଗଣେ ନାହିଁ ପୂର୍ବ ମେଳ,
ଶିଶୁ ଖେଳେ ଦାଣ୍ଡ ନ ହୁଏ ଉଦ୍‌ବେଳ ।"

କମ୍ୱା

"ପର ପ୍ରବଞ୍ଚନା କଟଚେଷ୍ଟା-ବସ୍ତର
ଗ୍ରାମମୁଖିଆଙ୍କ ନିତ୍ୟ କାରବାର ।
ଆତ୍ମୀୟ ସୋଦର ପ୍ରତିବେଶୀ ସହ
ନିଜ ସ୍ୱାର୍ଥ ଲାଗି ଲଗାନ୍ତି କଳହ ।"

କିନ୍ତୁ ଏହା ସଙ୍ଗେ ସଙ୍ଗେ ପଲ୍ଲୀସୁଲଭ ସରଳ ଜୀବନରେ ଆତ୍ମହରା ହୋଇ ସେ ଅତି ମଧୁର, ଲଳିତ ଓ ହୃଦୟସ୍ପର୍ଶୀ ଭାଷାରେ ତା'ର ଜୀବନ୍ତ ଦୃଶ୍ୟ ମଧ୍ୟ ପରିବେଷଣ କରିଛନ୍ତି । ଯଥା—

"ଗାଈଆଳ ଗୋଠୁଁ ବାହୁଡ଼ାଇ
ଆଣୁଥାଏ ଗାଈ ବେଣୁ ବଜାଇ
ହାଟ କାମ ସାରି ଫେରନ୍ତି ବେପାରୀ
ଭଙ୍ଗୀ ଚଉପଦୀ ପଦ ପକାଇ ।"

+ + +

"ହଳ ଲେଉଟାଇ ଆସୁଥାଏ ଭୋଇ
ମୁଣ୍ଡେ ଘାସଗୋଛା ହାତେ ପାଞ୍ଚଣ
ବଳଦ ଅଡ଼ାଇ ହଏ କେବେ ଗାଈ
'କମ୍ପା ଛୁଡ଼ିଗଲୁ ତୁ ଲଇକ୍ଷଣ ।"

+ + +

"ଯାଉଁଳ କାନ୍ଧରେ କେବେ ବା ବନ୍ଧରେ
ଭଉଣୀ ଆଗରେ ଗୁଲଇ ଭାଇ

ଶାଶୁଘରେ ନଏ ସନ୍ଧ୍ୟା ଦେଖି କହେ
ଗୁଡ଼ଣ୍ଡି ଗୋଡ଼ କାଢ଼ି ଚାଲିବା ପାଇଁ ।
ନବ ଯଉବନୀ କାଖେ ପିଲା ଦେଇ
ଚାଲି ନ ପାରଇ ଜଘନ ଭରରେ
ତା ପୁଅଁ ଚପଳ ଯୁବା ସଙ୍ଗୀଦଳ
ପରିହାସେ ଏକ ଆନକୁ ଠାରେ ।"

"ପଡ଼ିଆରେ ମାଛ ଧରେ ନୋଳିଆ ଲେଉଟି ଆସେ
କୂଳେ ତା ପିଲାଏ ରହିଁ ଗୀତ ଗା'ନ୍ତି ଅଟ୍ଟହାସେ
ପାଣିକି ନଆନ୍ତି ନେଇତେ ଝର୍ଗିବେ ଲହଡ଼ି ସାତ
ପାଇଗ୍ଲି ଆଣିବେ କୂଳେ ଧରି ସେଥିା ବାପ ହାତ ।"

ଏହାପରି ଆହୁରି ଅନେକ ଦୈନନ୍ଦିନ ପଲ୍ଲୀଜୀବନର ଜୀବନ୍ତ ଚିତ୍ର ଗୋପବନ୍ଧୁଙ୍କ ରଚନାରୁ ଉଦ୍ଧାର କରାଯାଇ ପାରିବ । ବାସ୍ତବରେ କହିବାକୁ ଗଲେ ସେଗୁଡ଼ିକ କବି ମାନସର ମନୋଜ୍ଞ କଳ୍ପନା ନୁହେଁ, ନିଛକ ବାସ୍ତବତା, ନିଜ ନିଗୂଢ଼ ଜୀବନାନୁଭୂତିର ନିର୍ଯ୍ୟାସ । ଅଧ୍ୟାପକ ଚିନ୍ତାମଣି ଦାଶଙ୍କ ଭାଷାରେ କହିବାକୁ ଗଲେ "ଏ ଚିତ୍ର ଗୋପବନ୍ଧୁଙ୍କର ଅନନ୍ୟ । ଏଠାରେ ତାଙ୍କୁ ପଲ୍ଲୀକବି ନନ୍ଦକିଶୋର ବଳ କିମ୍ବା କବି ସଚ୍ଚି ରାଉତରାୟଙ୍କ ସହିତ ତୁଳନା କରି ପାଣ୍ଡିତ୍ୟପୂର୍ଣ୍ଣ ଗବେଷଣାତ୍ମକ ଆଲୋଚନା ଲେଖିବାର ପ୍ରୟାସ ବିଡ଼ମ୍ବନା । ଏ ପ୍ରକାର ଶୈଳୀ ଗୋପବନ୍ଧୁଙ୍କର ବ୍ୟକ୍ତିଗତ ସମ୍ପଦ । ପଲ୍ଲୀଜୀବନ ପ୍ରତି ଅକୃତ୍ରିମ ପ୍ରଗାଢ଼ ଅନୁରକ୍ତିରୁ ଏହାର ସୃଷ୍ଟି । ଯେ ପଲ୍ଲୀବାସୀମାନଙ୍କ ପ୍ରାଣ ସହିତ ପ୍ରାଣ ମିଶାଇ ଦେଇଛନ୍ତି, ମାନବିକତାରେ ଯାହାର ହୃଦୟ ସମୃଦ୍ଧ, ସେହି କେବଳ ପଲ୍ଲୀଜୀବନର ଏପରି ମର୍ମସ୍ପର୍ଶୀ ଚିତ୍ର ଅଙ୍କନ କରି ପାରିବ ।"

ଏହାର ବହୁ ଆଗରୁ ଗୋପବନ୍ଧୁ ପୁରୀ କଲେଜରେ ଛାତ୍ର ଥିଲାବେଳେ ମଧ୍ୟ ସେ ଆଖପାଖ ବ୍ରାହ୍ମଣ ଶାସନଗୁଡ଼ିକରେ ସଭାସମିତି କରି ପଲ୍ଲୀ ଉନ୍ନୟନରେ ମନପ୍ରାଣ ଢାଳି ଦେବାକୁ ଲୋକମାନଙ୍କୁ ଉଦ୍‌ବୋଧନ ଦେଉଥିଲେ ଏବଂ ବୌଦ୍ଧ ସନ୍ନ୍ୟାସୀଙ୍କ ପରି ଗୈରିକ ବସନ ପରିଧାନ କରି ଗ୍ରାମାଞ୍ଚଳରେ ତ୍ୟାଗ ଓ ସେବାର ମନ୍ତ୍ର ପ୍ରଚାର କରୁଥିଲେ ।

ସୁତରାଂ, ୧୯୨୪ରେ ଗାନ୍ଧିଜୀ ଗ୍ରାମରାଜ୍ୟ ପରିକଳ୍ପନା କରି ତାଙ୍କର ପଲ୍ଲୀ ଉନ୍ନୟନ ଯୋଜନା ଘୋଷଣା କରିବାର ବହୁପୂର୍ବରୁ ଗୋପବନ୍ଧୁ ଓଡ଼ିଶାର ସୁଦୂରପଲ୍ଲୀରେ ସେହି ଗାନ୍ଧୀୟ ଆଦର୍ଶର ପରିପ୍ରଚାର କରି ସାରିଥିଲେ ଏବଂ ଏହି କ୍ଷେତ୍ରରେ ପୁଣ୍ୟାତ୍ମା, ପଲ୍ଲୀବନ୍ଧୁ ଗୋପବନ୍ଧୁ ମହାମାନବ ମହାତ୍ମାଗାନ୍ଧୀଙ୍କୁ ବଳି ପଡ଼ିଥିଲେ ।

ପ୍ରକୃତରେ ଦେଖିବାକୁ ଗଲେ ପଲ୍ଲୀବାସୀଙ୍କ ପ୍ରାଣ ସହିତ ନିଜର ପ୍ରାଣ ମିଶାଇ ଦେଇଥିବାରୁ ହିଁ ଗୋପବନ୍ଧୁ ସୁଦୂରପଲ୍ଲୀର ଦୀନ ଦରିଦ୍ର-ମାନଙ୍କ ଦୁର୍ଗତି ଓ ଦୁରବସ୍ଥାରେ ଅତ୍ୟଧିକ ମାତ୍ରାରେ ବ୍ୟଥିତ ଓ ମର୍ମାହତ । ଏପରି କି ପଲ୍ଲୀବାସୀଙ୍କର ଅତୀତ ସୁଖ ଓ ସୌଭାଗ୍ୟର ପ୍ରତ୍ୟାବର୍ତ୍ତନରେ ସନ୍ଦିହାନ ହୋଇ ସେ ବିଷାଦଭରା କଣ୍ଠରେ ଗାଇ ଉଠିଛନ୍ତି—

"ସଡ଼ି ମଞ୍ଜି ଗଛେ ରହିଛି ବକଳ
ସୁନ୍ଦର ସକଳ ବିକଟ ବିକଳ
ଫେରିବ ଏ ଦଶା ସୁଖୀ ହେବେ ପ୍ରଜା
ଉଷୁନା ଧାନ କି ସରଚେ ହେବ ଗଜା ?"

ଅବଶ୍ୟ ଗୋପବଂଧୁ ବିଷାଦବାଦୀ ନ ଥିଲେ । ଭଗବାନଙ୍କ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ଏଣୁ ଏ ଦୁଃଖ ଦୁର୍ଦ୍ଦଶାର ଅବସାନ ନିମନ୍ତେ ଭଗବାନଙ୍କ ଉପରେ ଆସ୍ଥାରଖି କର୍ତ୍ତବ୍ୟପଥରେ ଅଗ୍ରସର ହେବାପାଇଁ ଉପଦେଶ ଦେଇ ସେ କହିଛନ୍ତି—

"ଅରଟ ଚଳାଅ ପ୍ରତି ଘରେ ଘରେ
ଗ୍ରାମର କଳହ ତୁଟାଅ ଗ୍ରାମରେ ।

\+ \+ \+

ଛାଡ଼ ଉଚ୍ଚନୀଚ ଭେଦ ଅହଙ୍କାର
ହେଉ ନୀଳାଚକ୍ରୁ ସମତା ପ୍ରଚାର ।
ନୀଳାଚଳେ ନାଥ ପ୍ରଭୁ ଶ୍ରୀନିବାସ
ପୁରାଇବେ ଆଶା ରଖ ଏ ବିଶ୍ୱାସ ।"

ପଲ୍ଲୀପ୍ରାଣ ଗୋପବନ୍ଧୁଙ୍କର ମାନସ ଓ ହୃଦୟର ଭାବଭାବ ଏବଂ ଚିନ୍ତାଧାରାର ପ୍ରତିଛବି ପଲ୍ଲୀବାସୀଙ୍କର ଦୈନନ୍ଦିନ କାର୍ଯ୍ୟରେ ପ୍ରତିଫଳିତ ହେବା ଦୂରର କଥା; ବରଂ ଆଜିର ପରିବର୍ତ୍ତିତ ଅପରିମଳ ଓ ପଙ୍କିଳ ପଲ୍ଲୀଜୀବନ ପ୍ରତି ଦୃଷ୍ଟିପାତ କଲେ ବାସ୍ତବିକ ଆମର ଚକ୍ଷୁ ଲୋତକପ୍ଲାବିତ ହୋଇପଡ଼େ । ତାହା ଆଜି ଆଉ ସରଳତା, ସ୍ୱଚ୍ଛତା, ସାଧୁତା ଓ ଆଧ୍ୟାତ୍ମିକତାର ପ୍ରତୀକ ହୋଇ ରହିନାହିଁ । ସେଠାରେ ବ୍ୟାପିଯାଇଛି ଦଳୀୟ ରାଜନୀତି । ତାହା ଆଜି ଅପମିଶ୍ରଣ ଓ କଳାବଜାରର କାରବାରରେ ଭରପୂର । ପର ସେବା, ଏକତା ଓ ଭ୍ରାତୃଭାବ ବଦଳରେ ସେଠାରେ ଦେଖା ଦେଇଛି ପରଶ୍ରୀକାତରତା, ଗୋଷ୍ଠୀଭାବ ଓ ଭ୍ରାତୃ-ବିବାଦ । ମିଥ୍ୟାପବାଦ, ଆପତ୍ତି, ଅଭିଯୋଗ, ମାମଲା, ମକଦ୍ଦମା ବେଳକୁ ବେଳ ବଢ଼ିବାକୁ ଲାଗିଛି । ରାମାୟଣ, ମହାଭାରତ, ବେଦ ଓ ଭାଗବତ ପାଠ, ଯାହା ପଲ୍ଲୀଜୀବନର ମହତ୍ ଉତ୍କର୍ଷ ବୋଲି ବିବେଚିତ ହେଉଥିଲା, ତାହା ଆଜି ଅନେକ ଗ୍ରାମରେ ଆଉ ଆଦୌ ଶୁଣିବାକୁ ମିଳୁନାହିଁ । ଭାଗବତ ଟୁଙ୍ଗୀମାନ ଧୂଳିସାତ୍ ହୋଇଗଲାଣି । ଯେଉଁ ଗାଁ ଦେଉଳ ଥିଲା ଗ୍ରାମବାସୀଙ୍କର ପୂଜା ଓ ଆରାଧନାର ପବିତ୍ର ପୀଠ, ସେହି ଦେଉଳର ଦେବତା ଉପରେ ଆଉ ତାଙ୍କର ବିଶ୍ୱାସ ନାହିଁ ଏବଂ ସେହି ଦେଉଳର ପ୍ରଥମ କୋଠରୀ ରାଜନୀତି ଚର୍ଚ୍ଚାର ପୀଠସ୍ଥଳୀ ହୋଇପଡ଼ିଛି । ଆଜି ସେମାନେ ଶିବ ମନ୍ଦିରରୁ ସ୍ୱର୍ଣ୍ଣନାଗ ଚୋରି କରିବାରେ ବ୍ୟସ୍ତ । ଯେଉଁ ମଠ ମଣ୍ଡପ ଦିନେ ପୁରାଣ ଚର୍ଚ୍ଚାର ପରମ ପୀଠ ଥିଲା, ତାହା ଆଜି ଜୁଆ ଆଡ୍ଡାରେ ପରିଣତ ହୋଇଛି । ପୁରାଣ ଶ୍ରବଣ ବଦଳରେ ସେଠାରେ ଚିଲମ୍ ସେବନ ଚାଲିଛି । ଫଳରେ ପୁରପଲ୍ଲୀ ଓ ପଲ୍ଲୀଜୀବନ କଳଙ୍କିତ ଓ ଦୂଷିତ ହୋଇଯାଇଛି ।

ଏହି କଳଙ୍କିତ ପଲ୍ଲୀର ଛବି ଉପରେ ଦୃଷ୍ଟିପାତ କଲେ ହୃଦୟ ବିଦାରିତ ହୋଇପଡ଼େ ଓ ସଙ୍ଗେ ସଙ୍ଗେ ସେହି 'ପଲ୍ଲୀବନ୍ଧୁ' ପଣ୍ଡିତ ଗୋପବନ୍ଧୁଙ୍କୁ ମନେ ପଡ଼ିଯାଏ । ଏ ପରିପ୍ରେକ୍ଷୀରେ ବିଚାର କଲେ ପଲ୍ଲୀ ଉନ୍ନତି ବିଧାନ ନିମିତ୍ତ ପଣ୍ଡିତ ଗୋପବନ୍ଧୁ ଯେଉଁ ମହତ୍ ଆଦର୍ଶ ରଖି ଯାଇଛନ୍ତି, ତା'ର ଉତ୍କର୍ଷ ଓ ଉପାଦେୟତା ଅପରିମେୟ ଓ ଅବିସମ୍ବାଦିତ ।

# ବନ୍ୟା ଦୁର୍ଭିକ୍ଷ ବେଳର ବନ୍ଧୁ ଗୋପବନ୍ଧୁ

ଶ୍ରୀ ବ୍ରହ୍ମାନନ୍ଦ ସାମଲ, ବି. ଏସ୍. ସି.

[ କଟକ ଜିଲ୍ଲା ବିଞ୍ଝାରପୁର ଥାନା ଅନ୍ତର୍ଗତ ଅଙ୍ଗାଲୋରୁ ଯାଇ ଶ୍ରୀ ସାମଲ ବର୍ତ୍ତମାନ କଲିକତା ଖିଦିରପୁର ଓଡ଼ିଆ ଜୁନିୟର ହାଇସ୍କୁଲର ସହକାରୀ ଶିକ୍ଷକ ତଥା କଲିକତା ଓଡ଼ିଆ ଯୁବ-ଲେଖକ ସମ୍ମିଳନୀର ଜଣେ ସକ୍ରିୟ ସଭ୍ୟ । ଶିକ୍ଷକାବସ୍ଥାରେ ହିଁ ସେ ସିଟି କଲେଜର ସାନ୍ଧ୍ୟ ବିଭାଗରେ ଅଧ୍ୟୟନ କରି ବିଜ୍ଞାନ ଡ଼ିଗ୍ରୀ ହାସଲ କରିଛନ୍ତି । ବନ୍ୟା ଦୁର୍ଭିକ୍ଷବେଳେ ଦୀନଦରିଦ୍ରଙ୍କ ସେବାରେ ଗୋପବନ୍ଧୁଙ୍କ ହୃଦ କିଭଳି ଉଦ୍‌ବେଳିତ, ତାହା ହିଁ ତାଙ୍କ ଆଲୋଚ୍ୟ ପ୍ରବନ୍ଧର ପ୍ରତିପାଦ୍ୟ ବିଷୟ ।— ସଂ ]

"ମରିବାରି ଅଧିକାର ତୁମ୍ଭମାନଙ୍କର ନାହିଁ ।"

× × ×

"ରାଜ୍ୟର ପାଳକ ରାଜା ମୁଣ୍ଡରେ । ଏ ବିରାଟ ଦେଶରେ ଯଦି କୌଣସି ଲୋକ ନ ଖାଇ ମରେ, ତେବେ ତା'ର ଶେଷ ନିଶ୍ୱାସ ସରକାରଙ୍କ ଉପରେ ପଡ଼ିବ ଏବଂ ଏମାନଙ୍କ ମୃତ୍ୟୁ ପାଇଁ ସରକାର ହିଁ ଦାୟୀ ହେବେ । ସରକାରଙ୍କର ଏ ଅବହେଳିତ ଜନସାଧାରଣଙ୍କ ପ୍ରତି ନିଶ୍ଚୟ କର୍ତ୍ତବ୍ୟ ଅଛି, ସରକାର କର୍ତ୍ତବ୍ୟ ସମ୍ପନ୍ନ କରନ୍ତୁ ।"

ଧନ୍ୟ ହେ ନର୍ମ୍ମ ସମାଲୋଚକ ! ଧନ୍ୟ ତୁମେ ଉତ୍କଳମଣି, ନ ହେଲେ କି ତୁମର ଉତ୍କଳମଣି ନାମଟି ଅଜି ଉତ୍କଳର ନରନାରୀଙ୍କର କଣ୍ଠବାଣୀରେ ଝଙ୍କୃତ ହୋଇଥାନ୍ତା ? ତୁମର ଏହି ମୁଖନିଃସୃତ ନର୍ମ୍ମ ବାଣୀ ଦୁଇପଦ ଇଂରେଜ ସରକାରଙ୍କୁ ନ ଶୁଣାଇଥିଲେ ଏ ମୁମୂର୍ଷୁ ଜାତିର ଜୀବନରେ ନୂତନ ଆଶାର ପ୍ରଦୀପ ଜାଳିଥାନ୍ତା କିଏ ?

୧୯୧୮-୨୦ ମସିହା । ଓଡ଼ିଶା ପକ୍ଷରେ ଘୋର ଦୁର୍ଦ୍ଦିନ ପୂର୍ଣ୍ଣ । ଘୋର ଦୁର୍ଭିକ୍ଷ, ଅନାବୃଷ୍ଟି—ଘୋର ବନ୍ୟା । ଏହି ସମୟରେ ଗୋପବନ୍ଧୁଙ୍କର କର୍ମନିଷ୍ଠା, ସେବା ଏବଂ ପ୍ରାଣର ବ୍ୟାକୁଳତା ଅନୁଭବ ନ କରିଛି କିଏ ?

୧୯୧୮ ମସିହା ଅନାବୃଷ୍ଟିର କରାଳ ଛାୟା ଆଜି ମଧ୍ୟ ଆଖି ଆଗରେ ନାଚିଉଠେ । ଓଡ଼ିଶାରେ ଯେତେବେଳେ ଅନାବୃଷ୍ଟି ଜନିତ ଦୁର୍ଭିକ୍ଷ ଶତମୁଖ ହୋଇ ପ୍ରତ୍ୟେକ ନରନାରୀଙ୍କୁ ଗ୍ରାସ କରିବାକୁ ଧାବମାନ, ଠିକ୍ ସେତିକିବେଳେ ପୃଥିବୀ ମହାଯୁଦ୍ଧର ରଣ ଦୁନ୍ଦୁଭି ବିକଟାଳ ଶବ୍ଦ କରି ହୃଦୟକୁ ସ୍ପନ୍ଦିତ କରୁଥାଏ । ଅସମ୍ଭବ ଭାବେ ଜିନିଷପତ୍ରର ଦରଦାମ ବଢ଼ୁଥାଏ । ଅନ୍ନ ସନ୍ଧାନ ଲାଗି ବାହା ନ ଥାଏ ଧାନ ଚାଉଳର ଦର ହୁ ହୁ ବଢ଼ି ଯାଉଥାଏ । ହା ହତାଶର ଶିଖା ଘୋଟିଆସିଲା । ଲୋକେ ହା ଅନ୍ନ ଦାଉରୁ ରକ୍ଷା ପାଇବା ପାଇଁ ପେଟ ବିକଳରେ ଧାଇଁଲେ କଲିକତା, ରେଙ୍ଗୁନ୍—ପରିବାରର ଭରଣପୋଷଣ ଦାୟିତ୍ୱ, କୁଟୁମ୍ବର ମାୟା, ମମତା, ସ୍ନେହ କିଛି ତାଙ୍କୁ ବାନ୍ଧି ରଖିପାରିଲା ନାହିଁ ।

କଥାରେ ଅଛି—ବିପଦ ଆସେ ନା, ଯଦି ଆସେ ତା ସାଙ୍ଗରେ ତା'ର ବନ୍ଧୁ ପରିବାର ନେଇ ଆସେ । ଠିକ୍ ସେହିପରି ଅନାବୃଷ୍ଟିରୁ ଯାହା କିଛି ବାକିଥିଲା, ତାହା ୧୯୧୯ର ଘୋର ବନ୍ୟାରେ ଶେଷ ହେଲା । କୁଶଭଦ୍ରା ଓ ଭାର୍ଗବୀ ବନ୍ୟାଜଳ ପୁରୀ ସଦର ଉପଖଣ୍ଡର ସମଗ୍ର ଅଞ୍ଚଳକୁ ଚାଲିକାରେ ପରିଣତ କରିଦେଲା । ମରଣରେ ସୁଅ ଛୁଟିଲା । ଲୋକେ ପୋକ ମାଛି ପରି ମଲେ । କେହି ଆହା କହିବାକୁ ନ ଥାନ୍ତି । କିନ୍ତୁ ଥିଲେ ଜଣେ —ସେ ହେଉଛନ୍ତି ତ୍ୟାଗବୀର, କର୍ମବୀର, ପରଦୁଃଖକାତର ଗୋପବନ୍ଧୁ ।

ସେ ସେହି ଅବହେଳିତ ନରନାରୀଙ୍କୁ କୋଳକରି ନେଲେ । ତାଙ୍କର ଦୁଃଖରେ ସମଭାଗୀ ହୋଇ ଅଶ୍ରୁପୂର୍ଣ୍ଣ ଲୋଚନରେ କହୁଥିଲେ— "ମରିବାର ଅଧିକାର ତୁମ୍ଭମାନଙ୍କର ନାହିଁ ।" ଲୋକଙ୍କର ଦାରୁଣ ଦୁଃଖ ଓ ନଷ୍ଟବୁଡ଼ି ଅଞ୍ଚଳର କରୁଣ ଦୃଶ୍ୟ ଦେଖି ତାଙ୍କର ଆଖିରୁ ଅଶ୍ରୁଧାର ବହିଗଲା । ଗୋପବନ୍ଧୁ ଏହି ଦୁର୍ଭିକ୍ଷର ପ୍ରତିକାରରେ ବ୍ୟାକୁଳ ହୋଇ-ଉଠିଲେ । ଯେଉଁଆଡ଼େ ବୁଲିଲେ, ତାଙ୍କ ଆଗରେ ନାଚି ଉଠିଲେ ଅସ୍ଥି ଚର୍ମସାର କୋଟି ନରକଙ୍କାଳ !

ସେ ଦୁର୍ଭିକ୍ଷ ସାହାଯ୍ୟ ପାଣ୍ଠି ସଂଗ୍ରହ କଲେ । ଦୁର୍ଭିକ୍ଷ-ପ୍ରପୀଡ଼ିତ ଅଞ୍ଚଳରେ ବୁଲି ଚୁଡ଼ା ଗୁଡ଼ ବାଣ୍ଟିଲେ । ସେଥିପ୍ରତି ବାରମ୍ବାର ସରକାରଙ୍କର ଦୃଷ୍ଟି ଆକର୍ଷଣ କଲେ । ମାତ୍ର ଇଂରେଜ ସରକାର ଦୁର୍ଭିକ୍ଷ ହୋଇଛି ବୋଲି ସ୍ୱୀକାର କଲେ ନାହିଁ, ଶେଷରେ କଥା ଗଲା ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାପର୍ଯ୍ୟନ୍ତ ।

ଗୋପବନ୍ଧୁଙ୍କ କରୁଣ ନିବେଦନକ୍ରମେ ଇଂରେଜ ସରକାର ଗ୍ରୁନିଂ ସାହେବଙ୍କୁ ଦୁର୍ଭିକ୍ଷ ଅଞ୍ଚଳ ପରିଦର୍ଶନ କରିବାକୁ ପଠାଇଲେ । ବଡ଼ଲୋକ—ସାହେବ, ପଲ୍ଲୀ ଅଞ୍ଚଳର କାଦୁଅ ରାସ୍ତାରେ ଅବା ଯାଆନ୍ତେ କପରି ? କିଛି ବାଟ ଯିବାପରେ ଫେରିଆସିଲେ । ଶେଷରେ ତାଙ୍କ ପରିଦର୍ଶନ ରିପୋର୍ଟରେ ଲେଖିଲେ—"ଓଡ଼ିଶାରେ ପ୍ରକୃତରେ କୌଣସି ଦୁର୍ଭିକ୍ଷ ପଡ଼ିନାହିଁ ।" ବାଉରାଣୀଙ୍କ ହାତରେ ପିତ୍ତଳ ଖଡ଼ୁ ଦେଖି ସେ କହିଥିଲେ—"ଓଡ଼ିଶାର ସ୍ତ୍ରୀଲୋକମାନେ ସୁନା ଖଡ଼ୁ ପିନ୍ଧିଛନ୍ତି ।" ଧାନ କ୍ଷେତରେ ବାଜୁଙ୍ଗା ବଣ ଦେଖି ସେ କହିଥିଲେ—"ଓଡ଼ିଶାରେ ଭଲ ଫସଲ ହୋଇଛି, ଦୁର୍ଭିକ୍ଷ ନାହିଁ । ଦୁର୍ଭିକ୍ଷ କଥା କେବଳ ମନଗଢ଼ା ପ୍ରଚାର ।"

ସତ୍ୟର ଏ ଅପପ୍ରଚାର, ଶାସନର ଏ ଘୋର କଳଙ୍କ, ନରନାରୀଙ୍କ ପ୍ରତି ଏପରି ନିଷ୍ଠୁରତା ସହିବାର ନୁହେଁ, ଗୋପବନ୍ଧୁଙ୍କ ପରି କୋମଳପ୍ରାଣ ଏ କଥା ସହନ୍ତା ବା କପରି ?

୧୯୨୦ ମସିହା ମାର୍ଚ୍ଚ ମାସରେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭା ବସିଲା । ଗୋପବନ୍ଧୁ ଓଡ଼ିଶାର ସଦସ୍ୟରୂପେ ଯୋଗ ଦେଇଥାନ୍ତି ।

ଓଡ଼ିଶାର ଦୁର୍ଭିକ୍ଷ ବିଷୟରେ ଗୋପବନ୍ଧୁ ଯାହା କହିଲେ, ସେଥିରେ ସମସ୍ତେ ବିଚଳିତ ହୋଇପଡ଼ିଲେ । ଦୁର୍ଭିକ୍ଷଗ୍ରସ୍ତ ଲୋକମାନଙ୍କର ଫଟୋ ଲାଟ୍ ସାହେବଙ୍କୁ ସମସ୍ତଙ୍କୁ ଦେଖାଇ ସେ କାନ୍ଦି କାନ୍ଦି ଯେପରି ନିବେଦନ କଲେ, ସେଥିରେ ସମସ୍ତେ ଅଭିଭୂତ ହୋଇପଡ଼ିଲେ ।

ଗୋପବନ୍ଧୁଙ୍କର ଏ ଉକ୍ତିରେ ଗ୍ରୁନିଂ ସାହେବ ବିରୁଦ୍ଧମତ ପ୍ରକାଶ କଲେ । କିନ୍ତୁ ସାହେବଙ୍କୁ ଗୋପବନ୍ଧୁ ଯାହା କହିଲେ, ସେଥିରେ ବିହାର-ଓଡ଼ିଶା ଲାଟଙ୍କ ହୃଦୟ ମଧ୍ୟ ବିଚଳିତ ହୋଇପଡ଼ିଲା ।

ଗୋପବନ୍ଧୁ ନିରାହ ଜନତାଙ୍କର ଦୁଃଖ ବର୍ଣ୍ଣନା କରିବାକୁ ଯାଇ ଅଶ୍ରୁପୂର୍ଣ୍ଣ ବଦନରେ କହିଥିଲେ—"ରାଜ୍ୟର ପାତକ ରାଜା ମୁଣ୍ଡରେ । ଏ ବିରାଟ ଦେଶରେ ଯଦି କୌଣସି ଲୋକ ନ ଖାଇ ମରେ, ତେବେ ତା'ର ଶେଷ ନିଶ୍ୱାସ ସରକାରଙ୍କ ଉପରେ ପଡ଼ିବ । ସରକାରଙ୍କର ଏ ଅବହେଳିତ ଜନସାଧାରଣଙ୍କ ପ୍ରତି ନିଶ୍ଚୟ କର୍ତ୍ତବ୍ୟ ଅଛି । ସରକାର କର୍ତ୍ତବ୍ୟ ସମ୍ପନ୍ନ କରନ୍ତୁ ।"—ଏହା କହିବା ସଙ୍ଗେ ସଙ୍ଗେ ତାଙ୍କର କଣ୍ଠ ଦୁଃଖରେ ରୁଦ୍ଧ ହୋଇଯାଇଥିଲା । ଆଖିରୁ ଝରଝର ଲୁହ ଧାର ବୋହିପଡ଼ିଥିଲା । ତାଙ୍କର ଏ ପ୍ରକାର କରୁଣ ନିବେଦନ, ନିର୍ଭୀକ ସମାଲୋଚନା ଲାଟ ସାହେବଙ୍କ ହୃଦୟକୁ ବିଚଳିତ କରି ଦେଇଥିଲା । ସେ ନିଜେ ଦୁର୍ଭିକ୍ଷ ଅଞ୍ଚଳ ପରିଦର୍ଶନରେ ଆସିଲେ । ହୋକଲା ଲୋକଙ୍କର ଦୁର୍ଦ୍ଦଶା ଦେଖି ଦୁଃଖ ପ୍ରକାଶ କଲେ ଏବଂ କହିଥିଲେ—"ଗୋପବନ୍ଧୁ, ସରକାରର ଯାହା କର୍ତ୍ତବ୍ୟ ତାହା ହୋଇ ପାରିନାହିଁ ।" ପରେ ପରେ ଦୁର୍ଭିକ୍ଷ ଅଞ୍ଚଳକୁ ସାହାଯ୍ୟ ଆସିଥିଲା ।

ଗୋପବନ୍ଧୁଙ୍କ ଜୀବନରେ ଅନେକ ଝଡ଼ଝଞ୍ଜା ଆସିଥିଲା । ସେ ନାନା ଘାତ ପ୍ରତିଘାତର ସମ୍ମୁଖୀନ ହୋଇଥିଲେ । ତଥାପି ପ୍ରମାଣ କରି ଯାଇଛନ୍ତି ଯେ—

"ପଚ୍ଛଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ ସେ କେବେହେଁ ପରାଣ ଆତଙ୍କେ ।"

ସେ ଥିଲେ କର୍ତ୍ତବ୍ୟନିଷ୍ଠ । ସେ କର୍ତ୍ତବ୍ୟପଥରେ ଅଗ୍ରସର ହୋଇ, ମାତା-ପିତା ତଥା ପତ୍ନୀ ପୁତ୍ରର ବିୟୋଗ ପର୍ଯ୍ୟନ୍ତ ସହ୍ୟ କରିଛନ୍ତି, ଦାରିଦ୍ର୍ୟର ନିର୍ମମ କଷାଘାତ ସହିଛନ୍ତି, ତଥାପି ସେ କର୍ମପଥରୁ ବିଚ୍ୟୁତ ହୋଇ ନାହାନ୍ତି ।

ଗୋପବନ୍ଧୁ ଥିଲେ ଜାତୀୟ କର୍ମୀ, ଜାତୀୟ ନେତା । ଜାତୀୟ ସଂଗ୍ରାମ କ୍ଷେତ୍ରରେ ତାଙ୍କର ତ୍ୟାଗ, ତାଙ୍କର କର୍ମ ଉଚ୍ଚକୋଟୀର । ମହାତ୍ମାଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଜନଜାଗରଣର ପୁରୋଧା ହୋଇଥିଲେ । ବିଦେଶୀ ଶାସନ ବିରୁଦ୍ଧରେ ପ୍ରଜ୍ଜ୍ୱଳିତ କରି ଦେଇଥିଲେ ଅହିଂସା-ସଂଗ୍ରାମର ଜ୍ୱଳନ୍ତ ଶିଖାକୁ । କର୍ମ ଥିଲା ତାଙ୍କର ପରମ ଆଦର୍ଶ । 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ'—ଥିଲା ତାଙ୍କର ଚରମ ଲକ୍ଷ୍ୟ ।

ଗୋପବନ୍ଧୁ ଥିଲେ ନିଷ୍ଠାପର କର୍ମୀ, ନିଃସ୍ୱାର୍ଥପର ସମାଜସେବୀ । ସ୍ୱାର୍ଥକୁ ଆଖିଆଗରେ ରଖି ଦେଶସେବା କରାଯାଇ ପାରେନା । ମଧୁବାବୁଙ୍କ ବାଣୀ—

"ଜାତିର ଉନ୍ନତି ହେବ କି ରେ ଭାଇ
ସ୍ୱାର୍ଥକୁ ଜଗତ ମଣି ?
ଗୋଦର ଗୋଡ଼ରେ ମାଉଁସ ଲାଗିଲେ
ଦେହର କି ଶୁଭ ଗଣି ?"

—ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା ।

କାଳର କରାଳ ସ୍ରୋତରେ ତାଙ୍କର ପ୍ରଶାନ୍ତ ଶରୀର ଲୁଚିଗଲା । ସତ୍ୟବାଦୀର କୌଣସି ଏକ ନିଭୃତ ଛୁଆଁଅନା ବକୁଳ-କୁଞ୍ଜରେ; ମାତ୍ର ଓଡ଼ିଶାବାସୀ ଆଜି ମଧ୍ୟ ବନ୍ୟା, ଦୁର୍ଭିକ୍ଷ, ମହାମାରୀ ପ୍ରଭୃତି ସଙ୍କଟ ସମୟରେ ହୃଦୟର ଆବେଗ ସହିତ ସେହି ନର-ଦେବତାଙ୍କୁ ଅଶ୍ରୁ-ଅଞ୍ଜଳି ଅର୍ପଣ କରୁଛନ୍ତି । ଧନ୍ୟ ହେ, ଯୋଗଜନ୍ମା ଧନ୍ୟ ତୁମର କର୍ମସାଧନା ।

# କର୍ମବୀର ଗୋପବନ୍ଧୁ

ଇଞ୍ଜିନିୟର ଶ୍ରୀ କିଶୋରଚନ୍ଦ୍ର ମିଶ୍ର ବି. ଏସ-ସି.

[ ଲେଖକଙ୍କର ସାହିତ୍ୟ ଉଦ୍ୟାନରେ ଏପର୍ଯ୍ୟନ୍ତ ପ୍ରସ୍ଫୁଟିତ ପ୍ରସୂନ ପରିଲକ୍ଷିତ ହୋଇ ନ ଥିଲେ ମଧ୍ୟ ଯନ୍ତ୍ରୀ-ଜୀବନରେ ସାହିତ୍ୟ ପ୍ରତି ତାଙ୍କର ଯେଉଁ ପ୍ରଗାଢ଼ ମମତା ରହିଛି, ଏଥିରୁ ଆଶା କରାଯାଏ, ଭବିଷ୍ୟତରେ ତାଙ୍କ ସାହିତ୍ୟ ଉଦ୍ୟାନ ପୁଷ୍ପମଣ୍ଡିତ ହେବ । ଶ୍ରୀ ମିଶ୍ର ଜଣେ କର୍ମଠ କର୍ମୀ । ଗୋପବନ୍ଧୁଙ୍କ କର୍ମାଦର୍ଶରେ ଉଦ୍‌ବୁଦ୍ଧ ହୋଇ ତା'ର ବିଷୟର ଆଲୋଚନା କରିବା ତାଙ୍କ ପକ୍ଷେ ଯଥାର୍ଥରେ ସ୍ପୃହଣୀୟ ହୋଇଛି—ସ ]

ଯେଉଁ ମହାପୁରୁଷ ଏହି ଚିର ଅବହେଳିତ ବିଚ୍ଛିନ୍ନ ଓଡ଼ିଆ ଜାତିର ପ୍ରାଣପ୍ରତିଷ୍ଠା ପାଇଁ ନିଜର ମହାନ୍ ଜୀବନକୁ ଅକୁଣ୍ଠ କର୍ମମୟ କରି ତୋଳିଥିଲେ ଏବଂ ଯେଉଁ ତ୍ୟାଗବୀର ମନୀଷୀଙ୍କର କର୍ମପ୍ରେରଣା ସେକାଳର ପଞ୍ଚସଖାଙ୍କୁ ଜାତିର ଇତିହାସରେ ମହାନ୍ କରି ତୋଳିଥିଲା ଓ ଏ ଜାତିକୁ କର୍ମପ୍ରବଣତାରେ ଉଦ୍‌ବୁଦ୍ଧ କରିଥିଲା, ସେଇ ମହାପୁରୁଷ କର୍ମଯୋଗୀ ଉତ୍କଳମଣି ୧୮୭୭ ଅକ୍ଟୋବର ୯ ତାରିଖରେ ପୁରୀ ଜିଲାର ସୁଆଣ୍ଡୋ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଆଧୁନିକ ସଭ୍ୟତା ଆଲୋକର ବହୁ ଦୂରରେ ଅବସ୍ଥିତ ସେହି ପଲ୍ଲୀ ପରିବେଶରେ ତାଙ୍କର ଜୀବନ ବିକାଶ ଲାଭ କରିଥିଲା । ଯେତେବେଳେ ଯୌବନରେ ନାନାଦି ଦୁଃଖ କଷ୍ଟ ଭିତରେ ତାଙ୍କର ସର୍ବଶେଷ ଶିକ୍ଷା ଶେଷ କରି ଆଇନଜ୍ଞ ହୋଇ ଗୋପବନ୍ଧୁ ଆଇନ୍ ବ୍ୟବସାୟ କରିବାକୁ ଆସିଲେ, ତାଙ୍କ

ଆଖିରେ ଆଉ ଧନର ମୋହ, ସଂସାରର ଆକର୍ଷଣ ବା ସ୍ୱାର୍ଥପର ଜୀବନଯାପନର ପନ୍ଥା ଦେଖାଗଲା ନାହିଁ । ସେ କେବଳ ଦେଖିଲେ; ତାଙ୍କର ଚତୁଃପାର୍ଶ୍ୱରେ ଦରିଦ୍ର ଜନତା, ବୁଭୁକ୍ଷିତ ଜନତା ଆଉ ବିଖଣ୍ଡିତ ପରାଧୀନ ଜନ୍ମଭୂମି ଉତ୍କଳ । ଏହି ନିରୀହ ଦାରିଦ୍ର୍ୟ ଜର୍ଜରିତ ଜନତା ତା'ର ନିର୍ଯାତନାର କରୁଣ କାହାଣୀ ପ୍ରକାଶ କରିବାରେ ଅକ୍ଷମ, ଅନ୍ୟାୟ ଅତ୍ୟାଚାରର ମଥାପାତି ସହିନେବାକୁ ବାଧ୍ୟ, ଆଉ ଅଶିକ୍ଷା ବା କୁଶିକ୍ଷାର କବଳରେ ଆବଦ୍ଧ । ଏଣୁ ଯୌବନର ପ୍ରଥମ ପର୍ଯ୍ୟାୟରେ ଶରୀରର ସମସ୍ତ ଶକ୍ତି, ମନର ସମସ୍ତ ବଳ ଆଉ ହୃଦୟର ସମସ୍ତ ଉଚ୍ଛ୍ୱାସ ନେଇ ଏହି କର୍ମବୀର ଗୋପବନ୍ଧୁ ଝାସ ଦେଲେ କର୍ମର ଉଦ୍‌ବେଳିତ ସାଗର ବକ୍ଷରେ । ସେ ପର୍ଯ୍ୟନ୍ତ ତାଙ୍କୁ ଅସ୍ଥିର କରି ରଖିଥିବାରୁ ରୁଦ୍ଧୋଚ୍ଛ୍ୱାସ ମୁକ୍ତିଲାଭ କଲା—କର୍ମମୟ ଜୀବନର ଉନ୍ମୁକ୍ତ ପ୍ରାଙ୍ଗଣରେ । ଜୀବନର ସମସ୍ତ ସମ୍ଭୋଗ ଲାଳସାକୁ ପରିତ୍ୟାଗ କରି ସେ ଅଭିଶପ୍ତ ଜନ୍ମଭୂମି ଉତ୍କଳର ସ୍ନେହମୟ କୋଳରେ ଅବତୀର୍ଣ୍ଣ ହେଲେ ଏ ଜାତିର ଦୁଃଖ ଦୁର୍ଦ୍ଦଶାକୁ ଆପ୍ରାଣ ପ୍ରଚେଷ୍ଟା ଆଉ ସାଧନା ବଳରେ ଦୂରୀଭୂତ କରିବା ପାଇଁ ।

କର୍ମବୀର ଉତ୍କଳମଣିଙ୍କର ସମଗ୍ର ଜୀବନର କର୍ମକୁ ନିଖୁଣ ପର୍ଯ୍ୟାଲୋଚନା କରିବାର ଶକ୍ତି ଓ ସାହସ କେବଳ ତାଙ୍କର ସହକର୍ମୀ-ମାନଙ୍କଠାରେ ମିଳିପାରେ । କାରଣ ତାଙ୍କର କର୍ମର ଧାରା, ଭାବନା ଆଉ ମହନୀୟତା କେବଳ ସ୍ୱଦେଶବତ୍ସଳତାରେ ପରିପୂର୍ଣ୍ଣ । ସେଥିରେ ଭରି ରହିଛି ତାଙ୍କର ପ୍ରାଣର ମମତା ଓ ତାଙ୍କର ନିଜତ୍ୱ । ସେ ସମସ୍ତ ତାଙ୍କର ନିଜସ୍ୱ । ଆଜି ତାଙ୍କ ତିରୋଧାନର ଅଠତିରିଶ ବର୍ଷ ପରେ ଆମେ ଖାଲି ବିଚାର କରି ବସୁଛୁ; ସେ ଏଇଟା କରିଥିଲେ ବା ସେଇଟା କରିଥିଲେ । ଆମର ସୀମିତ ଚିନ୍ତାଧାରାର ବହୁ ଊର୍ଦ୍ଧ୍ୱରେ ଥିଲା, ତାଙ୍କର କର୍ମ ପର୍ଯ୍ୟାୟ । କେବଳ କେତୋଟି କାମର ସୀମା ଭିତରେ ତାଙ୍କ କର୍ମର ମହନୀୟତା ବିଚାର କରାଯାଇ ପାରିବ ନାହିଁ ।

"ମାନବ ସାଧାରଣର ସମ୍ପର୍କରେ ଆସି ସେମାନଙ୍କର ଅଭାବ, ଆକାଂକ୍ଷା, ରୋଗ, ଦୁଃଖ, ଭାବ, ବିକାର ପ୍ରଭୃତି ଅନୁଭବରେ ନ

ଆଣିଲେ ଜୀବନର ସତ୍ୟ ଶିଖିବା ଅସମ୍ଭବ ।" ଉତ୍କଳମଣିଙ୍କର ଏହି ବାଣୀ ତାଙ୍କ ହୃଦୟର ବାଣୀ, ଜନ୍ମଭୂମି ଉତ୍କଳର ପ୍ରତି ଜନପଦ, ପ୍ରତ୍ୟେକ ସନ୍ତାନର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିବାପାଇଁ ତାଙ୍କୁ ଅବିରତ ପର୍ଯ୍ୟଟନ କରିବାକୁ ପଡ଼ୁଥିଲା ପ୍ରଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ । କ୍ଷୁଧା, ତୃଷା, କ୍ଲାନ୍ତି, ଗ୍ଲାନି ସବୁକିଛି ପଛରେ ପକାଇ ସେ ଚାଲିଥିଲେ ଏ ଭୂମିର ପାଣି, ପବନ, ସୁଖ, ଦୁଃଖ, ଭଲ, ମନ୍ଦ ସବୁଥିରେ ମିଶିଯିବା ପାଇଁ । କର୍ମର ପ୍ରବାହରେ ସେ କର୍ମ ହିସବ ମିଶିଯିବାକୁ ଚାହିଁଥିଲେ । ସେ ନିଜର ଅକ୍ଲାନ୍ତ କର୍ମରେ ନିଜେ ବି ସନ୍ତୁଷ୍ଟ ରହିପାରୁ ନ ଥିଲେ । ସେ ଭାବୁଥିଲେ, ସତେ ଯେପରି ଆହୁରି ଅନେକ ବାକି ରହିଯାଉଛି । ଏ କାମର ଅନ୍ତ ନାହିଁ । ଏ ଭାବନାରେ ବିଭୋର ହୋଇ ହୁଏତ ଭାବପ୍ରବଣ କବି ଗୋପବନ୍ଧୁ ଗାଇ ଉଠିଥିଲେ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ସ୍ୱରାଜ୍ୟର ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

ଏହା ଥିଲା ତାଙ୍କର ପ୍ରାଣର କଥା । ନିଷ୍କପଟ ହୃଦୟର ସ୍ୱଚ୍ଛ ପ୍ରକାଶ । ଯାହା ଫଳରେ ଅକ୍ଲାନ୍ତ କର୍ମର କଠିନତା ଭିତରେ ସେ ନିଜକୁ ଓତଃପ୍ରୋତ ଭାବରେ ମିଶାଇ ଦେଇ ଦେଶସେବାର ପରାକାଷ୍ଠା ଦେଖାଇ ଦେଲେ ତାଙ୍କ ଜୀବନର ଶେଷ ମୂହୂର୍ତ୍ତ ପର୍ଯ୍ୟନ୍ତ । ଆଉ ତାଙ୍କର ସମସ୍ତ କର୍ମ ଥିଲା ତ୍ୟାଗପୂତ ।

୧୯୦୭ ମସିହାରେ ଯେତେବେଳେ ନୀଳଗିରିରୁ ଫେରି କଟକରେ ଓକିଲାତି କରିବାପାଇଁ ଗୋପବନ୍ଧୁ ପହଞ୍ଚିଲେ, ସେତେବେଳେ ଶୁଣିଲେ, ଇନ୍ଦ୍ରପୁରଠାରେ ଘାଇ ଭାଙ୍ଗି ବନ୍ୟାର ତାଣ୍ଡବଲୀଳା ଚାଲିଛି । ଏ ଆହ୍ୱାନ ତାଙ୍କୁ ବିଚଳିତ କରିଦେଲା । ସେ ହଠାତ୍ ତାଙ୍କର ସହକର୍ମୀମାନଙ୍କୁ ଧରି ବାହାରିପଡ଼ିଲେ ବନ୍ୟାପ୍ରପୀଡ଼ିତ କେତୋଟି ହତଭାଗ୍ୟ ଓଡ଼ିଆ ପ୍ରାଣକୁ ବଞ୍ଚାଇବା ପାଇଁ । ଜୀବନର ଲୋଭକୁ ଜଳାଞ୍ଜଳି ଦେଇ,

ବନ୍ୟାପ୍ଲାବିତ ଅଞ୍ଚଳରେ ନୌକା ସାହାଯ୍ୟରେ ଗାଁକୁ ଗାଁ ବୁଲି ସାହାଯ୍ୟ ଦାନ କରିବା ସମୟରେ, ନଈରେ ଭାସି ଯାଉଥିବା ମଣିଷର କଷ୍ଟ ସଞ୍ଚିତ ସମ୍ପତ୍ତି, ମଣିଷର ଶବ ଦେଖି ତାଙ୍କ ଆଖିରୁ ବହୁଥାଏ ଅବାରିତ ଅଶ୍ରୁଧାର । ଜଣେ ସହକର୍ମୀ ନୌକାରେ ପାନୀୟ ଜଳ ଶେଷ ହୋଇଯାଇଥିବା ଜଣାଇବାରେ ସେ ଉତ୍ତର ଦେଲେ —"ଏ ତ ପ୍ରକୃତି ମାତା । ଯାହା ମିଳିଲା ତାକୁଇ ପିଇ କର୍ତ୍ତବ୍ୟ କରିବାକୁ ହେବ । ତେଣିକି ଭଗବାନ ଯାହା କରିବେ ।" ଏହା କହି ପାଣିରେ ଭାସୁଥିବା ଶବକୁ ଆଡ଼େଇ ଆଞ୍ଜୁଳା ଆଞ୍ଜୁଳା କରି ବଢ଼ି ପାଣି ପିଇ ଯେଉଁ ମହାନ୍ ଆଧ୍ୟାତ୍ମିକ କର୍ତ୍ତବ୍ୟବୋଧ, ସମସ୍ତ ବାଧାବିଘ୍ନକୁ ଏଡ଼ି କର୍ମ କରି ଆଗେଇ ଯିବାର ଆଦର୍ଶ ଦେଖାଇଦେଲେ, ତାହା ଚିରକାଳ ଉତ୍କଳର ଯୁବ-ସମାଜକୁ ଉଦ୍‌ବୁଦ୍ଧ କରିବ, ଏଥିରେ ସନ୍ଦେହ ନାହିଁ । ତାଙ୍କର ସେଇ କେତୋଟି ଧାଡ଼ି କର୍ତ୍ତବ୍ୟବୋଧର ଯେଉଁ ସଙ୍ଗୀତ ସୃଷ୍ଟି କରିଛି, ତାହା ଚିରକାଳ ପର୍ଯ୍ୟନ୍ତ ଯେ କୌଣସି କର୍ମୀର ହୃଦୟରେ ଝଙ୍କାର ଭିତରେ ପ୍ରତିଧ୍ୱନି ସୃଷ୍ଟି କରୁଥିବ । ଯେ କର୍ମବୀର, ତାକୁ କେହି ତା'ର କର୍ମପଥରେ ଅଟକାଇ ପାରିବେ ନାହିଁ, ଏହା ସେ ତାଙ୍କ ଜୀବନର ଅନୁଭୂତିରେ ପ୍ରମାଣ କରିଥିଲେ ।

"କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ"—ଏହି ଭଗବତ୍ ବାଣୀ ତାଙ୍କର ସମସ୍ତ କର୍ମ ପ୍ରବାହକୁ ନିୟନ୍ତ୍ରିତ କରିଥିଲା । ସେ ଆଜିକାଲିକାର ନେତାଙ୍କ ସଦୃଶ ଲୋକଦେଖାଣିଆ କର୍ମ କରି ବାହାବା ନେବାର ଛଳନାରୁ ବହୁଦୂରରେ ଥିଲେ । ଏପରିକି ତାଙ୍କ ନେତୃତ୍ୱରେ ସମସ୍ତେ ପରିଚାଳିତ ହେଲେ ହେଁ ସେ କହୁଥିଲେ—

"କର୍ମଭୂମେ କିଏ ନେତା ଅବା ମିତ
ସରବେ ନମିତ୍ତ ବିଧି ନିୟୋଜିତ ।"

ତାଙ୍କର ମୂଳ ଲକ୍ଷ୍ୟ ଥିଲା କର୍ମୀ ଭାବରେ ଦେଶର ସେବା କରିଯିବା । ସେଥିପାଇଁ ଯେତେବେଳେ "ଗୋପ ଦେଶଟାକୁ ଠେକା ଧରିବ" ବା "ଏଇଟା ବରିଡ଼ଗଳି" ଇତ୍ୟାଦି ବାକ୍ୟବାଣ ତାଙ୍କ ପ୍ରତି ଆକ୍ଷେପ କରାଯାଉଥିଲା, ସେଥିରେ ସେ ବିଚଳିତ ହୋଇ ପଡ଼ୁ ନଥିଲେ ।

ପୁନଶ୍ଚ ଯେତେବେଳେ କେହି କେହି ତାଙ୍କର ପ୍ରଶଂସା କରି ତାଙ୍କ ଅନୁପସ୍ଥିତିରେ ନେତାର ଅଭାବ ପଡ଼ିବ, କାମ ଅଟକିଯିବ ବୋଲି କହୁଥିଲେ, ସେତେବେଳେ ହତୋତ୍ସାହ ସହକର୍ମୀମାନଙ୍କୁ ତଥା ଦେଶବାସୀଙ୍କୁ ଉତ୍ସାହିତ କରି ସେ କହୁଥିଲେ—

"କରି କି ଭାବନା କାଣ୍ଡାରି ବିହୁନେ,
ଚଳିବ ସ୍ୱରାଜ୍ୟ ବୋଇତ କେସନେ !
ନ ଅଟକେ କର୍ମ ନେତାର ଅଭାବେ,
ଧର୍ମ ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ,
ଉତ୍କଳର ନେତା ନିଜେ ନାରାୟଣ ।"

ଧର୍ମପ୍ରାଣ ଗୋପବନ୍ଧୁଙ୍କ ନିକଟରେ କାଞ୍ଚି ଅଭିଯାନରେ ଜଗନ୍ନାଥ ବଳଭଦ୍ରଙ୍କ ନେତୃତ୍ୱ ଏକ ସାମାନ୍ୟ ଆଖ୍ୟାୟିକା ନୁହେଁ, ବରଂ ଥିଲା ଏକ ଐତିହାସିକ ସତ୍ୟ । ତେଣୁ ସମସ୍ତ କର୍ମକୁ ଧର୍ମ ବୋଲି ଗ୍ରହଣ କରିନେଇ ଐଶ୍ୱରିକ ଭାବାବେଶରେ ଉଦ୍‌ବୁଦ୍ଧ ହୋଇ କର୍ମ କଲେ ଐତିହାସିକ କାଞ୍ଚି ବିଜୟର ସଫଳତା ଯେ ଅନିବାର୍ଯ୍ୟ, ଏହା ହିଁ ଥିଲା ତାଙ୍କ ପ୍ରାଣର ଭାବନା ଓ ଜୀବନର ମହାନ୍ ଦର୍ଶନ ।

ଦୁର୍ଭିକ୍ଷପ୍ରପୀଡ଼ିତ, ବନ୍ୟା-ବିକ୍ଷୁବ୍ଧ ଜନତାର ସେବା କରୁ କରୁ ଗୋପବନ୍ଧୁ ପ୍ରବେଶ କଲେ ଅତ୍ୟୁରି ବୃହତ୍ତର କର୍ମପର୍ଯ୍ୟାୟ—ଅସହଯୋଗ ଆନ୍ଦୋଳନରେ । ସେ ଉପଲବ୍ଧି କଲେ ପରାଧୀନ ଜନତାର ଦୁଃଖ କେବଳ ସ୍ୱାଧୀନତା ପ୍ରାପ୍ତିରେ ହିଁ ଘୁଞ୍ଚିବ । ଇଂରେଜ ସରକାରର ହାତ-ଟେକା ଦାନରେ ଏ ଜାତିର ଦୁର୍ଦ୍ଦଶା ଦୂର ହେବ ନାହିଁ । ଯେଉଁ ସରକାରର ନିଷ୍ପେଷଣରେ ଏ ଜାତି ଦୁଃଖ ଦାରିଦ୍ର୍ୟରେ ବୁଡ଼ିରହିଛି, ସେହି ସରକାରକୁ ବିତାଡ଼ିତ କରିବାକୁ ହେବ । ତେଣୁ ସେ ଝାସ ଦେଲେ ଐତିହାସିକ ଅସହଯୋଗ ଆନ୍ଦୋଳନରେ—୧୯୨୧ରେ । ଉତ୍କଳର ଦେଢ଼କୋଟି ଜନତାକୁ ସେ ଦେଲେ ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ । ତାଙ୍କ କର୍ମମୟ ଜୀବନରେ ଆସିଲା ଆଉ ଏକ ମହାନ୍ ଅଧ୍ୟାୟ । ସେ

ଜାତିର ହୃଦୟକୁ ଚହଲି ଥିଲେ । ତେଣୁ ତାଙ୍କର ଆହ୍ୱାନ, ତାଙ୍କର ସମୀକ୍ଷା ଓ ଏହି ମହାନ୍ ଆନ୍ଦୋଳନର ଉଦ୍ଦେଶ୍ୟର ଅବତାରଣା ଏ ଜାତିର ହୃଦୟକୁ ସ୍ପର୍ଶ କଲା । ସେ ଇଂରେଜ ସରକାରର କୋପଦୃଷ୍ଟିର ଶୀକାର ହେଲେ । ସେ ହେଲେ ବନ୍ଦୀ ।

କର୍ମବୀର ଗୋପବନ୍ଧୁଙ୍କର ସଜୀବ କର୍ମପ୍ରବାହ ଏହି ବନ୍ଦୀ ଜୀବନରେ ଅନ୍ୟ ଏକ ନୂତନରୂପ ଧାରଣ କଲା । ସେ ଲେଖି ବସିଲେ "କାରା କବିତା"। ଏଥିରେ ତାଙ୍କର ନାୟକ ସେ ନିଜେ । ଆଉ ନାୟକର କର୍ମ ହେଲା ବନ୍ଦୀଶାଳାର ନିଭୃତ ପ୍ରକୋଷ୍ଠରୁ ବାହାରେ ପ୍ରତୀକ୍ଷମାଣ ତା'ର ପ୍ରିୟ ଜନତାକୁ ଉଦ୍‌ବୋଧନ ଦେବା, ଆଉ ସାନ୍ତ୍ୱନା ଦେବା । ପ୍ରିୟ ଦେଶବାସୀଙ୍କଠାରୁ ବିଚ୍ଛେଦଜନିତ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥିଲେ ହେଁ, ସେ ତାଙ୍କର କର୍ତ୍ତବ୍ୟ ଭୁଲିପାରି ନ ଥିଲେ । ତାଙ୍କର କବିତା ବାର୍ତ୍ତାବହ ରୂପେ କାର୍ଯ୍ୟ କରୁଥିଲା । ବନ୍ଦୀ ଜୀବନରେ "ସ୍ୱଦେଶ ଚିନ୍ତା" କରୁ କରୁ ଅଥବା କେତେବେଳେ "ବନ୍ଦୀର ଆତ୍ମକଥା" କହି କହି ସେ ଦେଶବାସୀଙ୍କ ପାଇଁ ଉତ୍ସାହ ଓ ଉଦ୍ଦୀପନାର ବାର୍ତ୍ତା ସୁଦୂର ହଜାରିବାଗ ଜେଲର ନିଭୃତ ପ୍ରକୋଷ୍ଠରୁ ପ୍ରେରଣ କରିଛନ୍ତି ।

ଗୋପବନ୍ଧୁଙ୍କର ବହୁମୁଖୀ କର୍ମଯୋଜନା ଭିତରେ ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠା ଅନ୍ୟତମ । ଅନେକ ମନୀଷୀଙ୍କ ମତରେ ଏ ଥିଲା "ମଣିଷ ତିଆରି କାରଖାନା" । ପାଶ୍ଚାତ୍ୟ ସଭ୍ୟତାର ଅନୁଗାମୀ ଏ ଦେଶର ଯୁବସଂପ୍ରଦାୟକୁ ସତ୍ୟବାଦୀର ଛବିଳ ବକୁଳ ବନରେ ପ୍ରତିଷ୍ଠିତ ଏହି ଜାତୀୟ ବିଦ୍ୟାଳୟର ପ୍ରାଙ୍ଗଣରୁ ସେ ଦେଶ ପାଇଁ କର୍ମର ଆହ୍ୱାନ ଦେଇଥିଲେ । ଏହି ଆହ୍ୱାନରେ ଯେଉଁ କେତେଜଣ ଏହି ପବିତ୍ର ଶିକ୍ଷାୟତନରେ ଉପସ୍ଥିତ ହେଲେ, ସେମାନଙ୍କୁ ଗୋପବନ୍ଧୁ ଏ ଜାତିର ସମ୍ମୁଖରେ ଏକ ଏକ ଅଗ୍ନିର ସ୍ଫୁଲିଙ୍ଗ ଉପସ୍ଥାପିତ କରିଥିଲେ । ପ୍ରତାପୀ ଇଂରେଜ ଶାସକର ଚକ୍ରାନ୍ତକୁ ପୋଡ଼ି ଜାଳି ଦେବାପାଇଁ ସେ ସୃଷ୍ଟି କରିଥିଲେ ଏହି ଅଗ୍ନିର ସମାବେଶ । ଆପାତ ଚିତ୍ତାକର୍ଷକ ଦେଶବ୍ୟାପୀ ପାଶ୍ଚାତ୍ୟ ସଭ୍ୟତାର କେନ୍ଦ୍ର ବିନ୍ଦୁରେ ଏହି ଜାତୀୟ ବିଦ୍ୟାଳୟର ସୃଜନା ନିର୍ଭିକ କର୍ମୀ ଉତ୍କଳମଣି ଗୋପବନ୍ଧୁଙ୍କର ଏକ ଐତିହାସିକ ଅବଦାନ ।

ଗୋପବନ୍ଧୁଙ୍କର 'ସମାଜ'ର ଭାଷା ଓଡ଼ିଆ ଜାତିର ଭାଷା, ତାଙ୍କ 'ସମାଜ'ର ଲକ୍ଷ୍ୟ, ଓଡ଼ିଆ ଜାତିର ଲକ୍ଷ୍ୟ । ତାଙ୍କର କର୍ମମୟ ଜୀବନରେ 'ସମାଜ'ର ପ୍ରତିଷ୍ଠା ଏ ଜାତିକୁ ନିଜ ଦୁର୍ଦ୍ଦଶାର କରୁଣ କାହାଣୀ ପ୍ରକାଶ କରିବାରେ ଶକ୍ତି ଦେଇଥିଲା । ତାଙ୍କର ସତ୍ୟବାଦୀ ବନବିଦ୍ୟାଳୟ ଏ ଜାତିକୁ ଆତ୍ମଚେତନାର ମହାମନ୍ତ୍ରରେ ଦୀକ୍ଷିତ କରିଥିଲା, ଆଉ ତାଙ୍କର କର୍ମମୟ ଜୀବନ ଏ ଜାତିର ଇତିହାସକୁ ଗୌରବରଞ୍ଜିତ କରିଗଲା । ଏହି ନିଷ୍କପଟ, ସରଳ, ଦେବପ୍ରତିମ ମହାପୁରୁଷ ଗୋପବନ୍ଧୁ ତାଙ୍କ ସ୍ୱଳ୍ପ ଜୀବନ କାଳର ସମଗ୍ର ସମୟ ମହାନ୍ କର୍ମଯୋଗରେ ନିବିଷ୍ଟ ରହି ଏହି ମୁମୂର୍ଷୁ ଜାତିର ପ୍ରାଣ ପ୍ରତିଷ୍ଠା ପାଇଁ ଯେଉଁ ବିରାଟ ଆତ୍ମୋତ୍ସର୍ଗ କରିଗଲେ, ତାହା ଚିରକାଳ ପାଇଁ ଏ ଜାତିର ହୃଦୟରେ ସଞ୍ଜୀବନୀ ମନ୍ତ୍ରର ପ୍ରତିଧ୍ୱନି ସୃଷ୍ଟି କରୁଥିବ ।

ଅଦ୍ୟାବଧି ଗୋପବନ୍ଧୁଙ୍କର ବହୁ ଆଶା ଓ ଆକାଂକ୍ଷା ଅପୂରଣ ରହିଯାଇଛି । ଆଜିର ଦୟନୀୟ ପରିସ୍ଥିତିରେ ମଧ୍ୟ ସମାଜରେ ଜଣେ ସୁଦ୍ଧା ନିଃସ୍ୱାର୍ଥପର ଜନସେବକ ଦେଖିବାକୁ ମିଳୁନାହିଁ । ସପ୍ରତି ବନ୍ୟା, ଦୁର୍ଭିକ୍ଷ ଓ ଦୁର୍ବିପାକରେ ଏ ଦେଶର ଜନସାଧାରଣ ଯେଉଁଳି ବିଚଳିତ ହୋଇ ପଡ଼ିଛନ୍ତି, ଏ ପରିସ୍ଥିତିରେ ଯେମାନେ ଉତ୍କଳମଣିଙ୍କର ଅମର ଆଦର୍ଶରେ ଅନୁପ୍ରାଣିତ ହୋଇ ଏ ଜାତିର ଇତିହାସକୁ ସମୃଦ୍ଧ କରି ତୋଳିବା ଉଚିତ ଏବଂ ସେହି ମହାପୁରୁଷଙ୍କର ମହାମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ଉନ୍ନତିର ଅନନ୍ତପଥରେ ଅଗ୍ରସର ହେବା ପାଇଁ ଆପ୍ରାଣ ଉଦ୍ୟମ କରିବା ବିଧେୟ ।



# ତ୍ୟାଗବୀର ଗୋପବନ୍ଧୁ

ଶ୍ରୀ ଶରତଚନ୍ଦ୍ର ଦାଶ

[ କଟକ ଜିଲ୍ଲାର ବାରବାଟୀ ନିକଟସ୍ଥ ଝାଟିଆ ଶାସନର କିଶୋର ଲେଖକ କୁମାର ଶରତଚନ୍ଦ୍ର ସାହିତ୍ୟିକ ମହଲରେ ସୁପରିଚିତ ନ ହେଲେ ମଧ୍ୟ ମଧୁପୁର ଉଚ୍ଚବିଦ୍ୟାଳୟର ଛାତ୍ର ଥିବାବେଳୁ ସୁ-ସାହିତ୍ୟ ସୃଷ୍ଟି ଦିଗରେ ସେ ଯେଭଳି ମନୋନିବେଶ କରିଛନ୍ତି, ସେଥିରୁ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତର ଭୂୟିଷ୍ଠ ପ୍ରମାଣ ମିଳେ ଏବଂ ଭବିଷ୍ୟତରେ ସେ ବହୁ ସାହିତ୍ୟିକ କୃତିର ଅଧିକାରୀ ହେବେ ବୋଲି ଆଶା କରାଯାଏ । ଆଲୋଚ୍ୟ ପ୍ରବନ୍ଧରେ ସେ କର୍ମବୀର ଗୋପବନ୍ଧୁଙ୍କର ତ୍ୟାଗମୟ ଜୀବନର ସାର୍ଥକତା ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି ।—ସଂ ]

ମନୁଷ୍ୟର ତ୍ୟାଗବଳରେ ତାହାର ଜୀବନ ପରିପୁଷ୍ଟ ହୋଇଥାଏ । କୌଣସି ଦେଶ କିମ୍ବା ଜାତିର ଇତିହାସ ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ ଏହି ଉକ୍ତିର ଯଥାର୍ଥତା ପ୍ରତିପାଦିତ ହୁଏ । ଯେଉଁ ଦେଶ ଶକ୍ତିମାନ, ସେ ଦେଶ ତ୍ୟାଗଦୀପ୍ତିରେ ସମୁଜ୍ଜ୍ୱଳ । ତ୍ୟାଗ ସମସ୍ତଙ୍କଠାରେ ପରିଲକ୍ଷିତ ହୁଏ ନାହିଁ । ଅନେକ ସମୟରେ ମାନବ ଭୋଗ ଆଡ଼କୁ ଆକୃଷ୍ଟ ହେବା ସଙ୍ଗେ ସଙ୍ଗେ ତ୍ୟାଗକୁ ଏକାବେଳକେ ମନରୁ ପାଶୋରି ଦିଏ । ଭୋଗର ବଳ ଅସୀମ, ତାକୁ ଦମନ କରିବାକୁ ହେଲେ ଅଦମ୍ୟ ସାହସ ଦରକାର । ଯେଉଁ ବ୍ୟକ୍ତି ସେ ପ୍ରକାର ଭୋଗ ବିଳାସକୁ ଦମନ କରିପାରେ, ସେ ପ୍ରକୃତ ବୀର, ପୁରୁଷଶ୍ରେଷ୍ଠ । ପୂର୍ବେ ଯେଉଁ ମହାପୁରୁଷମାନେ ଉଚ୍ଚଆସନ ଲାଭ କରିଛନ୍ତି, ତାହା କେବଳ ତ୍ୟାଗ ବଳରେ କରିପାରିଛନ୍ତି । ଆମର

ମାତୃଭୂମି ତାଙ୍କର ତ୍ୟାଗ ଭୁଲିପାରେ ନାହିଁ । ତ୍ୟାଗୀମାନେ ଦେଶର ତଥା ଜାତିର ମେରୁଦଣ୍ଡ । ଦେଶରେ ତ୍ୟାଗୀ ପୁରୁଷଙ୍କ ପରିମାଣ ମୁଷ୍ଟିମେୟ ହେଲେ ମଧ୍ୟ ସେମାନେ ହିଁ ଦେଶର ଗୌରବ, ସମାଜର ହିତସାଧକ । ତ୍ୟାଗୀ ମହାପୁରୁଷମାନଙ୍କ ଆତ୍ମଚରିତ ସ୍ୱର୍ଣ୍ଣାକ୍ଷରରେ ଇତିହାସରେ ଦେଖିବାକୁ ମିଳେ । ସେମାନେ ସ୍ୱର୍ଗତ ହେଲେ ମଧ୍ୟ ସେମାନଙ୍କର କର୍ମ ତାଙ୍କୁ ଚିରଦିନ ପାଇଁ ଅମର ରଖିଥାଏ । ଇଂରାଜୀରେ ଗୋଟିଏ ପ୍ରବଚନ ଅଛି "Nothing is permanent except virtue" । ଏହାହିଁ ପ୍ରକୃତ ସତ୍ୟ ।

ମନୁଷ୍ୟ ମରଣଶୀଳ ହେଲେ ମଧ୍ୟ କର୍ମ ଅମର । ପୃଥିବୀରେ ପ୍ରତିଦିନ ବହୁ ସଂଖ୍ୟକ ବ୍ୟକ୍ତି ଜନ୍ମଲାଭକରି ମୃତ୍ୟୁ ବରଣ କରୁଛନ୍ତି, କିନ୍ତୁ ଯେଉଁମାନେ ତ୍ୟାଗୀ, କର୍ମଠ ଓ ସେବାପରାୟଣ ସେମାନଙ୍କର କୀର୍ତ୍ତିରାଜି ଅମରାକ୍ଷରରେ ଇତିହାସରେ ଲିପିବଦ୍ଧ ହୋଇଥାଏ । ଆମେ ଯେଉଁ ମହାପୁରୁଷ ଅର୍ଥାତ୍ ଗାନ୍ଧୀ, ଗୋପବନ୍ଧୁ, ଶଙ୍କରାଚାର୍ଯ୍ୟଙ୍କର ଗୁଣଗାନ କରୁ, ସେମାନେ ମାତୃଭୂମିର ଗୋଟିଏ ଗୋଟିଏ ସୁସନ୍ତାନ । ସେହି ତ୍ୟାଗୀ ମହାମାନବମାନେ ପୃଥିବୀରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛନ୍ତି । କୋଟିକରୁ ସେମାନଙ୍କ ଭଳି ଗୋଟିଏ ପାଇବା କଷ୍ଟ । କୂଟନୀତିଜ୍ଞ ଚାଣକ୍ୟ ଉପଦେଶ ଛଳରେ ଯଥାର୍ଥରେ କହିଛନ୍ତି—

"ବରମେକୋ ଗୁଣିପୁତ୍ରଃ ନଚ ମୂର୍ଖଃ ଶତାନ୍ୟପି
ଏକଶ୍ଚନ୍ଦ୍ରସ୍ତମୋହନ୍ତି ନଚ ତାରାଗଣୋପିଚ ।"

ଏହି ପଦଟିରୁ ବୁଝାଯାଏ, କୋଟିକରୁ ଯେଉଁ ଗୋଟିଏ ମହାପୁରୁଷ ଆମେ ପାଉ, ସେ ହେଉଛନ୍ତି ଦେଶର ତଥା ଜାତିର ପିତା ବା ମାତା ସ୍ୱରୂପ । ତାଙ୍କର ତ୍ୟାଗ ବଳରେ ଦେଶର ସର୍ବାଙ୍ଗୀନ ଉନ୍ନତି ସାଧିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ସୁ ଆଦର୍ଶ ଦ୍ୱାରା ପତିତ ସମାଜର ମଙ୍ଗଳ ଘଟେ । ଏହିଭଳି ଯେଉଁମାନେ କୋଟି କୋଟି ଜନତାକୁ ପରିଚାଳିତ କରିଥିଛନ୍ତି, ସେମାନଙ୍କୁ ସ୍ୱୟଂ ଭଗବାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସେମାନେ କ୍ଷୀଣାୟୁ ହେଲେ ମଧ୍ୟ ତାଙ୍କର ନିଷ୍ଠା, କର୍ମ ଓ ସମାଜସେବା ସେମାନଙ୍କୁ ଦୀର୍ଘାୟୁ କରି ରଖିଥାଏ ।

ସ୍ୱର୍ଗତ ଉତ୍କଳମଣି ଗୋପବନ୍ଧୁ ଥିଲେ ଆମ ଉତ୍କଳର ଜଣେ ବୀର ପୁରୁଷ । ସେ ୧୮୭୭ ଖ୍ରୀଷ୍ଟାବ୍ଦରେ ଭୂମିଷ୍ଠ ହୋଇ ମାତ୍ର ୫୧ ବର୍ଷ ମଧ୍ୟରେ ଇହଧାମ ତ୍ୟାଗ କରିଥିଲେ । କିନ୍ତୁ ମନୁଷ୍ୟ ଜନ୍ମର ସାର୍ଥକତା କେବେହେଁ ଦୀର୍ଘାୟୁ ଉପରେ ନିର୍ଭର କରେ ନାହିଁ । ଅନେକ ସମୟରେ ଦୀର୍ଘଜୀବୀ-ମାନଙ୍କର ଜୀବନ ଯେପରି ନିରର୍ଥକ ହୋଇଥାଏ, ଅଳ୍ପାୟୁମାନଙ୍କର ଜୀବନ ମଧ୍ୟ ସେହିଭଳି ସାର୍ଥକ ହୋଇଥାଏ । କର୍ମହିଁ ଜୀବନର ମାନଦଣ୍ଡ । ବ୍ୟକ୍ତି ଜନ୍ମ ହୋଇ ଯଦି କିଛି ହିତକର କାର୍ଯ୍ୟ ସମ୍ପାଦନ କରି ନ ପାରେ, ତେବେ ତା'ର ଜୀବନ ନିରର୍ଥକ । କର୍ମମୟ ଜୀବନକୁ ସାର୍ଥକ କରିବାକୁ ହେଲେ ପ୍ରଥମେ ସ୍ୱାର୍ଥତ୍ୟାଗ ଆବଶ୍ୟକ । ତେଣୁ ତ୍ୟାଗୀ ଗୋପବନ୍ଧୁ ମାତୃଭୂମି କୋଳରେ କେତେଦିନ ମାତ୍ର ରହି ଅବିନାଶୀ କୀର୍ତ୍ତିର ଅଧିକାରୀ ହୋଇ ପାରିଥିଲେ । ଆଜୀବନ କର୍ମରତ ଥାଇ ଦେଶର ଗୌରବ ଦେଶ ଆଗରେ ଉପସ୍ଥାପନ କରିଛନ୍ତି । କର୍ମ କରିବା ପୂର୍ବରୁ ସ୍ୱାର୍ଥକୁ ତ୍ୟାଗ କରିବା ଆବଶ୍ୟକ । ତା ନୋହିଲେ କୌଣସି ଉନ୍ନତିମୂଳକ କାର୍ଯ୍ୟ କରିବାକୁ ମନୁଷ୍ୟ ସକ୍ଷମ ହୁଏ ନାହିଁ । ସେ କହିଛନ୍ତି ନିଜର ସୁଖ ସମ୍ପଦ ଲାଗି ମନୁଷ୍ୟ ଗଢ଼ା ହୋଇନାହିଁ, କିନ୍ତୁ ଦେଶର ହିତସାଧନ ପାଇଁ ପ୍ରତ୍ୟେକ ହିନ୍ଦୁ ଏକ ଜଳବିନ୍ଦୁ ସ୍ୱରୂପ । ସେ ନିଜର ସ୍ୱାର୍ଥ ସମ୍ପୂର୍ଣ୍ଣରୂପେ ତ୍ୟାଗ କରି ନିଜକୁ ମାତୃଭୂମି ସହିତ ମିଶାଇ ଦେଇଛନ୍ତି । ସ୍ୱଲିଖିତ ପଦ୍ୟରେ ସେ କହିଛନ୍ତି—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।"

ଏହି ଆଦର୍ଶ ତ୍ୟାଗ ଯାହାଙ୍କର ଜୀବନକୁ ଉନ୍ନତ କରିଥିଲା, ବାଲ୍ୟକାଳରୁ ତାଙ୍କର ଦୁଃଖ ଆରମ୍ଭ ହୋଇଥିଲା । ଶୈଶବରେ ମାତୃବିୟୋଗ, କୈଶୋରରେ ପିତୃ ଓ ପୁତ୍ର ବିୟୋଗ ଘଟିଥିଲା । ଏସବୁ ଦାରୁଣ ଦୁର୍ବିପାକ ଘଟିଗଲେ ମଧ୍ୟ ସେ ତାଙ୍କର କର୍ତ୍ତବ୍ୟ ପାଳନ କରି-ଥିଲେ । ତଥାପି ପ୍ରକୃତିର ପରିହାସ ଏତେ କଠୋର ଯେ, ଗୋପବନ୍ଧୁ

ଯେଉଁଦିନ ଆଇନ ପରୀକ୍ଷାରେ ସିଦ୍ଧିଲାଭ କରିଥିବା ସମ୍ବାଦଟି ପାଇଲେ, ଠିକ୍ ସେହିଦିନ ତାଙ୍କଠାରେ ସ୍ତ୍ରୀଙ୍କର ବିୟୋଗ ବାର୍ତ୍ତା ପହଞ୍ଚିଲା । ଆଇନ ପରୀକ୍ଷାରେ ସିଦ୍ଧିଲାଭ କରିଥିବା ଆନନ୍ଦ ସ୍ତ୍ରୀଙ୍କର ବିୟୋଗରେ କଟିଲା । ମହାପୁରୁଷ ଗୋପବନ୍ଧୁଙ୍କର ଜୀବନରେ ଏତେ ଦୈବୀ ଦୁର୍ବିପାକ ଘଟିଥିଲେ ମଧ୍ୟ ତାଙ୍କର ମହତ୍ ଜୀବନ ଶୁଦ୍ଧ ହେମ ପରି ଜାଜ୍ଜ୍ୱଲ୍ୟମାନ ହୋଇ ରହିଛି ।

ଛାତ୍ରାବସ୍ଥାରୁ ତାଙ୍କର କୀର୍ତ୍ତି ଜଣା ପଡ଼ିଥିଲା । ଛାତ୍ର ଅର୍ଥ କେବଳ ପୁସ୍ତକକୀଟ ବୋଲି ତାଙ୍କର ଧାରଣା ନ ଥିଲା । ତାଙ୍କର ବିଦ୍ୟାଭ୍ୟାସ ପ୍ରତି ଯେତିକି ଇଚ୍ଛା ଥିଲା, ସମାଜ ସେବା କରିବା ପାଇଁ ତାଠାରୁ ଯଥେଷ୍ଟ ଅଧିକ ସ୍ପୃହା ଥିଲା । କିପରି ପତିତ ଜନତାର ସେବା କରିବେ, ଏହାହିଁ ଥିଲା ତାଙ୍କର ମୂଳ ଚିନ୍ତା । ଦଳିତ, ପତିତ, ନିଷ୍ପେଷିତ ସମାଜକୁ ଉଦ୍ଧାର କରିବା ତାଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା । ସହାଧ୍ୟାୟୀମାନଙ୍କ ମଧ୍ୟରୁ ସେ ଉପଯୁକ୍ତ କର୍ମୀ ବାଛି ପତିତ ସମାଜର ସେବା କରିବା ସଙ୍ଗେ ସଙ୍ଗେ ସେ ଅନ୍ୟାନ୍ୟ ଦେଶହିତକର କାର୍ଯ୍ୟରେ ଆତ୍ମନିୟୋଗ କରୁଥିଲେ । ପ୍ରଥମ ଥର ସେ ବି. ଏ. ପରୀକ୍ଷାରେ କୃତକାର୍ଯ୍ୟ ହୋଇ ପାରି ନ ଥିଲେ; କିନ୍ତୁ ମନେ କରୁଥିଲେ, ନିଜର କୃତକାର୍ଯ୍ୟ ଅପେକ୍ଷା ମହତ୍ତର କାର୍ଯ୍ୟ ସମ୍ପାଦନ କରିବା ଶ୍ରେୟସ୍କର । ଛାତ୍ର ଜୀବନରେ ଏହି ସାମାନ୍ୟ ବିଫଳତା ଯୋଗୁଁ ତାଙ୍କୁ ଲୋକଙ୍କଠାରୁ କେତେକ ପରିହାସ ସହ୍ୟ କରିବାକୁ ପଡ଼ିଥିଲେ ମଧ୍ୟ ସେ ସେପ୍ରକାର କୁବାକ୍ୟକୁ କର୍ଣ୍ଣପାତ କରି ନ ଥିଲେ । ପୂଜ୍ୟ ଗୋପବନ୍ଧୁ ଦେଶରେ "କର୍ତ୍ତବ୍ୟବୋଧିନୀ ସମିତି" ଗଠନ କରି ନିଷ୍ପେଷିତ ଜନତାଙ୍କ ଆଗରେ ଜୟଧ୍ୱଜା ଉଡ଼ାଇଥିଲେ । ଆଜି ମଧ୍ୟ "ଉତ୍କଳ ଯୁବକ ସମିତି" ଗଠନ କରି ଯୁବକମାନଙ୍କର କର୍ତ୍ତବ୍ୟ ନିର୍ଦ୍ଦେଶ କରିଥିଲେ । ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାପରେ ସେ ଚାକିରୀ କ୍ଷେତ୍ରରେ ପ୍ରବେଶ କରି ନ ଥିଲେ; କାରଣ ପରର ଦାସତ୍ୱ ବନ୍ଧନରେ ରହିବା ତାଙ୍କର ପ୍ରକୃତିର ବିରୋଧୀ ଥିଲା । ତାଙ୍କ ଜୀବନର ପବିତ୍ର ଲକ୍ଷ୍ୟ —ପତିତଗଣଙ୍କର ଉନ୍ନତି, ସ୍ୱାଧୀନ ବୃତ୍ତି ।

ମହାପୁରୁଷ ଗୋପବନ୍ଧୁ କେତେ ଦିନ ପାଇଁ କଟକ ପୁରୀ ଓ ମୟୂରଭଞ୍ଜରେ ଓକିଲାତି କରିଥିଲେ । କିନ୍ତୁ ଅର୍ଥୋପାର୍ଜନ ତାଙ୍କର

ପ୍ରକୃତ ଉଦ୍ଦେଶ୍ୟ ନ ଥିଲା । ସେ ଯେଉଁ ଅର୍ଥ ଉପାର୍ଜନ କରୁଥିଲେ, ତାହା ଦରିଦ୍ର ସେବାରେ ଲଗାଉଥିଲେ । ମିଥ୍ୟା ଘଟଣା ନେଇ ମକଦ୍ଦମା କରିବା ତାଙ୍କର ସ୍ୱଭାବର ବିରୁଦ୍ଧ ଥିଲା । 'ସତ୍ୟର ଜୟ ଓ ପାପର କ୍ଷୟ' ମତରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତେଣୁ କିଛିକାଳ ପରେ ଆଇନ ବ୍ୟବସାୟ ଛାଡ଼ି ସେ ସମାଜସେବା କ୍ଷେତ୍ରକୁ ଆସିଲେ । ତାଙ୍କ ସମୟରେ ଶିକ୍ଷା ଅବହେଳିତ ହୋଇ ପଡ଼ିଥିଲା । ଶିକ୍ଷାପ୍ରତି ଇଂରେଜ ସରକାର ବିଶେଷ ଦୃଷ୍ଟିପାତ କରୁ ନ ଥିଲେ । ତେଣୁ ସେ ନୀଳଗିରି ରାଜ୍ୟରେ ଆଦର୍ଶ ଶିକ୍ଷାର ପ୍ରସାର ଆରମ୍ଭ କରିଥିଲେ ଏବଂ ନିଜେ ସେଠାରେ ପ୍ରଧାନ ଶିକ୍ଷକରୂପେ କାର୍ଯ୍ୟ କରିଥିଲେ । ମାତ୍ର ସେ ସ୍ୱାଧୀନଚେତା ଥିବାରୁ ସେହି ଚାକିରି ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ନିଜର ଜନ୍ମପୀଠ ସାକ୍ଷୀଗୋପାଳର ମଞ୍ଜୁଳ ବକୁଳ ଛାୟାଘନ କୁଞ୍ଜରେ ତାଙ୍କର ଆଦର୍ଶ ଗଢ଼ି ଉଠିଲା । ପ୍ରକୃତିର ସୁରମ୍ୟ ବେଷ୍ଟନୀ ମଧ୍ୟରେ ପ୍ରକୃତ ମନୁଷ୍ୟ ଗଢ଼ିବା ଉଦ୍ଦେଶ୍ୟରେ ବକୁଳ କୁଞ୍ଜରେ ସେ ତାଙ୍କର ନିସ୍ୱାର୍ଥପର କର୍ମୀ-ମାନଙ୍କୁ ନେଇ ସତ୍ୟବାଦୀ ବିଦ୍ୟାଳୟ ସ୍ଥାପନ କଲେ । ନିରାଡ଼ମ୍ବର, ସ୍ୱାବଲମ୍ବନଶୀଳ, ସେବାବତ୍ସଳ ଗୋପବନ୍ଧୁ ଭାରତର ବିଶିଷ୍ଟ ଅନୁଷ୍ଠାନ 'ବିଦ୍ୟାମନ୍ଦିର' ସ୍ଥାପନ କରି ଦଳିତ ସମାଜର ଆର୍ଥିକ ଉନ୍ନତି କରିଥିଲେ । ଆଉ ମଧ୍ୟ ଖଣ୍ଡବିଖଣ୍ଡିତ ମାତୃଭୂମିର ପୂର୍ଣ୍ଣତା ସମ୍ପାଦନ ପାଇଁ ସେ ସର୍ବଦା ଚିନ୍ତାଶୀଳ ଥିଲେ । ଦେଶ ମିଶ୍ରଣ ଆନ୍ଦୋଳନରେ ଉତ୍କଳ ଗୌରବ ମଧୁସୂଦନ ମଧ୍ୟ ଯୋଗ ଦେଇଥିଲେ । ଓଡ଼ିଆ ଭାଷାଭାଷୀମାନଙ୍କର ସହାନୁଭୂତିମୂଳକ ଜାତୀୟ ଜୀବନର ଉନ୍ନତି ଲାଗି ପଣ୍ଡିତ ସ୍ୱର୍ଗତ ଗୋଦାବରୀଶ ମିଶ୍ର "ଦୁଃଖିଧନ"ରେ ଏକ ପଦ ରଚନା କରିଥିଲେ—

"ବଡ଼ ହୀନମାନ ଆମ ଘର ଦଶା
ଶୁଣିଲେ ଫାଟଇ ବୁକୁ
ଚଉଖଣ୍ଡ ହୋଇ ଓଡ଼ିଶା ଦେଶ ଲେ
ପଡ଼ି ହୁଏ ଦୁକୁଦୁକୁ ।"

ପୂଜ୍ୟ ଗୋପବନ୍ଧୁ ତାଙ୍କର ଆନ୍ଦୋଳନକୁ ସିଂହଭୂମି, ଖଡ଼ିଆଳ, ମେଦିନୀପୁର, ଜୟପୁରରେ ପ୍ରଚାର କରି ସଫଳ ହୋଇଥିଲେ । ସେ

ଉତ୍କଳକୁ "ଛିନ୍ନମସ୍ତା ଜନନୀ" ଆଖ୍ୟା ଦେଇଥିଲେ । ଏହାର ପ୍ରଧାନ କାରଣ ହେଉଛି ଭାରତର ନାନା ପ୍ରଦେଶ ବିଚ୍ଛିନ୍ନ ଥିବା ହେତୁ ସେହି ବିକଳାଙ୍ଗ ମାତାର ଦୁର୍ଦ୍ଦଶାରେ ବ୍ୟଥିତ ହୋଇ ତାଙ୍କ ନୟନରୁ ଅଶ୍ରୁ ଝରୁଥିଲା । ଆଜି ମଧ୍ୟ ସେ ଯେଉଁ ଜନମଣ୍ଡଳୀରେ କାନ୍ଦି କାନ୍ଦି ବକ୍ତୃତା ଦେଉଥିଲେ ସଭାସଦବୃନ୍ଦ ମଧ୍ୟ ସେହିପରି କାନ୍ଦି ପକାଉଥିଲେ ।

ମାତୃଭୂମିର ମର୍ଯ୍ୟାଦାଲାଗି ସ୍ୱର୍ଗତ କବି ଗଙ୍ଗାଧର "ଅର୍ଘ୍ୟଥାଳି"ରେ ଯେଉଁଭଳି ଏକ ପ୍ରଶ୍ନବାଚୀ ପଦ ବାଢ଼ିଛନ୍ତି—

"ମାତୃଭୂମି ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀଗଣରେ ଗଣିବା ଅଜ୍ଞାନୀ ରହିବେ କାହିଁ ?"

ସେହିଭଳି ପଣ୍ଡିତ ଗୋପବନ୍ଧୁ ମଧ୍ୟ ଦୁଃଖ ପ୍ରକାଶ କରି ଗାଇଛନ୍ତି—

"ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ,
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ ।
ମାନବ ଜୀବନ ହୁଅଇ ସଫଳ,
ଏ ମହାଆଶା କି ପୂରିବ ଉତ୍କଳ !"

ଯେଉଁମାନେ ମାତୃଭୂମିର ମର୍ଯ୍ୟାଦା ବଜାୟ ନ ରଖନ୍ତି, ସେମାନେ ମାତୃଭୂମିର ଗୋଟିଏ ଗୋଟିଏ ଅଯୋଗ୍ୟ ସନ୍ତାନ । ମାତୃଭୂମିର ସମ୍ମାନକୁ ସେମାନେ ପଶୁଭଳି ପାଦରେ ଦଳିଦିଅନ୍ତି । କିନ୍ତୁ ତ୍ୟାଗୀ ଗୋପବନ୍ଧୁ ମାତୃଭୂମିର ସମ୍ମାନ ରକ୍ଷା କରିବାପାଇଁ ତାଙ୍କର ଜୀବନକୁ ବଳି ଦେଇଛନ୍ତି ।

# ଗୋପବନ୍ଧୁଙ୍କ ଜୀବନର ଧାରା

## ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର, କାବ୍ୟତୀର୍ଥ

[ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁଙ୍କର ସହପାଠୀ ଓ ସହକର୍ମୀ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ସମ୍ମିଳନୀର ବେତନଭୋଗୀ ପ୍ରଚାରକ, 'ନିକ୍ଷର୍ପଣ', 'ଆକାଶ ଶତକମ୍', 'ଆର୍ତ୍ତତ୍ରାଣ ନାରାୟଣ ଶତକମ୍'; 'ଜଗନ୍ନାଥ ସ୍ତୋତ୍ର', 'ସାମନ୍ତ ଚନ୍ଦ୍ରଶେଖର', 'ବାଳିକାବନ୍ଧୁ' ଆଦି ନାନା ଗ୍ରନ୍ଥର ପ୍ରଣେତା, ଓଡ଼ିଶା ସାହିତ୍ୟ ଏକାଡେ଼ମୀର ଉପାଧି ବିଜେତା, ସମ୍ବଲପୁର ଜିଲ୍ଲାସ୍କୁଲର ଅବସରପ୍ରାପ୍ତ ମୁଖ୍ୟ ପଣ୍ଡିତ ସ୍ୱର୍ଗତ ଚନ୍ଦ୍ରଶେଖର ମିଶ୍ର ଆଲୋଚ୍ୟ ସନ୍ଦର୍ଭରେ ନିଜ ଅନୁଭୂତିକୁ କେନ୍ଦ୍ର କରି ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱ, କଳା ଓ କୃତିତ୍ୱ ତଥା ତାଙ୍କ ଜୀବନର ଧାରା ସମ୍ପର୍କରେ ସଂକ୍ଷିପ୍ତ ଅଥଚ ସାମୂହିକ ଭାବରେ ସାରଗର୍ଭକ ତଥ୍ୟମାନ ପରିବେଷଣ କରିଅଛନ୍ତି ।—ସଂ]

**ଯେଉଁ** ମହାତ୍ମା ମନୁଷ୍ୟ ହେଲେହେଁ ସ୍ୱର୍ଗର ଦେବଗୁରୁ ବୃହସ୍ପତିଙ୍କ କଳା ଧରି ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଥିଲେ, ଯେ ଦୟାଦାକ୍ଷିଣ୍ୟ ପ୍ରଭୃତି ସର୍ବସଦ୍‌ଗୁଣର ଆଧାର ଥିଲେ, ଯେ ନୂତନ ଉତ୍କଳର ସ୍ରଷ୍ଟା ଓ ନିୟନ୍ତା ଥିଲେ, ଯାହାଙ୍କର ସୌଜନ୍ୟରେ ଉତ୍କଳବାସୀ ବଶୀଭୂତ ହୋଇଥିଲେ, ଯେ ସମାଜ କାଗଜର ଉଦ୍‌ଭାବନ କରି ଲୋକ ସମାଜକୁ ଚମତ୍କୃତ କରିଥିଲେ, ଯାହାଙ୍କ ଲେଖନୀ ନିଃସୃତ ବାକ୍ୟବାଣରେ ପ୍ରପୀଡ଼ିତ ହୋଇ ଦୁର୍ନୀତିଗ୍ରସ୍ତ ଲୋକମାନେ ଭୀତିତ୍ରସ୍ତ ହୋଇଥିଲେ, ସେହି

ମହାପୁରୁଷ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ମୃତ ହୋଇଥିଲେ ହେଁ ସମ୍ପ୍ରତି ଜୀବିତ ଅଛନ୍ତି । କାରଣ ଯସ୍ୟ କୀର୍ତ୍ତିଃ ସ ଜୀବତି ।

ପଣ୍ଡିତ ଗୋପବନ୍ଧୁଙ୍କ ସଙ୍ଗେ ୧୯୦୨ ସାଲରେ ହରିହରାନ- ନିବାସୀ ସ୍ୱର୍ଗୀୟ ଉମ୍ବରୁଧର ପଟ୍ଟନାୟକଙ୍କ ବାସଭବନରେ ମୋର ପ୍ରଥମ ସାକ୍ଷାତ୍ ହୋଇଥିଲା । ଉମ୍ବରୁଧର ବାବୁ ଗୋପବନ୍ଧୁଙ୍କର ସହପାଠୀ ଥିଲେ । ସେତେବେଳେ ମୁଁ କଟକ ନର୍ମାଲ ସ୍କୁଲରେ ଅଧ୍ୟୟନ କରୁଥିଲି । ଗୋପବନ୍ଧୁ ଓକିଲାତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରଥମେ କଟକରେ ଓକିଲାତି କଲେ । ମିଥ୍ୟା ମୋକଦ୍ଦମାକୁ ସେ ଘୃଣା କରୁଥିଲେ । ଯାହା ନିରାଟ ସତ୍ୟ ଥିଲା, ସେହି ମୋକଦ୍ଦମାରେ ଗୋପବନ୍ଧୁ ଲଢୁଥିଲେ । ତାହାଙ୍କର ଏତାଦୃଶ ସାଧୁତା ଦେଖି ମୟୂରଭଞ୍ଜର ମହାରାଜା ସ୍ୱର୍ଗୀୟ ରାମଚନ୍ଦ୍ର ଦେବ ତାହାଙ୍କୁ ନିଜ ରାଜ୍ୟକୁ ଡକାଇନେଲେ । ସେଠାରେ ସେ ଓକିଲାତି କଲେ ଏବଂ ମହାରାଜାଙ୍କ ରାଜ୍ୟସଭାର ସଭ୍ୟ ହେଲେ । ଗୋପବନ୍ଧୁ ସର୍ବଦା ଶିକ୍ଷା ବିଭାଗର ପକ୍ଷପାତୀ ଥିଲେ । ମହାରାଜା ଗୋପବନ୍ଧୁଙ୍କ ସାହଚର୍ଯ୍ୟରେ ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଥିଲେ । ରାଜ୍ୟର ବଜେଟ ଆଲୋଚନାବେଳେ ଗୋପବନ୍ଧୁ ଶିକ୍ଷା ବିଭାଗର ବ୍ୟୟ ବାହୁଲ୍ୟ ପାଇଁ ମହାରାଜାଙ୍କୁ ସଭାରେ ଅନୁରୋଧ କରିବାରୁ ମହାରାଜା ଉତ୍ତର ଦେଲେ, ଗୋପବନ୍ଧୁ ବାବୁ କେବଳ ଶିକ୍ଷା ବିଭାଗର ଓକିଲାତି ନେଇଛନ୍ତି, ମାତ୍ର ମୋତେ ସବୁ ବିଭାଗପ୍ରତି ଦୃଷ୍ଟି ଦେବାକୁ ହେବ ।

ଗୋପବନ୍ଧୁ ମୟୂରଭଞ୍ଜରେ କେତେକ ବର୍ଷ ଅତିବାହିତ କରି କଟକକୁ ପ୍ରତ୍ୟାବର୍ତ୍ତନ କଲେ । କଟକରେ ସ୍ୱର୍ଗୀୟ କୁଳବୃଦ୍ଧ ମଧୁସୂଦନ ଦାସଙ୍କର ସାହଚର୍ଯ୍ୟ ଲାଭକଲେ । ମଧୁବାବୁ ଗୋପବନ୍ଧୁଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ଏବଂ ତାହାଙ୍କର ଧୀମତ୍ତା ଓ ସ୍ପଷ୍ଟବାଦିତା ଦେଖି ବିଶେଷ ଆନନ୍ଦିତ ହେଉଥିଲେ । ସମୟ ସମୟରେ ମଧୁବାବୁଙ୍କ ସହିତ ଗୋପବନ୍ଧୁଙ୍କର ମତାନୈକ୍ୟ ଘଟୁଥିଲା । ଗୋପବନ୍ଧୁ କହୁଥିଲେ, ବୁଢ଼ାଟା ବଞ୍ଚିଥିବା ପର୍ଯ୍ୟନ୍ତ ଆମ୍ଭର ଦନ୍ତସ୍ଫୁଟ ହେବ ନାହିଁ । କିଛିଦିନ ଗୋପବନ୍ଧୁ ମଧୁବାବୁଙ୍କ ସଙ୍ଗେ ଓକିଲାତି କରିବା ପରେ ମହାମାନବ ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନରେ ନିଜକୁ ନିୟୋଜିତ

କଲେ । ଗୋପବନ୍ଧୁଙ୍କ ପ୍ରଭାବରେ ପ୍ରଭାବିତ ହୋଇ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ । ସେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନରେ ପ୍ରଧାନ ସେନାପତି ଥିଲେ ।

ଗୋପବନ୍ଧୁ ସତ୍ୟବାଦୀର ଛୋଟଅନା ବକୁଳ ବନରେ ଯେଉଁ ଆଦର୍ଶ ବିଦ୍ୟାଳୟ ସ୍ଥାପନ କଲେ, ତାହା ଓଡ଼ିଶାରେ ବିଶେଷ ସୁଖ୍ୟାତି ଲାଭ କଲା । ସେଠାରେ ଉତ୍କଳର ସ୍ୱନାମଧନ୍ୟ ହରିହର ଆଚାର୍ଯ୍ୟ, ନୀଳକଣ୍ଠ ଦାସ, ଲିଙ୍ଗରାଜ ମିଶ୍ର, କୃପାସିନ୍ଧୁ ମିଶ୍ର, ଗୋଦାବରୀଶ ମିଶ୍ର ପ୍ରଭୃତି ଉଚ୍ଚ ଶିକ୍ଷିତ ବ୍ୟକ୍ତିମାନେ ମିଳିତ ହୋଇ ସ୍କୁଲର ପରିଚାଳନା କଲେ । ସେହି ବିଦ୍ୟାଳୟର ସମ୍ପାଦକ ରୂପେ ଗୋପବନ୍ଧୁ କାର୍ଯ୍ୟ କରି ସହକର୍ମୀମାନଙ୍କୁ ଏପରି ସ୍ନେହପାଶରେ ଆବଦ୍ଧ କରିଥିଲେ ଯେ, ସେମାନେ ଭୋଗ ବିଳାସ ତ୍ୟାଗ କରି ବିଦ୍ୟାଳୟର ଉନ୍ନତିକଳ୍ପେ ବଦ୍ଧପରିକର ହେଲେ । ସେହି ବିଦ୍ୟାଳୟ ଏପରି ଉନ୍ନତ ପ୍ରଣାଳୀରେ ଚାଳିତ ହେଲା ଯେ, ସମଗ୍ର ଉତ୍କଳ କାହିଁକି ଭାରତର ବହୁ ପ୍ରବୀଣ ବ୍ୟକ୍ତିଙ୍କ ମନକୁ ଆକର୍ଷଣ କଲା । ଅନେକ ଥର ଏ ଲେଖକ ଉକ୍ତ ବିଦ୍ୟାଳୟ ସନ୍ଦର୍ଶନ କରି ପୂର୍ଣ୍ଣ ଅନୁଭୂତି ଲାଭ କରିଅଛି ।

ସମୟକ୍ରମେ ମୁଁ କଟକ ରେଭେନ୍‌ସାକଲେଜିଏଟ ସ୍କୁଲରେ ଶିକ୍ଷକତା କରି ନିମଚଉଡ଼ି ଛକ ଗୋବିନ୍ଦ ରଥଙ୍କ ଲଜ୍‌ରେ ବସାକଲି । ତା ନିକଟବର୍ତ୍ତୀ କୋଠାରେ ଗୋପବନ୍ଧୁ ବାବୁ ସ୍ୱୀୟ ପଟ୍ଟଶିଷ୍ୟ ରାଧାନାଥ ରଥଙ୍କ ସହିତ ବାସ କରୁଥିଲେ । ତେଣୁ ମୁଁ ଗୋପବନ୍ଧୁଙ୍କର ସାହଚର୍ଯ୍ୟ ଲାଭ କରିବାର ସୁଯୋଗ ପାଉଥିଲି । ସେତେବେଳେ ତାଙ୍କଠାରୁ ସଦାଳାପ ଓ ସଦୁପଦେଶ ଲାଭ କରି ମୁଁ ନିଜକୁ ସୌଭାଗ୍ୟବାନ ମନେ କରୁଥିଲି । ଗୋପବନ୍ଧୁ ଦେଶର ଦୈନ୍ୟ ଓ ଦାରିଦ୍ର୍ୟ ଦୁର୍ଦ୍ଦଶା ଦେଖି ସର୍ବଦା ମର୍ମନ୍ତୁଦ ବେଦନା ଅନୁଭବ କରୁଥିଲେ ଏବଂ ସମୟେ ସମୟେ ବ୍ୟାକୁଳ ହୋଇ କାନ୍ଦି ପକାଉଥିଲେ । ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସୁଥିଲେ ସେମାନେ ଗୋପବନ୍ଧୁଙ୍କ ସହକର୍ମୀ ହେବାକୁ ଅଗ୍ରହାନ୍ୱିତ ହୋଇ ଦେଶ ସେବାରେ ନିଯୁକ୍ତ ଥିଲେ । ଗୋପବନ୍ଧୁ ପରିବାରବର୍ଗଙ୍କର ମାୟା ମମତାରେ ଜଡ଼ିତ ନ ହୋଇ ନିର୍ଲିପ୍ତ ଭାବରେ ସାଧକେ

କାର୍ଯ୍ୟ ସମାଧାନ କରୁଥିଲେ । ଯେତେବେଳେ ସେ ଗୃହତ୍ୟାଗ କରି ଦୁର୍ଭିକ୍ଷପ୍ରପୀଡ଼ିତ ନର-ନାରାୟଣଙ୍କ ସେବାପାଇଁ ବାହାରିପଡ଼ିଲେ, ସେତେବେଳେ ତାଙ୍କର ପୁତ୍ରଟିଏ ପୀଡ଼ିତ ହୋଇ ଶଯ୍ୟାଶାୟୀ ହୋଇଥିଲା । ତାଙ୍କ ଧର୍ମପତ୍ନୀ କହିଲେ, ପୁତ୍ରଟି ତ ଏପରି ମୁମୂର୍ଷୁ ଅବସ୍ଥାରେ ପଡ଼ିଛି, ତୁମ୍ଭେ କପରି ଗୃହ ଛାଡ଼ି ଯିବ ? ଗୋପବନ୍ଧୁ କହିଲେ, ସହସ୍ର ସହସ୍ର ବ୍ୟକ୍ତି ଅନାହାରରେ ମରୁଥିବାବେଳେ ମୁଁ ଗୋଟିଏ ପୁତ୍ରର ମରଣ ପାଇଁ ଅପେକ୍ଷା କରି ରହିପାରିବ ନାହିଁ । ସେ ସ୍ତ୍ରୀଙ୍କ ପତ୍ନୀଙ୍କର ଅନୁରୋଧକୁ ଏଡ଼ିଦେଇ ଗୃହ ସଂସାରରେ ଜଳାଞ୍ଜଳି ଦେଲେ ଏବଂ ଦୁର୍ଭିକ୍ଷପ୍ରପୀଡ଼ିତ ବ୍ୟକ୍ତିମାନଙ୍କର ସାହାଯ୍ୟ ସକାଶେ ନିଜକୁ ନିୟୋଜିତ କଲେ ।

ଗୋପବନ୍ଧୁଙ୍କ ଜୀବନ ସ୍ୱାଧୀନତାରେ ପରିପୂର୍ଣ୍ଣ । ଜୀବନଧାରା ତାଙ୍କଠାରେ ସ୍ୱଚ୍ଛ, ସ୍ୱାଭାବିକ ଓ ବ୍ୟାପକ ଭାବରେ ପ୍ରବାହିତ । ତାଙ୍କର ଚକ୍ଷୁର ଲୋତକରେ ଏ ସମଗ୍ର ଜାତିର ଦୁଃଖ, ଦୈନ୍ୟ ଜୀବନ୍ତ ରୂପ ପାଉଥିଲା । ତାଙ୍କ ଜୀବନର ପ୍ରତ୍ୟେକ ଘଟନା ଆଲୋଚନା କଲେ, ଉପର୍ଯ୍ୟୁକ୍ତ ଉକ୍ତିଗୁଡ଼ିକର ସତ୍ୟତା ପ୍ରମାଣିତ ହେବ ।

ଧର୍ମଭୀରୁତା ଗୋପବନ୍ଧୁଙ୍କ ହୃଦୟରେ ସର୍ବଦା ଜାଗ୍ରତ ଥିଲା । ସର୍ବଧର୍ମ ପ୍ରତି ତାଙ୍କର ଆସ୍ଥା ଥିଲା ଓ କୌଣସି ଧର୍ମକୁ ସେ ଘୃଣା କରୁ ନ ଥିଲେ; ମାତ୍ର ସ୍ୱୀୟ ହିନ୍ଦୁ ଧର୍ମପ୍ରତି ସେ ବିଶେଷ ଆଗ୍ରହୀ ଥିଲେ । ସେ ଜାଣିଥିଲେ ହିନ୍ଦୁଧର୍ମ ସନାତନ ଧର୍ମ; କଦାପି ତାହାର ଲୋପ ହେବ ନାହିଁ । ନୀଳାଦ୍ରିନାଥ ଜଗନ୍ନାଥ ଓ ସାକ୍ଷୀଗୋପାଳର ଗୋପୀନାଥଙ୍କୁ ସେ ଅତ୍ୟନ୍ତ ଭକ୍ତି କରୁଥିଲେ । ତେଣୁ ସାକ୍ଷୀଗୋପାଳରେ ଆଦର୍ଶ ବିଦ୍ୟାଳୟ ସ୍ଥାପନ କରିଥିଲେ । ପୁରୀ ଜିଲ୍ଲା ସୁଆଣ୍ଡ ଗ୍ରାମ ତାଙ୍କର ବାସସ୍ଥାନ ଥିଲେ ହେଁ ଅଧିକାଂଶ ସମୟ ସେ ସାକ୍ଷୀଗୋପାଳରେ ରହୁଥିଲେ । ଗୋବଧ ନିରୋଧ ଓ ଗୋରକ୍ଷା ବିଷୟରେ ସେ ସର୍ବଦା ଚେଷ୍ଟିତ ଥିଲେ ହେଁ ସମାଜର ନୀରବତା ହେତୁ ସେତେବେଳେ ତାହା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ସେ ଜାଣିଥିଲେ ଯେ, ଗୋଜାତି ହିନ୍ଦୁମାନଙ୍କର ପ୍ରଧାନ

ସମ୍ପଦ । ତେଣୁ ଗୋରକ୍ଷା ଭାରତୀୟ ପ୍ରତ୍ୟେକ ମାନବର ପ୍ରଧାନ କର୍ତ୍ତବ୍ୟ ଅଟେ ।

ପଣ୍ଡିତ ଗୋପବନ୍ଧୁଙ୍କର ହୃଦୟ ଗଙ୍ଗୋଦକ ପରି ନିର୍ମଳ ଓ ସ୍ୱଚ୍ଛ ଥିଲା । ସେ ଯେପରି ବକ୍ତା, ସାହସୀ, ପରୋପକାରବ୍ରତୀ ଓ ଧର୍ମପରାୟଣ ଥିଲେ, ସେହିପରି ଦାତା ଥିଲେ । ସେ ବହୁ ଶିକ୍ଷାର୍ଥୀଙ୍କୁ ଅଜସ୍ର ଦାନ କରୁଥିଲେ । ସେ ଓଡ଼ିଶାରେ ଜଣେ ବିଖ୍ୟାତ କବି ଥିଲେ । ତାଙ୍କର କବିତା ଏବେ ପ୍ରତ୍ୟେକ ମାନବର ପ୍ରାଣସ୍ପର୍ଶୀ ହେଉଅଛି । ସେ ବିଷ୍ଣୁଭକ୍ତ ଥିବାରୁ ଏବଂ ନିଜର ପ୍ରତ୍ୟେକ କାର୍ଯ୍ୟକୁ ଭଗବାନଙ୍କ ପାଦପଦ୍ମରେ ଅର୍ପଣ କରୁଥିବାରୁ, ସର୍ବଶେଷରେ ଭଗବାନ ନାମ ସ୍ମରଣ କରୁ କରୁ ଇହଧାମ ତ୍ୟାଗକରି ପରମପଦ ପ୍ରାପ୍ତ ହେଲେ । ସତ୍ୟବାଦୀରେ ଶ୍ରୀ ଗୋପୀନାଥ ଦେବଙ୍କ ନିକଟରେ ତାହାଙ୍କର ବୈକୁଣ୍ଠ ପ୍ରୟାଣ ହେଲା । ଗୋପବନ୍ଧୁ ଇହଧାମରୁ ଚାଲି ଯାଇଛନ୍ତି; ମାତ୍ର ସେ ଉତ୍କଳର ପ୍ରତ୍ୟେକ ବ୍ୟକ୍ତିଙ୍କ ହୃଦୟ ମନ୍ଦିରରେ ଜୀବିତ ଅଛନ୍ତି । ତାହାଙ୍କ ବିୟୋଗରେ ଓଡ଼ିଶାର ଅପୂରଣୀୟ କ୍ଷତି ହୋଇଛି । ଯଦି ଆମ୍ଭେମାନେ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ କାର୍ଯ୍ୟ କରିପାରିବା, ତେବେ ସେ ବୈକୁଣ୍ଠରେ ଥାଇ ଆମ୍ଭମାନଙ୍କୁ ଆଶୀର୍ବାଦ କରିବେ । ଗୋପବନ୍ଧୁ ୫୧ ବର୍ଷ ମାତ୍ର ଜୀବିତ ଥାଇ ଯେପରି ସତ୍‌କାର୍ଯ୍ୟ କରି ଅକ୍ଷୟ କୀର୍ତ୍ତି ରଖି ଯାଇଅଛନ୍ତି, ସେପରି କର୍ମପ୍ରାଣ ବ୍ୟକ୍ତି ଭାରତ କାହିଁକି ପୃଥିବୀରେ ବିରଳ । ଗୋପବନ୍ଧୁ ଯଦି ଅଧିକ କାଳ ବଞ୍ଚିଥାନ୍ତେ, ତେବେ ସେ କେତେ ଯେ ସତ୍‌କାର୍ଯ୍ୟ କରି ପାରିଥାନ୍ତେ, ତାହାର କଳନା ନାହିଁ ।



# ଜୀବନୀମୂଳକ କବିତାରେ ଗୋପ-ମାନସର ସ୍ୱରୂପ

ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ, ଏମ୍. ଏ.

[ ଓଡ଼ିଶା ସାହିତ୍ୟ ଏକାଡ଼େମୀର ମୁଖପତ୍ର 'କୋଣାର୍କ' ଓ 'ଝଙ୍କାର' ଭଳି ସାହିତ୍ୟମୂଳକ ପତ୍ରିକାରେ ଲେଖକଙ୍କର ବହୁସଂଖ୍ୟକ ସମାଲୋଚନାତ୍ମକ ପ୍ରବନ୍ଧ ପ୍ରକାଶ ପାଇଛି । 'ସାହିତ୍ୟ ଓ ସାହିତ୍ୟିକ' ଓ 'ସ୍ରଷ୍ଟା ଓ ସୃଷ୍ଟି' ତାଙ୍କର ଦୁଇଟି ସମାଲୋଚନା ଗ୍ରନ୍ଥ । ଏଥିରୁ ନିଷ୍ଠାପର ଗବେଷକ ଓ ତରୁଣ ସାହିତ୍ୟ ସମାଲୋଚକ ଅଧ୍ୟାପକ ଆଚାର୍ଯ୍ୟଙ୍କର ସାହିତ୍ୟ ପ୍ରତିଭାର ପରିଚୟ ସୁସ୍ପଷ୍ଟ । ଆଲୋଚ୍ୟ ପ୍ରବନ୍ଧରେ ସେ ପ୍ରତିଭାବାନ୍ କବି ଗୋପବନ୍ଧୁଙ୍କର ନା'ଟି ଜୀବନୀମୂଳକ କବିତାର ସୃଷ୍ଟି, ସ୍ୱରୂପ ଓ ପ୍ରଭାବ ସମ୍ପର୍କରେ ବିସ୍ତୃତ ଆଲୋଚନା କରିଛନ୍ତି ।—ସଂ ]

ଊନବିଂଶ ଶତାବ୍ଦୀର ଶେଷ ପାଦ ଓ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଉତ୍କଳଭୂମିରେ ଯେଉଁ ଅଭୂତପୂର୍ବ ଜନଜାଗରଣ ଦେଖା ଦେଇଥିଲା, ତା'ର ବିଭିନ୍ନ ଲକ୍ଷ୍ୟ ମଧ୍ୟରୁ ଦୁଇଟି ଥିଲା ମୁଖ୍ୟ—ଅତୀତ ଗୌରବର ଜୟଗାନ ଓ ଉଜ୍ଜ୍ୱଳ ଭବିଷ୍ୟତ ଗଠନ । ଉତ୍କଳର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦ ଦେବଙ୍କ ପତନ ପରେ ପରେ ଉତ୍କଳୀୟ ଜନତା ବହୁ ଦୁଃଖ, କଷ୍ଟ, ଅପମାନ, ଲାଞ୍ଛନା ପ୍ରଭୃତି ସହ୍ୟ କରି କରି ଜଡ଼ ଓ ନିଶ୍ଚେଷ୍ଟ ହୋଇ ପଡ଼ିଥିଲା । ଅତୀତର ସମସ୍ତ ବିଭବ ଓ ସମସ୍ତ ଗୌରବ ହରାଇ ସେ ସ୍ୱର୍ଗ୍ୟବିପର୍ଯ୍ୟୟର ଏକ ଜୀବନ୍ତ ନିଦର୍ଶନ ସ୍ୱରୂପ ଦଣ୍ଡାୟମାନ ରହିଥିଲା । କିନ୍ତୁ ନଅଙ୍କ ଦୁର୍ଭିକ୍ଷର କବଳ ଚଳ ଓ ଓଡ଼ିଆ ଭାଷା ବିଲୋପ

ଆନ୍ଦୋଳନର ଘୃଣ୍ୟ ଚକ୍ରାନ୍ତ ଯେତେବେଳେ ଓଡ଼ିଆ ଦେଶ ଓ ଜାତିକୁ ପୃଥିବୀପୃଷ୍ଠରୁ ନିଶ୍ଚିହ୍ନ କରି ଦେବାକୁ ବସିଲା, ସେତେବେଳେ ତା'ର ଅନ୍ତରାତ୍ମା ଜାଗ୍ରତ ହେବାକୁ ଲାଗିଲା । ନିଜର ଅତୀତକୁ ସ୍ମରଣ କରି ସେ ପୁଣି ଶତସିଂହର ବଳ ଲାଭ କଲା । ଏହି ଜାଗରଣ ଫଳରେ ହିଁ ପରବର୍ତ୍ତୀ କାଳରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ଏବଂ ଓଡ଼ିଆ ଭାଷା ଅନ୍ୟାନ୍ୟ ଭାରତୀୟ ପ୍ରାଦେଶିକ ଭାଷାମାନଙ୍କ ମଧ୍ୟରେ ଆସନ ଲାଭକଲା ।

## ଐତିହ୍ୟ ପ୍ରୀତି—

ସେତେବେଳେ ଯେଉଁ ବରେଣ୍ୟ ଉତ୍କଳ ସନ୍ତାନଗଣ ଏହି ଜନ-ଜାଗରଣକୁ ଏକ ସାର୍ଥକ ରୂପ ପ୍ରଦାନ କରିବା ନିମନ୍ତେ ଚେଷ୍ଟା କରିଥିଲେ, ସେମାନଙ୍କ ମଧ୍ୟରୁ କୁଳବୃଦ୍ଧ ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁଙ୍କ ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ଏଇ ଉଭୟ ନେତା ଉତ୍କଳର ଅତୀତ ଇତିହାସରୁ କିପରି ପ୍ରେରଣା ଲାଭ କରି ଭବିଷ୍ୟତ ଉତ୍କଳର ଉନ୍ନତିକଳ୍ପେ ଚେଷ୍ଟିତ ଥିଲେ ତା'ର ନିଦର୍ଶନ ନିମ୍ନଲିଖିତ ପଦ୍ୟାଂଶରୁ ହିଁ ସ୍ପଷ୍ଟୀଭୂତ ହେବ । କୁଳବୃଦ୍ଧ ସ୍ୱୀୟ 'ଜାତି ଇତିହାସ' କବିତାରେ ଲେଖିଛନ୍ତି—

"ଜାତି ଇତିହାସ ଜାତିର ନିର୍ଝର
ତହୁଁ ବହେ ସଦା ଜାତି ପ୍ରାଣଧାର
ସେ ଧାରରୁ ନୀର ପିଉଛି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।
× × ...
ଏହି ନୀର ସେବି ବୀର ମୋ ସନ୍ତାନେ,
ବୀର ପ୍ରସବିନୀ କ୍ଷୀର ଏହି ନୀର,
ଛାଡ଼ିରେ ଆଳସ୍ୟ ବଢ଼ାଅ ସାହସ,
ଜାତି ନାଦଘୋଷ କର ଅଗ୍ରସର ।"

ସେହିପରି ଉତ୍କଳମଣି ସ୍ୱୀୟ 'ବନ୍ଦୀର ଆତ୍ମକଥା'ରେ ଗାନ କରି ଯାଇଛନ୍ତି—

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ,
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହା ଘୋଷା କି ବୁଝିବ ଉତ୍କଳ ?"

କେବଳ ଏତିକ ନୁହେଁ, ଗୋପବନ୍ଧୁଙ୍କ ବିଭିନ୍ନ କାବ୍ୟ କବିତା ମଧ୍ୟରେ ଏ ଐତିହ୍ୟ ପ୍ରୀତି ଅତି ନିବିଡ଼ ଭାବରେ ପ୍ରକାଶ ଲାଭ କରିଛି । କବି ଅତୀତ-ପ୍ରୀତୀଶ ଦୃଷ୍ଟିଭଙ୍ଗୀ ନେଇ ଲେଖି ଯାଉଛନ୍ତି ତାଙ୍କର 'ଧର୍ମପଦ' କାବ୍ୟ, 'କଟକର ଶିଳା ସେତୁ', 'ଖଣ୍ଡଗିରି ଶିଖରେ', 'ବିଂଶ ଶତାବ୍ଦୀର ପ୍ରଥମ ଦିନରେ ବାରବାଟୀ ଦର୍ଶନ' ପ୍ରଭୃତି ଅମର କବିତାବଳି । ଏ ପ୍ରକାର କବିତାଗୁଡ଼ିକର ଆଲୋଚନା କରିବାକୁ ଯାଇ ଗୋପ ସାହିତ୍ୟ ସମ୍ଭାରର ଶ୍ରେଷ୍ଠ ସମାଲୋଚକ ଅଧ୍ୟାପକ ଶ୍ରୀ ଚିନ୍ତାମଣି ଦାସ ଯଥାର୍ଥରେ ଲେଖିଛନ୍ତି—"କିନ୍ତୁ ଅନେକ ସମୟରେ ଦେଖିବାକୁ ମିଳେ ଅତୀତର ଏ ଉଦ୍‌ବୋଧନ, ଓଡ଼ିଶାର ଐତିହାସିକ କୀର୍ତ୍ତିକଳାପର ଏ ମହତ୍ତ୍ୱ ପ୍ରଖ୍ୟାପନ, ଗୋପବନ୍ଧୁଙ୍କ ସ୍ୱେଚ୍ଛାକୃତ ନୁହେଁ । ଏ ତାଙ୍କ ଜୀବନର ଯେପରି ଏକ ଦୁର୍ବାର୍ଯ୍ୟ ଉନ୍ମାଦ, ଏକ ଦୈବବାଣୀ—ଏ ଯେପରି ଯୌବନର ଆରମ୍ଭରୁ ତାଙ୍କର ଗମ୍ଭୀର ଜୀବନ ବେଦ ଏବଂ ହୃଦୟ ବୀଣା ତନ୍ତ୍ରର ସୁମଧୁର ଝଙ୍କାର; କିନ୍ତୁ ଏହି ସ୍ୱତଃସ୍ଫୂର୍ତ୍ତି ଭାବାବେଗ ମଧ୍ୟରେ ଅନ୍ୟମାନଙ୍କୁ ଏ ଦୈବୀ ଉନ୍ମାଦନାରେ ଉଦ୍ଦୀପିତ କରିବା ନିମନ୍ତେ କି ସଫଳ ପ୍ରୟାସ !"

## ବୀର ପୂଜା—

ପ୍ରକୃତରେ ଗୋପବନ୍ଧୁ ଛାତ୍ରାବସ୍ଥାରୁ ହିଁ ବୁଝିଥିଲେ ଯେ ଉତ୍କଳୀୟ ଜନତାକୁ ଜାଗ୍ରତ କରିବାକୁ ହେଲେ, ତାକୁ ତାର ଗୌରବାବହ ଅତୀତ ସମ୍ପର୍କରେ ସୂଚନା ଦେବା ଆବଶ୍ୟକ । ତେଣୁ ସେ ଯେପରି ଉତ୍କଳୀୟ, ଭାରତୀୟ ତଥା ପାଶ୍ଚାତ୍ୟ ବୀରମାନଙ୍କ ଜୀବନୀ ବିସ୍ତାର ସହିତ ପାଠ କରୁଥିଲେ ଏବଂ ଆଲୋଚନା କରୁଥିଲେ; ସେହିପରି

ପ୍ରାଚୀନ ଉତ୍କଳର ବୀରପୁଙ୍ଗବମାନଙ୍କ ଜୀବନର ମହତ୍ତ୍ୱକୁ ଉତ୍କଳୀୟମାନଙ୍କ ନିକଟରେ ଉପସ୍ଥାପିତ କରିବା ନିମନ୍ତେ ଚେଷ୍ଟା କରିଥିଲେ । ମହତ୍ ବ୍ୟକ୍ତିମାନଙ୍କ ଜୀବନୀ ପାଠର ଆବଶ୍ୟକତା ସେ ପ୍ରାଣେ ପ୍ରାଣେ ଉପଲବ୍ଧି କରିପାରିଥିଲେ । ସତ୍ୟବାଦୀର ଅନ୍ୟତମ ସଖା ପଣ୍ଡିତ ନୀଳକଣ୍ଠ 'ସତ୍ୟବାଦୀରେ ସାତବର୍ଷ' ଗ୍ରନ୍ଥର 'ପ୍ରାରମ୍ଭ'ରେ ଲେଖିଛନ୍ତି—"୧୯୦୩—୦୪ରେ ତିନିହେଁ କଟକ କଲେଜ ହଷ୍ଟେଲରେ ଥିଲୁ । ଗୋପବନ୍ଧୁ ପଢ଼ୁଥିଲେ ବି.ଏ. । ହରି ଘଇନା ପଢ଼ୁଥିଲେ ଏଫ୍.ଏ. ଓ ମୁଁ ପଢ଼ୁଥିଲି ଏଣ୍ଟ୍ରାନସ୍ କ୍ଲାସ୍‌ମାନଙ୍କରେ । ସେତିକିବେଳୁ ମଧ୍ୟେ ମଧ୍ୟେ ମାର୍ଟ୍‌ସିନି, ଗାରିବାଲ୍‌ଡି ପ୍ରଭୃତିଙ୍କ କଥା ମଧ୍ୟ ପଢ଼ା ଯାଉଥିଲା ।" ଉତ୍କଳୀୟ ଯୁବ ଗୋପବନ୍ଧୁ ପାଶ୍ଚାତ୍ୟ ମନୀଷୀ ଓ ନେତାମାନଙ୍କର ଜୀବନୀପାଠ କରିବା ସଙ୍ଗେ ସଙ୍ଗେ ଉତ୍କଳର କବି, ବୀର, ସମାଜ ସଂସ୍କାରକ, ଜ୍ୟୋତିର୍ବିଦ ପ୍ରଭୃତିଙ୍କ ଜୀବନଚରିତ ପାଠକରି ସେମାନଙ୍କଠାରୁ ଯଥେଷ୍ଟ ପ୍ରେରଣା ଲାଭ କରୁଥିଲେ ।

ଏଠାରେ ଜୀବନୀ ପାଠ ପ୍ରତି ତତ୍‌କାଳୀନ ବିଶିଷ୍ଟ ଜନନେତାମାନଙ୍କର ମନୋଭାବ ସମ୍ପର୍କରେ କିଞ୍ଚିତ୍ ଆଲୋଚନା କରାଯାଇପାରେ । 'ଉତ୍କଳ ସମ୍ମିଳନୀ' ଯେତେବେଳେ ଉତ୍କଳୀୟମାନଙ୍କ ସ୍ୱାର୍ଥସାଧନ ପାଇଁ ବରିଷ୍ଠ ଦେଶହିତୈଷୀମାନଙ୍କ ପ୍ରଚେଷ୍ଟାରେ ଗଢ଼ି ଉଠିଥାଏ । ୧୯୦୭ ମସିହାରେ ଏହାର ତୃତୀୟ ଅଧିବେଶନ ତାଳଚେର ଦୁର୍ଗାଧିପତି ରାଜା ଶ୍ରୀ କିଶୋରଚନ୍ଦ୍ର ବୀରବରଙ୍କ ସଭାପତିତ୍ୱରେ ବାଲେଶ୍ୱର ସହରରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ସଭାପତି ସ୍ୱୀୟ ଅଭିଭାଷଣରେ ଉଲ୍ଲେଖ କରିଥିଲେ—"ଶତ ଶତ ଶୁଷ୍କ ଉପଦେଶ ଅପେକ୍ଷା ଗୋଟିଏ ହେଉ ଉଦାହରଣ ଅଧିକ ମୂଲ୍ୟବାନ୍ । ଜୀବନ୍ତ ଉଦାହରଣ ସମସ୍ତଙ୍କ ହୃଦୟରେ ସର୍ବଦା ଘଟିପାରେ ନାହିଁ । ସୁତରାଂ ଉଦାହରଣ ସ୍ୱରୂପ ଅନୁକରଣ କରି ସୁପଥରେ ଚାଲିବା ନିମନ୍ତେ ଜାତୀୟ ସାହିତ୍ୟରେ ମହାଜନମାନଙ୍କ ଜୀବନ ଚରିତ ଲିଖିତ ହୋଇ ରହିବା ଉଚିତ । ଇଉରୋପ ପ୍ରଭୃତି ଦେଶରେ ଯେ କେହି ସତ୍‌କାର୍ଯ୍ୟ କରୁନା କାହିଁକି, ତାହାର ଖଣ୍ଡେ ଜୀବନ ଚରିତ ନିଶ୍ଚୟ ଲେଖା ହୋଇ ରହିବ । ମାତ୍ର ଆମ୍ଭମାନଙ୍କ ଦେଶର ସାହିତ୍ୟ ଭଣ୍ଡାରରେ ଦେଶର ଉପଯୁକ୍ତ

ବ୍ୟକ୍ତିମାନଙ୍କର ଜନମ ନାହିଁ । ସୁତରାଂ ଓଡ଼ିଶାର ମହଜ୍ଜନମାନଙ୍କର ଜୀବନଚରିତ ସଂକଳିତ ହେବା ନିତାନ୍ତ କର୍ତ୍ତବ୍ୟ ।"

ଉପରୋକ୍ତ ଦୃଷ୍ଟିକୋଣରୁ ବିଚାର କଲେ ମନେହୁଏ ବଳିଷ୍ଠ ଐତିହ୍ୟ ପ୍ରୀତି, ଦେଶମାତୃକାର ସେବା ମନୋଭାବ, ପାଶ୍ଚାତ୍ୟ ମନୀଷି-ମାନଙ୍କର ଜୀବନୀପାଠ ତଥା ସମସାମୟିକ ଚିନ୍ତାଧାରା ଗୁଡ଼ିକ ଗୋପବନ୍ଧୁ ଦାସଙ୍କୁ ଉତ୍କଳୀୟ ମହାପୁରୁଷମାନଙ୍କର ଜୀବନାଲେଖ୍ୟ ରଚନା କରିବାର ପ୍ରେରଣା ଦାନ କରିଥିଲା । ଠିକ ଏହି ସମୟକୁ ସୁବର୍ଣ୍ଣସୁଯୋଗ ପରି ପ୍ରକାଶିତ ହେଲା ୰ ବ୍ରଜସୁନ୍ଦର ଦାସଙ୍କ ସମ୍ପାଦକତ୍ୱରେ ଓଡ଼ିଶାର ଅନ୍ୟତମ ବିଶିଷ୍ଟ ସାହିତ୍ୟ ମାସିକ ପତ୍ର 'ମୁକୁର' । ଏହି ପତ୍ରିକାରେ ଧାରାବାହିକ ଭାବରେ ଗୋପବନ୍ଧୁଙ୍କ ଜୀବନୀମୂଳକ କବିତାଗୁଡ଼ିକ ପ୍ରକାଶିତ ହେଲା । *

ଏହି କବିତାଗୁଡ଼ିକ ପଠକଲେ ସ୍ୱତଃ ମନରେ ପ୍ରଶ୍ନ ଉଠେ ଗୋପବନ୍ଧୁ ଏହି ଐତିହାସିକ ମହାପୁରୁଷମାନଙ୍କର ଅମର ଜୀବନଗାଥା-ଗୁଡ଼ିକୁ ଅନ୍ୟାନ୍ୟ ଜୀବନୀ ଲେଖକଙ୍କ ଭଳି ଗଦ୍ୟରେ ରଚନା ନ କରି କ୍ଷୁଦ୍ର କ୍ଷୁଦ୍ର କବିତା ମଧ୍ୟରେ ପ୍ରକାଶ କଲେ କାହିଁକି ? ପ୍ରକୃତରେ ଏହି କ୍ଷୁଦ୍ର କବିତାଗୁଡ଼ିକ ମଧ୍ୟରେ ଲେଖକ ସେମାନଙ୍କର ଜୀବନର ସମସ୍ତ ଘଟଣାବଳୀକୁ ପ୍ରକାଶ କରିପାରି ନାହାନ୍ତି । କିନ୍ତୁ ତା'ବୋଲି ଏଗୁଡ଼ିକର ମୂଲ୍ୟହାନୀ ଘଟିଛି ବୋଲି କହିବା ଆଦୌ ସମୀଚୀନ ନୁହେଁ । ଗୋପବନ୍ଧୁ

---

*୧ । ଭକ୍ତ କବିବର ଶ୍ରୀ ଜଗନ୍ନାଥ ଦାଶ—ମୁକୁର ୨।୧ (୧୯୦୭ ଏପ୍ରିଲ)
୨ । ସାମନ୍ତ ଚନ୍ଦ୍ରଶେଖର— ,, ୧।୨ (୧୯୦୭ ମେ)
୩ । ସାରଳା ଦାସ— ,, ୧।୩ (୧୯୦୭ ଜୁନ୍)
୪ । ବଳରାମ ଦାସ— ,, ୧।୪ (୧୯୦୭ ଜୁଲାଇ)
୫ । ଉପେନ୍ଦ୍ର ଭଞ୍ଜ— ,, ୧।୫ (୧୯୦୭ ଅଗଷ୍ଟ)
୬ । ଶମ୍ଭୁକର ବାଜପେୟୀ— ,, ୧।୬(୧୯୦୭ ସେପ୍ଟେମ୍ବର)
୭ । ଅନଙ୍ଗଭୀମ ଦେବ— ,, ୧।୭ (୧୯୦୭ ଅକ୍ଟୋବର)
୮ । ପୁରୁଷୋତ୍ତମ ଦେବ— ,, ୧।୧୨ (୧୯୦୭ ମାର୍ଚ୍ଚ)
୯ । ସ୍ୱର୍ଗୀୟ ପଣ୍ଡିତ ହରିହର ଦାଶ ଶର୍ମା—

ସେମାନଙ୍କର କୃତିଗୁଡିକ ପାଠକରି, ସେମାନଙ୍କର ଜୀବନୀ ଆଲୋଚନା କରି ଯେଉଁ ଉଦ୍ଦୀପନା ଲାଭ କରିଛନ୍ତି, ତାଙ୍କୁ କବିତାର ସୀମିତ ପରିସର ମଧ୍ୟରେ ଅପୂର୍ବ ଭାବରେ ପ୍ରକାଶ କରିଛନ୍ତି । ଯେଉଁ ମହାପୁରୁଷମାନେ ନିଜ ନିଜର ବିଶିଷ୍ଟ ମହନୀୟତା ସକାଶେ ଆଜି ଓଡିଆମାନଙ୍କର ହୃଦକନ୍ଦରରେ ଚିର ଜାଜ୍ୱଲ୍ୟମାନ, ଗୋଦବର୍ଦ୍ଧନ ନିଜର ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ ଦେଇ ସେମାନଙ୍କର ବ୍ୟକ୍ତିତ୍ୱ ଅନୁଧ୍ୟାନ କରିଅଛନ୍ତି ଏବଂ ନିଜର ପ୍ରତିଭାପୁଷ୍ଟ ଲେଖନୀ ସାହାଯ୍ୟରେ କବିତା ଆକାରରେ ତାହା ରୂପାୟିତ କରିଯାଉଛନ୍ତି । ନିଜ ଦେଶର ଏହି ମହାପୁରୁଷମାନଙ୍କର ମହତ୍ତ୍ୱ ଅତି ନିବିଡ଼ ଭାବରେ ଉପଲବ୍ଧି କରିପାରିଥିଲେ ବୋଲି ହିଁ ସେ କବିତା ଆକାରରେ ସେମାନଙ୍କର ମହତ୍ତ୍ୱକୁ ପ୍ରକାଶ କରିବା ନିମନ୍ତେ ସମର୍ଥ ହୋଇ ପାରିଛନ୍ତି । ମନୀଷୀ କାର୍ଲାଇଲ୍ କବିମାନଙ୍କ ସମ୍ପର୍କରେ ଯଥାର୍ଥରେ ଲେଖିଥିଲେ—

"It is a man's sincerity and depth of vision that makes him a poet. See deep enough, and you see musically" × × × A musical thought is one spoken by a mind that has peretrated into the inmost heart of thing."

ଭାଗବତ ପାଠ—

ଏହି ମହାପୁରୁଷମାନଙ୍କର ଜୀବନୀ ଉତ୍କଳମଣି ଗୋଦବର୍ଦ୍ଧନଙ୍କୁ କିପରି ଭାବରେ ଅନୁପ୍ରାଣିତ କରିଥିଲା ତା'ର ଗୋଟିଏ ଦୁଇଟି ଉଦାହରଣ ଏଠାରେ ପ୍ରଦାନ କରାଯାଇପାରେ । ଗୋଦବର୍ଦ୍ଧନ ଅତି ଶୈଶବରୁ ଭାଗବତ ପ୍ରଣେତା ଜଗନ୍ନାଥ ଦାସଙ୍କ ଭକ୍ତ ଥିଲେ । ଭାଗବତ ବାଣୀରେ ଥିଲା ତାଙ୍କର ଆନ୍ତରିକ ବିଶ୍ୱାସ । ଯୁବାବସ୍ଥାରେ ସେ ଛୁଟିରେ ଘରକୁ ଆସିଲେ ପ୍ରତିମତ ଭାଗବତ ପଢ଼ାରେ ଲାଗିଯାଆନ୍ତି । ସପ୍ତାଙ୍ଗ ଭାଗବତ ପାଠ କରି ଉଦ୍‌ଯାପନ କରାଯାଏ । ୧୯୦୫ ମସିହାର ଏପରି ଏକ 'ଭାଗବତ ସପ୍ତାଙ୍ଗ ପାଠ'ର ଯେଉଁ ଚିତ୍ର ପଣ୍ଡିତ ନୀଳକଣ୍ଠ ପ୍ରଦାନ କରିଅଛନ୍ତି, ତାହା ଏଠାରେ ଉଦ୍ଧାର କରାଗଲା—"ଗୋଦବର୍ଦ୍ଧନ ଓଡିଆ ଭାଗବତର ସପ୍ତାଙ୍ଗ ପାଠରେ ସଙ୍କଳ୍ପ କରି ନିଜ ଗାଁ ମୁଣ୍ଡେ ଭାର୍ଗବୀ

ନଈବନ୍ଧ ତଳେ ଯୋଟେଶ୍ବରଙ୍କ ମନ୍ଦିର ଆଗ ଖୁଲିଆରେ ବସି ଥାଆନ୍ତି । ସାତଦିନରେ ଭାଗବତକୁ ନିଷ୍ଠାରେ ପାଠ କରି ପୂର୍ଣ୍ଣ କରିବାକୁ ହୁଏ । ତା' ପୁଣି କୌଣସି ଭାଗବତ ଘରେ ବା ମନ୍ଦିରରେ । ଯେ ସାତଦିନ ସେହି ମନ୍ଦିରରେ 'ଭାଗବତ'ଙ୍କୁ ପୂଜା କରି, ଅରୁଆ ଓ ହବିଷ୍ୟ ଖାଇ ହବିଷ କରିବାକୁ ହୁଏ—ଏହାହିଁ ଭାଗବତର ସପ୍ତାଙ୍ଗ ପାଠ ।

× × ×

"ଯାଇ ଦେଖିଲୁ ପୋଥି-ଆସନ ଉପରେ ଥିବା ତାଳପତ୍ର ପୋଥିରୁ ଡୋର ଫିଟାଇ ରଖିଦେଇ ସେଥିରୁ ଗୋଟିଏ ଖେଦା ଧରି ସୌମ୍ୟବପୁ ଗୋପବନ୍ଧୁ, ପାରାୟଣରେ ଲାଗିଛନ୍ତି । ସେ ପିନ୍ଧିଥିଲେ ଗୋଟିଏ ମଠା । ଦେହରେ ପଡ଼ିଥିଲା ଖଣ୍ଡିଏ ଓଦା ଗାମୁଛା । ସନ୍ଧ୍ୟା-ବେଳକୁ ସେଦିନ ପଢ଼ା ସରିଲା । ସମସ୍ତେ କଦଳୀପତ୍ର ପକାଇ ସେହି ମନ୍ଦିର ଆଗ ଖୁଲିଆରେ ଏକାଧାଡ଼ିରେ ବସିଗଲୁ, ଅନ୍ୟ କେହି କେହି ବି ଥିଲେ । ସମସ୍ତେ ବ୍ରାହ୍ମଣ ନ ଥିଲେ । ଆମ ସାମାଜିକ ଜୀବନରେ ଏ ଏକ ନୂତନ ଅନୁଭୂତି । ପୂଜା ହୋଇ ବେଢାରେ ଉଆ ଭାତ ଓ ପିତଳ ଆଠିକା ପ୍ରଭୃତିରେ ଡାଲି ପୁଣି ତରକାରୀ ଭଗବତ ପୋଥିଙ୍କୁ ପୂଜା ହୋଇଥିଲା । ଆଞ୍ଜୁଳାରେ ସେହି ବେଢାରୁ ବ୍ରାହ୍ମଣ-ଅବ୍ରାହ୍ମଣ ଭେଦରେ ପଂକ୍ତି ଧରି ବସିଥିବା ଲୋକଙ୍କୁ ଯେତେବେଳେ ଭାତ ପରଷା ହେଲା, ସେ ପ୍ରଥମ ଅନୁଭୂତିର ସ୍ମରଣ ଆଜି ଜୀବନ୍ତ କରିବାକୁ ମୋର ସାହସ ହେଉ ନାହିଁ । × × × ,ସେଇ ଶାସନ ଓ ଶାସନ ପ୍ରଭାବିତ ଗ୍ରାମରେ ଜନ୍ମ ହୋଇଥିଲେ ଜଗନ୍ନାଥ ଦାଶ । ତଥାପି ସେ ଗ୍ରାମରେ ତାଙ୍କ ଓଡ଼ିଆ ଭାଗବତ ଏବେ ବି ପ୍ରତିଷ୍ଠା ପାଇନାହିଁ କି ସାଧାରଣ ଭାବରେ ଏବେ ବି ପଢ଼ା ହୁଏ ନାହିଁ । ଏ ହିସାବରେ ଗୋପବନ୍ଧୁ ବ୍ରାହ୍ମଣ ଥିଲେ ମଧ୍ୟ ଆଗ୍ରହରେ ଥିଲେ ଓଡ଼ିଆ ସାଧକ ।

ଭାଗବତ ପାଠ କରିବାରେ ଯାହାର ଏତେ ନିଷ୍ଠା ଓ ଆଗ୍ରହ, ସେ ଯେ ତା'ର ଆଦର୍ଶରେ ନିଜକୁ ଗଠନ କରିବା ନିମନ୍ତେ ଚେଷ୍ଟା କରିଥିବେ, ଏଥିରେ ସନ୍ଦେହ କ'ଣ ଅଛି ? ଭାଗବତର ସରଳ ଓ ସର୍ବଜନବୋଧ ଭାଷା ଓ ପ୍ରାଞ୍ଜଳ ଅଭିବ୍ୟକ୍ତି ଗୋପବନ୍ଧୁଙ୍କ ରଚନାରେ

ସର୍ବସ ପରିଦୃଷ୍ଟ । ସେହିପରି ସ୍ୱର୍ଗୀୟ ପଣ୍ଡିତ ହରିହର ଦାସ ଶର୍ମାଙ୍କ ଜୀବନୀ ଓ କର୍ମପ୍ରଣାଳୀ ଗୋପବନ୍ଧୁଙ୍କର ଥିଲା ଆଜୀବନ ପ୍ରେରଣାର ଉତ୍ସ ଓ କର୍ମାନୁଷ୍ଠାନର ଆଦର୍ଶ । ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା ଓ ସମାଜସେବୀ ପଣ୍ଡିତ ମହାଶୟଙ୍କ ସହ ଗୋପବନ୍ଧୁଙ୍କର ଘନିଷ୍ଠ ପରିଚୟ ଘଟି ନ ଥିଲା । ୧୮୭୪ ମସିହା ଫେବୃୟାରୀ ମାସରେ ସେ ଇହଧାମ ତ୍ୟାଗ କରିଥିଲେ । କିନ୍ତୁ ତାଙ୍କର ଆଦର୍ଶରେ ଜୀବନଯାପନ କରୁଥିବା ପୁରୀର ମୁକ୍ତ୍ୟାର ରାମଚନ୍ଦ୍ର ଦାସ ଥିଲେ ଗୋପବନ୍ଧୁଙ୍କ ଦୀକ୍ଷାଗୁରୁ । ତାଙ୍କଠାରୁ ଗୋପବନ୍ଧୁ ଏହି ଦେଶହିତୈଷୀ ପଣ୍ଡିତ ପ୍ରବରଙ୍କର ଜୀବନ ଇତିହାସ ଶ୍ରବଣ କରି ତାଙ୍କ ପ୍ରତି ଭକ୍ତିଯୁକ୍ତ ଥିଲେ । ଏପରି କି ସତ୍ୟବାଦୀ ବନବିଦ୍ୟାଳୟର ପାଠାଗାର ହରିହର ଦାସଙ୍କ ନାମରେ ନାମିତ କରାଯାଇଥିଲା । ହରିହରଙ୍କ ବାଣୀ ଥିଲା, 'ସବୁ ସଂସ୍କାର ଓ ବିକାଶ ମୂଳରେ ନୂତନ ଶିକ୍ଷା' । ଏହି ବାଣୀକୁ ମର୍ମେ ମର୍ମେ ଉପଲବ୍ଧି କରି ଦେଶବନ୍ଧୁ ଗୋପବନ୍ଧୁ ସତ୍ୟବାଦୀ ବନବିଦ୍ୟାଳୟର ପରିକଳ୍ପନା କରିଥିଲେ । ତେଣୁ ଏହି ମହାପୁରୁଷଗଣ, ଯେଉଁମାନେ ଥିଲେ ଗୋପବନ୍ଧୁଙ୍କ ଜୀବନର ଆଦର୍ଶ, ତାଙ୍କ କର୍ମାବଳୀ ପାଇଁ ପ୍ରେରଣା ଏବଂ ଯେଉଁମାନଙ୍କ ଅଜ୍ଞେୟ ଆଶୀର୍ବାଦ ନେଇ ସେ କର୍ମପଥରେ ଅଗ୍ରସର ହେଉଥିଲେ ସେମାନଙ୍କର ଜୀବନକୁ ସେ କବିତାର କମନୀୟ ଶୈଳୀରେ ପରିପ୍ରକାଶ କରିବା ବ୍ୟତୀତ ନୀରସ ଶୁଷ୍କ ଗଦ୍ୟମୟ ଭାଷାରେ ପରିବେଷଣ କରିପାରନ୍ତେ ବା କିପରି ?

## ନ'ଟି ଜୀବନୀମୂଳକ କବିତାର ଆଲୋଚନା—

ଆଲୋଚ୍ୟ ନ'ଟି କବିତା ମଧ୍ୟରୁ ୫ଟି କବିତା କବି ଓ ମନୀଷୀଙ୍କର, ୨ଟି ଅମିତପରାକ୍ରମୀ ଗଜପତି ସମ୍ରାଟଙ୍କର ଏବଂ ଅନ୍ୟ ଦୁଇଟି ଦୁଇଜଣ ସ୍ୱଦେଶହିତୈଷୀ ସମାଜସେବୀଙ୍କ ଜୀବନ ସୌରଭ ବିତରଣ କରିବା ନିମିତ୍ତ ଉଦ୍ଦିଷ୍ଟ । ଶୈଶବରୁ ହିଁ ଗୋପବନ୍ଧୁଙ୍କ କବି ହେବାର ଆକାଂକ୍ଷା ବଳବତୀ ଥିଲା । ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିବାବେଳେ ସେ ଉପେନ୍ଦ୍ର ଭଞ୍ଜଙ୍କ ସପକ୍ଷରେ କେତେକ କବିତା ରଚନା କରି 'ଇନ୍ଦ୍ରଧନୁ', 'ବିଜୁଳି' ମସୀସମରରେ ଅଂଶ ଗ୍ରହଣ

କରୁଥିଲେ ବୋଲି କେତେକ ସମାଲୋଚକ ମତ ପ୍ରଦାନ କରନ୍ତି । ୪ର୍ଥ ଶ୍ରେଣୀର ଛାତ୍ର ଥିବା ସମୟରେ ସାଧନାଥଙ୍କୁ ଲକ୍ଷ୍ୟ କରି ସେ–

'ଧଡ଼ିଆ ପଣ୍ଡିତ ମୂନ୍ୟ
ବାଙ୍କଣି ସାହିରେ ନ୍ଦ୍ରଚାନ ନେଶଣି
ପରି ହେଉଥାନ୍ତି ଗଣ୍ୟ ।

କବିତାଂଶଟି ରଚନା କରିଥିଲେ ବୋଲି ବୃତ୍ତି ଓ ପୁରସ୍କାର ଲାଭରୁ ବଞ୍ଚିତ ହୋଇଥିଲେ । ପରବର୍ତ୍ତୀକାଳରେ ସେ ଆକାଂକ୍ଷା ତାଙ୍କର କର୍ମମୟ ଜୀବନପ୍ରବାହ ମଧ୍ୟରେ ଆତ୍ମଗୋପନ କରିଛି । କିନ୍ତୁ ପ୍ରତିଭାର ଅଦମ୍ୟ ପ୍ରେରଣା ସାମୟିକ ଭାବରେ ତାଙ୍କ ଲେଖନୀରୁ ଯେଉଁ କେତୋଟି କାବ୍ୟ, କବିତା ସୃଷ୍ଟି କରିଛି, ସେଗୁଡ଼ିକ ପ୍ରକୃତରେ ଉତ୍କଳ ସାହିତ୍ୟର ଶ୍ରୀବୃଦ୍ଧି କରିବାରେ ଯଥେଷ୍ଟ ସାହାଯ୍ୟ କରିଛି । ସମାଲୋଚକ ଶ୍ରୀ ଚିନ୍ତାମଣି ଦାଶଙ୍କ ଭାଷାରେ—"ଗୋପ ସାହିତ୍ୟର ପରିମାଣ ସ୍ୱଳ୍ପ ହେଲେହେଁ ତାହା ମୂଲ୍ୟବାନ, ଚନ୍ଦନ ପରି ତାର ସୌରଭ ଦିଗଦିଗନ୍ତ ବିଷ୍ଟୃତ । ଓଡ଼ିଆ ଜାତି ପ୍ରତି ସେ ସ୍ୱଳ୍ପ ସାହିତ୍ୟ ଚିର ଦୀପ୍ତିମନ୍ତ ଆଲୋକବର୍ତ୍ତିକା । ସେ କୃତିରେ କେବଳ ଦୀପ୍ତି ନାହିଁ, ନୂତନତ୍ୱର ଦିଗ୍‌ଦର୍ଶନ ଅଛି, ସର୍ବୋଦୟର ବ୍ୟାପ୍ତି ଅଛି, ସନ୍ନ୍ୟାସୀର ବୈରାଗ୍ୟ ସାଧନା ଅଛି, ଅହିଂସାଧର୍ମୀ ବୀର ପୁରୁଷର ଉଦ୍‌ବୁଦ୍ଧ ହୁଙ୍କାର ଅଛି, କର୍ମଯୋଗୀର ପ୍ରବୁଦ୍ଧ ସ୍ପନ୍ଦନ ଓ ଜାଗରଣ ଅଛି, ସମ୍ପାଦକତା ସହିତ ଚିରନ୍ତନ ସାହିତ୍ୟର ସମ୍ମେଳନ ଅଛି, ଆଶା ନୈରାଶ୍ୟର ଆଲୋକଚ୍ଛାୟା ଅଛି, ଜାତିର ସର୍ବତୋମୁଖୀ ଶ୍ରେୟବୋଧର କଲ୍ୟାଣଶ୍ରୀମଣ୍ଡିତ ଅଭିପ୍ରକାଶ ଅଛି ଏବଂ ଅଛି ଏକସୂତ୍ରରେ ଗ୍ରଥିତ ମଣିଗଣ ପରି ମହାକାଳରେ ପ୍ରବହମାନ ଗତିଶୀଳତା—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗ ସାଧନା । + + ଗୋପସାହିତ୍ୟ 'ବିଚିତ୍ରଗାମୀ' ନ ହେଲେ ସୁଦ୍ଧା ସ୍ୱଳ୍ପ ପରିସୀମା ମଧ୍ୟରେ ସର୍ବତ୍ରଗାମୀ ।"

## ଭକ୍ତ କବିବର ଶ୍ରୀଜଗନ୍ନାଥ ଦାଶ—

କବି ହେବାର ଆକାଂକ୍ଷା କବି ପ୍ରତିଭାର ଅଧିକାଂଶ ଗୋପବନ୍ଧୁଙ୍କୁ ଓଡ଼ିଆ ପ୍ରାଚୀନ ସାହିତ୍ୟ ପ୍ରତି ଆକୃଷ୍ଟ କରିଥିଲା । ସାରଳା, ଜଗନ୍ନାଥ,

ବଳରାମ, ଉପେନ୍ଦ୍ର ପ୍ରଭୃତି ପ୍ରାଚୀନ ସାହିତ୍ୟରଥୀମାନଙ୍କର ରଚନାବଳୀ ପାଠକରି ସେଗୁଡ଼ିକର ଆଲୋଚନାରେ ପ୍ରବୃତ୍ତ ଥିଲେ ସେ । ଏମାନଙ୍କ ମଧ୍ୟରୁ ଜଗନ୍ନାଥ ଦାସଙ୍କ ନବାକ୍ଷରୀ ବୃତ୍ତରେ ରଚିତ ଭାଗବତ ଥିଲା ତାଙ୍କର ଅତି ପ୍ରିୟ । ଭାଗବତର ଭାଷା ଓ ବୃତ୍ତ ତାଙ୍କୁ ଏପରି ଭାବରେ ପ୍ରଭାବିତ କରିଥିଲା ଯେ, ପରବର୍ତ୍ତୀକାଳରେ ସେ ଭାଗବତ ବୃତ୍ତରେ କାବ୍ୟ ରଚନା କରିଛନ୍ତି । ପୁଣି ସମ୍ପାଦକୀୟଗୁଡ଼ିକର ଯତ୍ରତତ୍ର ଭାଗବତର ଉଦ୍ଧୃତିରୁ ତାଙ୍କର ଭାଗବତପ୍ରୀତି ସୁସ୍ପଷ୍ଟ । ତେଣୁ ବୋଧହୁଏ ଜୀବନମୂଳକ କବିତା ରଚନାରେ ପ୍ରବୃତ୍ତ ହେବାବେଳେ ସେ ପ୍ରଥମେ ରଚନା କରିଛନ୍ତି 'ଭକ୍ତ କବିବର ଶ୍ରୀ ଜଗନ୍ନାଥ ଦାସ' କବିତା । କବିତାଟି ମଧ୍ୟରେ ସେ ଜଗନ୍ନାଥ ଦାସଙ୍କୁ ବିଷ୍ଣୁ ଅଂଶରେ ଅବତାର ବୋଲି ଉଲ୍ଲେଖକରି ତାଙ୍କୁ 'ଉତ୍କଳବ୍ୟାସ' ଉପାଧିରେ ଭୂଷିତ କରିଅଛନ୍ତି । ଉକ୍ତ କବିଙ୍କ ସ୍ୱଦେଶ-ପ୍ରୀତି, ଜ୍ଞାନବତ୍ତା, ଭକ୍ତିମତ୍ତା ତଥା କବିତ୍ୱଶକ୍ତି ଗୋପବନ୍ଧୁଙ୍କୁ ମୁଗ୍ଧୀଭୂତ କରିଛି । ଜଗନ୍ନାଥ ସଂସ୍କୃତ ସାହିତ୍ୟର କଠିନତମ ପଣ୍ଡିତଜନ ଦୁର୍ବୋଧ ଗ୍ରନ୍ଥକୁ ଉତ୍କଳ ଭାଷାରେ ଅନୁବାଦ କରି 'ନୃପତିନିବର'ଠାରୁ 'କୃଷକକୁଟୀର' ପର୍ଯ୍ୟନ୍ତ ହବନ ସୁପରିଚିତ କରାଇ ପାରିଥିଲେ । ଭାଗବତବାଣୀରେ ଉଦ୍‌ବୁଦ୍ଧ ହୋଇ 'ବ୍ରାହ୍ମଣ ଚଣ୍ଡାଳ ହୋଇ ଏକମେଳ ଧର୍ମଭାବେ ହୋଇ ମତ୍ତ, ହରିପଦ ସମ୍ପଦେ ଗାଆନ୍ତି ଆନନ୍ଦେ ସ୍ଥାନେ ସ୍ଥାନେ ଭାଗବତ ।'

## ବଳରାମ ଦାସ—

ସେହିପରି 'ଦାଣ୍ଡୀ ରାମାୟଣ' ଓ 'ଭଗବତ୍ ଗୀତା' ରଚୟିତା ପଞ୍ଚସଖା ଯୁଗର ଅନ୍ୟତମ ବିଶିଷ୍ଟ ସାହିତ୍ୟସାଧକଙ୍କୁ ଉପଜୀବ୍ୟ କରି ଗୋପବନ୍ଧୁ ରଚନା କରିଅଛନ୍ତି ଅନ୍ୟ ଏକ କବିତା । ଏହାଙ୍କର ମଧ୍ୟ କଠୋର ସାହିତ୍ୟସାଧନା, ଉତ୍କଳୀୟ ସାଧାରଣ ଜନତା ପ୍ରତି ସମବେଦନା ପ୍ରଭୃତି କବିପ୍ରାଣକୁ ଗଭୀର ଭାବରେ ସ୍ପର୍ଶ କରିପାରିଛି । ଜଗନ୍ନାଥ ଦାସଙ୍କ ଭଳି ବଳରାମ ମଧ୍ୟ ବିଷ୍ଣୁ ଅଂଶରେ ଅବତୀର୍ଣ୍ଣ ବୋଲି ବର୍ଣ୍ଣନା କରି ସେ ଲେଖିଛନ୍ତି—

"ହୁଏ ମୋ ପ୍ରଣତି ନୀଳାଚଳପତି
ଭକତ ବନ୍ଧୁ ଠାକୁର
ଉତ୍କଳ କଲ୍ୟାଣେ ଯୁଦ୍ଧ ଅଭିଯାନେ
ଜିଣିଲେ ଯେ କାଞ୍ଚିପୁର ।
କବିରୂପେ ପୁଣି ଅବତରି ବେନି
ଜଗନ୍ନାଥ, ବଳରାମ
ଧର୍ମ୍ମ-କର୍ମ୍ମ-ଭାଷା ସାହିତ୍ୟ ସୁଶିକ୍ଷା
ପ୍ରଚୁର ରଖିଲ ନାମ ।"

## ସାରଳା ଦାସ—

ଏହାପରେ କବି ଗୋପବନ୍ଧୁ 'ଭାଷା ଆଦିକାଳେ ଅନ୍ଧାର ଉତ୍କଳେ ସମୁଜ୍ଜ୍ୱଳ 'ନବ ରବି', 'ତପସ୍ୱୀ ସତ୍ତମ', 'ଭକ୍ତ ଅନୁପମ', 'ଉତ୍କଳ ଭାରତୀଙ୍କ ଜ୍ୟେଷ୍ଠ ସୁତ', ଆଦିକବି ସାରଳା ଦାସଙ୍କ ଭାଷା-ବିଭବ, ବୀରରସ-ନିସ୍ୟନ୍ଦିନୀ ବର୍ଣ୍ଣନା, ଗାମ୍ଭୀର୍ଯ୍ୟପୂର୍ଣ୍ଣ ଲେଖନଶୈଳୀ ପ୍ରଭୃତିରେ ଆକୃଷ୍ଟ ହୋଇ ଲେଖିଛନ୍ତି 'ସାରଳାଦାସ' କବିତା । ଏଥିରେ ସାରଳାଙ୍କ ସମ୍ପର୍କରେ ମିଳୁଥିବା ବିଭିନ୍ନ କିମ୍ବଦନ୍ତୀର ଉଲ୍ଲେଖ ନାହିଁ । ତାଙ୍କର ସମୟ ନିର୍ଣ୍ଣୟ କରିବା ନିମନ୍ତେ ଦୁରୂହ ପ୍ରଚେଷ୍ଟା ନାହିଁ କିମ୍ବା ନାହିଁ ପଣ୍ଡିତଜନସୁଲଭ ସାରଳାସାହିତ୍ୟର ସାମଗ୍ରିକ ଆଲୋଚନା । କିନ୍ତୁ କବିପ୍ରାଣରେ ସାରଳା ଦାସ ଯେଉଁ ଆଲୋଡ଼ନ ସୃଷ୍ଟି କରିଅଛନ୍ତି, ଯେଉଁ ପ୍ରଭାବପାତ କରିଅଛନ୍ତି, ତାର ଏକ ସ୍ୱାଭାବିକ ପରିପ୍ରକାଶ । କିନ୍ତୁ ମନେହୁଏ ବର୍ତ୍ତମାନ ସୁଦ୍ଧା ସାରଳା ସାହିତ୍ୟର ଯେତେ ଆଲୋଚନା ହୋଇଯାଇଛି ଏବଂ ହେଉଅଛି, ସେମାନଙ୍କ ମଧ୍ୟରେ କବି ଗୋପବନ୍ଧୁଙ୍କ ଏହି କ୍ଷୁଦ୍ର ଓ ସୀମିତ ଆଲୋଚନାଟି ଯେତେ ଯଥାର୍ଥ,ସେତେ ହୃଦୟସ୍ପର୍ଶୀ । ସାରଳା ଦାସ ସୂର୍ଯ୍ୟବଂଶୀୟ ଗଜପତି କପିଳେନ୍ଦ୍ରଙ୍କ ସୈନ୍ୟବାହିନୀରେ ବିଭିନ୍ନ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ ବୋଲି ବର୍ତ୍ତମାନ କେହି କେହି ସମାଲୋଚକ ପ୍ରମାଣ କରିବାପାଇଁ ଚେଷ୍ଟା କରିଅଛନ୍ତି । କିନ୍ତୁ ୧୯୦୬ରେ ଗୋପବନ୍ଧୁ ଏହାର ସୂଚନା ଦେଇଥିଲେ—

"ତୁମ୍ଭ ଗୀତେ ପୀନା ଶକ୍ତିଶାଳୀ ସେନା
ହୋଇଣ କୃଷକପନ୍ତି
ଜିଣି ଶତ୍ରୁଗଣେ ଉଡ଼ାଇଲେ ରଣେ
ଉତ୍କଳର ବୈଜୟନ୍ତୀ ।"

## ଉପେନ୍ଦ୍ର ଭଞ୍ଜ—

ସେହିପରି ଓଡ଼ିଆ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ ସାଧକ ଉପେନ୍ଦ୍ର ଭଞ୍ଜ—ରୀତି ସାହିତ୍ୟର ମଉଡ଼ମଣି । ଘୁମୁସରର ପ୍ରାପ୍ତ ରାଜବଂଶରେ ଜନ୍ମଗ୍ରହଣ କରିଥିଲେ ହେଁ ବାଣୀ-ଆରାଧନା ପାଇଁ ସେ ସନ୍ନ୍ୟାସ ଅବଲମ୍ବନ କରି ନୟାଗଡ଼ର ପର୍ବତ ଗୁମ୍ଫାରେ ଆଶ୍ରୟ ଗ୍ରହଣ କରିଥିଲେ । ତାଙ୍କର କଳ୍ପନାବିଳାସ, ଅଳଙ୍କାରବିନ୍ୟାସ, ଅମିତ ପ୍ରତିଭା, ରଘୁନାଥ ଉକ୍ତି ପ୍ରଭୃତି ଅବର୍ଣ୍ଣନୀୟ । ସଂସ୍କୃତ ପଣ୍ଡିତମାନଙ୍କ କବଳରୁ ଉତ୍କଳ ଭାଷାକୁ ରକ୍ଷା କରିଥିଲେ କବିସମ୍ରାଟ ଉପେନ୍ଦ୍ର । ଏହାକୁ ଲକ୍ଷ୍ୟ କରି ଉତ୍କଳମଣି ଲେଖିଛନ୍ତି—

"ସୃଜଣ ସ୍ୱହସ୍ତେ ଓଡ଼ିଆଙ୍କ ଭାଷା
ଗଢ଼ିଛି ଓଡ଼ିଆ ଜାତି,
ତବ ଜନ୍ମସ୍ଥାନ ଓଡ଼ିଶାରୁ ଆନ
ଭାବିଲେ ହୃଦରେ ଗ୍ଲାନି ।"

ଏହି ଅମର କବିଙ୍କ ଅମ୍ଳାନ କାବ୍ୟରାଜିର ମୂଲ୍ୟ କଳ୍ପନାପାଇଁ ଓଡ଼ିଆ ସାହିତ୍ୟରେ କେତେ ଯେ ମସୀଯୁଦ୍ଧର ସୃଷ୍ଟି ହୋଇଛି, ତାହା କଳନା କରିବା କଷ୍ଟକର । କିନ୍ତୁ ବର୍ତ୍ତମାନ ସୁଦ୍ଧା ଭଞ୍ଜ ସାହିତ୍ୟ ମ୍ଳାନଭୂତ ହୋଇ ପାରି ନାହିଁ । ଗୋପବନ୍ଧୁଙ୍କୁ ଏହି ସାହିତ୍ୟ ସମ୍ଭାରର ସର୍ବଶ୍ରେଷ୍ଠ ସମାଲୋଚକ ବୋଲି ଧରାଯାଇ ପାରେ । ଉପେନ୍ଦ୍ରଙ୍କ ସପକ୍ଷ ଓ ବିପକ୍ଷ ଆଲୋଚକବୃନ୍ଦ ଗୋପବନ୍ଧୁଙ୍କ ଉକ୍ତି, 'ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ—'ପ୍ରଭୃତି ଉଦ୍ଧାର କରିଥାଆନ୍ତି । କିନ୍ତୁ ସୂକ୍ଷ୍ମଦର୍ଶୀ କବି 'ଗାଏ' 'ଓ' ବୋଲେ' ଶବ୍ଦଦ୍ୱୟ ମାଧ୍ୟମରେ ଉପେନ୍ଦ୍ର ସାହିତ୍ୟର ଯଥାର୍ଥ ମୂଲ୍ୟ

କଳନା କରିପାରିଛନ୍ତି ବୋଲି ମନେ ହୁଏ । ଏହି ଗୋଟିଏ ପଂକ୍ତି ମଧ୍ୟରେ ହିଁ ଉପେନ୍ଦ୍ରଙ୍କ ସାମଗ୍ରିକ ଆଲୋଚନା ହୋଇଯାଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ସାମନ୍ତ ଚନ୍ଦ୍ରଶେଖର—

ଏହି କବିପୁଙ୍ଗବମାନଙ୍କ ମୂଳେ ଜ୍ୟୋତିର୍ବିଦ ସାମନ୍ତ ଚନ୍ଦ୍ରଶେଖର ଉତ୍କଳ ଜନନୀର ଅନ୍ୟତମ ସୁଯୋଗ୍ୟ ସନ୍ତାନ । ନିଜର ଅକ୍ଳାନ୍ତ ସାଧନା ଫଳରେ ସେ ଜ୍ୟୋତିର୍ବିଦ୍ୟାରେ ଅଭୂତପୂର୍ବ ଜ୍ଞାନଲାଭ କରିଥିଲେ ଏବଂ ନିଜର ଅପୂର୍ବ ଗ୍ରନ୍ଥ 'ସିଦ୍ଧାନ୍ତ ଦର୍ପଣ' ରଚନା କରିଥିଲେ । କିନ୍ତୁ ଦୁଃଖର କଥା, ଉତ୍କଳୀୟମାନେ ଏହି ପ୍ରତିଭାସମ୍ପନ୍ନ ମହାପୁରୁଷଟିକୁ ଚିହ୍ନିପାରି ନଥିଲେ । ପାଶ୍ଚାତ୍ୟ ଭୂଖଣ୍ଡରେ ସେ ଯେତିକି ସୁପରିଚିତ, ନିଜ ଦେଶରେ ସେତିକି ନୁହନ୍ତି । ଏହାଙ୍କର ମହିମାମୟ ସାଧନା ଓ ସ୍ୱ-ଦେଶରେ ଏହାଙ୍କ ଲାଞ୍ଛନା କବିପ୍ରାଣ ଗୋପବନ୍ଧୁଙ୍କୁ ଅଭିଭୂତ କରିଥିଲା । ତେଣୁ ଏହାଙ୍କର ଜୀବଦ୍ଦଶାରେ ହିଁ ସେ 'ସାମନ୍ତ ଚନ୍ଦ୍ରଶେଖର' କବିତାଟି ରଚନା କରିଥିଲେ । କବିପ୍ରାଣର ଖେଦୋକ୍ତି ଏହି କବିତାଟିରେ ଯେପରି ପ୍ରକାଶ ଲାଭ କରିଛି, ତାହା ପାଠ କଲେ ଯେକୌଣସି ପାଠକ ଆତ୍ମଗ୍ଳାନିରେ ଜର୍ଜରିତ ହୋଇ ପ୍ରତିଭାପୂଜା ପାଇଁ ଅଗ୍ରସର ହେବ । ସେ କାରୁଣ୍ୟ-ଲହରୀ ଛୁଟାଇ ଲେଖିଛନ୍ତି—

"ପଡ଼ା ଖଣ୍ଡ ମଧ୍ୟେ ଅଲକ୍ଷିତେ ଧନ
ଯାପିଲ ଧରଣୀ ହିତେ,
ପଡ଼ା ଖଣ୍ଡେ ସୁଧା ଉପହାର ଦେବା
କେହି ନ ବସ୍ତୁରେ ଚିତ୍ତେ ।
ଶୁକ୍ତିକା ଅନ୍ତରେ ମୌକ୍ତିକ ପରିସେ
ଉତ୍କଳେ ତୁମ୍ଭ ସମ୍ଭବ
ଅଜ୍ଞାନ ଉତ୍କଳ ନ ଜାଣିଲା ଲବେ
ତୁମ୍ଭ ପ୍ରତିଭା-ବିଭବ ।"

ଏହି ଉକ୍ତିଟି ବର୍ତ୍ତମାନ ଉତ୍କଳମଣିଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ ନୁହେ କି ?

## ଅନଙ୍ଗ ଭୀମ ଦେବ ଓ ପୁରୁଷୋତ୍ତମ ଦେବ—

ଏ ତ ଗଲା କବି ଓ ସାଧକଙ୍କ କଥା । କବି ଗୋପବନ୍ଧୁ ଉତ୍କଳର ଅମିତ ପରାକ୍ରମଶାଳୀ ଦୁଇଜଣ ନରପତିଙ୍କ ଯଶୋଗାନ କରି ମଧ୍ୟ ଦୁଇଟି କବିତା ରଚନା କରିଅଛନ୍ତି – 'ଅନଙ୍ଗଭୀମ ଦେବ' ଓ 'ପୁରୁଷୋତ୍ତମ ଦେବ' । ଜଣେ ଉତ୍କଳର ଭୌଗୋଳିକ ସୀମାକୁ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ କରିଥିଲେ ଏବଂ ଅନ୍ୟ ଜଣେ ସୁଦୂର ଦାକ୍ଷିଣାତ୍ୟକୁ ଯୁଦ୍ଧଯାତ୍ରା କରି ପ୍ରବଳ ପ୍ରତାପୀ କାଞ୍ଚିରାଜ୍ୟ ବିଜୟପୂର୍ବକ ରାଜକନ୍ୟା ପଦ୍ମାବତୀଙ୍କ ପାଣିଗ୍ରହଣ କରିଥିଲେ । କିନ୍ତୁ ସେହି ଜଗପତିମାନଙ୍କର ବିଶାଳ ଓ ବିସ୍ତୃତ ସାମ୍ରାଜ୍ୟ ଖଣ୍ଡ-ବିଖଣ୍ଡିତ, ପରପଦାନତ ଏବଂ ସମସ୍ତ କ୍ଷେତ୍ରରେ ପଶ୍ଚାତ୍‌ପଦ । ଦେଶପ୍ରାଣ ଗୋପବନ୍ଧୁ ସ୍ୱଦେଶର ଏ ଦୁର୍ଦ୍ଦଶାରେ ମର୍ମାହତ ଓ ବ୍ୟଥିତ । ଉତ୍କଳ ଅତୀତ ଯେ ଏପରି ଗୌରବାବହ ଥିଲା, ତାହା ସେ ବିଶ୍ୱାସ କରିପାରୁ ନାହାନ୍ତି । ସେହି ପ୍ରଥିତଯଶା ନରପତିମାନଙ୍କୁ ବର୍ତ୍ତମାନ ପୁଣି ଆହ୍ୱାନ କରୁଛନ୍ତି ସୁପ୍ତ ଓ ନିଶ୍ଚେଷ୍ଟ ଉତ୍କଳୀୟମାନଙ୍କ ହୃଦୟରେ ନୂତନ ତେଜ, ନୂତନ ବଳ ପ୍ରଦାନ କରିବା ନିମନ୍ତେ । ଖଣ୍ଡିତ ଉତ୍କଳର ଚିତ୍ର ସନ୍ଦର୍ଶନରେ ଗୋପବନ୍ଧୁ ଅନେକ ସମୟରେ ଶିଶୁତୁଲ୍ୟ କ୍ରନ୍ଦନ କରିଥିବା କଥା ପ୍ରତ୍ୟକ୍ଷଦର୍ଶୀମାନେ ବର୍ତ୍ତମାନ ସୁଦ୍ଧା ବର୍ଣ୍ଣନା କରିଥାଆନ୍ତି । ଅତୀତର ପ୍ରେରଣାରେ ବର୍ତ୍ତମାନ ଉଜ୍ଜ୍ୱଳ ହୋଇଥାଏ ବୋଲି ଇତିହାସ ସାକ୍ଷ୍ୟ ପ୍ରଦାନ କରେ । କିନ୍ତୁ ଉତ୍କଳୀୟ-ମାନଙ୍କଠାରେ ତା'ର ବ୍ୟତିକ୍ରମ ଲକ୍ଷ୍ୟ କରି ଆବେଗ-ଉଚ୍ଛ୍ୱସିତ ହୃଦୟରେ ସେ ଲେଖିଛନ୍ତି—

"ସ୍ମୃତି ବଳେ କୃତି ହୋଇ କେତେ ଜାତି
ଜଗତେ ଟେକନ୍ତି ମଥା
କର୍ମା ସେ ବିଧାନ ପୁରାଣ-ପ୍ରଧାନ—
ଉତ୍କଳ ପକ୍ଷେ ଅନ୍ୟଥା ।"

ଏହି ଉତ୍କଳୀୟ ନରପତିମାନଙ୍କର ଗୌରବ, ଜାତୀୟ ମମତା, ନିଷ୍ଠାପର ସାଧନା, ଦେଶପ୍ରୀତି ତଥା ପ୍ରଜାରଞ୍ଜକତା କବିପ୍ରାଣକୁ ବିଗଳିତ କରିଛି । ଉତ୍କଳର ସେହି ଅତୀତକୁ ଫେରିପାଇବା ନିମନ୍ତେ କବିମାନଙ୍କର ଅନନ୍ତ ଉତ୍କଣ୍ଠା ହିଁ ଏ ଉଭୟ କବିତାରେ ପ୍ରକାଶ ଲାଭ କରିଛି ।

## ଶମ୍ଭୁକର ବାଜପେୟୀ—

ବର୍ତ୍ତମାନ ଅନ୍ୟ ଦୁଇଟି କବିତାର କଥା ଦେଖାଯାଉ ଗୋଟିଏ ହେଉଛି—'ଶମ୍ଭୁକର ବାଜପେୟୀ' । ଶମ୍ଭୁକରଙ୍କର ସ୍ୱଦେଶପ୍ରୀତି ଅନନ୍ୟ ସାଧାରଣ । ରାଜା ନରସିଂହଙ୍କ 'ଦାନାଧିପ' ପଦବୀକୁ ପରିହାସ କରି ନିମ୍ନଲିଖିତ ଶ୍ଲୋକଟି ରଚନା କରିଥିବାରୁ ସେ ରାଜ୍ୟରୁ ବହିଷ୍କୃତ ହୋଇଥିଲେ । ତା' ହେଉଛି—

"ରାଜପ୍ରତିଗ୍ରହଂ ଘୋରଂ ମଧ୍ୱାସ୍ୱାଦ ବିଷୋପମଂ
ପୁତ୍ରମାଂସ ବରଂ ଭକ୍ଷଂ ନ ତୁ ରାଜ -ଅନୁଗ୍ରହଃ ।"

କିନ୍ତୁ ତାଙ୍କର ସ୍ୱଦେଶ ପ୍ରତି ମମତା ଏତେ ପ୍ରଗାଢ଼ ଥିଲା ଯେ, ଦୀର୍ଘ ୩୦ ବର୍ଷ ପରେ ସେ ସ୍ୱ ପୁତ୍ର ବିଦ୍ୟାକରଙ୍କୁ ନିଜ ଦେଶକୁ ପ୍ରେରଣ କରିଥିଲେ । ଏ ମହାତ୍ମାଙ୍କ ପରିଚୟ ପ୍ରଦାନ କରିବାକୁ ଯାଇ ନିଜେ ଗୋପବନ୍ଧୁ କବିତାଟିର ପାଦଟୀକାରେ ଲେଖିଛନ୍ତି—"ଶମ୍ଭୁକର ବାଜପେୟୀ କେଶରୀ ବଂଶୀୟ ନୃପତି କେଶରୀଙ୍କ ସମସାମୟିକ । ବୋଧହୁଏ ଏ ମହାତ୍ମା ଉତ୍କଳର ପ୍ରାଚୀନତମ ସ୍ମୃତିକାର । ସେ ଭରଦ୍ୱାଜ ଗୋତ୍ର ସମ୍ଭୂତ ଥିଲେ । ତାହାଙ୍କ ଗୌରବରେ ଉତ୍କଳୀୟ ଭରଦ୍ୱାଜ ଗୋତ୍ରୀୟ ବ୍ରାହ୍ମଣମାନେ ଏତେଦୂର ଗୌରବାନ୍ୱିତ ଯେ, ସେମାନେ ଆଜକାଲି 'ଶମ୍ଭୁକର ମିଶ୍ର' ବୋଲି ସାଧାରଣତଃ ପରିଚିତ ଏବଂ ଏହି ପରିଚୟଦ୍ୱାରା ସେମାନଙ୍କର ଗୋତ୍ର ଓ ଗରିମା ଜଣାପଡ଼େ । ବାଜପେୟାଖ୍ୟ ଯୋଗ ଅନୁଷ୍ଠାନ କରି ଶମ୍ଭୁକର 'ବାଜପେୟୀ' ଉପାଧି ଲାଭ କରିଥିଲେ । ସେ ତେରଖଣ୍ଡି ସ୍ମୃତିଶାସ୍ତ୍ର ପ୍ରଣୟନ କରିଥିଲେ । ଯଥା—ଅଗ୍ନ୍ୟାଧାନ ପଦ୍ଧତି, ଅଗ୍ନିହୋତ୍ର ହୋମପଦ୍ଧତି, ପ୍ରାୟଶ୍ଚିତ୍ତ ପଦ୍ଧତି, ଅନ୍ୱାରମ୍ଭଣୀୟ ପଦ୍ଧତି, ପ୍ରବାସ ପଦ୍ଧତି, ଇଷ୍ଟି ପଦ୍ଧତି, ଦେଶପୌର୍ଣ୍ଣମାସୀଷ୍ଟି, ପଶୁବନ୍ଧନ ପଦ୍ଧତି,

ବୈଶ୍ୱଦେବ ପଦ୍ଧତି, ବରୁଣ ପଦ୍ଧତି, ବାସ୍ତୁ ପ୍ରାସାଦ ପ୍ରତିଷ୍ଠା ପଦ୍ଧତି, ଶ୍ରାଦ୍ଧ ପଦ୍ଧତି, ଶୌଚଗୃଧାନ ପଦ୍ଧତି । ଏହା ଛଡ଼ା ତାହାଙ୍କ ପ୍ରାଣୀତ ସ୍ମାର୍ତ୍ତରତ୍ନାବଳୀ ପ୍ରଭୃତି କେତେ ଖଣ୍ଡ ଗ୍ରନ୍ଥ ଦୃଷ୍ଟିଗୋଚର ହୁଏ । ଅନର୍ଘ ରାଘବ ନାଟକ ଓ ତାହାର ଟୀକା ସଂସ୍କୃତ ସାହିତ୍ୟ କ୍ଷେତ୍ରରେ ଏହାଙ୍କର ଅନ୍ୟତମ ଅକ୍ଷୟ କୀର୍ତ୍ତି ।

ନୃତ୍ୟ କେଶରୀଙ୍କ ପିତା ନରସିଂହ କେଶରୀ ଏହାଙ୍କୁ ଗ୍ରାମ ଦାନ ଗ୍ରହଣ କରିବାକୁ ଅନୁରୋଧ କରିଥିଲେ, କିନ୍ତୁ ପ୍ରତିଗ୍ରହ ପତିତ କାର୍ଯ୍ୟ ବୋଲି ସେ ସେଥିରେ ପ୍ରତିଶ୍ରୁତ ନ ହେବାରୁ ରାଜାଦେଶମତେ ତାଙ୍କୁ ଦେଶତ୍ୟାଗ କରିବାକୁ ପଡ଼ିଥିଲା । ତହୁଁ ସପରିବାର ଚିରଜୀବନ କାଶୀବାସ କଲେ, କିନ୍ତୁ ୩୦ ବର୍ଷ ପରେ ଆପଣାର ସୁଯୋଗ୍ୟ ପୁତ୍ର ବିଦ୍ୟାଧରଙ୍କୁ ଦେଶ (ଓଡ଼ିଶା)କୁ ପଠାଇଥିଲେ । ବିଦ୍ୟାଧର ମଧ୍ୟ ଅସାଧାରଣ ପଣ୍ଡିତ ଥିଲେ । ଶମ୍ଭୁକର କାଶୀଧାମରେ ଦେହତ୍ୟାଗ କରିଥିଲେ ।" * ଶମ୍ଭୁକରଙ୍କର ସ୍ୱାଧୀନ ମନୋଭାବ, ନିର୍ଭୀକତା, ସ୍ୱଧର୍ମପାଳନରେ ଦୃଢ଼ତା, ତଥା ସ୍ୱଦେଶପ୍ରୀତି କବିପ୍ରାଣରେ ତରଙ୍ଗ ସୃଷ୍ଟି କରି ପାରିଥିଲା । ଶମ୍ଭୁକରଙ୍କର ଅମର କ୍ରିୟାକଳାପ ପ୍ରତି ଲକ୍ଷ୍ୟ କରି ସେ ଲେଖିଛନ୍ତି—

"ବିସ୍ମୃତି ତାମସ କରଇ ଗରାସ
ନର-କୀରତି-ନିଚୟ
କିନ୍ତୁ ସାଧୁ ଭାବ ପବିତ୍ର ପ୍ରଭାବ
ପାଏ ନାହିଁ କେବେ ଲୟ ।"

## ସ୍ୱର୍ଗୀୟ ପଣ୍ଡିତ ହରିହର ଦାଶଶର୍ମା –

ଶେଷରେ ଗୋପବନ୍ଧୁଙ୍କ ପ୍ରକୃତ ପ୍ରେରଣାର ଉତ୍ସ ପୂର୍ବକଥିତ ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା, ସମାଜ ସମ୍ପାଦକ, 'ନବ୍ୟପୁରାତନ

---

* ( ଏ ମହାଶୟଙ୍କ ସମ୍ପର୍କୀୟ ବିଶେଷ ଐତିହାସିକ ବିବରଣୀ ନିମନ୍ତେ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ଦ୍ୱାରା ଲିଖିତ Descriptive Catalogue of Sanskrit Manuscripts of Orissa State Museum Vol—1 (ଦ୍ରଷ୍ଟବ୍ୟ) ।

ରୁଚି ସମ୍ମିଳନକାଳ' ଅକାଳରେ ମୃତ୍ୟୁ ବରଣ କରିଥିବା ପଣ୍ଡିତ ହରିହର ଦାଶଙ୍କୁ ଉପଲକ୍ଷ୍ୟ କରି ଲେଖାଯାଇଛି ଏକ ପ୍ରାଣସ୍ପର୍ଶୀ କବିତା । ଏ ମହାଶୟଙ୍କ ଚିନ୍ତାଧାରା ଓ କର୍ମପ୍ରଣାଳୀ ରୂପଲାଭ କରିଥିଲା ଗୋପବନ୍ଧୁଙ୍କଠାରେ । ଏ ସମ୍ପର୍କରେ ଅଧିକ ଆଲୋଚନା ନିଷ୍ପ୍ରୟୋଜନ ।

ଉତ୍କଳର ଜଣେ ଜଣେ କୃତୀସନ୍ତାନଙ୍କ ମହାମହିମ ଜୀବନଚରିତ ପ୍ରତି-ଫଳିତ ବୋଲି ହିଁ ଯେ କବିତାଗୁଡ଼ିକ ଉଚ୍ଚକୋଟୀର ହୋଇପାରିଛି ତାହା ନୁହେଁ, କିନ୍ତୁ ଅନ୍ତଃସୌନ୍ଦର୍ଯ୍ୟ ପ୍ରକାଶଭଙ୍ଗୀ ତଥା କବିହୃଦୟର ଅନାବିଳ ସ୍ୱାଭାବିକ ପରିପ୍ରକାଶ ଏ ଗୁଡ଼ିକୁ ଉତ୍କଳ ସାହିତ୍ୟରେ ଉଚ୍ଚାସନର ଅଧିକାରୀ କରାଇ ପାରିଛି । କବିତାଗୁଡ଼ିକ ପାଠକଲେ ପାଠକ ଗୋପ-ମାନସର ପ୍ରକୃତ ସ୍ୱରୂପ ଉପଲବ୍ଧି କରିବା ନିମନ୍ତେ ସମର୍ଥ ହୋଇ-ପାରେ । ଅତୀତର ଗୌରବାନ୍ୱିତ କୀର୍ତ୍ତିଗୁଡ଼ିକ ଲେଖକଙ୍କ ମାନସପଟରେ ଉଦୟ ହେବାରୁ ସେ ଯେପରି ଦିବ୍ୟାନନ୍ଦ ଲାଭ କରିଛନ୍ତି, ବର୍ତ୍ତମାନ ସେଗୁଡ଼ିକର ମ୍ଳାନ ରୂପ ସନ୍ଦର୍ଶନ କରି ସେପରି ଅନ୍ତର୍ବେଦନା ଉପଲବ୍ଧି କରିଛନ୍ତି । କିନ୍ତୁ ସେ ବଡ଼ ଦବାଯା ନୁହନ୍ତି । 'ଆନନ୍ଦାଦ୍ଧି ଇମାନି ଭୂତାନି ଜାୟନ୍ତେ...' ପ୍ରଭୃତି ଉପନିଷଦବାଣୀରେ ତାଙ୍କର ବିଶ୍ୱାସ ଅଗାଧ । ପ୍ରାଚୀନ ଉପନିଷଦର ପୃଷ୍ଠଭୂମିରେ ତାର ଜୀବନ ସୌଧ ନିର୍ମିତ । ତେଣୁ କାଳଚକ୍ରର ଆବର୍ତ୍ତନରେ ଯେ ପୁଣି ଉତ୍କଳୀୟମାନେ ଜାଗ୍ରତ ହେବେ, ଉତ୍କଳର ପାଦପାବଳୀ ନୂତନ ରସଯୁକ୍ତ ଫଳବ୍ରଜରେ ଅବନତ ହେବ, ଉତ୍କଳର ସ୍ରୋତସ୍ୱିନୀ ନୂତନ ଜୀବନ ଲାଭ କରିବ, ଉତ୍କଳର ଅତୀତ ଲୁପ୍ତ ଗୌରବର ପୁନରୁଦ୍ଧାର ହେବ, ଏ ଆଶା ହୃଦୟରେ ପୋଷଣ କରି କବିତାଗୁଡ଼ିକର ଉପସଂହାର କରିଅଛନ୍ତି । ଉତ୍କଳୀୟମାନଙ୍କୁ 'ଉତ୍ତିଷ୍ଠତ ଜାଗ୍ରତ, ପ୍ରାପ୍ୟବରାନ୍ନିବୋଧତ' - ମନ୍ତ୍ରରେ ଅଭିମନ୍ତ୍ରିତ କରି ହୃତ ଗୌରବକୁ ପୁନରୁଦ୍ଧାର କରିବା ନିମନ୍ତେ ଏବଂ ସେମାନଙ୍କୁ ନବ ତେଜ, ନବ ପ୍ରେରଣା ଓ ନବ ସ୍ଫୂର୍ତ୍ତିରେ ଉଦ୍‌ଭାସିତ କରିବା ନିମନ୍ତେ ସେ ପୂର୍ବପୁରୁଷମାନଙ୍କୁ ଆହ୍ୱାନ କରିଛନ୍ତି । ପ୍ରାୟ ପ୍ରତ୍ୟେକ କବିତାର ଶେଷ ପଂକ୍ତିଗୁଡ଼ିକ ପାଠ କଲାବେଳେ ଗୋପବନ୍ଧୁଙ୍କର ସେହି ସୌମ୍ୟ, ଶାନ୍ତ ଓ ଗମ୍ଭୀର ରୂପ ପାଠକର ଚକ୍ଷୁ ସମକ୍ଷରେ ନାଚିଉଠେ, ଏକ ଅପୂର୍ବ

ସାହସରେ ସେ ଉନ୍ମତ୍ତ ହୋଇଉଠେ । 'ଅନଙ୍ଗଭୀମ ଦେବ' କବିତାରେ ସେ ଲେଖିଛନ୍ତି—

ଉଠ ହେ ଉତ୍କଳ କଡ଼ତା ଶିକୁଳି
ଫିଙ୍ଗି ଦୂରେ ବନ୍ଧନ
ଅମର ଭୁବନୁଁ ଶ୍ରୀ ଅନଙ୍ଗ ଦେବ
କରୁଛନ୍ତି ଆମନ୍ତ୍ରଣ ।
କର୍ଣ୍ଣ ଡେର ଶୁଣ ସେ ଦିବ୍ୟ ଆହ୍ୱାନ
ସ୍ମର ପୂର୍ବ ଯଶ ବାରେ
ପୂର୍ବ ବଂଶ ନାମ ଶ୍ରୀ ଅନଙ୍ଗ ଭୀମେ
ପୂଜ ଶୌର୍ଯ୍ୟ ଉପହାରେ ।

ସେହିପରି 'ସ୍ୱର୍ଗତ ପଣ୍ଡିତ ହରିହର ଦାଶଶର୍ମା' କବିତାର ଉପସଂହାରରେ ତାଙ୍କ ବଳିଷ୍ଠ ଲେଖମାରୁ ନିଃସୃତ ହୋଇଛି—

କଶୋ'ର ବୟସେ କେତେ ସ୍ୱାର୍ଥତ୍ୟାଗ
କରିଥିଲେ ଦେଶ ହିତେ
ଏବେ ଦେଶଦଶା ଆହେ କ୍ଷଣଜନ୍ମା
ନ ପଡ଼େ କି ଦିବ୍ୟ ଚିତ୍ତେ ?
ଉତ୍କଳ ମଣ୍ଡଳେ ନବ୍ୟ ସଭ୍ୟ ଦଳେ
ସର୍ବେ ଆଜ ସ୍ୱାର୍ଥପର,
ଆସ ହରିହର ପଣ୍ଡିତ ପ୍ରବର
ସମାଜ ସଂସ୍କାର କର ।

## ବିଭୁପ୍ରୀତି, ଦେଶପ୍ରୀତି ଓ ମାନବ ପ୍ରୀତି

ପୂର୍ବରୁ କୁହାଯାଇଛି ଯେ, ଏହି ଆଲୋଚ୍ୟ କବିତା କେତୋଟି ଗୋପବନ୍ଧୁ ୧୯୦୬-୭ ମସିହାରେ ରଚନା କରି ପ୍ରକାଶ କରିଅଛନ୍ତି । ସେତେବେଳକୁ ସେ ସ୍ୱୀୟ ଭବିଷ୍ୟତ କର୍ମପନ୍ଥା ନିର୍ଦ୍ଧାରିତ କରିପାରି ଥିଲେ ହେଁ ଉତ୍କଳମାତାର ସେବା କରିବା ନିମନ୍ତେ ପ୍ରତ୍ୟକ୍ଷ ଭାବରେ କୌଣସି ପଦକ୍ଷେପ ଗ୍ରହଣ କରି ନାହାନ୍ତି । କିନ୍ତୁ ପରବର୍ତ୍ତୀ କାଳରେ ଗୋପବନ୍ଧୁଙ୍କ ମହାପ୍ରାଣ ବ୍ୟକ୍ତିତ୍ୱର ଯେଉଁ ସମ୍ମୋହିନୀ ଶକ୍ତି ଉତ୍କଳୀୟ

ଜନଜୀବନକୁ ନିୟନ୍ତ୍ରିତ କରିଥିଲା, ସେ ଗୁଡ଼ିକ ଏହି କବିତା ସମୂହ ମଧ୍ୟରେ ପୂର୍ବରୁ କିପରି ବିକାଶଲାଭ କରିଆସିଥିଲା, ତାହା ଦେଖିବାର କଥା ।

ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ତିନୋଟି ଦିଗ ହେଲା—ଈଶ୍ୱରପ୍ରୀତି, ଦେଶପ୍ରୀତି ଓ ମାନବପ୍ରୀତି । ଆବାଲ୍ୟରୁ ଗୋପବନ୍ଧୁ ଥିଲେ ଭଗବତ୍ ବିଶ୍ୱାସୀ । ବିଶ୍ୱପିତା କରୁଣାମୟଙ୍କଠାରେ ତାଙ୍କର ପ୍ରଗାଢ଼ ଭକ୍ତି । ଭଗବତ ପାରାୟଣ କରିବାରୁ ହିଁ ତାଙ୍କର ଏ ବିଶ୍ୱାସର ପରିଚୟ ପାଠକ ଲାଭ କରିପାରିବ । ଭଗବତ୍-ଉପାସନାର ଉପାଦେୟତା ସମ୍ପର୍କରେ ଗୋପବନ୍ଧୁ ଥରେ ଲେଖିଥିଲେ, "ଘଣ୍ଟାରେ ଦୈନିକ ଚାବି ଦେଲେ ତାହା ନିୟମିତ ରୂପେ ଚଳେ । ସେହିପରି ଆମ୍ଭମାନଙ୍କର ଆଧ୍ୟାତ୍ମିକ ଜୀବନ ଘଟିକା ପ୍ରତ୍ୟହ ଚାବି ଲୋଡ଼େ । ସେହି ଚାବିର ନାମ ଉପାସନା । ପୂର୍ବ ହିନ୍ଦୁମାନେ ଆଧ୍ୟାତ୍ମିକ ଜୀବନ ଘଟିକାରେ ପ୍ରତ୍ୟହ ତିନିବାର ଦମ୍ ଦେଉଥିଲେ ଏବଂ ପ୍ରତିବାର ଶହେ ଆଠଥର କରି ଚାବି ମୋଡ଼ୁଥିଲେ । ତେଣୁ ସମସ୍ତ ଦିନ ଯନ୍ତ୍ରଟି ସୁନ୍ଦରରୂପେ ଚଳି ଘଣ୍ଟା କାଳ ପର୍ଯ୍ୟନ୍ତ ସୁନ୍ଦର ଶୃଙ୍ଖଳାରେ ରହିଥିଲା । ଏହି ଘଡ଼ିର ଗୋଳମାଳରେ ବ୍ୟତିକ୍ରମ ଘଟିଲେ ସମସ୍ତ ଜୀବନରେ ଏକ ବିଷମ ବିଭ୍ରାଟ ଘଟିବ । କିନ୍ତୁ ନିୟମିତ ଚାବିଦିଅ, ଯଥାକାଳରେ ଏଥିର ତତ୍ତ୍ୱ ନିଅ, ଏହାର ଗତି ଅକ୍ଷୁଣ୍ଣ ଥିବ ଏବଂ ତୁମ୍ଭେ ପୂର୍ବରୁ ଘଡ଼ି ଘଟିକାପରି ଏଥିରେ କୌଣସି ନିର୍ଦ୍ଦିଷ୍ଟ ସମୟ ପାଇଁ ଆଲାର୍ମ ଦେଇ ନ ଥିଲେହେଁ ଏହା ଯଥା ସମୟରେ ଘଣ୍ଟା ମର୍ମଭେଦୀ ନାଦରେ ବାଜିବ, ତୁମ୍ଭଙ୍କୁ ଜଣାଇବ ଏବଂ କାର୍ଯ୍ୟରେ ଲଗାଇବ । ଏକା ତୁମ୍ଭଙ୍କୁ ନୁହେ, ତୁମ୍ଭର ଏହି ଆଲାର୍ମ ଧ୍ୱନି ଅନ୍ୟକୁ ଜଗାଇବ ଏବଂ ଅନ୍ୟ ହୃଦୟରେ ମଧ୍ୟ ଅନୁରୂପ ଆଲାର୍ମ ବଜାଇବ । ଏହା ଏହାର ଧର୍ମ ।"*

ଏହି ପ୍ରଗାଢ଼ ଈଶ୍ୱରବିଶ୍ୱାସ, ଈଶ୍ୱରପ୍ରୀତି, ଆଶାବାଦ ତଥା ଭାଗ୍ୟବାଦ ଆଲୋଚ୍ୟ କବିତାଗୁଡ଼ିକରେ ପରିପ୍ରକାଶ ଲାଭ କରି ପାଠକର ମନୋ-ରାଜ୍ୟରେ ଏକ ପ୍ରଶାନ୍ତ ବାତାବରଣ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ତାକୁ ଏକ ନବୀନ ପ୍ରେରଣା ଓ ପ୍ରସ୍ପନ୍ଦନାରେ ପ୍ରାଣୋଦିତ କରେ । ସେ ଯେତେବେଳେ—

* ମୁକୁର ୨ୟ ଭାଗ ୩ୟ ସଂଖ୍ୟା ଦ୍ରଷ୍ଟବ୍ୟ ।

ଏବେ ମାଳାଚଳେ ରହିଛି ନଷ୍ଟଳେ
ଦେଖି ଏ ଦଶା କପରି
ଗୁଡ଼ଣ ଆହ୍ୱାନ ଆସ ଆର୍ତ୍ତିହାଣ
ଚଳାଅ ଉତ୍କଳ-ତରୀ ।
କିମ୍ବା
ନ ରହିବ କେହି ଚିର ଦୁଃଖ ସହି
ବିଧିର ସୃଷ୍ଟି ବିଧାନ
ବାଜୁ ଛେବେ ଡ଼ଙ୍କା ଭୁଟୁ ହୃଦୁଁ ଶଙ୍କା
ଜାଗୁ ଉତ୍କଳ ପରାଣ ।

ପ୍ରଭୃତି ପାଠକଲେ ସେତେବେଳେ ସେ କବିପ୍ରାଣ ସହ ନିଜ ପ୍ରାଣକୁ ମିଳାଇ ଦେଇ ଏକ ଦିବ୍ୟ ଉନ୍ମାଦନାରେ ଉନ୍ମତ୍ତ ହୋଇ ଉଠେ । ପ୍ରାଚ୍ୟ ପରମ୍ପରାର ପୃଷ୍ଠପୋଷକ ଗୋପବନ୍ଧୁ ଉତ୍କଳର ଅଧଃପତନ ନିମିତ୍ତ ଉତ୍କଳୀୟ ଜନତାକୁ କୌଣସି ସ୍ଥାନରେ ଦାୟୀ ନ କରି ଭାଗ୍ୟଚକ୍ରର ଆବର୍ତ୍ତନର ଏହା ଏକ ସ୍ୱାଭାବିକ କ୍ରିୟା ବୋଲି ହିଁ ଉଲ୍ଲେଖ କରିଅଛନ୍ତି ।

ଗୋପବନ୍ଧୁଙ୍କ ଦେଶପ୍ରୀତି ସମ୍ପର୍କରେ ବିଭିନ୍ନ ସମୟରେ ବହୁ ଆଲୋଚନା ହୋଇଯାଇଛି । ଯେଉଁ ମହାପୁରୁଷଙ୍କ ଲେଖନୀରୁ ପରବର୍ତ୍ତୀ କାଳରେ ସୃଷ୍ଟି ହୋଇଛି—ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ସ୍ୱରାଜ୍ୟର ପଥେ ଅଛି ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ସେ ଜୀବନର ପ୍ରଭାତରେ ଦେଶର ଅତୀତ ଗୌରବରେ ଉତ୍‌ଫୁଲ୍ଲ ହୋଇ ବିଭିନ୍ନ ବୀରଙ୍କୁ ନେଇ କବିତା ରଚନା କରିବା ସମ୍ପୂର୍ଣ୍ଣ ସ୍ୱାଭାବିକ ।

ଶେଷରେ ମାନବପ୍ରୀତି ବିଷୟ ଦେଖାଯାଉ । ଗୋପବନ୍ଧୁ ମର୍ମେ ମର୍ମେ ଉପଲବ୍ଧି କରି ପାରିଥିଲେ ଯେ ମାନବ ସେବା ହିଁ ଭଗବତ

ସେବା । ତାଙ୍କର ସୀମିତ ପାର୍ଥିବ ଜୀବନ ଏହି ନରନାରାୟଣର ସେବାରେ ହିଁ ବ୍ୟୟିତ ହୋଇଛି । ଏହି ଜୀବନମୂଳକ କବିତାଗୁଡ଼ିକ ଗୋପବନ୍ଧୁଙ୍କ ମାନବପ୍ରୀତିର ପ୍ରକୃଷ୍ଟ ନିଦର୍ଶନ । ମାନବ 'ଅମୃତସ୍ୟ ପୁତ୍ରାଃ'' । ଭଗବାନଙ୍କର କୌଣସି ଏକ ଆକାଂକ୍ଷାକୁ ରୂପାୟିତ କରିବା ନିମନ୍ତେ ଜୀବର ନରଶରୀର ଧାରଣ । ଯେତେ କ୍ଷୁଦ୍ର ହେଲେହେଁ ତାର ମର୍ତ୍ତ୍ୟ କଳେବର ମାଟିରେ ମିଶିବା ନିମିତ୍ତ କେବଳ ସୃଷ୍ଟି ନୁହେ । ପ୍ରତ୍ୟେକ ବ୍ୟକ୍ତିର ଜୀବନରେ କିଛି ନା କିଛି ମହତ୍ତ୍ୱ ନିହିତ । ତାକୁ ଦେଖି ଦେଖାଇ ପାରିଲେ ହେଲା । ଏଥିନିମିତ୍ତ ଯେଉଁ ସୂକ୍ଷ୍ମ ଓ ଦିବ୍ୟ ଦୃଷ୍ଟି ଶକ୍ତିର ଆବଶ୍ୟକତା ରହିଛି ତାହା ଗୋପବନ୍ଧୁଙ୍କଠାରେ ଥିଲା । ବିଶେଷତଃ ମହାପୁରୁଷ ବା ବିଭିନ୍ନ ପ୍ରତିଭାସଂପନ୍ନ ବୀରମାନଙ୍କ ମହତ୍ତ୍ୱ ହିଁ ଇତର ବ୍ୟକ୍ତିମାନଙ୍କର ଜୀବନ-ସରଣୀକୁ ପୁଷ୍ଟିତ କରିବା ନିମନ୍ତେ ସାହାଯ୍ୟ କରିଥାଏ । ମନୁଷ୍ୟ ସଂସାରର ଜଟିଳ କ୍ଷେତ୍ରରେ ଦିଗଭ୍ରଷ୍ଟ ପଥିକ ଭୁଲି ଇତସ୍ତତଃ ହେଉଥିଲାବେଳେ ଏମାନଙ୍କର ଆଦର୍ଶ ତାକୁ ପ୍ରକୃତ ପଥର ସନ୍ଧାନ ଦେଇଥାଏ । ସତ୍ୟପ୍ରିୟ ଯୁଧିଷ୍ଠିର କହିଥିଲେ –

ନାନା ମୁନୀନାଂ ମତୟାଶ୍ଚ ଭିନ୍ନାଃ
ନୈକ ମୁନୀ ଯସ୍ୟ ମତଂ ପ୍ରମାଣଂ;
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ
ମହାଜନୋ ଯେନ ଗତଃ ସ ପନ୍ଥାଃ ।।

ସେହିଭଳି ଗୋପବନ୍ଧୁ ଉତ୍କଳୀୟ ମହାପୁରୁଷମାନଙ୍କର ସରଣୀ ଅନୁସରଣ କରି ଅନ୍ୟମାନଙ୍କୁ ତାହା ଅବଲମ୍ବନ କରିବା ନିମନ୍ତେ ନିର୍ଦ୍ଦେଶ ଦେଇଥିଲେ । ଏହିମହାମାନବପ୍ରୀତିହିଁ ଆଜି ଗୋପବନ୍ଧୁଙ୍କୁ ଉତ୍କଳମଣି ରୂପେ ଉତ୍କଳର ପୁରପଲ୍ଲୀରେ ସୁପରିଚିତ କରାଇ ପାରିଛି । ସେ ବୀରପୂଜାର ମହତ୍ତ୍ୱ ଉପଲବ୍ଧି କରି ପାରିଥିଲେ ବୋଲି ଦେଶର ନେତୃତ୍ୱ ନେବା ନିମନ୍ତେ ସମର୍ଥ ହୋଇ ପାରିଥିଲେ । ଯେଉଁ ଜାତି ବୀରପୂଜା କରିବାରେ ଯେତେ ଆଗ୍ରହୀ, ସେ ଜାତି ସେତେ ଉନ୍ନତ । ପୂଜ୍ୟ ପୂଜାର ବ୍ୟତିକ୍ରମ ଫଳରେ ଆଜି ଓଡ଼ିଆ ଜାତିର ଏ ଦୁର୍ଦ୍ଦଶା । ଭାରତୀୟ ପରମ୍ପରା ଏହି ପୂଜ୍ୟପୂଜାର ଯୁଗଯୁଗ ଧରି ପ୍ରଚାର କରିଆସିଛି । ଏହି କାରଣରୁ ହିଁ ଆଜି ଭାରତୀୟ ସଭ୍ୟତା ଓ ସଂସ୍କୃତି ବିଶ୍ୱବିଶ୍ରୁତ ।

ଗୋପବନ୍ଧୁ ଏହା ଉପଲବ୍ଧି କରି ଲେଖିଛନ୍ତି—'କାଷ୍ଠ ପାଷାଣ ଯଥାର୍ଥରେ ମନୁଷ୍ୟର ସ୍ମୃତି ରଖି ନ ପାରେ । ମାନବର ସ୍ମୃତି ମାନବ । ପିତାର ସ୍ମୃତି ପୁତ୍ର—ଗୁରୁଙ୍କ ସ୍ମୃତି ଶିଷ୍ୟ । ଭାରତରେ ଏହି ସ୍ମୃତି-ବିଧାନ ପରମ୍ପରା ଆବାହମାନ କାଳରୁ ଚାଲି ଆସିଛି ବୋଲି ଭାରତୀୟ ଆର୍ଯ୍ୟ ଆଦର୍ଶର ପିଣ୍ଡ ପ୍ରକୃତିର ଅତି କ୍ଷୀଣ ଛାୟା ହେଲେ ମଧ୍ୟ ଅଦ୍ୟାପି କୌଣସି କୌଣସିଠାରେ ଦେଖିବାକୁ ମିଳୁଅଛି ।" ଏହି ପୂଜ୍ୟପୂଜାର ପୁନଃପ୍ରଚାର ନିମନ୍ତେ ହିଁ ଗୋପବନ୍ଧୁ ଯୁବାବସ୍ଥାରେ ଏହି କବିତାଗୁଡ଼ିକ ରଚନା କରିଥିଲେ ।

## ସମସାମୟିକ ସାହିତ୍ୟିକମାନଙ୍କ ଉପରେ ପ୍ରଭାବ

ସର୍ବୋପରି ଗୋପବନ୍ଧୁଙ୍କ ଏହି ପ୍ରଚେଷ୍ଟା ତତ୍କାଳୀନ ଅନ୍ୟାନ୍ୟ ଲେଖକବୃନ୍ଦଙ୍କୁ ପ୍ରତିଭା ପୂଜାର ଆଦର୍ଶରେ ଅନୁପ୍ରାଣିତ କରି ଜୀବନୀ ଓ ଜୀବନୀମୂଳକ କବିତା ରଚନାରେ ନିଯୁକ୍ତ କରିପାରିଥିଲା । ବୋଧହୁଏ ଓଡ଼ିଆ ସାହିତ୍ୟରେ ଗୋପବନ୍ଧୁ ହିଁ ଏହି ଜୀବନୀମୂଳକ କବିତାର ପ୍ରଥମ ଶ୍ରେଷ୍ଠ ଶିଳ୍ପୀ । ଏ ପ୍ରକାର କବିତାର ଆଦର୍ଶରେ ସେ ସମୟରେ ଅନ୍ୟାନ୍ୟ କେତେକ ଲେଖକ ପଦ୍ୟ ଓ ଗଦ୍ୟରେ ବିଭିନ୍ନ ଉତ୍କଳୀୟ ଓ ଭାରତୀୟ ବୀରପୁଂଗବମାନଙ୍କର ଜୀବନୀ ରଚନା କରିବା ନିମନ୍ତେ ପ୍ରଚେଷ୍ଟା କରିଯାଇଛନ୍ତି । ସମସାମୟିକ ଭାବରେ ୬ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଲେଖିଛନ୍ତି 'କବିସୂର୍ଯ୍ୟ ବଳଦେବ ରଥ', 'ପ୍ରତାପରୁଦ୍ର' 'ସ୍ୱର୍ଗୀୟ ରାମଚନ୍ଦ୍ର ଦାଶ' ପ୍ରଭୃତି କବିତା, ଅନନ୍ତ ରଥ ଲେଖିଛନ୍ତି ତଥାପି 'ଗଦାଧର ରାଜଗୁରୁ', ପଦ୍ମଚରଣ ପଟ୍ଟନାୟକ 'ଚୈତନ୍ୟ ଦେବ' ପ୍ରଭୃତି । ଏଗୁଡ଼ିକ ପାଠ କଲେ ଗୋପବନ୍ଧୁଙ୍କ ପ୍ରଭାବ ଏମାନଙ୍କର ଭାଷା, ଭାବ ଓ ଶୈଳୀ ଉପରେ ଯେ କେତେ ପରିମାଣରେ ପଡ଼ିଛି, ତାହା ସ୍ପଷ୍ଟ ହେବ । ଉଦାହରଣ ସ୍ୱରୂପ—

ପଣ୍ଡିତ ମଣ୍ଡଳେ ନିରକ୍ଷର ଦଳେ
ସର୍ବତ୍ର ସମ ଆଦର
ତେଣୁ ଏକ ସୂତ୍ରେ ଆଜି ସେହି ମନ୍ତ୍ରେ
ବନ୍ଧା ବେନିଙ୍କ ଅନ୍ତର ।
ଯାବତ ଏ ଗୀତ ହେଉଥିବ ଗୀତ
ଅମର କଣ୍ଠ ଭୂମର

ନାମ ସଙ୍ଗେ ଭଣି ହୃଦ ଯନ୍ତ୍ରେ ମିଶି
ରହିଥିବ ନିରନ୍ତର ।
( କବିସୂର୍ଯ୍ୟ ବଳଦେବ ରଥ—ମୁକୁର ୧।୮ ସଂଖ୍ୟା )

କିମ୍ବା—

କର ଆଶୀର୍ବାଦ ରହୁ ସାଧୁବାଦ
ପୂର୍ବବତ ଉତ୍କଳର
ଆହେ ଗଦାଧର ଶ୍ରୀସୁର ଭୂସୁର
ପଦେ ତବ ଭିକ୍ଷା ମୋର ।
ନାହିଁ ଅସୁବିଧା ନାହିଁ ବିଘ୍ନ ବାଧା
ବହୁ ପୁସ୍ତକ ପ୍ରଣୟରେ
ଜ୍ଞାନ ବଳେ ବଳୀ ହୋଇ ଏ ଉତ୍କଳୀ
ରଖନ୍ତୁ କୀର୍ତ୍ତି ରସାରେ ।
( ଗଦାଧର ରାଜଗୁରୁ )

ଏମାନଙ୍କ ବ୍ୟତୀତ ୰ ରାମକୃଷ୍ଣ ମିଶ୍ରଙ୍କ ଜୟସିଂହ, ରାଧାନାମା, ଉପେନ୍ଦ୍ର ଭଞ୍ଜ ପ୍ରଭୃତି କବିତା, ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ସାମନ୍ତ-ଚନ୍ଦ୍ରଶେଖର' ପ୍ରବନ୍ଧ, ଆନନ୍ଦ ଚନ୍ଦ୍ର ପଣ୍ଡା ଓ ବାସୁଦେବ ମହାପାତ୍ରଙ୍କ ବିଭିନ୍ନ ରାଜପୁତ ବୀରମାନଙ୍କ ସମ୍ପର୍କୀୟ ଗଳ୍ପ ଓ ପ୍ରବନ୍ଧ ଏବଂ ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ମିଶ୍ରଙ୍କ ରଚିତ ସାମନ୍ତ ଚନ୍ଦ୍ର ଶେଖରଙ୍କ ଜୀବନୀ ପ୍ରଭୃତି ଦେଖିଲେ ମନେହୁଏ, ଗୋପବନ୍ଧୁଙ୍କ ସରଣୀର ଅନୁସରଣ କରି ହିଁ ଏମାନେ ଏଗୁଡ଼ିକ ରଚନା କରି ଯାଇଛନ୍ତି ।

ସୁତରାଂ ସଂଖ୍ୟାରେ ନ'ଟି ହେଲେ ହେଁ ଏବଂ କବି ଗୋପବନ୍ଧୁଙ୍କ ଯୁବାବସ୍ଥାରେ ଏଗୁଡ଼ିକ ଉତ୍କୀର୍ଣ୍ଣ ହୋଇଥିଲେ ହେଁ, ଏ ଜୀବନମୂଳକ କବିତାଗୁଡ଼ିକର ମୂଳ୍ୟ ଯେ ଓଡ଼ିଆ ଭାଷା, ସାହିତ୍ୟ ତଥା ଓଡ଼ିଆ ଜାତିର ବିଶିଷ୍ଟ ସମ୍ପଦ, ଏଥିରେ ସନ୍ଦେହର ଅବକାଶ ନାହିଁ ।



# ଦରଦୀ କବି ଗୋପବନ୍ଧୁ

ପଣ୍ଡିତ ନୀଳମଣି ମିଶ୍ର, ସାହିତ୍ୟାଚାର୍ଯ୍ୟ, ରାଷ୍ଟ୍ରଭାଷାରତ୍ନ

[ ଆବାଲ୍ୟରୁ ପିତୃମାତୃହୀନ; ଜୀବନରେ ଦାରିଦ୍ର୍ୟର କଶାଘାତ ସହି ନାନା ଘାତପ୍ରତିଘାତ ମଧ୍ୟ ଦେଇ ଆସି ଶ୍ରୀଯୁକ୍ତ ନୀଳମଣି ବାବୁ ୧୯୫୭ ମସିହାରୁ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ ସହକାରୀ ରୂପେ ନିଯୁକ୍ତ ହୋଇ ବର୍ତ୍ତମାନ ସେ ଗବେଷଣା ରତ । ତାଙ୍କର ବହୁ ଗବେଷଣାମୂଳକ ପ୍ରବନ୍ଧ ଭାରତର ବିଭିନ୍ନ ଭାଷାର ପତ୍ର ପତ୍ରିକାରେ ପ୍ରକାଶ ପାଇଛି ଏବଂ "ଓଡ଼ିଆ ଗ୍ରାମ ସାହିତ୍ୟ", "ଓଡ଼ିଶାରେ ସଂସ୍କୃତ ଲେଖା ଓ ଲେଖକ", "ଗୋପୀଚନ୍ଦନ", "ଛଅପୋଇ" ଇତ୍ୟାଦି ଗ୍ରନ୍ଥ ସମାଲୋଚକ ମହଲରେ ଉଚ୍ଚ ପ୍ରଶଂସିତ ହୋଇଛି । ଗଣକବି ଗୋପବନ୍ଧୁଙ୍କର କବିତାର ଛନ୍ଦେ ଛନ୍ଦେ ଦୀନଦରିଦ୍ର, ଦୁଃଖିରଙ୍କି, ନିସ୍ୱ ନିଃସହାୟଙ୍କ ପ୍ରତି ତାଙ୍କର ସହାନୁଭୂତି ଓ ସମବେଦନା ଯେଭଳି ଆତ୍ମପ୍ରକାଶ କରିଛି, ଲେଖକଙ୍କର ଆଲୋଚ୍ୟ ପ୍ରବନ୍ଧରେ ତାର ଏକ ନିଖୁଣ ଚିତ୍ରଣ ଦେଖିବାକୁ ମିଳେ ।—ସଂ ]

"ନ ହୁଅ ନିରଶ ନ ହୁଅ ଦୁଃଖିତ ।
ଉତ୍କଳର ଦେଖି ଦୁଃଖମୟ ଚିତ୍ର ।।
ସୁଖ ଦୁଃଖ ଚକ୍ର ଘୂରେ ନିରନ୍ତର ।
ଏକ ପରେ ଆନ ଆସିବ ମୁକର ।।
ଆଲୁଅ ଅନ୍ଧାର ଖେଳେ ଲୁଚକାଳି ।
ଆସିବ ଆଲୁଅ ପଡ଼ିଲଣି ପାଳି ।।
ପଡ଼ିଅଛି ଏବେ ସେ ମାହେନ୍ଦ୍ର ବେଳା ।
କରିନାହିଁ ଭାଇ! ଏତେବେଳେ ହେଳା ।।"

ରେଲ୍‌ପଥରେ ହଜାରିବାଗ ଉଦ୍ଦେଶ୍ୟରେ ଶାସକଦଳ ତାଙ୍କୁ ବନ୍ଦୀ ଅବସ୍ଥାରେ ନେଉଥିବାବେଳେ ଯେଉଁ ଯେଉଁ ସ୍ଥାନରେ ତାଙ୍କ ରେଲଗାଡ଼ି ଅଟକୁଛି, ସେହି ସେହି ସ୍ଥାନର ପୂର୍ବ ସ୍ମୃତି ସବୁ ତାଙ୍କର ମନରେ ଉଙ୍କି ଉଠିଛି । ବନ୍ୟାକ୍ଳିଷ୍ଟ ଜେନାପୁର ଅଞ୍ଚଳ କଥା ମନେ ପଡ଼ିବା ସଙ୍ଗେ ସଙ୍ଗେ ତାଙ୍କ କୋମଳ ପ୍ରାଣରେ ଦାରୁଣ ଆଘାତ ଲଗିଛି ।

"ପହଞ୍ଚିଛି ରେଲ ଜେନାପୁରେ ଆସି ।
ପରିଚିତ ମୋର ଜେନାପୁରବାସୀ ॥
ଆସିଥିଲି ଥରେ ଦୁଇବର୍ଷ ତଳେ ।
ବୁଡ଼ିଥିଲା ଜେନାପୁର ଯେବେ ଜଳେ ॥
କେତେ ଗ୍ରାମ କେତେ ଘର କେତେ ଧନ ।
ହୋଇଥିଲା ବନ୍ୟା ବିତ୍ପାତେ ଉଚ୍ଛନ୍ନ ॥
କେତେ ଗ୍ରାମ ଦାଣ୍ଡେ ଗୁଳୁଥିଲା ଘୁଅ ।
କେତେ ନୟନରୁ ବହୁଥିଲା ଲୁହ ॥"

କେବଳ ସେତିକ ନୁହେଁ, ଜେନାପୁର ଅଞ୍ଚଳର ବନ୍ୟାପାଇଁ ଖରସ୍ରୋତା ଓ ବ୍ରାହ୍ମଣୀ ନଦୀ ଦ୍ୱୟଙ୍କୁ ଦାୟୀକରି ଭବିଷ୍ୟତରେ ଆଉ ଯେପରି ସେହି କରାଳ ବନ୍ୟାର ପୁନରାବୃତ୍ତି ନହୁଏ, ସେଥିଲାଗି ବିନୀତ ସ୍ୱରରେ ନିବେଦନ ଜଣାଇଛନ୍ତି ।

"ଗୁଳିଲା ପରି ଏ ନିଦାରୁଣ ଗାଡ଼ି ।
ଜେନାପୁର ସତେ ଅଇଲା କି ଛାଡ଼ି ।
ଏହି ଯେ ପଡ଼ିଲା ଜେନାପୁର ସେତୁ ।
ବ୍ରାହ୍ମଣୀ ବିଶାଳ ବକ୍ଷେ ଧୂମକେତୁ ॥
ଥାଅ ଗୋ ବ୍ରାହ୍ମଣୀ ! ପୀନ ପୟୋଧରା ।
ହେଉ ତୁମ୍ଭ ଯୋଗେ ଉତ୍କଳ ଉର୍ବରା ॥
ଖରସ୍ରୋତା ସଙ୍ଗେ କର ତୁ ମନ୍ତ୍ରଣା ।
ତଟବାସୀ ଜନେ ନ ଦିଅ ଯନ୍ତ୍ରଣା ।
କେନ୍ଦ୍ରାପଡ଼ା ଯାଜପୁର ପ୍ରଜାକୁଳ
କର ନାହିଁ ବନ୍ୟା ଉତ୍ପାତେ ବ୍ୟାକୁଳ ।"

କେବଳ ଜେନାପୁର କାହିଁକି, ଭଦ୍ରକ ନିକଟସ୍ଥ କନିକା ଅଞ୍ଚଳର ପ୍ରଜାଙ୍କ ଦୁଃଖ କଷ୍ଟ, ଚନ୍ଦ୍ରାକର ଉତ୍କଳମଣି ଆତ୍ମହରା ହୋଇ ପଡ଼ିଥିଲେ । କନିକାର ତତ୍କାଳୀନ ଶାସକଙ୍କ ପାଶବିକ ଅତ୍ୟାଚାରରେ ପ୍ରଜାକୁଳ ତାଙ୍କର ନ୍ୟାଯ୍ୟ ଦାବି ପାଇ ପାରୁ ନ ଥିଲେ କିମ୍ବା ମଣିଷ ଭଳି ବଞ୍ଚି ରହିବାର ସୁଯୋଗ ପାଇ ପାରୁ ନ ଥିଲେ । ଯେତେବେଳେ ପ୍ରଜାକୁଳର ସମବେତ ସ୍ୱର ଶାସକର ବିରୁଦ୍ଧରେ ଉଠୁଥିଲା, ନିର୍ଦ୍ଦୟ କନିକା ଶାସକ ଇଂରେଜ ବଣିକଙ୍କ ବନ୍ଧୁକ ମୂନରେ ପ୍ରଜାମାନଙ୍କ ସଙ୍ଗଠିତ ଶକ୍ତିକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦେଉଥିଲେ । ପ୍ରଜାବନ୍ଧୁ ଉତ୍କଳମଣି କନିକାବାସୀଙ୍କ ନିର୍ଯ୍ୟାତନାରେ ବିଚଳିତ ହୋଇ ପଡ଼ିଥିଲେ । ତେଣୁ ତାଙ୍କ କବିତାରେ ଦୁଃଖିନୀ କନିକା ଏକ ବିଶେଷ ସ୍ଥାନ ଅଧିକାର କରିଛି ।

"କନିକା ଯିବାକୁ ବାଟ ଭଦରଖ ।
ଥାନ୍ତା ଯେବେ ମୋର ବିହଙ୍ଗମ ପକ୍ଷ ॥
ଉଡ଼ିଯାଇ ଦେଖି ଆସିଥାନ୍ତି ଥରେ ।
କନିକା ପ୍ରଜାଙ୍କୁ ଶିକ୍ତ ଭଙ୍ଗାଘରେ ।
ଆଉଁସି ପିଠିରୁ ପ୍ରହାର ପରାସ ।
ହରି ପାଇଥାନ୍ତି ପରାଣେ ଆଶ୍ୱାସ ॥
× + ×
ଏହି ଯେ କନିକା ଆସିଛି ମୁଁ ଉଡ଼ି ।
ନିଦାରୁଣ ଦୃଶ୍ୟ ଯାଏ ଚେତା ବୁଡ଼ି ॥
ଯମଦୂତ ପ୍ରାୟେ କ୍ରୂର ରାଜଥାଟ ।
ବୁଲନ୍ତି ଚୌଦିଗେ ଗ୍ରାମ ହାଟ ବାଟ ॥
× × ×
କୁଳାଙ୍ଗନା ପରେ ଘୋର ଆକ୍ରମଣ ।
ବିକଳେ ବିଧୁରା କରଇ ରୋଦନ ॥
ଶୁଭେ ଚଉଦିଗେ କାତର ଚିତ୍କାର ।
ପଳାଏ ପରଜା ଛାଡ଼ି ଘରଦ୍ୱାର ॥
+ + +
ମହା ବିପର୍ଯ୍ୟୟ ମହା ବିଭୀଷିକା ।
କମ୍ପେ ମହାତଙ୍କେ ଦୁଃଖିନୀ କନିକା ।

ବନ୍ଦୀ ଜୀବନରେ ଗୋପବନ୍ଧୁ ଯେ କେବଳ ଦେଶବାସୀଙ୍କ ଦୁଃଖରେ ବିଚଳିତ ହେଉଥିଲେ, ତାହା ନୁହେଁ, କଳିଙ୍ଗର ଅତୀତ ଗୌରବ ତାଙ୍କ ମନରେ କମ୍ ଆଘାତ ଦେଉ ନ ଥିଲା । କାଳର ସର୍ବଗ୍ରାସୀ କବଳରେ ଦେଶର ସୌଭାଗ୍ୟ-ରବି ଚିରଦିନ ପାଇଁ ଅସ୍ତମିତ ହୋଇଯିବା ସଙ୍ଗେ ସଙ୍ଗେ ଦେଶର ଅଧିବାସୀମାନେ ଯେ ଅତୀତକୁ ଭୁଲି ଯାଇଛନ୍ତି—ଏ ବିଷୟ ଦରଦୀ କବିଙ୍କ ପ୍ରାଣରେ ଏକ ବେସୁରା ରାଗିଣୀ ତୋଳିଦେଇଛି । କବି ଭାବାବେଶରେ ବସନ୍ତ ପବନକୁ ଲକ୍ଷ୍ୟ କରି କାଳିଦାସଙ୍କ 'ମେଘ ଦୂତ'ର ବିରହୀ ଯକ୍ଷ ପରି ଗାଇ ଉଠିଛନ୍ତି—

"ସର୍ବଗ୍ରାସୀ କାଳ ପ୍ରାଚୀନ ଉତ୍କଳ
କଳା କଉଶଳ କରେ ଗରାସ,
ବୈଭବ କଙ୍କାଳ ବିଲୋକି ଅନିଳ
ପାଇଥିବ ପ୍ରାଣେ ଗଭୀର ତ୍ରାସ ।

× × + +

କାଳର ପ୍ରଭାବେ ଜନ୍ମ ସ୍ମୃତି ପୃଷ୍ଠୁ
ରୂପ ରେଖ ଯା'ର ଲିଭିଛି ଆଜ,
କଳିଙ୍ଗର ସେହି ଅତୀତ ବିଭବ
ବୀର ଖାରବେଳ କଳିଙ୍ଗ ରାଜ ।

× + + +

ମହାକାଳ ଗର୍ଭେ ବୁଦ୍ ବୁଦ୍ ପ୍ରାୟେ
ଯାଇଅଛି ମିଶି କଳିଙ୍ଗ ଭୂତି
କଳିଙ୍ଗ ସନ୍ତାନ ଭୁଲିଛନ୍ତି ଏବେ
କଳିଙ୍ଗର ନାମ ଗୌରବ ସ୍ମୃତି ।"

ସେହି ପ୍ରସଙ୍ଗରେ କବି ତତ୍କାଳୀନ ଅନ୍ଧାରି ମୁଲକ (ଗଡ଼ଜାତ)ର ଦୁଃଖ ଗାଥା ଗାଇ ମଳୟ ପବନକୁ ସେ ଅଞ୍ଚଳ (ଗଡ଼ଜାତ)ର ପ୍ରଜାମାନଙ୍କ ଦୈନନ୍ଦିନ କାର୍ଯ୍ୟକଳାପ ସମ୍ବନ୍ଧରେ ଜିଜ୍ଞାସା କରିଛନ୍ତି— .

"ଯେ ରାଇଜ ପ୍ରଜା ନିତି ବଳି ଭେଜା
ଦେଇ ଅଛି ଉପ୍ରେ କାଟନ୍ତି ହିନ,
କଥା କହିବାର ନାହିଁ ଅଧିକାର
ନୁହେଁ ଧନ ପ୍ରାଣ ନିଜ ଅଧୀନ ।

+ + + +

ଅଭାଗି ମୂଲକ ପ୍ରଜା ସୁଖ ଦୁଃଖ
କି ଦେଖି ଆସିଛ କହ ପବନ,
ସହି ନାନା ଦଣ୍ଡ ହିଅନ୍ତି କି ଚଣ୍ଡ
ଆସିଅଛୁ କିବା ନବ ଚେତନ ।
ସହି ଖରବର୍ଷା ଦୁଃଖେ ପଡ଼ି ଚଷା
ଆପଣା ଖେତରେ କରେ ଯେ କୃଷି,
ନୋହି ଭୟଭୀତ ହୋଇ ଦାରସୁତ
ଖାଏ କି ସ୍ୱଚ୍ଛନ୍ଦେ ଅନ୍ନ ଗରାସ ।"

ମଣିଷ ମହାନ୍ ଭାବଧାରରେ ନିଜକୁ ଯେତେ ଓତଃପ୍ରୋତ କରିଥାଉ ନା କାହିଁକି, ଆତ୍ମୀୟ ବନ୍ଧୁ ସୋଦରମାନଙ୍କ ପାଇଁ ତାଙ୍କ ହୃଦୟରେ କାଣିଚାଏ ହେଲେ ଅନୁକମ୍ପା ରହିଥାଏ ଏବଂ ସେଭଳି ଅନୁକମ୍ପା ପ୍ରଦର୍ଶନରେ ତାଙ୍କ ମହନୀୟତାରେ କୌଣସି ପ୍ରକାର ସଂକୀର୍ଣ୍ଣତାର କଳଙ୍କ ଲାଗିପାରେ ନାହିଁ । ତେଣୁ ଦରଦୀ କବି ଗୋପବନ୍ଧୁ ମହାଭାରତୀୟ ଭାବଧାରାରେ ଅନୁପ୍ରାଣିତ ହୋଇଥିଲେହେଁ ବେଳେବେଳେ ନିଜର ଆତ୍ମୀୟ ସୋଦରଙ୍କ ଚିନ୍ତା କାରା ଜୀବନରେ ତାଙ୍କ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥିଲା । ସେହି ଉଚ୍ଛ୍ୱାସରେ ଉଦ୍‌ବୁଦ୍ଧ ହୋଇ ସେ ଆତ୍ମୀୟମାନଙ୍କ ଉଦ୍ଦେଶ୍ୟରେ ଗାଇଛନ୍ତି—

"ତାପିତ ମୋ ହୃଦ ହିଅ ଶାନ୍ତ ମୂଦ
ଆତ୍ମୀୟ ସ୍ୱଜନ ବାରତା କହି ।
ପରହିତେ ବହ ପୁଣ୍ୟ ଗନ୍ଧ ବହ
ତେଣୁ ପଥ ଚାହିଁ ଅଛୁ ମୁଁ ରହି ।।"

ଏହିପରି ଭାବରେ ବସ୍ତୁର କଲେ ପୁଣ୍ୟଶ୍ଳୋକ ଉତ୍କଳମଣି ଗୋପବନ୍ଧୁଙ୍କ କବିତାରେ ଏକ ଦରଦୀ ପ୍ରାଣର କରୁଣ କ୍ରନ୍ଦନ ଅନେକ ସ୍ଥାନରେ ଦେଖିବାକୁ ମିଳେ । ସେ ଜୀବନବ୍ୟାପୀ ଯେଉଁ ଜନସେବା ବ୍ରତରେ ଦୀକ୍ଷିତ ହୋଇଥିଲେ, ସେଥିରେ ତାଙ୍କୁ ପଦେ ପଦେ ଯେଉଁ ବାଧା ବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏବଂ ପ୍ରତି ପଦକ୍ଷେପରେ ଦେଶର ଯେଉଁ ଦୟନୀୟ ପରିସ୍ଥିତି ତାଙ୍କ ହୃଦୟରେ ଏକ କରୁଣ-ମୂର୍ଚ୍ଛନା ତୋଳି ଦେଇଥିଲା, ଛନ୍ଦୋବଦ୍ଧ ପଦାବଳୀ ଜରିଆରେ ସେହି ଅନୁଭୂତିର ନିର୍ଯ୍ୟାସ ହିଁ ଉତ୍କଳ ସାହିତ୍ୟକୁ ତାଙ୍କର ଦାନ । ତାଙ୍କ ରଚିତ ଆହୁରି ଅନେକ ମୂଲ୍ୟବାନ୍ କବିତା ଓ ସାମୟିକ ଆଲୋଚନାବଳୀ ରହିଛି, ଯାହା ଗ୍ରନ୍ଥାବଳୀ ଆକାରରେ ପ୍ରକାଶ ପାଇଲେ ଆମ ଦେଶ ପ୍ରତି ତାଙ୍କ ହୃଦୟରେ ଗଭୀରତମ ଶ୍ରଦ୍ଧାର ପ୍ରମାଣ ଆହୁରି ସୁସ୍ପଷ୍ଟ ହୁଅନ୍ତା !!



# ଅବଶ୍ୟମ୍ଭ ଆତ୍ମାର ଅବ୍ୟକ୍ତ ସଙ୍ଗୀତ

ଅଧ୍ୟାପକ ନାରାୟଣ ଶତପଥୀ ଏମ୍. ଏ.

[ ସାହିତ୍ୟିକ, କଳାଶାସ୍ତ୍ର ଓ ସଙ୍ଗୀତ ପ୍ରେମୀ ଲେଖକ ଅଧ୍ୟାପକ ଶତପଥୀଙ୍କର ସୃଜନଶୀଳ ସ୍ପୃହାର ସ୍ଫୁରଣ ହୋଇଥିଲା ତାଙ୍କ ଛାତ୍ର ଜୀବନରେ ଏବଂ ସେହିଦିନୁ ସେ ସୃଷ୍ଟି କରି ଚାଲିଛନ୍ତି କାବ୍ୟ, ନାଟକ ଓ ନାନା ସମାଲୋଚନା ଗ୍ରନ୍ଥ । ନାଟକ 'ସହସ୍ର ଶିଖା' 'ଜଳତରଙ୍ଗ' 'ସୁହାଗିନି ସେ', 'ରଶ୍ମି ରେଣୁ', 'ଖଣ୍ଡକାବ୍ୟ', 'ଏପାରି ସେପରି' ଓ ସ୍ନାତକୋତ୍ତର ଶ୍ରେଣୀର ସହାୟକ ଗ୍ରନ୍ଥ 'ଓଡ଼ିଆ ନାଟକ ଓ ନାଟ୍ୟକାର' ଲେଖକଙ୍କର ସାର୍ଥକ ସୃଷ୍ଟି । ଦୁର୍ଭାଗ୍ୟବଶତଃ ତାଙ୍କର ପାରିବାରିକ ଜୀବନ ଆଜି ଭଗ୍ନ, ତଥାପି ସେ ଗବେଷଣା ରତ ଓ ସାହିତ୍ୟ ସୃଷ୍ଟି ଚିନ୍ତାରେ ନିମଗ୍ନ । ଆଲୋଚ୍ୟ ସନ୍ଦର୍ଭରେ ଅଧ୍ୟାପକ ଶତପଥୀ ଦରଦୀ କବି ଗୋପବନ୍ଧୁଙ୍କ କବିତାର ଛନ୍ଦେ ଛନ୍ଦେ ପ୍ରକୃତିରାଣୀ ଉତ୍କଳର ରୂପ ସମ୍ଭାର କିଭଳି ପ୍ରକଟିତ, ତାର ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଆଲୋଚନା କରିଛନ୍ତି ।—ସ ]

ଦ୍ୱାସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷ ପରିଷସ୍ୱ ଜାତେ
ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ୟନଶ୍ନନନ୍ୟୋଭି ଚାକଶୀତି
ସମାନେ ବୃକ୍ଷେ ପୁରୁଷୋ ନିମଗ୍ନୋଽନୀଶୟା ଶୋଚତି ମୁହ୍ୟମାନଃ
ଜୁଷ୍ଟଂ ଯଦା ପଶ୍ୟତ୍ୟନ୍ୟ ମୀଶମସ୍ୟ ମହିମାନମିତି ବୀତଶୋକଃ ।

ମୁଣ୍ଡକୋପନିଷଦ—୩।୧।୧-୨

ଦୁଇଟି ଭବ ବିଭବର ଅପୂର୍ବ ବର୍ଣ୍ଣନା...'ବୀତଶୋକ'ର ସୋଽହଂ ବିଭୂତି ବିଭୂଷିତ ଅବୁଜନ ଉତ୍କଳମଣି ସ୍ୱ ପ୍ରାକ୍ତନ ସଂସ୍କାର ହେତୁକ; ଏବଂ ଇହଜନ୍ମର ଅଭ୍ୟାସରେ ପ୍ରଜ୍ଞାର ଅଧିକାରୀ ହୋଇଥିଲେ । ଏହାର ଫଳାଫଳ ଅସ୍ତଗୌରବ ଉତ୍କଳର ଅମ୍ଳାନ ସନନ୍ଦ । ତାଙ୍କର କର୍ମମୟ ଜୀବନରେ ଆଲୌକିକ ଉଦ୍ୟମ, ବିଚିତ୍ର

ତେଜୋଦୀପ୍ତ ପ୍ରଚେଷ୍ଟା ଯେତିକ ଦେଖା ଯାଇଥିଲା, ସେତିକ ପରିମାଣରେ ପ୍ରତିଫଳିତ ହୋଇଥିଲା ଚିନ୍ତା ଓ ଚେତନାରେ । ତେଣୁ ଚିନ୍ତା ଓ ଚିନ୍ତନର ସ୍ୱରୂପ ତାଙ୍କର କାବ୍ୟ-କବିତାରେ ସମସ୍ତ ସୃଷ୍ଟିର ଆଧାର ହେବା ଅତି ସ୍ୱାଭାବିକ । ହୁଏତ ସେ ସୃଷ୍ଟି ସ୍ୱଳ୍ପ ହୋଇପାରେ, ସେଥିରେ "ବାଗ୍ ବୈଖରୀ ଶବ୍ଦଝରୀ ଶାସ୍ତ୍ର ବ୍ୟାଖ୍ୟାନ କୌଶଳମ୍ ବୈଦୁଷ୍ୟଂ" ନ ଥାଇ ପାରେ, ମାତ୍ର ମୁକ୍ତି ମନ୍ତ୍ରରେ ଦୀପ୍ତିମାନ ସର୍ବୋଦୟ ପ୍ରାପ୍ତିରେ ଗରୀୟାନ ଏ ସୃଷ୍ଟି ଚିରନ୍ତନ ସ୍ୱାଧୀନତାର ପାଞ୍ଚଜନ୍ୟ, ମାନବିକତାର ମହାମନ୍ତ୍ର ।

ଗୋପବନ୍ଧୁଙ୍କ ସୃଷ୍ଟିର ହେତୁ ଅଭ୍ୟାସ ନୁହେଁ; ନୁହେଁ ଅଧ୍ୟୟନ । ଏଥିରେ ନାହିଁ ସ୍ୱପ୍ନଲୋକର ନିବିଡ଼ତା, ନାହିଁ କେବଳ ଆବେଗକମ୍ପିତ ବିମୁଗ୍ଧଭାବର ଦ୍ୟୋତନା । ଏହାର ସୃଷ୍ଟି ଆତ୍ମାର ଅନ୍ତରାଳରୁ । ବିମୋକାଭ୍ୟାସୀ ଅନବସାଦ ପ୍ରାଣର ବିଚଳିତ କଲ୍ୟାଣ ଧାରାରୁ—ଏକ ଚିନ୍ମୟ ଚେତନାରୁ ।

'ଦାସେ ଅପଣେ'—ଦାସ ଆପଣଙ୍କ 'କାରାକବିତା', 'ବନ୍ଦୀର ଆତ୍ମକଥା', ଧର୍ମପଦ' ଜଣେ କାବରୁଦ୍ଧ ବନ୍ଦୀର ଆତ୍ମଚେତନା । ଦେହ ସହିତ ଆତ୍ମାର ସମ୍ପର୍କ ବା କ'ଣ ? ଆବଦ୍ଧ ଦେହ । ଚିରମୁକ୍ତ ଆତ୍ମାର ଏ ସନ୍ଦେଶ ଖଣ୍ଡିତ, ଦ୍ୱିଧାଗତ ମାନବ ମନର ମାନବିକତାର ଏକ ଅଖଣ୍ଡ ପ୍ରକାଶ, ଏକ ପରିବ୍ୟାପ୍ତ ବିକାଶ । ପ୍ରେମର ପ୍ରତିଭୂ, ସ୍ୱାଧିକାରର ଚତୁର୍ବର୍ଗ । ଏହି ଦୃଷ୍ଟିରୁ ନିର୍ଜନ ପ୍ରକୋଷ୍ଠରେ ରଚିତ ପ୍ରତିଟି କବିତା ସ୍ୱୟଂସମ୍ପୂର୍ଣ୍ଣ, ସମ୍ପୂର୍ଣ୍ଣ ପୂର୍ଣ୍ଣ ହେଉଛି 'ବନ୍ଦୀର ସ୍ୱଦେଶ ଚିନ୍ତା ।'

କବିତାଟିରେ ସ୍ରଷ୍ଟାଙ୍କ ଶୌଚ ସନ୍ତୋଷ ତପସ୍ୟାଶୀଳ ମନ, ପ୍ରେମର ବନ୍ଦାପନାରେ ସମଗ୍ର ଚିନ୍ତାଚେତନାକୁ ମଞ୍ଜିଷ୍ଠାରେ ରଞ୍ଜିତ କରି ମହିମମ୍ନ କରିଛି । ରୂପ ଅରୂପ କ୍ଳୃପ୍ତିବ୍ୟାପ୍ତି ଭିତ୍ତିରେ ଅନୁରାଗ ଯେପରି କ୍ରମସୋପାନାରୂଢ଼ ହୋଇଛି ତାହା ମହାକବିଙ୍କ 'ମେଘଦୂତ' ବା ନୈଷଧର ହଂସଦୂତରେ ନାହିଁ । ପାର୍ଥକ୍ୟ, ପୂଜ୍ୟ ପ୍ରତିଭାବାନ୍ ସ୍ରଷ୍ଟା ଓ ଚିରମୁକ୍ତମନା ଦ୍ରଷ୍ଟା ।

ଚନ୍ଦନାଚଳନିର୍ଗତ ମଳୟ ହଜାରୀବାଗ୍‌ର କାରାକକ୍ଷରେ ଅନୁପ୍ରବେଶ ପୂର୍ବରୁ ନିଶ୍ଚିତ ଭାବେ ସ୍ପର୍ଶ କରିଥିବ ପ୍ରିୟ ଉତ୍କଳର

ନଦନଦୀ, ସର ସାଗର, ବନ ଉପବନ, କେଦାର ପ୍ରାନ୍ତର, କାନନ କନ୍ଦର···ତେଣୁ ଏ ମଳୟର ସମ୍ପର୍କ ସ୍ରଷ୍ଟାର ଅତୀନ୍ଦ୍ରିୟ ଚେତନା ସହିତ, ପଞ୍ଚମହାଭୂତର ମରୁତ ଦେବତ, ଶିର ସଚେତ ଦାସ ଆପଣଙ୍କ ପ୍ରେମ ପ୍ରୀତି ରସାପ୍ଲୁତ ଆତ୍ମା ସହିତ । କବିତାର ମଳୟ ଅଚେତନ ନୁହେଁ । ପ୍ରକୃତିର ଏକ ରୂପପୁଷ୍ପ ଛବି । କବିତାର ମଳୟ ଜାଗ୍ରତ ଆତ୍ମାର ପ୍ରେମାସ୍ପଦ । ଏହାର ସ୍ପର୍ଶରେ ନବୋଢ଼ା ମଲ୍ଲୀର ଅଧରରେ ସ୍ମିତରେଖା । ପ୍ରେମର ପ୍ରମୋଦ ପୁଲକରେ ତାଙ୍କର ହୃଦୟର ବେଳାଭୂମି ସଂଖ୍ୟାହୀନ ତରଙ୍ଗରେ ଉଚ୍ଛ୍ୱସିତ । ଏହି ପ୍ରକୃତିର ତରଙ୍ଗରେ ସ୍ରଷ୍ଟାଙ୍କର ସୃଜନଶୀଳ ଚକ୍ଷୁଚନ୍ଦ୍ରିକା ଦର୍ଶନରେ···

+ + +

"ସୁନ୍ନାଗ ବକୁଳ ସୌରଭ ଶଂକୁଳ
ସୁବାସ ଶୀତଳ ସଞ୍ଜ ସମୀରେ
କ୍ଷୀଣତୋୟା ନୀରେ ଖେଳେ ଧୀରେ ଧୀରେ
ସୁମଞ୍ଜୁଳା ଲଘୁ ଲହରୀମାଳା
ଦକ୍ଷିଣ ଦିଗକୁ କୁଞ୍ଚିତ କୁନ୍ତଳ
ମେଲଇ ଦେଇଛି କ ପଲ୍ଲୀବାଳା ।"

ସୁଦୂର ଅଜ୍ଞାତର ସୁନ୍ଦର ରମଣୀୟ ଉନ୍ମେଷନ ଭିତରେ ଶାନ୍ତ ଆତ୍ମା ପ୍ରେମାସ୍ପଦ ମରୁତର ସ୍ପର୍ଶ ପରିତ୍ୟାଗ କରନ୍ତି । ପ୍ରକୃତିର ବିରାଟ ବିଶ୍ୱବ୍ୟାପୀ ରୂପକୁ ଭିନ୍ନ ରୂପରେ ଭିନ୍ନ ରଙ୍ଗରେ ସଂଦର୍ଶନ କରିଛି । ଏହି ଦର୍ଶନରେ ଯେଉଁ ଏକାତ୍ମିକତା, ଏଥିରେ ଯେଉଁ ପ୍ରେମର ପ୍ରାବଲ୍ୟ, ଯେଉଁ ପ୍ରୀତିର ଉନ୍ମାଦ ଉଚ୍ଛ୍ୱାସ ଦେଖାଦେଇଛି, ତାର ଏକ ସ୍ଥୂଳ ରୂପ କବିତାଟିରେ ପ୍ରକଟିତ ହୋଇଛି । ପୁଷ୍ପ ତ ସୁନ୍ଦର, କମନୀୟ । ପୁଷ୍ପର ସ୍ଥୂଳରୂପ ଅପେକ୍ଷା ସୌରଭ ରୂପର ଆକର୍ଷଣ ଅନନ୍ତଗୁଣ ।

କବିତାଟିର ପ୍ରତି ପଂକ୍ତି, ପ୍ରତି ଛନ୍ଦରେ ପ୍ରେମର ବହୁ ବିଭବ ବିକଶିତ ତଥା ଉନ୍ମୋଚିତ ହୋଇଉଠିଛି, ଯେପରି ଏକ ଜ୍ୟୋତ୍ସ୍ନାର ଜୁଆର—ଅମୃତମୟ ବିଶ୍ୱ—ପ୍ରେମମୟ ବିଶ୍ୱ । ହେବାର କଥା । ଆତ୍ମା ତ ସାଂସାରିକ ପ୍ରତାରଣାଠାରୁ ପ୍ରବଞ୍ଚନାଠାରୁ ବହୁ ଦୂରରେ । ତେଣୁ ମୁକ୍ତ ଆତ୍ମାର ଅନୁଚିନ୍ତା ସବୁବେଳେ ସମାନ ।

ହଜାରୀବାଗର କାରାକକ୍ଷରେ ବସି 'ବନ୍ୟା' ଶବ୍ଦ ଶ୍ରବଣରେ ଅଶ୍ରୁସଜଳ ହୋଇ ଯିଏ ଭାବିପାରେ ବନ୍ୟାର ପ୍ରକୋପରେ "କେଉଁଠି

ନେତ୍ରଶାଳୀ କେଦାର ଜଳପ୍ଳାବିତ ହୋଇ ଅସ୍ତିତ୍ୱ ଲୋପ କରିସାରିବଣି, କେଉଁ ଗ୍ରାମ ନଦୀଧାରର ହାଣ୍ଡିଅନ୍ଧ ଖର୍ଗଙ୍କ ବିହିବଣି, କେଉଁ ଅସହାୟ ବୃଦ୍ଧା ବାହାରକୁ ବାହାରି ନ ପାରି ଅନୁସନ୍ଧାନ କରି ପାରୁ ନ ଥିବ" । ସେଇ ଦାସେ ଆପଣଙ୍କ ଆତ୍ମା ଉତ୍କଳର ଚଳ, ଲୋକ କଥିତ ଅଚଳ ପ୍ରକୃତି ସହିତ କେତେଦୂର ସମ୍ପୃକ୍ତ ତାହାହିଁ ଏ କବିତାଟିର ପ୍ରତ୍ୟେକ ସ୍ତରରେ ପ୍ରତିଫଳିତ । (୧)

ସ୍ରଷ୍ଟା ସତେ ଯେପରି ଏକ ଧୂଳିଆ ପ୍ରେମିକ । ଓଡ଼ିଶାର ମାନବଙ୍କୁ, ଓଡ଼ିଶା କହିଲେ ଯାହା ବୁଝାଏ, ଉତ୍କଳର ଧର୍ମ, ଦର୍ଶନ, ସାହିତ୍ୟ, ସଂସ୍କୃତି, ମନ୍ଦିର, ପାଣି ପବନ···କ'ଣ ଏ ପିପାସାର ଅନ୍ତର୍ଭୁକ୍ତ ନୁହେଁ ?

ସତେ ଯେପରି ଉତ୍କଳମଣି ଆତ୍ମାର ଏହା ହିଁ ମୁକ୍ତି, ଏହା ହିଁ ସ୍ଥିତି, ଏହା ହିଁ ଗତି । ଏ କବିର ନିବାସ ସ୍ଥଳ ସୁଆଣ୍ଡୋ ନୁହେଁ, କର୍ମ-ସ୍ଥଳ ସତ୍ୟବାଦୀ ନୁହେଁ, ସମଗ୍ର ଉତ୍କଳ । ତେଣୁ ସ୍ରଷ୍ଟାର ସମୀର ନିକଟରେ ଅଳି ଖାଲି ଶୁଣିବାକୁ, ଜାଣିବାକୁ···

"ମୋର ପ୍ରିୟସ୍ଥଳୀ କେତେ ନିଉଜ୍ଜ୍ୱଳ
କରିଥିବେ ତବ ଆସିବା ବାଟେ
ଦେଇଥିବେ ପରି କେସେ କି ବାରତା
ଶୁଣାଅ ମନ ମୋ' ଅଛି ଉଚ୍ଛାଟେ ।"

ଦେଶପ୍ରେମରେ ଉଚ୍ଛ୍ୱସିତ ଉଚ୍ଛାଟ ପ୍ରାଣ ଦାସେ ଆପଣ ଉତ୍ତର ପାଇଁ ଅପେକ୍ଷା ନ କରି ଠିକ ନିଖି ପଙ୍କ୍ତିରବା ଭିତରେ ଯେଉଁ ନରେନ୍ଦ୍ର ସୌହାର୍ଦ୍ଦ୍ୟ ପ୍ରକଟିତ କରିଛନ୍ତି, ସେଥିରେ ବ୍ୟକ୍ତିତ୍ୱର ବ୍ୟାପକତା, ସୋଽହଂର ସ୍ୱାକ୍ଷର ନିର୍ଣ୍ଣିତ ହୋଇଛି ମାତ୍ର ।

ଉତ୍କଳର ଦକ୍ଷିଣାଂଶ ସମ୍ପର୍କୀୟ ପ୍ରଶ୍ନ ଭିତରେ ଯେଉଁ କାନନ ଉଦ୍ୟାନର ପ୍ରସଙ୍ଗ ଉପସ୍ଥାପିତ ହୋଇଛି, ତାହା ପ୍ରକୃତି ସହିତ ଆତ୍ମାର

(୧) ଏ ଘଟଣାଟି ଲେଖକ ରାମଚନ୍ଦ୍ର ଭବନର ସାହିତ୍ୟ ସଭାରେ ଯଦୁମଣି ମଙ୍ଗରାଜଙ୍କଠାରୁ ଶୁଣିବାକୁ ସକ୍ଷମ ହୋଇଥିଲି । ସତେ ଯେପରି ସମଗ୍ର ଉତ୍କଳର ଅଣୁପରମାଣୁ ଉତ୍କଳମଣିଙ୍କ ନଖଦର୍ପଣରେ । ସମସ୍ତେ ଯେପରି ତାଙ୍କର ପରିଚିତ ।

ସାନ୍ନିଧ ଛଡ଼ା ଆଉ କ'ଣ ହୋଇପାରେ ? ସତେ ଯେପରି ସ୍ରଷ୍ଟାଙ୍କ ସୃଷ୍ଟିବାହ୍ୟ ଆତ୍ମା ପବମାନ ସହିତ ପ୍ରେମର ସ୍ନିଗ୍ଧ ସାଙ୍କେତିକ ସଂଦର୍ଶନ କରୁଅଛି ।

"କରଥିବ ଭେଟ ମଞ୍ଜୁଷା ମୁକୁଟ
ମହେନ୍ଦ୍ର, ଶଇଳ ସୁବାସ ଫୁଲ
ତବ ସମାଗମେ ନାଚଥିବ ପ୍ରେମେ
ଦୋହଲାଇ ତରୁ ଭୁଜ ସଂକୁଳ
ରସନା, ନୟନ ନାସା ରସାୟନ
ସ୍ୱାଦ ଶୋଭା ଗନ୍ଧଭର ଆଧାର
ସଂଗ୍ରାମ ମଣ୍ଡନ ସୁରମ୍ୟ ଉଦ୍ୟାନ
ଦେଇ ଥିବେ କେତେ କ ଉପହାର

\+ \+ \+

କୃଶୋଦରୀ ଋଷି— କୁଲ୍ୟାକୁ ପରଶି
ଆସିଥିବ ଯେବେ ହେ ପବମାନ
ଖରବାସୀଙ୍କର ରଗିଣୀ ମଧୁର
ଶୁଣିଥିବ ଚମ୍ପୂ ଲଳିତ ଗାନ ।"

ସତେ ଯେପରି ସ୍ରଷ୍ଟାର ହୃଦୟ, ଦ୍ରଷ୍ଟାର ଆତ୍ମା ଏ ବର୍ଣ୍ଣନଭଙ୍ଗୀ ଭିତରେ ନୃତ୍ୟନୂପୁରର ଅପୂର୍ବ ନିକ୍ୱଣରେ ଅନୁରଣିତ ହୋଇଉଠୁଛି । ରାଧାକୃଷ୍ଣ ମିଳନ ବିରହ, ମାନ ଅଭିମାନ ପରିପୂର୍ଣ୍ଣ ଲଳିତ ଚମ୍ପୂର ସ୍ୱର ମୂର୍ଚ୍ଛନା ଯେପରି ପ୍ରଶ୍ନ ଉପପ୍ରଶ୍ନ ଭିତରେ ସ୍ରଷ୍ଟାକୁ ନେଇ ଯାଇଛି କଳ୍ପଲୋକର ସେଇ ଅମରାବତୀର ନୃତ୍ୟବସନ୍ତଚର୍ଚ୍ଚିତ ପୁଷ୍ପିତ ସୁରଭିତ ପରିବେଶ ମଧ୍ୟକୁ । ଦୂରରେ ରହି ମଧ୍ୟ ଉଦ୍ୟାନର ସ୍ୱାଦ ଶୋଭା ଗନ୍ଧ ଯେପରି ଉପଭୋଗ୍ୟ ହୋଇପାରୁଛି ।

ଚିଲିକା ପ୍ରଶ୍ନ ପ୍ରସଙ୍ଗରେ କବିଙ୍କ ରୋମାଞ୍ଚକର ଭାବଧାରା ପ୍ରେମିକ ପ୍ରେମିକାଙ୍କ ମିଳନଠାରୁ ଅଧିକ ଗଭୀର । ଅଧିକ ଉଦ୍ଦୀପକ ।

"ଆଲିଙ୍ଗନ ଆଶେ ତବ ପଥ ପାର୍ଶ୍ୱେ
ଚିଲିକା ଆବେଗେ ଥିବ ଅନାଇଁ
ମୁକ୍ତ ନୀଳକେଶୀ ଶ୍ୟାମ ଶୋଭାରାଶି
ଗିରି ଶିରୀ ସ୍ଫୀତ ବକ୍ଷ ମେଲାଇ ।

ଚଞ୍ଚଳ ହିଲ୍ଲୋଳେ ସ୍ୱଚ୍ଛ ଗଣ୍ଡସ୍ଥଳେ
ଚମ୍ବୁଥିବ ଯେବେ ଗାଢ଼େ ସମୀର
ସୁନ୍ଦରୀ ସର୍ବାଙ୍ଗେ ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସେ କମ୍ପାଇ ନୀର ।
ପୁଳିନ କାନନେ ସ୍ନିଗ୍ଧ ସନସନେ
ଖେଳ ଯାଇଥିବ ପ୍ରେମ ଲହରୀ;

× × ×

ଫେଡ଼ ମୀନନେତ୍ର ଓଲଟାଇ ଗାତ୍ର
ଗୃହ୍ଣିଁଲ ବେଳକୁ ଶଲକା ପୁଣ
ଶୈଳ ପ୍ରତିଘାତେ ସରମେ ତ୍ୱରିତେ
ଗୁଳିଲ ବଢ଼ାଇ ଗତି ଦ୍ୱିଗୁଣ ।"

ଏ ପୁଲକ ଇନ୍ଦ୍ରପୁର ନୁହେଁ । ଏଥିରେ କେବଳ ରୋମାଞ୍ଚ ଜାତ ହୁଏନା । ଶତ ସହସ୍ର ଆଶାତୀ କଦମ୍ବର ସମରୋମାଞ୍ଚ । ରୋମାଞ୍ଚର ଏକ ସମବାୟୁ । ଏହା ରୋମାଞ୍ଚର ଅନ୍ୟ ଏକ ରୂପ ହେଉଛି ଶ୍ରୀକ୍ଷେତ୍ରରେ ସମୀର ପର୍ଯ୍ୟାୟୁରେ । ତା ହେଉଛି···

"···ମହାମୋଦ ଅନ୍ତରେ
ନୀଳଚକ୍ର ମୂଳେ ପ୍ରେମଭକ୍ତ ଭୋଳେ
ଦେଇଥିବ ନେତ ଉଡ଼ାଇ ଥରେ ।"

ପ୍ରଶ୍ନ ବ୍ୟାଜରେ ସ୍ରଷ୍ଟାର ମାନସ ପଟରେ ଉଦିତ ହୋଇଛି ସତ୍ୟବାଦୀ ଓ ସତ୍ୟବାଦୀର ସାକ୍ଷୀଗୋପାଳ ମୂର୍ତ୍ତି । ସେଠାରେ ଦେଶ ପ୍ରୀତି ସହିତ ପ୍ରେମର ପଥିକ ରାଧାକୃଷ୍ଣ ଏକାକାର ହୋଇଯାଇଛନ୍ତି । କୁଶଳ ଜିଜ୍ଞାସାରେ କବି ଯେପରି ପ୍ରେମ ପାଗଳ; ବାବଦୁକ ।

",ସୁମଧୁର ତାନେ ତବ ଆବାହନେ
ଗାଇଥିବେ ପିକ ସ୍ୱାଗତ ଗୀତି
ବକୁଳ ତମାଳ ଦେଇଥିବେ ତାଳ
ପୂରି ଉଠିଥିବ ପରମ ପ୍ରୀତି ।

ଦେଉଳେ ପ୍ରବେଶି ଗୋପୀନାଥ ବଂଶୀ
ଉନ୍ମେ ରଚିଥିବ ଅସ୍ଫୁଟ ସ୍ୱନ
ରାଧିକା ଅଞ୍ଚଳ ଉଡ଼ାଇ ଚଞ୍ଚଳ
ଜାଣି କରିଥିବେ ଦେହିଙ୍କ ମନ ।

ହସି ଉଠିଥିବ ଯୁଗଳ ମୁରତି
ଖସି ପଡ଼ିଥିବ ଶ୍ରୀଅଙ୍ଗୁ ଫୁଲ,
ନବଘନ ଶିରେ ଆହା କି ରୁଚିରେ
ହଲିଥିବ ବାଙ୍କ ମୟୂର ଚୂଳ" ।

ଯେଉଁ ମଳୟ ହିଲ୍ଲୋଳ ପ୍ରେମିକ ଦମ୍ପତିଙ୍କର ମନୋଭାବ ଜାଣି ଶ୍ରୀରାଧାଙ୍କ ଅଞ୍ଚଳ ଉଡ଼ାଇ ଦେଇ ନବଘନ କୃଷ୍ଣମନ ଲୀଳାଞ୍ଚଳ କରିଥିବେ ସେହି ମଳୟ ସହିତ, ସେହି ମହାଭୂତ ସହିତ ସ୍ରଷ୍ଟା ଆତ୍ମା କି ନିବିଡ଼ଭାବେ ସଂଯୋଜିତ ତାହା କେବଳ କଳ୍ପନା କରାଯାଇପାରେ ସିନା, ପ୍ରକାଶ କରି ହୁଏନା । ଏହାର ଠିକ୍ ପରେ ପରେ ଅର୍ଥଭରା ଅଶ୍ରିତ ପ୍ରତି ସଚେତନ ଆତ୍ମା; ଉତ୍କଳ ସଂସ୍କୃତି, ସ୍ଥାପତ୍ୟ, ଭାସ୍କର୍ଯ୍ୟର କେନ୍ଦ୍ରସ୍ଥଳ ଲିଙ୍ଗରାଜ ମନ୍ଦିର, ଖଣ୍ଡଗିରି, ଉଦୟଗିରି, ବର୍ଣ୍ଣନାରେ ଗୌରବାବହ ମୁହୂର୍ତ୍ତକୁ ଚିନ୍ତନ ମନନ କରି ଯେଉଁଳି ବଳପି ଉଠିଛି, ମୂର୍ତ୍ତିମାନ ମିଳନ ମଧ୍ୟ ବିରହରେ ଏ ପ୍ରକାର ଚିନ୍ତାକରି ପାରିବ କି ନାହିଁ ସନ୍ଦେହ ହୁଏ । ଏଠାରେ ସମ୍ଭବ ହେବାର ଏକମାତ୍ର କାରଣ, ଦେହର ଏ ଚିନ୍ତା ନୁହେଁ, ଦେହାଶ୍ରିତ ଆତ୍ମାର ।

ଖାରବେଳ କୀର୍ତ୍ତି ବର୍ଣ୍ଣନାରେ ମୁଗ୍ଧ ମନ, ଶାଶ୍ୱତ ସତ୍ୟ ପ୍ରସଙ୍ଗରେ ଦ୍ରଷ୍ଟାର ଆତ୍ମା ଯେଉଁଳି ଶତଜିହ୍ୱ ହୋଇଉଠିଛି, ତାହା କେବଳ ହୃଦୟ ଅଭ୍ୟନ୍ତରର ମର୍ମ ନୁହେ, ଆତ୍ମାର, ଶୂନ୍ୟତାର, ଆଦ୍ୟ ଓଁକାରର ମୂର୍ଚ୍ଛିତ ସ୍ୱର ସଙ୍ଗୀତ । ମନ୍ଦପବନର ତାଳେ ତାଳେ ବାରବାଟୀ ବାର୍ତ୍ତା ଉପସ୍ଥାପନରେ କବି ଲେଖନୀରୁ ନିଃସୃତ ହୋଇଛି···

× × ×

"ବାଟରେ ଅଟକ କଲିକି କଟକ
ମହାନଦୀ ନୀଳ ନୀରବସନା
ଉଦ୍‌ବେଗ ବାହାନା କରିଥିବ ସିନା
ଉପେକ୍ଷି ନ ଥିବ ତା' ସମାଦର ।

ଯେ ଯେତେ କର୍ମଠ          କରେ କ୍ଷଣ ମଠ
ପ୍ରେମ ପାଶ୍ଟ ହେଲେ ବେଳେ ଅନ୍ତତ,
ଫୁଲ ଉଠିଥିବ          ମହାନଦୀ ବକ୍ଷ
କର୍ମୀ ଉଠିଥିବ ଲହରୀ ହାର ।
ଘଠା ଖଣ୍ଡପନ୍ତ          ଥିବେ ମଥା ପୋତି
ମୃଦୁହାସେ ଦେଖି ଅଙ୍ଗ ବନ୍ଧାର ।”

ପ୍ରକୃତିର କି ମହମୀୟ ସଙ୍କେତ ? କି ଉଦାର ମିଳନ ? ଏଥିରେ ବ୍ୟକ୍ତିପ୍ରାଣ ଗୋପବନ୍ଧୁ ନାହାନ୍ତି, ଅଛି ନୈର୍ବ୍ୟକ୍ତିକ ଗୋପବନ୍ଧୁଙ୍କ ଆତ୍ମାର ଅକ୍ଷୟ ଅବ୍ୟୟ ପ୍ରେମ ସମ୍ପଦର ସଙ୍ଘାତ । ବ୍ୟକ୍ତରୁ ଅବ୍ୟକ୍ତ ପ୍ରେମର ପୁଷ୍କଳ ଆଲେଖ୍ୟ ।

ଶିଳ୍ପୀ ତୁଳକାର ଶେଷ ସ୍ପର୍ଶ । ପ୍ରାଣର ନୁହେଁ, ଅମୃତର ସଞ୍ଚାର । ଶାସକ ଶାସିତର ସମ୍ବନ୍ଧ ସମ୍ପୃକ୍ତର ଆଲୋଡ଼ନରେ ଶ୍ୟାମ ଶୋଭବନ ସମ୍ବଲପୁରର ଅପୂର୍ବ ଅନୁପମ କାନ୍ତ ରୂପରେଖ ପାଇଛି—

“ଚମ୍ପକବରଣୀ          ଗୃହ ସୁହାସିନୀ
ସର୍ବ ଗୁଣବତୀ ପୁର ଅଙ୍ଗନା,
ସ୍ୱଦେଶୀ ବସନେ          ସ୍ୱଦେଶୀ ଭୂଷଣେ
ହସେ ସଦା ତୋର ପ୍ରୀତିପ୍ରସନ୍ନ ।”

ପ୍ରୀତିଉନ୍ମନା, ପ୍ରୀତିପ୍ରସନ୍ନା ପ୍ରକୃତି ପ୍ରଶସ୍ତ ବ୍ୟପଦେଶରେ କବି ହୃଦୟର ଦ୍ରଷ୍ଟା ପ୍ରାଣର ଯେଉଁ ଭାବ ଅନୁଭବ ପ୍ରକଟିତ ହୋଇଛି, ତାହାର ଶେଷ ସାର୍ଥକ ସରହଦ ହେଉଛି ଖଣ୍ଡ ପଦ୍ୟରେ···

“ସେ ନୁହେଁ ପ୍ରକୃତି ପ୍ରେମୁ ବାହାର···”

ବାସ୍ତବକ୍ ପ୍ରକୃତିର ଚରମ ପ୍ରେମିକ ଅନ୍ଧକାର କାରାଗୃହରେ ଥିଲେ ମଧ୍ୟ ପ୍ରକୃତିର ପ୍ରେମ ପ୍ରୀତି, ସ୍ନେହ ସୋହାଗ, ରାଗ ଅନୁରାଗରୁ ସ୍ନିଗ୍ଧ ଆତ୍ମା ତାଙ୍କର ବଞ୍ଚିତ ନୁହେଁ । ଦୂର କଲେ ସେ ବା ଦୂର ହୁଅନ୍ତା କପରି ? ଏ'ତ ମୁକ୍ତ । ସର୍ବବ୍ୟାପୀ । ତାଙ୍କ ପ୍ରେମର କାରା ତାଙ୍କର ଦେଶର ମାଟି ପାଣି ପବନ ଆଲୋକ, ଏହି ମହାନ୍ ପ୍ରେମିକତା ଲାଗି ଗୋପବନ୍ଧୁ ବ୍ୟକ୍ତ ନୁହନ୍ତି—ଅନୁଷ୍ଠାନ । ଅନୁଷ୍ଠାନ ନୁହନ୍ତି—ଅତିବ୍ୟାପକ —ମହାନ୍ । ଜଗନ୍ନାଥ ସଂସ୍କୃତିର ପ୍ରତୀକ । ସୋଽହଂର ପ୍ରତୀକ ।

●

# ଗୋପବନ୍ଧୁ ସାହିତ୍ୟରେ ଜାତୀୟଚେତନା

ଶ୍ରୀ କିଶୋରଚନ୍ଦ୍ର ମହାନ୍ତି, ବି. ଏ., ବି. ଇଡ୍.

[ ପୁରୀ ଜିଲ୍ଲା ବାଣପୁର ଥାନା ଅନ୍ତର୍ଗତ ଭୁଲଣିଦେଉଳପୁରର ସୁପରିଚିତ ସାହିତ୍ୟ-ସେବୀ ଲୋକପ୍ରିୟ ଶିକ୍ଷକ ଶ୍ରୀଯୁକ୍ତ ମହାନ୍ତି ଶିକ୍ଷକତା କରି ଘରୋଇ ଭାବରେ ପ୍ରବେଶିକା ପରବର୍ତ୍ତୀ ସମସ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନିଜର ପ୍ରତିଭା ଓ ଅଧ୍ୟବସାୟର ପରିଚୟ ଦେଇ-ପାରିଛନ୍ତି । ଗତ ୧୯୭୦ ମସିହାରେ ସେ ଜାତୀୟ ପାଠ୍ୟ ପୁସ୍ତକ ଲେଖକ ଭାବେ ପୁରସ୍କୃତ ହୋଇଛନ୍ତି । 'କୁମ୍ଭୀର ଛୁଆଙ୍କ ପାଠପଢ଼ା,' 'ସୁନା ଓ ମାଟି ସମାନ,' 'ସପନ ଦେଖିଲା ବଗୁଲୀ ନାନୀ' ପ୍ରଭୃତି ତାଙ୍କର ସୃଷ୍ଟି । ସକଳକଙ୍କ ପ୍ରରୋଚନାରେ ଆଲୋଚ୍ୟ ପ୍ରବନ୍ଧରେ ସେ ଗୋପବନ୍ଧୁ ସାହିତ୍ୟର ଏକ ନୂତନ ଦିଗ ଉନ୍ମୋଚନ କରିଛନ୍ତି । —ସ ]

ସତ୍ୟବାଦୀର ସାଧକମାନଙ୍କର ମୂଳମନ୍ତ୍ର ଥିଲା ଜାତୀୟ ଚେତନା ଓ ଜନ ଜାଗରଣ । ଦେଶର ଅଗଣିତ ଦେଶବାସୀଙ୍କୁ ଏହି ଜାତୀୟ ଭାବରେ ଉଦ୍‌ବୁଦ୍ଧ କରିବା ନିମନ୍ତେ ସେମାନଙ୍କର ଲେଖନୀ ଗତିମୁଖର ହୋଇ ଉଠିଥିଲା । ତେଣୁ ଏହି ଚିନ୍ତାଧାରାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ କରିବା ନିମିତ୍ତ ତଥା ଜାତୀୟ ଜୀବନକୁ ସଙ୍ଗଠିତ କରିବା ଉଦ୍ଦେଶ୍ୟରେ ଗୋପବନ୍ଧୁ ଲେଖନୀ ଧାରଣ କରି ଏ ଦେଶର ସାହିତ୍ୟ- ଭଣ୍ଡାରକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିପାରିଛନ୍ତି । ସେ ଦୃଢ଼ ଭାବରେ ହୃଦୟଙ୍ଗମ କରିଥିଲେ ଯେ, ଏ ଜାତିର ଉନ୍ନତି କରିବାକୁ ହେଲେ, ଏ ମୁମୂର୍ଷୁ ଜାତିକୁ ଏକ କର୍ମଠ ଓ ବଳିଷ୍ଠ ଜାତିରୂପେ ଗଠନ କରିବାକୁ ହେଲେ ଜାତୀୟ ସାହିତ୍ୟକୁ ଉନ୍ନତ କରିବାକୁ ହେବ । ବାଲ୍ୟ କାଳରୁ କବି ହେବାର

କାମନା ତାଙ୍କ ମନରେ ଜାଗରିତ ହୋଇଥିଲା । କର୍ମୀ ଗୋପବନ୍ଧୁ, ହିସାବରେ ସେ ଯେପରି ବରେଣ୍ୟ ଓ ବନ୍ଦନୀୟ, ଜଣେ ଲବ୍‌ଧପ୍ରତିଷ୍ଠ ଲେଖକ ଭାବେ ମଧ୍ୟ ସେହିପରି ବିପୁଳ ଗୌରବର ଅଧିକାରୀ ହୋଇ ପାରିଛନ୍ତି ।

ପଲ୍ଲୀପ୍ରାଣ ଗୋପବନ୍ଧୁ ପଲ୍ଲୀରେ ଉଦ୍‌ଭୂତ, ପଲ୍ଲୀରେ ବର୍ଦ୍ଧିତ ଓ ସର୍ବୋପରି ପଲ୍ଲୀ ଜୀବନ ସହ ସୁପରିଚିତ ଥିଲେ । ଉତ୍କଳ ପୁରପଲ୍ଲୀର ପ୍ରତ୍ୟେକ ଧୂଳିକଣା ଥିଲା ତାଙ୍କର ଅତି ପ୍ରିୟ ଓ ଆଦରର ସାମଗ୍ରୀ । ଏହାର ବୃକ୍ଷଲତା, ପାଣିପବନ, କାନନ ପ୍ରାନ୍ତର, ଜୀବଜନ୍ତୁ ସବୁ ଥିଲେ ତାଙ୍କର କବି ଚକ୍ଷୁରେ ଅତି ମହାନ୍ ଓ ପବିତ୍ର । ତେଣୁ କବି-କଳ୍ପନା ବଳରେ ତାଙ୍କର ପ୍ରତ୍ୟେକ କାବ୍ୟ କବିତା ହୋଇ ଉଠିଛି ଜୀବନ୍ତ, ବାସ୍ତବ ଓ ହୃଦ୍ୟ ।

ଯାଗେଶ୍ୱରଙ୍କ ପାଖକୁ ପଲ୍ଲୀର ସରଳା କୁମାରୀଙ୍କ ଧୂପ ହସ୍ତରେ ଗମନ, ଗାଈଆଳ ପିଲାଙ୍କ ବଂଶୀବାଦନ, ଭାଇ ସହ ଭଉଣୀର ଶ୍ୱଶୁରାଳୟ ଗମନ, ହଳଲଙ୍ଗଳ ଧରି ହର୍ଷ ଚିତ୍ତରେ କୃଷକ ଭାଇର ଗୃହାଗମନ ସମୟର ଚିତ୍ର ଏଭଳି ସହଜ ଭାଷାରେ ଓ ସରସ ଭାବରେ ଫୁଟି ଉଠିଛି ଯେ, ଯେସବୁ ପାଠକଲେ ଯେ କୌଣସି ପାଠକର ପ୍ରାଣ ପୁଲକିତ ହୋଇଥାଏ ।

ଏତଦ ବ୍ୟତୀତ, ତାଙ୍କ କାବ୍ୟ କବିତାରେ ସ୍ଥାନେ ସ୍ଥାନେ ପଲ୍ଲୀ-ବଧୂ, ପଲ୍ଲୀ ବାଳିକା ପ୍ରଭୃତିଙ୍କର ଯେଉଁଳି ଜୀବନ୍ତ, ନିଖୁଣ ଓ ନିଚ୍ଛକ ଚିତ୍ର କବି ଲେଖନୀରେ ରୂପ ଦିଆଯାଇଛି, ତାହା ମଧ୍ୟ ପ୍ରଣିଧାନ ଯୋଗ୍ୟ ।

କୃଷକକୁଳ କଠିନ ଶ୍ରମ ସ୍ୱୀକାର କରି ମୁଣ୍ଡଝାଳ ତୁଣ୍ଡରେ ମାରି ଫସଲ ଉତ୍ପାଦନ କଲେହେଁ ଲୋଭୀ ସାହୁକାର, ମହାଜନ ଓ ଜମିଦାରମାନେ ତାହା ସେମାନଙ୍କଠାରୁ ଲୁଟ୍‌କରି ନେଇ ଯାଉଥିଲେ । ଫଳରେ ପେଟକୁ ମୁଞ୍ଜିଏ ଦାନା ନ ପାଉଥିବା ଓ ଲଜ୍ଜା ନିବାରଣ ପାଇଁ ଖଣ୍ଡେ କନା ନ ପାଉଥିବା ଏ ଦେଶର ଶତ ଶତ କୁମାରୀଙ୍କର ଦୁଃଖରେ ସମବେଦନା ଜଣାଇ ସେ ଲେଖିଛନ୍ତି—

"ଉତ୍କଳର କେତେ କନ୍ୟା ନାରଖାର
ନ କରନ୍ତ ପେଟପୂରାଇ ଆହାର ।
ଲଜ୍ଜା ଢାଙ୍କିବାକୁ ନ ପାʼନ୍ତ ବସନ,
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।"

ଉଦର ଜ୍ୱାଳା ସହି ନ ପାରି ଅନେକ ନରନାରୀ ଗ୍ରାମ ଛାଡ଼ି ଅନ୍ୟତ୍ର ପଳାୟନ କରିବା ଫଳରେ କୁମାର କୁମାରୀଙ୍କର ହସ ଖୁସିରେ ଫାଟି ପଡ଼ୁଥିବା ଗାଁ ଭୂଇଁ କିପରି ଶ୍ମଶାନରେ ପରିଣତ ହୋଇଥାଏ; ତାହାର ଏକ ସୁନ୍ଦର ଓ କରୁଣ ଚିତ୍ର ପ୍ରଦାନ କରି କବି ଗାଇଛନ୍ତି—

"ଉଦର ଜ୍ୱାଳାରେ କେତେ ନରନାରୀ,
ଛାଡ଼ି ଘରଦ୍ୱାର ଯାଆନ୍ତି ବାହାରି ।
ପଡ଼ିଅଛି ତୁହ କାହିଁ ବା ଗୁଳିଆ,
ଶ୍ମଶାନ ପରିଏ ଦିଶେ ନଗ୍ରଟିଆ ।"

କବି ରାଜନୈତିକ ବନ୍ଦୀଭାବେ ବହ୍ମପୁର ଜେଲରେ କଟାଇ-ଥିଲେ । ପରେ ତାଙ୍କୁ ଓଡ଼ିଶାରୁ ବିହାରସ୍ଥ ହଜାରୀବାଗ୍ ଜେଲକୁ ସ୍ଥାନାନ୍ତର କରାଗଲା । ରେଲଗାଡ଼ିରେ ଜେନାପୁର ଷ୍ଟେସନ ଅତିକ୍ରମ କଲାପରେ ସେ କନକା ପାଖେ ପହଞ୍ଚିବା ସଙ୍ଗେ ସଙ୍ଗେ ସେଠାର କେତେକ କରୁଣ ଦୃଶ୍ୟ ତାଙ୍କ ମନ ମଧ୍ୟରେ ଉଦ୍‌ଭାସିତ ହେଲା । ସେ ଅଞ୍ଚଳର ନାରୀମାନଙ୍କ ପ୍ରତି ତତ୍କାଳୀନ ନିର୍ମମ ରାଜକର୍ମଚାରୀଗଣ ଯେଉଁଭଳି ଅତ୍ୟାଚାର କରିଥିଲେ, କବିପ୍ରାଣ ସେଥିରେ କାନ୍ଦି ଉଠିଥିଲା । ତାଙ୍କର ଅନ୍ତରାତ୍ମା ଥରି ଉଠିଥିଲା ଏବଂ ସେ ଗାଇ ଉଠିଥିଲେ—

"କୁଳାଙ୍ଗନା ପରେ ଘୋର ଆକ୍ରମଣ,
ବିକଳେ ବଧୂରି କରଇ ରୋଦନ ।
× × ×
ପଥେ ଗର୍ଭିଣୀର, ଭୟେ ଗର୍ଭସ୍ରାବ,
ଉଠଇ ଗୋଟୋଷ୍ଟେ ବିକଟାଳ ରାବ ।
ମହା ବିପର୍ଯ୍ୟୟ ମହା ବିଭୀଷିକା,
କମ୍ପେ ମହାତଙ୍କେ ଦୁଃଖିନୀ କନକା ।"

ଭାଇ ଭଉଣୀକୁ ତା ଶାଶୁଘରେ ଛାଡ଼ିବାକୁ ଗଲାବେଳେ କାନ୍ଧରେ ଗଣ୍ଠିଲା ପକାଇ ଆଗେ ଆଗେ ଯିବାର ଦୃଶ୍ୟ ଅତି ସାଧାରଣ ହେଲେ ହେଁ କବି ଲେଖନୀରେ ସେଥିରେ ଏଭଳି ପ୍ରାଣପ୍ରାଚୁର୍ଯ୍ୟ ନିହିତ ଅଛି ଯେ, ତାହା ପାଠ କଲାବେଳେ ପାଠକର ହୃଦୟ ରସାପ୍ଳୁତ ହୋଇଯାଏ ।

ଯାଉଁଳି କାନ୍ଧରେ          କେବେ ବା ବାହରେ
ଭଉଣୀ ଆଗରେ ଚାଲଇ ଭାଇ,
ଶାଶୁଘର ନାଏ          ସନ୍ଧ୍ୟା ହେଲି କହେ
ଚଟ୍ରେ ଗୋଡ଼ କାଢ଼ି ଚାଲିବା ପାଇଁ ।
ନବ ଯଉବନୀ          କାଖେ ପିଲା ଘେନି
ଚାଲି ନ ପାରଇ ଜଘନ ଭରେ,
ତା ଚାରିକି ଚପଳ          ଯୁବା ସଙ୍ଗୀଦଳ
ପରିହାସେ ଏକ ଅନ୍ୟକୁ ଠାରେ ।
କେତେ ଆଡ଼ୁ ଉଡ଼ି          ଆସନ୍ତି ବାଦୁଡ଼ି
ଝୁଲନ୍ତି ପୁନାଙ୍ଗ ପଲ୍ଲବ ଶାଖେ;
ନଦୀ ତପ ତଟେ          ପାଦପ ପ୍ରକଟେ,
ଚଳପାଙ୍ଗୀ ଚାହେଁ ଚମକି ପାଖେ ।"

କେଡ଼େ ସରଳ ଓ ପ୍ରାଞ୍ଜଳ ଭାବରେ କବି ଏ ଦୃଶ୍ୟର ଏକ ଜୀବନ୍ତ ଓ ଚିତ୍ତ ଆହ୍ଲାଦକାରୀ ଆଲେଖ୍ୟ ଅଙ୍କନ କରିଛନ୍ତି, ଭାବିଲେ ତାଙ୍କର ମହନୀୟ କବିପ୍ରତିଭା ନିକଟରେ ମସ୍ତକ ଅବିନତ ହୋଇଯାଏ ।

ଗ୍ରାମର ସିମନ୍ତିନୀ ଦଳ କାଖରେ କଳସି ନେଇ ପୋଖରୀରୁ ପାଣି ଆଣିବା ବେଳର ଦୃଶ୍ୟ ମଧ କବି ଲେଖନୀରେ କିଭଳି ଜୀବନ୍ତ ଭାବେ ରୂପାୟିତ ହୋଇଛି, ତାହା ତାଙ୍କ ବର୍ଣ୍ଣିତ ନିମ୍ନ ପଦ୍ୟାଂଶରୁ ବେଶ ହୃଦୟଙ୍ଗମ କରିହୁଏ ।

"ଗ୍ରାମ ସିମନ୍ତିନୀ          ତହିଁଲାଇ ପାଣି
କଳସରେ ଯେବେ ନିଅନ୍ତି ଭରି,
ନୀଳମଣି ହାଗ          ପ୍ରାୟେ ସେ ଲହରୀ
ଖଣ୍ଡେ ଦୂର ଯାଏଁ ଯାଏ ପ୍ରସରି ।"

ଗାଁର କୁମାରୀଗଣ ସାୟଂକାଳରେ ଧୀପ ହସ୍ତରେ ଯାଗେଶ୍ୱରୀ ମନ୍ଦିରକୁ ଯାଆନ୍ତି । ସେମାନେ ଧୀପ ଦେଇ ଘରକୁ ଫେରିବାବେଳେ ହସ କୌତୁକରେ ଚତୁର୍ଦ୍ଦିଗ ମୁଖରିତ ହୁଏ । କେହି କାହା ଧଙ୍ଗେ ଅଳ୍ପ ପରିହାସ କରେ; ଆଉ କେହି ବେଣୀ ମଣ୍ଡନ ପାଇଁ ବଉଳ ଫୁଲ ସାଉଁଟେ । ଏ ଚିତ୍ର ଏତେ ସଜୀବ ହୋଇଅଛି ଯେ, ତାହା ପାଠ କଲାବେଳେ ପାଠକର ମନ ମଧ୍ୟରେ ସେ ଦୃଶ୍ୟଟି ନାଚିଉଠେ । କବି ଏ ଦୃଶ୍ୟରେ ଆତ୍ମହରା ହୋଇ ଗାଇଛନ୍ତି—

"ଯାଗେଶ୍ୱରୀ ପାଶେ ଧୀପ ଦେଇ ବାସେ
ଆସନ୍ତି କୌତୁକେ କୁମାରୀକୁଳ,
କିଏ କରେ କଳି ଆନ ସଙ୍ଗେ ମିଳି
କିଏ ବା ଗୋଟାଏ ବଉଳ ଫୁଲ ।"

ଧର୍ମପଦ କାବ୍ୟରେ କବି ନାରୀ ଚରିତ୍ର ଚିତ୍ରଣ କରିବାକୁ ଭୁଲି ନାହାନ୍ତି । ଧର୍ମପଦକୁ ସହପାଠୀମାନେ ଅଣବାବୁଆ କହିବାରୁ ତାହାର ଅନ୍ତରରେ କୋହ ଉଠୁଛି ଏବଂ ଲୁହ ଛଳ ଛଳ ଆଖିରେ ସେ ମାଆ ପାଖକୁ ଫେରି ଆସିଛି । ଏକୋଇର ବଳା ବଡ଼ିକେଶନ ଆଖିରେ ଲୁହ ଦେଖି ମାଆର ହୃଦୟ ଫାଟି ପଡ଼ୁଛି । ପୁଅଠାରୁ ସବୁକଥା ଶୁଣିବା ପରେ ଓଡ଼ିଆ ମାଆ ପ୍ରଶ୍ନ ପଚାରୁଛି—

"କିଏ ସେହି ପିଲା ଦେଲା ଏହିପରି
ଅପମାନ ଅକାରଣ ?
× × ×
ତା ମା' ଏଡ଼େ ସତୀ ମୋ ପୁଅକୁ ପୁଣି
କହେ ସେ ଅଣବାବୁଆ ?"

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ କବିତାରେ ନାରୀଚରିତ୍ର ଚିତ୍ରଣ ହୋଇଥିଲେ ହେଁ କେହି ମାତାର ପରମ ଗୌରବ ପାଇନାହାନ୍ତି । ପୁତ୍ର-ବିରହ-ବଧୁରା ଯଶୋଦାଙ୍କ ତୁଣ୍ଡରୁ ବାତ୍ସଲ୍ୟ ରସର ଅମିୟ ଧାରା ପ୍ରବାହିତ ହୋଇଥିବା ଆମେ ଜାଣୁ । କିନ୍ତୁ ସେ ଗୋପପୁରର । ଓଡ଼ିଶା କଥା ନେଇ ଓଡ଼ିଆ ଘରର ମାତୃ-ହୃଦୟର ଅଭିବ୍ୟକ୍ତିକୁ ଜୀବନ୍ତରୂପ ଦେଇଥିବାରୁ କବି ଚିର ନମସ୍ୟ, ଚିର ଆରାଧ୍ୟ ।

ଧର୍ମପଦ ମାଆଙ୍କ ପାଖରୁ ବିଦାୟ ନେଇ ପିତା ଓ ପିତୃବ୍ୟଙ୍କୁ ଦେଖିବାକୁ ଗଲାବେଳେ ମାଆର ଚିତ୍ତ ଅଜଣା ଆଶଙ୍କାରେ ଥରଉଠୁଛି । ନୟନ ପିତୁଳାକୁ ଛାଡ଼ି ସେ ଏକାକିମା ରହି ପାରିବେ ନାହିଁ ବୋଲି ଦୁଃଖରେ ଅତିଶୟ ଅଧୀର ହୋଇ କ୍ରନ୍ଦନ କରିବା ଦୃଶ୍ୟର ଦୃଶ୍ୟ ଯେଉଁଳି ଚମତ୍କାର, ସେହିପରି ମର୍ମ-ବିଦାରକ ।

"ମୋ ନେତ୍ରପିତୁଳି ଛାଡ଼ି କରେ ତୋତେ
ପାରିବି କି କ୍ଷଣେ ବଞ୍ଚି,
ମୋ ଅନ୍ଧାର ଘରେ ତୁ ଏକା ପ୍ରଦୀପ
ମୋ ହୃଦ-ସିନ୍ଧୁ କି କଞ୍ଚି ।"

ବାରବାଟୀ ଦୁର୍ଗ ପ୍ରସଙ୍ଗରେ କବିଙ୍କ ନିମ୍ନଲିଖିତ ବର୍ଣ୍ଣନାଟିକୁ ଦେଖାଯାଉ । ତତ୍କାଳୀନ ଉତ୍କଳର ରାଜା ଯୁଦ୍ଧଯାତ୍ରା ଉଦ୍ଦେଶ୍ୟରେ ଦୁର୍ଗରୁ ମେଲାଣି ନେଉଥିବାବେଳେ ରାଜ ମହିଷୀଙ୍କର ଅବସ୍ଥା ସମ୍ପର୍କରେ ସେ ଲେଖିଛନ୍ତି—

"ଥିଲା ଦିନ ଯେବେ ନବତଳ ହର୍ମ୍ୟେ
ଯୁଦ୍ଧଯାତ୍ରୀ ରାଜା ମେଲାଣି କାଳେ,
ଆଣି ନଖ ମାର ଘଞ୍ଚିଲ ସମୀର
ସ୍ୱେଦବିନ୍ଦୁ ଯୁକ୍ତ ମହିଷୀ ଭାଲେ ।
ସ୍ନେହ ସୁଧା ବିନ୍ଦୁ ଯେତେ ମୁଖ ଇନ୍ଦୁ
ମଣ୍ଡିଲା ପ୍ରସରି ନେତ୍ର ଯୁଗଳ,
ବାଷ୍ପ ସୁଶୀତଳେ ହରିଲା କୌଶଳେ
ନ ପକାଇ ମୁକ୍ତା ଫଳକ ତଳେ ।"

ଏଠାରେ କବିଙ୍କର ଅଦ୍ଭୁତ କଳ୍ପନାଶକ୍ତି ଲକ୍ଷ୍ୟ କରିବା କଥା । ଏହି ବର୍ଣ୍ଣନା ଯେଉଁପରି ମଞ୍ଜୁଳ ସେହିପରି ମନୋମୁଗ୍ଧକର ହୋଇ ପାରିଛି ।

ପଣ୍ଡିତ ଗୋପବନ୍ଧୁ ଯେ କେବଳ ପଲ୍ଲୀ ନାରୀର ଗୃହଜୀବନର ଚିତ୍ର ଦେଇଛନ୍ତି—ତାହା ନୁହେଁ, ସେ ସମଗ୍ର ନାରୀ ଜାତିର ବନ୍ଧୁ, ଭ୍ରାତା ଏବଂ ଉପଦେଷ୍ଟା ରୂପେ ସେମାନଙ୍କୁ ଉପଦେଶ ଛଳରେ ନାନା ଶିକ୍ଷା ମଧ୍ୟ

ଦେଇଛନ୍ତି । ତାଙ୍କ ଦିବ୍ୟ ଦୃଷ୍ଟିରେ ନାରୀ କେବଳ "ଆଦ୍ୟ ମୋହିନୀ ଶକ୍ତି" ନୁହେଁ କିମ୍ବା ସେ ତାର "ତରୁଣ ଛଟକ ଭାବ" "ଅପାଙ୍ଗ ଗୃହିଣୀ" ପାଇଁ ଉପଭୋଗ୍ୟା ନୁହେଁ । ନାରୀ ଯେ "ସଦାଶୟା ସ୍ନେହମୟୀ ପରମ ପାବନୀ" ଏହା ସେ ଗୁରୁଗମ୍ଭୀର ଭାବରେ ପ୍ରଚାର କରିଛନ୍ତି । ନାରୀଙ୍କଠାରେ ସୁଧାସମ ମାତୃଭାବ ମିଳେ ଏବଂ ସେମାନେ ମଧ୍ୟ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିପାରନ୍ତି, ଏହା କବି ସ୍ୱୀକାର କରିଛନ୍ତି ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଲାବଣ୍ୟବତୀ କାବ୍ୟର ଏକ ପଂକ୍ତି ମନେପଡ଼େ । ନାରୀ ଜାତି ପ୍ରତି ସମ୍ମାନ ପ୍ରଦର୍ଶନ କରି ସେ କହିଛନ୍ତି—

"ହୀରା, ନୀଳା, ମାଣିକ୍ୟ, ମୁକୁତା, ବିଦ୍ରୁମର
ମୂଲ୍ୟ ଅଛି, ମୂଲ୍ୟ ନାହିଁ ସ୍ତ୍ରୀ ରତନର ।"

ଏଠାରେ ସ୍ତ୍ରୀମାନଙ୍କ ସମ୍ପର୍କରେ ଆଉ କେତେକ ପାଶ୍ଚାତ୍ୟ କବିଙ୍କର ଉଦାହରଣ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ । ବିଖ୍ୟାତ ଜର୍ମାନ କବି Goethe କହିଛନ୍ତି—"The woman soul leadeth us upward and on"—ଅର୍ଥାତ୍ ସ୍ତ୍ରୀ, ପୁରୁଷର କର୍ତ୍ତବ୍ୟ ପଥର ପଥପ୍ରଦର୍ଶକ । ଅମର କବି ପୋପ୍ କହନ୍ତି—"She moves a goddess and she looks a queen" ଅର୍ଥାତ୍ ରମଣୀ କେବଳ ଗୃହିଣୀ ନୁହେଁ, ଗୃହଲକ୍ଷ୍ମୀ । ମନୁ ମଧ୍ୟ କହିଛନ୍ତି— 'Where women are honoured, there the gods are pleased." ଏହାର ଅର୍ଥ ହେଲା—ସ୍ତ୍ରୀ ପ୍ରତି ସଦ୍‌ବ୍ୟବହାର କଲେ ଦେବତାଗଣ ପ୍ରୀତ ହୁଅନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ସ୍ତ୍ରୀମାନଙ୍କୁ ସମ୍ମାନ ଦେଇ କହୁଥିଲେ—"ଅର୍ଦ୍ଧେକ ମାନବୀ ତୁମି ଅର୍ଦ୍ଧେକ କଳ୍ପନା" ।

ଏ ସଂସାରରେ ଦୈହିକ ପ୍ରେମ ପ୍ରକୃତରେ ପ୍ରେମ ନୁହେଁ । ନୈସର୍ଗିକ ପ୍ରେମ ହିଁ ପ୍ରକୃତ ପ୍ରେମ । ଏକଥା ସୂଚାଇ ମହାମନା କବି କହିଛନ୍ତି—

"ପ୍ରଣୟୀର ସ୍ଥାନ ନୁହେଁ ଏ ସଂସାର ଏକା,
ପ୍ରେମେ ପ୍ରଣୟୀ ସଙ୍ଗତେ ସ୍ୱର୍ଗ ହେବ ଦେଖା ।
ଏହି ଦିବ୍ୟ ସାନ୍ତ୍ୱନାରେ ଆଶ୍ୱାସିଣି ମନେ,
କ୍ଷଣେ ଏଥି ରହି ଚଳ ଅମର ଭବନେ ।"

ଧନୁ ଓ ଧନୁର ଗୁଣ ମଧ୍ୟରେ ସମ୍ପର୍କ ଯେଉଁପରି ଅଛିନ୍ନ, ସ୍ୱାମୀ ସହ ସ୍ତ୍ରୀର ସମ୍ପର୍କ ସେହିପରି ଅବିଚ୍ଛିନ୍ନ । ଉଭୟଙ୍କ ମଧ୍ୟରେ କ୍ଷୀରନୀର ସମ୍ବନ୍ଧ ପ୍ରତିଷ୍ଠିତ ହୋଇଥାଏ । ଉଭୟଙ୍କ ତନୁ ଭିନ୍ନ ଭିନ୍ନ ହେଲେ ହେଁ ମନ ଅଭିନ୍ନ । ଏଣୁ ସ୍ୱାମୀ ବିନା ସ୍ତ୍ରୀର ଦୁର୍ଗତି ବିଷୟରେ କହିବାକୁ ଯାଇ ସେ ଲେଖିଛନ୍ତି—

"ଗୃହ ତେଜି ଗୃହସ୍ୱାମୀ ହୋଇଲେ ଅନ୍ତର,
ପଳାନ୍ତି ସେବକେ କିଏ କାହିଁ ଗୁଡ଼ ଘର ।
ସୁନା ଘର ଚୂନା ହୋଇଯାଏ ସେହିକ୍ଷଣେ,
ମୋର ବୋଲି କହିବାକୁ ରହେ ନାହିଁ ଜଣେ ।"

ଗୋ-ସେବା ହିନ୍ଦୁ ଗୃହିଣୀର ପରମ କର୍ତ୍ତବ୍ୟ । ଗୋ ସେବାରୁ ବଳି ପୁଣ୍ୟ କାର୍ଯ୍ୟ ସଂସାରରେ ଆଉ କିଛି ନାହିଁ ବୋଲି ମତ ବ୍ୟକ୍ତ କରି ସେ କହିଛନ୍ତି—

"ଯେ ଲୋଡ଼େ ସୁତ ପାଏ ସୁତ,
ଅଥବା ସମ୍ପଦ ବହୁତ ।
ଯେ ନାରୀ ଇଚ୍ଛେ ଯେଉଁ ପତି,
ତାହାର ହୁଏ ତା ପ୍ରାପତି ।
ଯେ ନାରୀ କରନ୍ତି ଗୋ-ସେବା
ସେ କେବେ ନୁହନ୍ତି ବିଧବା ।
ବିଧବା ଗୋରୁ ସେବା କରି
ଭବ ଦୁଃଖରୁ ଯାʼନ୍ତି ତରି ।"

ଉଲ୍ଲିଖିତ ଉଦ୍ଧୃତାଂଶରେ କବି ନାରୀ ଜାତିକୁ ଯେଉଁପରି ହିତବାଣୀ ପ୍ରଦାନ କରିଛନ୍ତି, ତାହା ଅନ୍ୟତ୍ର କ୍ୱଚିତ ଦେଖିବାକୁ ମିଳେ । ହେଲେହେଁ, କେତେକ ଶିକ୍ଷିତା ନାରୀ ଗୋ-ସେବାରେ ମନ ଦେଉ ନ ଥିବାରୁ ସେମାନଙ୍କପ୍ରତି ଆକ୍ଷେପ କରି କବି ଲେଖିଛନ୍ତି—

"ଗୋ ସେବା ନ କରନ୍ତି ନାରୀ, ବାଅନ୍ତି ନାହିଁ ତୃଣ ବାରି,
ପୋଛନ୍ତି ନାହିଁ ସେ ଗୁହାଳ, ଆସିଲା ଏ ବିଷମ କାଳ ।"

ଆଧୁନିକା ସଭ୍ୟା ନାରୀ-ସମାଜ ପ୍ରତି ଆକ୍ଷେପ କରି କବି କହିଛନ୍ତି ଯେ, ନାରୀମାନେ ଅବଳା, ଅସହାୟା । ତେଣୁ ସେମାନେ ସର୍ବଦା ନରର ବାହୁଚ୍ଛାୟା ତଳେ ଆଶ୍ରିତା । କ୍ଷୀଣ ବଲ୍ଲରୀ ପାଦପକୁ ଆଶ୍ରୟ କରିଥିବାରୁ ଯେଉଁଭଳି ଉଭୟ ଅଙ୍ଗ ମଞ୍ଜୁଳ ଦେଖାଯାଏ, ସେହି-ଭଳି ସ୍ତ୍ରୀ ସ୍ୱାମୀର ଆଶ୍ରା ପାଇ ସୁଖର ସଂସାର ଗଠନ କରେ । ଅସହାୟା ଅବଳା ଓ କୋମଳପ୍ରାଣା ନାରୀ କେବେହେଲେ ପୁରୁଷ ସମକକ୍ଷା ହେବେନାହିଁ । କିନ୍ତୁ ଆଧୁନିକା ସଭ୍ୟା ନାରୀ ପୁରୁଷ ସହ ସମ ନ ଆସନ ଦାବୀ କରିବାକୁ ସେ ନାପସନ୍ଦ କରିଛନ୍ତି—

"ସୁଦୃଢ଼ ଗମ୍ଭୀର ନୁହଇ, ଯେଣୁ ନାରୀ ହୃଦୟ
ତେଣୁ ବିନା ନରେ ଅଟନ୍ତି ନାରୀ ଜାତି ଆଶ୍ରୟ ।
ସୁକୋମଳ କ୍ଷୀଣ ବଲ୍ଲରୀ ଲଭି ପାଦପ ସଙ୍ଗ
ଆହା କି ପରମ ମଞ୍ଜୁଳ ଦିଶେ ଉଭୟ ଅଙ୍ଗ ।
ତେବେ କିମ୍ପା ଏତେ ଯୁଝନ୍ତି ସଭ୍ୟ ନାରୀ-ସମାଜ,
ପତିଗଣ ସଙ୍ଗେ ସର୍ବାଂଶେ ସମ ହେବାକୁ ଆଜ ।
ଉଦ୍ଭବ ବେନିଙ୍କ ପ୍ରକୃତି ମଧ୍ୟେ ନିଷ୍ଟେ ଭିନ୍ନତା,
କିଏ ସେ କରିବ ଅନ୍ୟଥା ଯାହା କଳ୍ପିଛି ଧାତା ।"

ଭାରତର ସତୀତ୍ୱ ନିଷ୍ଠା ଜଗତରେ ଅତୁଳ୍ୟ । ଏହି ଦେଶର କୁଳକାମିନୀଗଣ ପତି ଭକ୍ତି, ପତି ସେବାର ଯେଉଁ ଗୌରବୋଜ୍ଜ୍ୱଳ ଦୃଷ୍ଟାନ୍ତ ରଖିଯାଇଛନ୍ତି, ତାହା ଅତୁଳନୀୟ । ଏ ଦେଶର ପତିପ୍ରାଣା, ପତି ସୋହାଗିନୀ ସତୀ ସୀତା, ସାବିତ୍ରୀ, ପାର୍ବତୀ ଓ ଦ୍ରୌପଦୀ ସେଥିପାଇଁ ଜଗତରେ ବନ୍ଦନୀୟା ଓ ଅଭିନନ୍ଦନୀୟା । କିନ୍ତୁ ଆଧୁନିକ ନାରୀ ସମାଜର ସଭ୍ୟା ଓ ଶିକ୍ଷିତା ନାରୀମାନେ ପାଶ୍ଚାତ୍ୟ ଢଙ୍ଗର ଅନୁକରଣ କରି ଏ ମହାନ ଆଦର୍ଶକୁ କ୍ଷୁର୍ଣ୍ଣ କରି ଦେଉଛନ୍ତି । ଏଣୁ କବି ମର୍ମାହତ ହୋଇ ଗାଇଛନ୍ତି—

"କୁଳକାମିନୀର ଏପରି ବିନା ମହତ ରୀତି
ଲଜ୍ଜାବତୀ ହୋଇ ଏକାନ୍ତେ କାନ୍ତେ ଆଚରେ ପ୍ରୀତି ।"

ପ୍ରକୃତ ବର୍ଣ୍ଣନା ମାଧ୍ୟମରେ ସାମାଜିକ ଜୀବନର ଏଭଳି ନିଚ୍ଛକ ପ୍ରତିଛବି ଅଙ୍କନ କରିବା କେବଳ ଗୋପବନ୍ଧୁଙ୍କ ତୁଳୀରେ ହିଁ ସମ୍ଭବ ହୋଇପାରିଛି ।

ଗୋପବନ୍ଧୁ ଶୈଶବରେ ମାତାଙ୍କୁ ହରାଇ ପିଉସି ନାମୀଙ୍କ ଦ୍ୱାରା ଲାଳିତ ପାଳିତ ହୋଇଥିଲେ । ସେହି ପିଉସୀନାମୀଙ୍କ ନିଷ୍କାମ ପ୍ରେମ, ଅନାବିଳ ସ୍ନେହମମତା ଓ ତ୍ୟାଗ ବିଷୟ ବର୍ଣ୍ଣନା କରିବାକୁ ଯାଇ ସେ ଯାହା କହିଛନ୍ତି—

"ସଦା ସମଭାବ ତବ ଭିତରେ ବାହାରେ,<br>
ପର ଲାଗି ଆଲୋଡ଼ିତ ସତତ ହୃଦୟ ।<br>
ଆଜୀବନ ତେଜି ନିଜ ସୁଖ ସମୁଚୟ,<br>
ସୁଧାସମ ମାତୃଭାବ ମିଳେ ତୁମ୍ଭଠାରେ ।<br>
ସଦାଶୟା ସ୍ନେହମୟୀ ପରମ ପାବନୀ,<br>
ଜୀବନ ମହତ ଲକ୍ଷ୍ୟ ସାଧୁନ୍ତ ଗୁପତେ,<br>
ତୁମ୍ଭ ରୀତି ଆଚରିଲେ ସକଳ କାମିନୀ,<br>
ଓହ୍ଲାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ୍ୟ ଜଗତେ ।"

ତାହା ଆଧୁନିକ ନାରୀ-ସମାଜ ଅନୁସରଣ କଲେ ବାସ୍ତବିକ ମର୍ତ୍ତ୍ୟରେ ସ୍ୱର୍ଗର ଅଭ୍ୟୁଦୟ ହୁଅନ୍ତା । ତେବେ ଆଧୁନିକ ନାରୀ-ସମାଜ ଏହା ଅନୁସରଣ କରିବ କି ?



# ଗୋପବନ୍ଧୁ ସାହିତ୍ୟରେ ପ୍ରେମତତ୍ତ୍ୱ

ଶ୍ରୀ ଶ୍ରୀବତ୍ସ ପ୍ରସାଦ ନାଥ

[ ଲେଖକ ଶ୍ରୀ· ନାଥ ଓଡ଼ିଶାର ମାଧ୍ୟମିକ ବିଦ୍ୟାଳୟମାନଙ୍କରେ ପ୍ରାୟ ୧୮ ବର୍ଷ ଧରି ଉଚ୍ଚତର ଶ୍ରେଣୀମାନଙ୍କରେ ମାତୃଭାଷା ଶିକ୍ଷକ ରୂପେ କାର୍ଯ୍ୟ କରି ଆସୁଅଛନ୍ତି । ଛାତ୍ରାବସ୍ଥାରୁ ଲେଖାଲେଖିରେ ମନ ବଳାଇ ଆସିଛନ୍ତି । 'ଉତ୍କଳ ପ୍ରସଙ୍ଗ', 'ଶରଦେ', 'ଜୟନ୍ତୀ', 'ଶିକ୍ଷକ ଦର୍ପଣ', 'ଶିକ୍ଷା ପ୍ରଦୀପ' ଓ 'ପୁରୁଷୋତ୍ତମ' ପ୍ରଭୃତି ବିଭିନ୍ନ ଓଡ଼ିଆ ପତ୍ରପତ୍ରିକାରେ ତାଙ୍କର ଲେଖା ପ୍ରକାଶ ପାଇଛି । ତାଙ୍କର ରଚନାମାନଙ୍କ ମଧ୍ୟରୁ ଏ ପର୍ଯ୍ୟନ୍ତ—"ଚଉତିଶା ଚନ୍ଦ୍ରାମଣି", "ଶ୍ରୀ ରଘୁନାଥ ଜଉ", "ବୌଦ୍ଧତୀର୍ଥ ଚରିତ୍ରିରେ", (କାବ୍ୟ) "ପଲ୍ଲୀପଥେ", "କେଡ଼େ ସୁନ୍ଦର ଭାରତ ସତେ !" (ଶିଶୁସାହିତ୍ୟ) ଓ"ସାଗର ପାରେ ଓଡ଼ିଆ" (କାବ୍ୟ ପ୍ରକାଶ ପାଇଛି । ଲେଖକଙ୍କର ଉକ୍ତ ପ୍ରବନ୍ଧଟି ଅନ୍ୟ ଏକ ଶିରୋନାମାରେ ଓଡ଼ିଆ ମାଧ୍ୟମିକ ଶିକ୍ଷକ ସଂଘର ମୁଖପତ୍ର "ଶିକ୍ଷା ପ୍ରଦୀପ" ଅକ୍ଟୋବର (୧୯୬୭)ଦଶମି ସଂଖ୍ୟାରେ ଗୋପବନ୍ଧୁ-ଜୟନ୍ତୀ ଉଦ୍ଦେଶ୍ୟରେ ପ୍ରକାଶିତ ହୋଇଥିଲା । – ସଂ ]

ପ୍ରେମ ସ୍ୱର୍ଗୀୟ ଓ ଅନନ୍ତ । ପ୍ରେମ ରାଜ୍ୟରେ ଅସତ୍ୟ, ଅନ୍ୟାୟ ଓ ଅମଙ୍ଗଳର ସ୍ଥାନ ନାହିଁ । ଏହି ପ୍ରେମ ଓ ବିଶ୍ୱାସର ମହିମାସୂଚକ ଘୋଷଣା କରି ଇଂରେଜ କବି ଟେନିସନ୍ କହିଛନ୍ତି—

"If love belove, of love of ours
Faith and unfaith are never equal powers
unfaith is aught
Is want of faith in all"

ଏହି ଭାବାବେଶରେ ଯେଉଁମାନଙ୍କର ହୃଦୟ, ମନ, ଅସ୍ଥିର ହୋଇ ଉଠିଥିଲା, ଯେଉଁମାନଙ୍କର ସରଳ ପ୍ରାଣ ଶୋକ ଜର୍ଜରିତ ହୋଇଥିଲା, ଯେଉଁମାନେ ନିଜେ କାନ୍ଦି ଅନ୍ୟମାନଙ୍କୁ ଜନ୍ମଭୂମି ପାଇଁ କନ୍ଦାଇ ପାରିଥିଲେ, ସେମାନଙ୍କ ମଧ୍ୟରେ ଝୁରିଅନା ବନର ଦରଦୀ କବି ଉତ୍କଳମଣି ଗୋପବନ୍ଧୁ ହିଁ ଶ୍ରେଷ୍ଠ ସ୍ଥାନର ଅଧିକାରୀ । ରାଜନୀତିରେ ସରଳତା, ସାହିତ୍ୟାନୁରାଗରେ ସରସତା, ସେବା ମନୋବୃତ୍ତିରେ ଆତୁରତା, ପର ଦୁଃଖରେ କାତରତା, ଶିକ୍ଷାଦାନର ଆବେଗତା, ପ୍ରେମର ପବିତ୍ରତା ଯାହାଙ୍କର ଗଭୀର ହୃଦୟକୁ ସଦାସର୍ବଦା ଉଦ୍‌ବୁଦ୍ଧ କରୁଥିଲା, ସେହି କେବଳ ଉତ୍କଳମଣି । ଯିଏ ପରକୁ ଆପଣାର କରିବାକୁ ଯାଇଁ ନିଜର ଅମୂଲ୍ୟ ସମ୍ପଦ ଜୀବନକୁ ଦେଶ ଓ ଜାତିପାଇଁ ବଳିଦେଇ ଲେଖିଛନ୍ତି —

"ଜୀବନ କି ଖାଲି ନିଗଣାରି ବାଲି
ମରୁ ମଣ୍ଡିତ କି ସେନେହ ପ୍ରୀତି,
ତେବେ କି ଆଶାରେ କହ ଏ ସଂସାରେ
ପର ଲାଗି ନର ମରୁଛି ନିତି ?

\+ \+ \+ \+

ପ୍ରେମ ପରି ସହେ ସହି ସୁଖ ପାଏ
ପ୍ରେମ ନ ଜାଣଇ କେବେ ଶୋଚନା
ପ୍ରିୟଜନେ ଲୁହେଁ ପ୍ରେମିକ ବିମୁଖ
ହେଲେ ହେଉ ପଛେ ଗୁରୁ ଗଞ୍ଜନା ।"

ଯଦିଓ କେତେକ ମନୀଷୀ ତାଙ୍କର 'ଉତ୍କଳମଣି' ନାମକରଣରେ ତାଙ୍କୁ ଏକ ସଙ୍କୀର୍ଣ୍ଣ ପରିସର ମଧ୍ୟରେ ଆବଦ୍ଧ କରାଯାଇଛି ବୋଲି ମନେ କରନ୍ତି, ତଥାପି ଯାହାଙ୍କର ଶରୀର ଓଡ଼ିଶାର ପାଣି ପବନରେ ବର୍ଦ୍ଧିତ ଓ ପୁଷ୍ଟ, ଯିଏ ନିଜ ଜନ୍ମଭୂମିର ପ୍ରତ୍ୟେକ ଅଞ୍ଚଳରେ ସୁପରିଚିତ ହୋଇ ମହାଭାରତୀୟ ସ୍ତରରେ ନେତୃତ୍ୱ ଦେଇ ପାରିଥିଲେ ତାଙ୍କୁ 'ଉତ୍କଳମଣି' କହିବା କିଛି ଅନ୍ୟାୟ ହୋଇନାହିଁ । ବରଂ ଅତି ଆପଣାର, ଅତି ଆଦରର ଘର ପୁଅକୁ ତାର ଆତ୍ମୀୟ ସ୍ୱଜନ ଓ ପ୍ରତିବେଶୀମାନଙ୍କର ଏହା ଏକ ସ୍ନେହସୂଚକ ପ୍ରେମପୂର୍ଣ୍ଣ ସମ୍ବୋଧନ । ସୁତରାଂ ସେ ଥିଲେ ଓଡ଼ିଆ ଜାତିର ମଉଡ଼ମଣି ।

ହୃଦୟର ଭାବୋଚ୍ଛ୍ୱାସରେ ଯେଉଁମାନେ ଜଗତର ସକଳ ଯାତନା, ନିରାଶା ଓ ବିଭୀଷିକାକୁ ଏକାବେଳକେ ଅସ୍ୱୀକାର କରି ନିଜର ସୁନେଲି କଳ୍ପନା ମୋହରେ କବିତା ରଚନା କରି ସଂସାରକୁ ସୁଖ, ସୌନ୍ଦର୍ଯ୍ୟ ଓ ଶାନ୍ତିର ଏକ ପୀଠସ୍ଥଳୀ ରୂପେ ବର୍ଣ୍ଣନା କରନ୍ତି, ସେଥିରେ ମାନବ ଜୀବନର କୌଣସି ନିଗୂଢ଼ ରହସ୍ୟ ରୂପାୟିତ ହୋଇପାରେ ନାହିଁ । ଏହିମାନଙ୍କୁ ସାଧାରଣତଃ କୁହାଯାଏ ରସିକକବି । ଏମାନଙ୍କ ମଧ୍ୟରେ କେତେକ ପ୍ରେମଧର୍ମୀ କବି ପରିଦୃଷ୍ଟ ହୁଅନ୍ତି, ଯେଉଁମାନେ ସମାଜର କେନ୍ଦ୍ରସ୍ଥଳୀରେ ପ୍ରବେଶ କରି ନିଜର ସଂପ୍ରସାରିତ ଦୃଷ୍ଟିଭଙ୍ଗୀମୂଳକ ଅନୁଭୂତିର ଆବେଗରେ ମନୁଷ୍ୟ ପ୍ରାଣର ଆଶା ଆକାଂକ୍ଷା, କାମନା-ବାସନା ଓ ମର୍ମନ୍ତୁଦ ଯାତନାକୁ ଜଣେ ସର୍ବଜ୍ଞାତା ତ୍ରିକାଳଦର୍ଶୀ ଭଳି ପରିପ୍ରକାଶ କରନ୍ତି । ଜୀବନ ସଂଗ୍ରାମରେ ନିପୀଡ଼ିତ ହୋଇ କବି ହୃଦୟରେ ଯେଉଁ ଚିନ୍ତାଧାରାର ଉଦ୍ରେକ ହୁଏ, ତାହା ରସର ସମାବେଶରେ ଜୀବନ୍ତ ରୂପ ଧାରଣ କରି ପାଠକ ପ୍ରାଣକୁ ଆଲୋଡ଼ିତ ଓ ଅଭିଭୂତ କରେ । ଏହି ଅନୁଭୂତିର ନିଖୁଣ ଅଭିବ୍ୟକ୍ତି ହିଁ ଉତ୍କୃଷ୍ଟ ସାହିତ୍ୟ । ଗୋପବନ୍ଧୁଙ୍କୁ ଏହି ପ୍ରେମଧର୍ମୀ ରସ କବି ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇପାରେ ।

ଗୋପବନ୍ଧୁଙ୍କ କବି ମାନସରେ ଏହି ପ୍ରେମଭାବ ହିଁ ଉଦ୍‌ଜୀବିତ ଥିଲା । ତା'ର ଆତ୍ମପ୍ରକାଶ ତାଙ୍କର ବିଭିନ୍ନ ପଦାବଳୀରେ ସମ୍ଭବ ହୋଇଛି । ତେଣୁ ସେ ଲେଖିଛନ୍ତି—

"ଫୁଲ ପରି ପ୍ରେମ ଝାଉଁଳେ କି ବନେ
ପ୍ରେମ ଯେ ଅନନ୍ତ ଅକ୍ଷୟ ଧାରା,
ଦୂର କଲେ ମତେ ହେବ କି ଅନ୍ତର
ତୁମେ ଯେ ମୋ ପ୍ରାଣ-ପ୍ରଣୟ କାରା ।
ଏ ଜୀବନେ ପ୍ରେମ ନୁହେଁ ଅବସାନ
ଅନ୍ୟ ସ୍ଥାନେ ପୁଣି ହେବ ତ ଦେଖା,
ଶୁଦ୍ଧ ନେତ୍ରେ ତହିଁ ଦେଖିବ ମୋ ହୃଦେ
ପ୍ରେମ ରସାଣିତ ଅମୃତ ଲେଖା ।"

ପ୍ରେମବାଦୀ କବି ପ୍ରେମକୁ ମାନବୀୟ ସ୍ତରରୁ ଉନ୍ନୀତ କରାଇ ଆଧ୍ୟାତ୍ମିକ ଭକ୍ତିରେ ରୂପାନ୍ତରିତ କରିଛନ୍ତି । ଅସାର ସଂସାରରେ ଭଗବତ ପ୍ରୀତି ହିଁ ମାନବର ପ୍ରଧାନ ସମ୍ବଳ । ପ୍ରେମର ଏହା ହିଁ ସର୍ବୋତ୍କୃଷ୍ଟ ପ୍ରକାଶ ।

ବୈଷ୍ଣବ ସାହିତ୍ୟରେ ପ୍ରେମକୁ ଏହିଭଳି ରୂପରେ ସ୍ୱୀକାର କରା ଯାଇଛି । କବି ବନ୍ଧୁପ୍ରେମର ଭିକାରୀ ଓ ଭଗବତ ପ୍ରୀତିରେ ବିହ୍ୱଳ ହୋଇ ଶାଶ୍ୱତ ପ୍ରେମର ସମ୍ପୂର୍ଣ୍ଣ ଅଧିକାରୀ ହେବାକୁ ଯାଇ ଗାଇଛନ୍ତି—

"ଗିରି, ସାଗର, ନଦୀ, ତପନ, ଶଶୀ
ସର୍ବେ ଚିହ୍ନିବେ ମୋତେ ପ୍ରେମେ ପରଶି ।
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା !"

କବି ମାନସରେ ଏହି ପ୍ରେମ ପ୍ରାବଲ୍ୟରେ ଅନୈତିକତା, ଅସାରତା, ଅବଳତା କିମ୍ବା ଛଳନା ନାହିଁ । ତାହା ସର୍ବଦା ପବିତ୍ର ଓ ମଙ୍ଗଳମୟ ହେତୁ ମହମାୟ ହୋଇପାରିଛି । କବି ଅନ୍ତରରେ ଏହି ପ୍ରେମ ପୁନଶ୍ଚ ସ୍ୱଦେଶାନୁରାଗରେ ପରିଣତ ହୋଇଛି । କବି ସ୍ୱଦେଶ ଉତ୍କଳର ପ୍ରାଚୀନ ଗୌରବର ବିଲୁପ୍ତିରେ ବ୍ୟଥିତ ହୋଇ ଗାଇଛନ୍ତି –

"ଅଛି ସେହି ଗିରି, ଅଛି ସେ ବିପିନ,
ଅଛି ଘୋର ଶିଳା-ସୁଦୃଢ଼ ପୁଲିନ,
କିନ୍ତୁ କାହିଁ ଆହା, ଏବେ ସେ ବୀରତା ?
ଓଡ଼ିଆ ଜାତିର ପୂର୍ବ ଜାଗ୍ରତା ?"

ଶେଷ ଜୀବନରେ ସଂସାର ପ୍ରତି ଅନୁରାଗ, ବନ୍ଧୁଜନମାନଙ୍କର ଉପେକ୍ଷା ଓ କଠୋର ଉଦାସୀନତାରେ ମର୍ମାହତ ପଡ଼ିବାରୁ ସେ କପରି ବ୍ୟଥିତ ଓ ବ୍ୟାକୁଳ ହୋଇ ଉଠିଥିଲେ, ତାର ତୀବ୍ର ଆତ୍ମଚେତନ ଓ ଅନୁଭୂତିର ଅସ୍ଥିର ଆବେଗ ବଳରେ ତାହା ତାଙ୍କର ପ୍ରତ୍ୟେକ କବିତାରେ ପ୍ରତିଧ୍ୱନିତ ହୋଇଛି । ସେଥିରେ କବି ଆତ୍ମଚିନ୍ତନରେ

ବିଭୋର ହୋଇ ନାହାନ୍ତି । ଆତ୍ମାନୁଭୂତିର ଆନନ୍ଦ ଏ କବିତା ଲେଖିବାରେ ତାଙ୍କୁ ସହାୟକ ହୋଇ ନାହିଁ । ତାହା ମାୟା ମୋହପୂର୍ଣ୍ଣ ଏହି ଖାଁଚିରୁ ଦୂରଆର ତୀବ୍ର ଓ ଉତ୍କଟ ଅନୁଭୂତିର ପରମ ଉତ୍କର୍ଷର ଚରମ ଅଭିବ୍ୟକ୍ତି । କବି ଯାହା ଆଶା କରିଥିଲେ, ପ୍ରିୟଜନ ଓ ବନ୍ଧୁ ବାନ୍ଧବଙ୍କଠାରୁ ତାହା ନ ପାଇ ଶେଷରେ ବ୍ୟଥାଭରା ହୃଦୟରେ ଜଗତକୁ ଦୁଃଖ ଓ ନିରାଶାର ବାଣୀ ଶୁଣାଇ ବିଶ୍ୱପ୍ରୀତି ଭଗବତ ପ୍ରୀତିର ସୁଶୀତଳ ଆଶ୍ରୟ କାମନା କରିଛନ୍ତି । ସଂସାରର ଦୁର୍ବିସହ ଯାତନାରେ ନିଷ୍ପେଷିତ ହୋଇ ଯେତେବେଳେ ତାଙ୍କ ଅନ୍ତର ଦୁଃଖରେ 'ହା'ହା'କାର କରି ଉଠିଛି, ସେତେବେଳେ କବି ବାସ୍ତବ ଜଗତକୁ ଫେରିଆସି ଜ୍ଞାନଚକ୍ଷୁ ଖୋଲି ନିଜକୁ ପ୍ରଶ୍ନ ପଚାରି କରିଛନ୍ତି—

"ପ୍ରେମର ଏ ପ୍ରଶସ୍ତି କି କବି କଳପନା
ପ୍ରେମ କି କେବଳ ମାତ୍ର ସ୍ୱାର୍ଥର ତୁଳନା ?
× × ×
ଏକକୁ ଅନାଇ ଆନ ନେତ୍ର ଅଶ୍ରୁଧାର
ବହିବ ନାହିଁ କି ଭେଦି ହୃଦୟ ଜୁଆର ?"

ଅନୁଭୂତିର ଆବେଗରେ ଏହି ପ୍ରଶ୍ନଗୁଡ଼ିକ ଜୀବନ୍ତ ଓ ପ୍ରାଣସ୍ପର୍ଶୀ ହୋଇଛି । ସେଥିପାଇଁ ଗୋପବନ୍ଧୁଙ୍କୁ କଳ୍ପନାବିଳାସୀ ଗୀତିକବି କୁହାଯାଇ ନ ପାରେ; କାରଣ ଜୀବନର ବହୁ ତିକ୍ତ ଅନୁଭୂତି ଜଗତକୁ କଳ୍ପନାର ରଙ୍ଗୀନ ଚକ୍ଷୁରେ ଦେଖିବା ପାଇଁ ତାଙ୍କୁ ସବୁଦା ବାରଣ କରିଥିଲା ।

ପଲ୍ଲୀ-ପ୍ରେମୀ କବି ହିସାବରେ ନନ୍ଦକିଶୋରଙ୍କ ପରେ ଗୋପବନ୍ଧୁହିଁ ଦ୍ୱିତୀୟ ସ୍ଥାନର ଅଧିକାରୀ । ନନ୍ଦକିଶୋର ପଲ୍ଲୀର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଥିଲେ, ମାତ୍ର ଗୋପବନ୍ଧୁଙ୍କ ଦୃଷ୍ଟିପଥରୁ ପଲ୍ଲୀ ପଥର ଉକାଶ; ପଲ୍ଲୀବାସୀର ଅତିଥିସେବା ତଥା ପଲ୍ଲୀର ଦୁଃଖ ଦୁର୍ଦ୍ଦଶା, ହସକାନ୍ଦ ସବୁ ବାଦ ଯାଇ ନ ଥିଲା, ଏପରିକି ଗ୍ରାମ ଦାଣ୍ଡରେ ଶିଶୁମାନଙ୍କର ଖେଳ କୌତୁକ, ନଈ ତଟରେ ପଥିକମାନଙ୍କର

ଯାତ୍ରାପ୍ରୀତ, ମାଛଧରାର କୌଶଳ ଆଦି ତାଙ୍କ ଲେଖାରେ ଜୀବନ୍ତ ହୋଇ ଉଠିଛି । କବି ଲେଖିଛନ୍ତି—

"ଧାଉଳି କାନ୍ଦରେ ଡେବେ ବା ବନ୍ଧରେ
ଭଉଣୀ ଆଗରେ ଗୃହିଁଇ ଭାଇ,
ଶାଶୁ ଘରେ ଝିଏ ସନ୍ଧ୍ୟା ଦେଖି କହେ
ଗୃହେଁ ଗୋଡ କାଢ଼ି ଗୃହିବା ପାଇଁ ।
ନବ ଯଉବନୀ କାଖେ ପିଲା ଘେନି
ଗୃହି ନ ପାରଇ ଜଘନ ଭାରେ
ତା' ଭୃଣି ଚପଳ ଯୁବା ସଙ୍ଗୀ ଦଳ
ପରିହାସେ ଏକ ଆନକୁ ଠାରେ ।"

ପଲ୍ଲୀଜୀବନର ସ୍ୱାଭାବିକ ଚିତ୍ର ଆଙ୍କିବାରେ କବି ଲେଖନୀ ସୁଦକ୍ଷ । ଭଉଣୀକୁ ନେଇ ଭାଇ ଶାଶୁଘରେ ଛାଡ଼ିଦେବା—ପଲ୍ଲୀ ଜୀବନର ଏକ ଘଟଣା—ସଚରାଚର ଘଟେ । କବି ତାଙ୍କର ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଏହି ଦୃଶ୍ୟର ଗୋଟିଏ ସ୍ୱାଭାବିକ ମନୋହର ଛବି ଅଙ୍କନ କରି ପାରିଛନ୍ତି । ଏଥିରୁ ତାଙ୍କର ପଲ୍ଲୀପ୍ରାଣତାର ଯଥେଷ୍ଟ ପରିଚୟ ମିଳେ ।

ପ୍ରକୃତିପ୍ରେମୀ କବି ପଲ୍ଲୀର ନଦନଦୀର ବର୍ଣ୍ଣନାରେ ଯେଉଁ କଳ୍ପନାର ଚମତ୍କାରିତାର ପ୍ରୟୋଗ କରିଛନ୍ତି, ତାହା ଅନନ୍ୟସାଧାରଣ । କବିଙ୍କ ଭାଷାରେ—

"କ୍ଷୀଣତୋୟା ନୀରେ ଖେଳେ ଧୀରେ ଧୀରେ
ସୁମଞ୍ଜୁଳା ଲଘୁ ଲହରୀ ମାଳା,
ଦକ୍ଷିଣ ହବରୁ କୁଞ୍ଚିତ କୁନ୍ତଳ
ମେଲାଇ ହେଉଛି କି ପଲ୍ଲୀବାଳା ।"

ତାଙ୍କର କବିତାଗୁଡ଼ିକ ଉପମା, ଅଳଙ୍କାର ଓ ଧ୍ୱନି ବ୍ୟଞ୍ଜନାର ଅପୂର୍ବ ସମାବେଶରେ ଅନୁଭୂତିର ଅବ୍ୟର୍ଥ ପ୍ରୟୋଗଦ୍ୱାରା ପାଠକ ଅନ୍ତରର ଗଭୀରତମ ପ୍ରଦେଶକୁ ସ୍ପର୍ଶ କରିପାରିଛି । ଆଧୁନିକ ଯୁଗରେ

ପ୍ରେମର ବିଷମୟ ଫଳମାନଙ୍କୁ ଲକ୍ଷ୍ୟକରି କବି ଗୋଟିଏ ସୁନ୍ଦର ଉପମାଳଙ୍କାର ମାଧ୍ୟମରେ ନିଜର ଅନୁଭୂତି ବ୍ୟକ୍ତ କରିବାକୁ ଯାଇ ଲେଖିଛନ୍ତି—

"ଉତ୍ଫୁଲ୍ଲ ଅଲକ୍ଷିତେ କାହିଁ ଅସ୍ମବାନ୍ଧ
ସ୍ୱାର୍ଥ ଚାପେ ଛୁଣ୍ଡାଇଲା ପ୍ରୀତି-ପଯ୍-ସିନ୍ଧୁ ।
ଫଟନ୍ତି ଶ୍ୟାମଳ ସ୍ନିଗ୍ଧ ଶୈଳ ଗର୍ଭେ ଲୁଚି—
ଥିଲା ଶିଳା ଭେଦ କ୍ଷମ ସୂକ୍ଷ୍ମ ବଜ୍ର ସୂଚୀ ।
ଅକସ୍ମାତେ ବିଦାରିଲା ଶଇଳ ଶିଖର
ଏକ ଶୃଙ୍ଗ ଦ୍ୱିଧା ଏବେ ଯୋଜନ ଅନ୍ତର ।"

ସଂସାରର ଦୁଃଖ-ଦୈନ୍ୟ, ମାନ ଅପମାନ, ହିଂସା ଦ୍ୱେଷ ଓ ନିନ୍ଦା ଭର୍ତ୍ସନାକୁ ଅମ୍ଳାନ ବଦନରେ ଓ ଅକାତର ଚିତ୍ତରେ ସହି ଯାଇ ସମଗ୍ର ଜୀବନର ତୀବ୍ର ଅନୁଭୂତିକୁ ରୂପ ଦେଇ କବି ଆମ୍ଭମାନଙ୍କ ସମ୍ମୁଖରେ ମନୁଷ୍ୟ ଜୀବନର ଅମୂଲ୍ୟ ସମ୍ପଦ ପ୍ରେମ ସମ୍ବନ୍ଧରେ ବ୍ୟାପକ ଓ ନିଗୂଢ଼ ସତ୍ୟ ପ୍ରତିପାଦନ କରି ଯାଇଛନ୍ତି । କେବଳ ରମାମୋଦୀ ପାଠକଗଣ ଏଥିରେ ଶାନ୍ତି ଲାଭ କରନ୍ତି ନାହିଁ; ତାହା ବିତାପକ୍ଲିଷ୍ଟ ସମଗ୍ର ମାନବ ସମାଜକୁ ନୂତନ ପ୍ରେମ ମନ୍ତ୍ରରେ ଦୀକ୍ଷିତ କରାଇ ବିଶ୍ୱଶାନ୍ତି ଓ ଭଗବତ୍ ପ୍ରୀତି ମାଧ୍ୟମରେ ସମସ୍ତଙ୍କୁ ଅଦମ୍ୟ କର୍ମପ୍ରେରଣା ଯୋଗାଏ । ସେଥିପାଇଁ କବିଙ୍କ ଉଦ୍ଦେଶ୍ୟରେ ବିନମ୍ର ଶ୍ରଦ୍ଧାଞ୍ଜଳୀ ଅର୍ପଣ କରିବାକୁ ଯାଇ ବିଶ୍ୱକବି ରବୀନ୍ଦ୍ର ନାଥଙ୍କ କବିତାରୁ ପଦେ ମନେପଡ଼େ—

"ଜୀବନ ମନ୍ଥନ ବିଷ ନିଜେ କରି ପାନ,
ଅମୃତ ଯା' ଉଠେଛିଲ କରେଗେଛ ଦାନ ।"

●

# ଗୋପବନ୍ଧୁଙ୍କ ସାହିତ୍ୟରେ
# ଧର୍ମଧାରଣା

ଶ୍ରୀମତୀ ପ୍ରମିଳା ମିଶ୍ର, ଏମ୍. ଏ.

[ ପୁରୀ ଜିଲ୍ଲା ସାକ୍ଷୀଗୋପାଳ ଅନ୍ତର୍ଗତ ଶ୍ରୀ ରାମଚନ୍ଦ୍ରପୁରର କୁମାରୀ ପ୍ରମିଳା ମିଶ୍ର ବି. ଏ. ପାଶ୍ କଲା ପରେ ଶ୍ରୀମତୀ ପତି ରୂପେ ପାଞ୍ଚବର୍ଷ ବୈବାହିକ ଜୀବନ ଯାପନ କରି ପୁଣି ସ୍ନାତକୋତ୍ତର ସଂସ୍କୃତ ଅଧ୍ୟୟନରେ ମନୋନିବେଶ କଲେ । ନାନା ବାଧାବିଘ୍ନ ଓ କର୍ତ୍ତବ୍ୟ ତାଡ଼ନା ସତ୍ତ୍ୱେ ତାଙ୍କର ଅବିଚଳିତ ସାହିତ୍ୟ-ସାଧନା ଅଭିନନ୍ଦନୀୟ ।—ସଂ]

ବର୍ଷ ପରେ ବର୍ଷ କାଳର କରାଳ କବଳରେ ଗ୍ରାସ ହୋଇଯାଏ । ସମୟର ଅପ୍ରତିହତ ନିରବଚ୍ଛିନ୍ନ ଗତିଧାରାର ପ୍ରଖର ସ୍ରୋତରେ ଏଇ କ୍ଷଣଭଙ୍ଗୁର ଜଡ଼ଜଗତର ସମସ୍ତ ସୃଷ୍ଟିବସ୍ତୁ ତାର ସ୍ଥୂଳସତ୍ତା ହରାଇ ବସେ । କିନ୍ତୁ ତ୍ୟାଗି, ନିଷ୍ଠାପର, ଦେଶସେବକ, ତପସ୍ୱୀ ଓ ମହାତ୍ମା-ପୁରୁଷର ନିଷ୍ପାପ, ନିତ୍ୟଶୁଦ୍ଧ, ମୁକ୍ତ, ଅମର ଆତ୍ମାର ମହାନ୍‌ତେଜ ଚିରକାଳ ଦେଶର ଓ ସମାଜର ପ୍ରତି ଅଣୁପରମାଣୁରେ ମଧ୍ୟ ପରିବ୍ୟାପ୍ତ ହୋଇ ଚିରଭାସ୍ୱରାଲୋକରେ ସୃଷ୍ଟିକୁ ଉଦ୍ଭାସିତ କରେ । ସଂସ୍କୃତରେ ସେଥିପାଇଁ କଥିତ ଅଛି—'କୀର୍ତ୍ତିର୍ ଯସ୍ୟ ସଃ ଜୀବତି' । ଏହି ଦୃଷ୍ଟିକୋଣରୁ ବିଚାର କଲେ ପ୍ରକୃତରେ ଉତ୍କଳମଣି ଗୋପବନ୍ଧୁ ଥିଲେ ଜଣେ ମହାମାନବ—ଧର୍ମ, କୀର୍ତ୍ତି, ଦୟା, ସଂସ୍କୃତି, ଆଧ୍ୟାତ୍ମିକତା ତଥା ଦର୍ଶନର ଏକ ମୂର୍ତ୍ତିମନ୍ତ ବିଗ୍ରହ, ଯାହାଙ୍କର କୋଠର ତପସ୍ୟାରତ ଜୀବନର ପବିତ୍ର ଆଦର୍ଶ ଓ ଉପଦେଶ ଯୁଗଯୁଗ ଧରି ସମଗ୍ର ଜାତିର, ସମାଜର ତଥା ପ୍ରତ୍ୟେକ ମାନବର ଧ୍ୟେୟ ତଥା ବନ୍ଦନୀୟ ହୋଇ ରହିଥିବ । ଉପନିଷଦ୍‌ରେ କୁହାଯାଇଛି—"ଯସ୍ୟାତ୍ମା ବିରତଃ ପାପାତ୍, କଲ୍ୟାଣେ ଚ ନିବେଶିତଃ, ତେନ ସର୍ବମିଦଂ ବୁଦ୍ଧଂ, ପ୍ରକୃତିର୍ବିକୃତିଶ୍ଚ ଯା"— ଅର୍ଥାତ୍ ଯାହାଙ୍କର ଆତ୍ମା ପାପରୁ ବିରତ ହୋଇଛି ଏବଂ ସେଉଁମାନେ ସମାଜର କଲ୍ୟାଣକର କାର୍ଯ୍ୟରେ ନିଜକୁ ବିଶେଷଭାବରେ ସର୍ବଦା ନିଯୁକ୍ତ ରଖନ୍ତି,

ସେଇମାନେ ହିଁ ସମସ୍ତ ଗୂଢ଼ତତ୍ତ୍ୱ ଓ ରହସ୍ୟ ହୃଦୟଙ୍ଗମ କରିପାରନ୍ତି— ନିତ୍ୟ ଅନିତ୍ୟ, କର୍ମ ଓ ଅକର୍ମକୁ ବିଶ୍ଳେଷଣ କରିପାରନ୍ତି । ଯେଉଁ ବ୍ୟକ୍ତିଙ୍କର ସ୍ୱପ୍ନ ଯେତେ ଚମତ୍କାର ଓ ହୃଦୟସ୍ପର୍ଶୀ, ସେ ଜନ୍ମଭୂମିପ୍ରତି ସେତେ ଶ୍ରଦ୍ଧାବାନ୍ । ତେଣୁ ଦେବୋପମ ଗୋପବନ୍ଧୁଙ୍କର ସାତ୍ତ୍ୱିକ ହୃଦୟରେ ଯେଉଁ ବାଣୀ ପ୍ରତିଫଳିତ ହୋଇଥିଲା—ତାହା ତାଙ୍କର ବ୍ୟକ୍ତିଗତ କଥା ନୁହେଁ—ତାହା ଥିଲା ନିଶ୍ଚିତ ରୂପେ ମଙ୍ଗଳମୟଙ୍କ ଆଦେଶ ।

ନଗାଧିରାଜ ହିମାଳୟର ବିରାଟତା ତଥା ବିଚିତ୍ରତା କଳ୍ପନା କରିବା ଯେତିକି ଦୁରୂହ, କାଳଙ୍କିତ ପଥର ଉପରେ ଉଜ୍ଜ୍ୱଳ ରେଖାପାତ କରିଥିବା ଧର୍ମପରାୟଣ ମନସ୍ୱୀ ଗୋପବନ୍ଧୁଙ୍କର ବହୁମୁଖୀ ପ୍ରତିଭାର ବିରାଟତା ତଥା ବିଚିତ୍ରତା ପରିମାପ କରିବା ଏବଂ ଏ କ୍ଷୁଦ୍ର ପ୍ରବନ୍ଧରେ ତାଙ୍କର ପରିପୂର୍ଣ୍ଣ ବ୍ୟକ୍ତିତ୍ୱକୁ ସନ୍ନିବେଶ କରିବା ମଧ୍ୟ ସେତିକି ଦୁରୂହ ।

ଗୋପବନ୍ଧୁ ଥିଲେ ସତ୍ୟ ଶିବ ସୁନ୍ଦରର ଉପାସକ; ତଥା ଆଧ୍ୟାତ୍ମିକତାର, ଧର୍ମର ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ଆର୍ଯ୍ୟ ସଂସ୍କୃତି ଓ ଉତ୍କଳୀୟ ସଂସ୍କୃତିର ପ୍ରାଣବନ୍ତ ପ୍ରତୀକ । ବିରାଟ ଜାତୀୟ ଜୀବନ ପ୍ରୟୋଜନର ପରିପୂର୍ଣ୍ଣ ଅଭିବ୍ୟକ୍ତି ଏବଂ ତାଙ୍କର ଜୀବନବ୍ୟାପୀ ସାଧନାର ସ୍ୱରୂପ ଥିଲା ଜାତୀୟ ବଳିଷ୍ଠ ଆତ୍ମଚେତନାର ଦ୍ୟୋତନା, ଜାତୀୟ ଭାବର ସନ୍ଦୀପିତ ବର୍ତ୍ତିକା—ଯାହାକି ତାଙ୍କର ସାହିତ୍ୟର ଛନ୍ଦେ ଛନ୍ଦେ ପ୍ରତିଫଳିତ ହୋଇଛି । ତାଙ୍କର କର୍ମ ଓ କବିତ୍ୱ ମଧ୍ୟରେ କୌଣସି ବ୍ୟବଧାନ ନ ଥିଲା । ତାଙ୍କର କର୍ମାଦର୍ଶ ହିଁ ତାଙ୍କ କାବ୍ୟକବିତାରେ ପ୍ରତିଫଳିତ । ତାଙ୍କର ବ୍ୟକ୍ତିତ୍ୱ ହିଁ କାବ୍ୟ ସୌରଭମୟ ।

କବି ଯଶଃ ଲାଭ ଉଦ୍ଦେଶ୍ୟରେ ଋଷିପ୍ରତିମ ଗୋପବନ୍ଧୁ ଗ୍ରନ୍ଥ-ରଚନାରେ ପ୍ରବୃତ୍ତ ହୋଇ ନ ଥିଲେ । ସାହିତ୍ୟରେ ମଧ୍ୟ ସେ 'ଆଦର୍ଶର' 'ସଂସ୍କୃତିର' ଉପାସନା କରିଥିଲେ । ଇଦାମୀନ୍ତନକୁ ଅତିକ୍ରମ କରି ତାଙ୍କ ସାହିତ୍ୟରେ ଅଛି ଚିରନ୍ତନର ଇଙ୍ଗିତ । ତାଙ୍କର ରଚିତ ସମସ୍ତ ପୁସ୍ତକରେ ଦେଶର କଲ୍ୟାଣ ଚିନ୍ତା ସହିତ ଜଡ଼ିତ ହୋଇଛି ନିବିଡ଼ ଅଧ୍ୟାତ୍ମଚେତନା ଓ ତାଙ୍କର ଧର୍ମପ୍ରାଣ ଓ ମୋକ୍ଷସନ୍ଧାନୀ ଅନ୍ତରର ସ୍ୱତଃସ୍ଫୁର୍ତ୍ତ ବାଣୀ । ଈଶ୍ୱର ପ୍ରେମର ପ୍ରତିଧ୍ୱନି ତାଙ୍କର ପ୍ରତ୍ୟେକ କର୍ମ,

ଚିନ୍ତା କଥା ଓ କବିତାରେ ତାଙ୍କ ଆତ୍ମନିର୍ବାଣ ସ୍ୱାକ୍ଷର ବହନ କରିଛି । ଏହା ଛଡ଼ା ସମଗ୍ର ଜନସମାଜର ନୈତିକ, ଆଧ୍ୟାତ୍ମିକ ଜୀବନର ପୂର୍ଣ୍ଣତମ ବିକାଶ ଲାଗି ସମାଜ ଜୀବନରେ ଉଦାତ୍ତ ଏବଂ ସାତ୍ତ୍ୱିକ ଜୀବନର ଆଦର୍ଶ ଘୋଷଣା କରିବା ଲାଗି ସେ ଆପଣାର ଅନୁଭୂତିସମ୍ବଳିତ ବହୁ ଜ୍ଞାନଗର୍ଭକ ଉପଦେଶାତ୍ମକ ବିଷୟବସ୍ତୁ କବିତା ମାଧ୍ୟମରେ ପ୍ରକାଶ କରିଯାଇଛନ୍ତି । ପ୍ରାଚୀନ ଗୌରବ, ଅତୀତର ମହିମା, ଜାତୀୟତା ସମ୍ପନ୍ନ ନୈତିକ, ସାମାଜିକ ଓ ରାଜନୀତିକ ସତ୍ୟର ଉଦ୍‌ବୋଧନ ଓ ଆଦର୍ଶ ଭବିଷ୍ୟତର ସ୍ୱପ୍ନ ତାଙ୍କ ଜୀବନରେ ଓ କବିତାରେ ପ୍ରାଧାନ୍ୟ ଲାଭ କରିଥିବାର ଦେଖାଯାଏ ।

ଗାନ୍ଧୀଙ୍କ ଚରିତ୍ର ଓ ବ୍ୟକ୍ତିତ୍ୱର ଭିତ୍ତି ଯେପରି ଥିଲା, "ଅବିଚଳ ଭଗବତ୍ ନିଷ୍ଠା", ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱରେ ସେହିପରି ଅଟଳ ଭଗବତ୍ ନିଷ୍ଠା ବିଦ୍ୟମାନ ଥିଲା । ତାଙ୍କର ସକଳ କର୍ମକୁ ସେ ବିଶ୍ୱାଞ୍ଜଳି ହୋଇ ଈଶ୍ୱରଙ୍କଠାରେ ହିଁ ସମର୍ପଣ କରିଛନ୍ତି । ସେହି ଅନନ୍ତ କରୁଣାମୟ, ପ୍ରୀତିମୟ ବିଧାତା, ଯାହାଙ୍କ ଦୟାରେ ହିଁ ଏ ଜଗତର ସୃଷ୍ଟି, ସେ ହିଁ ଆମର ଆଦର୍ଶ—ଏହା ଥିଲା ଗୋପବନ୍ଧୁଙ୍କର ଜୀବନର ବାଣୀ । ତାଙ୍କ ଆଦର୍ଶର ଉତ୍ସ ସେହି ବିଧାତା । କଲ୍ୟାଣଧର୍ମୀ ଗୋପବନ୍ଧୁଙ୍କର କର୍ମ ଓ ସାହିତ୍ୟ ସୃଷ୍ଟି—ଏ ସକଳର ଆଧାର ସେହି ଦୀନବନ୍ଧୁ । ସେଥିପାଇଁ ତାଙ୍କର ଜୀବନରେ ସେ ଯେତେ ଯେତେ କର୍ମ କରିଯାଇଛନ୍ତି ଓ ଯେଉଁସବୁ ବହୁମୁଖୀ ଚିନ୍ତାଧାରା ବୁହାଇ ଦେଇ ଯାଇଛନ୍ତି, ସେ ସବୁ ମଧ୍ୟରେ ସରସ କବି ହୃଦୟର ଈଶ୍ୱର ବିଶ୍ୱାସ ଓ ଭକ୍ତିଧାରା ତାଙ୍କ ଜୀବନର ପ୍ରଭାତ ଓ ପ୍ରଦୋଷକାଳରେ କବିତାଛନ୍ଦରେ ସମଭାବରେ ପରିସ୍ଫୁଟ ହୋଇଛି । ବୃକ୍ଷ ଲତା, ଗିରି କାନନ, ନଦୀ ନିର୍ଝରିଣୀ, ପଶୁ ପକ୍ଷୀ, ମାନବ ସ୍ୱଦେଶ ବନ୍ଧୁ ଓ ଆତ୍ମୀୟ ସ୍ୱଜନ ସମସ୍ତଙ୍କ ପାଇଁ ତାଙ୍କର ହୃଦୟ ବିଚଳିତ ହୋଇଛି । ସମସ୍ତଙ୍କ ସ୍ମୃତିଛବିରେ ନିହିତ ବିଶ୍ୱନିୟନ୍ତା ବାର୍ତ୍ତା ଓ ବିଭୂତିକୁ ସେ କବିତାର ମୂର୍ଚ୍ଛନାରେ ରୂପଦେଇ ଦେଇଛନ୍ତି । ତାଙ୍କ ଆଧ୍ୟାତ୍ମିକ ସାଧନ ଜନିତ ମାର୍ଜିତ ଚିନ୍ତାଧାରାରୁ ସାର୍ବଜନୀନ ଦର୍ଶନ ପ୍ରତିପାଦିତ ଧର୍ମର ଉଦ୍‌ଭବ ହୋଇଥିଲା—ଯାହାକି ନିତ୍ୟ ସର୍ବବ୍ୟାପୀ ଈଶ୍ୱରଙ୍କ ଅନୁସନ୍ଧାନରେ ସତତ ବ୍ରତୀ ଥିଲା । ତାଙ୍କର 'ପ୍ରାର୍ଥନା'

କବିତାରେ ସେ ସେଇ ବିଶ୍ୱନିୟନ୍ତା ବିରାଟ ସତ୍ତାର ଅପାର କରୁଣାର ପାନ ହେବା ନିମିତ୍ତ ତାଙ୍କର ବ୍ୟାକୁଳତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଭାରତୀୟ ସଂସ୍କୃତିର ମହାମନ୍ତ୍ର 'ସର୍ବଧର୍ମସମନ୍ୱୟବାଦ'ର ସୂଚନା ଦେଇ ତାଙ୍କ ଉଦାର ହୃଦୟର ତଥା "ମନୁଷ୍ୟାଃ ଭ୍ରାତରଃ ସର୍ବେ ସ୍ୱଦେଶଂ ଭୁବନତ୍ରୟମ୍" ଏଇ ମନୋଭାବର ମଧ୍ୟ ପରିଚୟ ଦେଇଛନ୍ତି—

"ହିନ୍ଦୁ, ଖ୍ରୀଷ୍ଟ, ଜୈନ, ମୁସଲମାନ
ଭେଦ ଭୁଲି ଏବେ ସର୍ବେ ସମାନ,
ଭ୍ରାତୃ-ପ୍ରେମ ଡୋରେ ହୋଇଣ ବାନ୍ଧି
ଜଣାଉଛୁ ତବ ଶ୍ରୀମୁଖରେ କାନ୍ଦି"—

ଏଥିରୁ ସ୍ପଷ୍ଟ ଅନୁମେୟ ଯେ, କେବଳ ବ୍ୟକ୍ତିଗତ ସିଦ୍ଧିଲାଭ ସାଧକ ଗୋପବନ୍ଧୁଙ୍କର ଅଭିପ୍ରାୟ ନ ଥିଲା । ତାଙ୍କର ବ୍ୟକ୍ତିଚେତନା ବିଶ୍ୱଚେତନାରେ ଲୟ ପାଇଥିଲା । ବ୍ୟକ୍ତି ପରିବର୍ତ୍ତେ ବିଶ୍ୱର କଲ୍ୟାଣ ହୋଇଥିଲା ତାଙ୍କର ଲକ୍ଷ୍ୟ—

"ସଂସାର ଭୂମିର ରଣ ପ୍ରାଙ୍ଗଣେ
ଉତ୍କଳର ସିନା ତନୟ ଗଣେ
ପଛରେ କେବେ ହେଁ ନ ପଡ଼ୁ ଦେବ
ଶ୍ରୀମୁଖୁ ଏହି ଆଦେଶ ହେବ
ହେଉ ଅପୂର୍ବ ଉତ୍ସାହ ଯେ
ଭାରତର ମହା ଜାହ୍ନବୀ ତରଙ୍ଗେ ମିଶୁ ଉତ୍କଳ ପ୍ରବାହ ଯେ ।"

'ଅବକାଶ ଚିନ୍ତା'ର ଏହି 'ପ୍ରାର୍ଥନା' କବିତାରେ ଯେଉଁ ମହାଭାବ ଓ ଉଦ୍ଦୀପ୍ତ ଧର୍ମଭାବ ତଥା ଉଦାର ଚରିତ୍ରବତ୍ତାର ଆଭାସ ମିଳେ, ଜୀବନରେ ନାନା ଝଞ୍ଜଝଞ୍ଜା ଓ ବିକ୍ଷୋଭ ମଧ୍ୟରେ କାରାଗାରରେ ଆବଦ୍ଧ ଥାଇ ମଧ୍ୟ ଅନ୍ତର ମଧ୍ୟରେ ଈଶ୍ୱରଙ୍କର ଅବସ୍ଥାନ, ତାଙ୍କର ସର୍ବବ୍ୟାପିତ୍ୱ ଓ ଅନନ୍ତ ପ୍ରେମଧାରା ଉପଲବ୍ଧିର ଅଭିବ୍ୟକ୍ତିର ସୂଚନା ମିଳେ 'ସାନ୍ଧ୍ୟ ଭାବନା' କବିତାରେ । 'ଶିବରାତ୍ରି' କବିତାରେ ମଧ୍ୟ ସେହି ମହାଭାବର ପ୍ରତିଧ୍ୱନି, ଯେଉଁଠାରେ କବି ଭଗବାନଙ୍କୁ ନିଜର ଅନ୍ତର ମଧ୍ୟରେ ଦେଖି କହିଛନ୍ତି—

"ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ ।"

ଯାହା କି ଆର୍ଯ୍ୟଦର୍ଶନର ମୂଳମନ୍ତ୍ର—"ଆତ୍ମାନଂ ବୈବଜାନଥ" —ସମଗ୍ର ବ୍ରହ୍ମାଣ୍ଡରେ ଓତଃପ୍ରୋତ ହୋଇ ପୂର୍ଣ୍ଣସତ୍ତାର ରୂପାନ୍ତର ମାତ୍ର ନିଜର ଆତ୍ମାକୁ ପ୍ରେମରେ ଚିହ୍ନିବା ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ ।

ଏହିପରି ଭାବରେ ତାଙ୍କର ପ୍ରେମ ଭକ୍ତିରସାତ୍ମକ ରଚନାବଳୀ ଓଡ଼ିଆ ସାହିତ୍ୟକୁ ମଧ୍ୟ ସମୃଦ୍ଧ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶ୍ୱପ୍ରୀତି, ସ୍ୱଦେଶ ମୁକ୍ତି ଓ ଈଶ୍ୱରଭକ୍ତି ତାଙ୍କ ଜୀବନବ୍ୟାପୀ ସାଧନା ଓ ଭାବନାର ତ୍ରିବେଣୀଧାରା ସେ ତାଙ୍କ ଲେଖା ଓ କବିତାରେ ବୁହାଇ ଦେଇ ଯାଇଛନ୍ତି ଏବଂ ଏହି ଭାବରେ ଦେଶବାସୀ ଉଦ୍ଦୀପିତ ହୁଅନ୍ତୁ, ଏ ବାସନା ଓ ବ୍ୟାକୁଳତା ତାଙ୍କ ପ୍ରାଣକୁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଆଲୋଡ଼ିତ କରିଛି । ସ୍ୱାମୀ ବିବେକାନନ୍ଦ ଥରେ କହିଥିଲେ—"ଧର୍ମ ମନୁଷ୍ୟକୁ ଦେବତା କରିପାରେ, ତାକୁ ଦେଇପାରେ ଅମୃତ ଆନନ୍ଦମୟ ବିପୁଳ ଜୀବନର ଅଧିକାର"—ଏହି ଉକ୍ତି ଗୋପବନ୍ଧୁଙ୍କ ଠାରେ ହିଁ ପ୍ରମାଣିତ ହୋଇଅଛି । ଜୀବନର ଦୁଃଖ ଦୁର୍ବିପାକରେ ତାଙ୍କର ହୃଦୟ ଶୋକାଭିଭୂତ ହୋଇଥିଲେ ମଧ୍ୟ ବିଶ୍ୱବିଧାତାଙ୍କର ଐଶୀ ବିଭୂତି ତାଙ୍କ ପ୍ରାଣରେ ବଳିଷ୍ଠ ଆଶା, ବିଶ୍ୱାସ ଓ ଆନନ୍ଦ ସଞ୍ଚାର କରିଛି—ତାଙ୍କର କର୍ମନିଚୟକୁ ଧର୍ମାନୁକୂଳ କରି ଅନ୍ତରର ଗଭୀରତମ ପ୍ରଦେଶରୁ ସ୍ୱତଃ ଉଚ୍ଚାରିତ ହୋଇଛି—

"ଚଳାଅ ମୋ ଅଙ୍ଗେ ଅମୀୟ ଆଙ୍ଗୁଳି
ଦିଅ ଶିରେ ମୋର ପୁଣ୍ୟ ପଦଧୂଳି ।
('କାରାକବିତା' - 'ଦେଖାଦିଅ ବାରେ')

ତାଙ୍କର ପଦ୍ୟଗୁଡ଼ିକରେ ଅତି ଉଚ୍ଚକୋଟୀର ଭାବନା, ତତ୍ତ୍ୱ ଓ ଦୁରୂହ ଉପଲବ୍ଧି ଅଭିବ୍ୟକ୍ତି ଲାଭ କରିଥିଲେ ହେଁ, ତାହା ଅତ୍ୟନ୍ତ ସହଜ ଓ ସରଳ ଭାଷାରେ ରୂପାୟିତ ହୋଇଅଛି । ଉଦାହରଣ ସ୍ୱରୂପ ତାଙ୍କର କୃତ 'ବନ୍ଦୀର ଆତ୍ମକଥା'ରେ—

"ଯା ଜୀବନ ଗତି ତତ୍ତ୍ୱ ଅଭିମୁଖୀ
ସେହି ଏକା କୃତୀ, ସେହି ଏକା ସୁଖୀ,
ତତ୍ତ୍ୱର ସାଧନେ-କୃତକୃତ୍ୟ ଜନ
ଲଭଇ ମରଣେ ଅମୃତ ଜୀବନ,
ସତ୍ୟ ସନାତନ ପ୍ରଭୁ ଭଗବାନ,
ଏ ଭାବେ କର ମୋ ହୃଦ ବଳୀୟାନ—"

ପ୍ରକାଶ ଭଙ୍ଗୀର ଏହ୍ୱ ଅକୃତ୍ରିମତାହିଁ ଏହ୍ୱ ରଚନାଗୁଡ଼ିକର ଏକ ପ୍ରଧାନ ଆକର୍ଷଣ । ଜଗତବାସୀଙ୍କୁ ସେ ସନାତନ ଧର୍ମାଚରଣରେ ବ୍ରତୀ ହେବାକୁ, ଧର୍ମାନୁମୋଦିତ ମାର୍ଗରେ ଚଳିବାକୁ ଓ ଈଶ୍ୱରଙ୍କୁ ସବୁ କର୍ମ ସମର୍ପଣ କରିବାକୁ ଯଥାର୍ଥତଃ ଉପଦେଶ ଦେଇଛନ୍ତି; କାରଣ ହିନ୍ଦୁ ସଂସ୍କୃତିର ଯାଷାମନ୍ତ୍ର କର୍ମଯୋଗ, ପୁନର୍ଜନ୍ମ ତଥା କର୍ମଫଳରେ ତାଙ୍କର ଥିଲା ଗଭୀର ବିଶ୍ୱାସ । ତତ୍କାଳୀନ ଉତ୍କଳର ଶୋଚନୀୟ ଦୁରବସ୍ଥା, ଦୁଃଖ, ଦୈନ୍ୟ ସନ୍ଦର୍ଶନରେ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇ ଯାଉଥିବା ବେଳେ ସେ ସ୍ପଷ୍ଟ କାନ୍ତାସମ୍ମିତ ବାକ୍ୟରେ ପ୍ରକାଶ କରିଛନ୍ତି—

"ଏ ସବୁ ଯାତନା ନର କର୍ମଫଳ,
ହୋଇଛନ୍ତି ଏ ଦେଶେ ପାତକ ପ୍ରବଳ
ଦେଶବାସୀଙ୍କର ହେଲେ ଆତ୍ମଶୁଦ୍ଧି
ସତ୍ୟେ ଅନୁରାଗ ଧର୍ମେ ଦିବ୍ୟବୁଦ୍ଧି,
ମେଣ୍ଟିବ ଦୁର୍ଗତି ଯିବ ଦୁଃଖ କ୍ଷୟ···।"

ସେଥିପାଇଁ ସେ ଦେଶବାସୀଙ୍କୁ ମନ ବଚନ କର୍ମରେ ଯାବତୀୟ ସଙ୍କୀର୍ଣ୍ଣତା ପରିତ୍ୟାଗ କରି ମିତମୟ ଜୀବନଯାପନରେ ବ୍ରତୀ ହେବାକୁ ଆହ୍ୱାନ କରିଥିଲେ । ସମାଜ ବା ରାଷ୍ଟ୍ରରେ ନୈତିକ ଶିକ୍ଷାଦୀକ୍ଷା ନିମିତ୍ତ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରିବାର ମହାନ୍ ଦାୟିତ୍ୱ ସେ ନିଜେ ବହନ କରି ତାର ସୁଷ୍ଠୁ ସମ୍ପାଦନ ନିମିତ୍ତ 'ସତ୍ୟବାଦୀ ବନ ବିଦ୍ୟାଳୟ'ର ପ୍ରତିଷ୍ଠା କରିଥିଲେ । ବିଶ୍ୱଶାନ୍ତିର କାମନା କରି ଓ ବ୍ୟକ୍ତି ଜୀବନକୁ କଳୁଷମୁକ୍ତ କରିବାକୁ ଈଶ୍ୱରଙ୍କୁ ଆବାହନ କରି ସେ ଯାହା ଲେଖିଥିଲେ, ତାହା ଅନୁଧ୍ୟାନଯୋଗ୍ୟ । ଈଶ୍ୱର ଭକ୍ତି ତାଙ୍କର ସକଳ କାର୍ଯ୍ୟ, ଚିନ୍ତା ଓ କବିତା ମଧ୍ୟରେ ଅମୃତଧାରା ରୂପେ ରହି ତାଙ୍କୁ ଜୀବନ୍ତ ରଖିଛି । ତାଙ୍କର ସକଳ କବିତାରେ ଓ ଜୀବନର ସମସ୍ତ କର୍ମରେ ସେ ବିଭୁପାଦକୁ ସ୍ମରଣ କରିଛନ୍ତି ଓ ବିଭୁଙ୍କର ଉପାସନାରେ ଆତ୍ମବିସର୍ଜନ ଦେଇଛନ୍ତି ।

ଭାରତୀୟ ଆରଣ୍ୟକ ସଂସ୍କୃତି ଓ ଦର୍ଶନର ମୂଳପିଣ୍ଡ ଅଦ୍ୱୈତ ବେଦାନ୍ତର ନିଗୂଢ଼ ତତ୍ତ୍ୱକୁ ସେ ପ୍ରତି କ୍ଷୁଦ୍ର ପ୍ରାଣରେ ସଞ୍ଚାରିତ କରିବାକୁ ପ୍ରାଣର ଅସ୍ଥିରତାରେ ଗାଇଛନ୍ତି । 'ଧର୍ମପଦ'ର ଗୋଟିଏ ପଦରେ—

"ଏକର ବିନାଶେ ଅନେକ ପ୍ରକାଶେ ସୃଷ୍ଟିର ଏ ନିତ୍ୟ ବିଧି
ଏକର ଟା କ୍ଷୟ ଅନେକ ଉଦୟ ଅନେକ ଏକର ସିଦ୍ଧି ।"

+ + + +

"ସମସ୍ତ ଜୀବନ କର ଏକ ଶିବରାତ୍ରି
ଅନ୍ଧାରେ ନ ବୁଲ୍ଲ ପଥ ହେ ସ୍ୱରଗଯାତ୍ରୀ ।"
( 'ଶିବରାତ୍ରି' )

"ବ୍ରାହ୍ମଣସମିତି ଗୃହାବାସରେ ସମବେତ ବ୍ରାହ୍ମଣ ଗୃହଙ୍କ ପ୍ରତି" ତାଙ୍କର ଉକ୍ତ କବିତା ମାଧ୍ୟମରେ ସେ ପବିତ୍ର ଆର୍ଯ୍ୟ ସଂସ୍କୃତିର ସମସ୍ତ ମୌଳିକ ଉପାଦାନ—ଧର୍ମ, ଅର୍ଥ, କାମ, ମୋକ୍ଷ, ଚତୁର୍ବର୍ଗର, ଅହିଂସା, ତ୍ୟାଗ, ସେବା, ସତ୍ୟ, ଦଶଶୌଚ, ତିତିକ୍ଷା ଆଦି ସକଳ କୁଳଦୀକ୍ଷାର ଏକ ପରିପୂର୍ଣ୍ଣ ଚିତ୍ରଣ ଦେଇ ଜୀବନର ପରମ ଶ୍ରେୟବୋଧର ଆଦର୍ଶରେ ଅନୁପ୍ରାଣିତ କରିବାକୁ ଯାଇ ମର୍ମସ୍ପର୍ଶୀ ଭାଷାରେ ମାନବ ସମାଜକୁ ଉଦ୍‌ବୋଧନ ଦେଇଛନ୍ତି—

"ଭାରତବାସୀର ଧର୍ମବଳସାର...
...ଦେଖାଅ ଜୀବନେ ଅଦ୍ଭୁତ ଶକତି
କର୍ମେ ଅନାଶକ୍ତ ଧର୍ମେ ଦୃଢ଼ ରତି...
...ଆଚରଣ ତାହା ଜୀବନେ ନିରତେ
ବ୍ରହ୍ମତ୍ୱର ତେଜ ପ୍ରକାଶ ଜଗତେ...

...ଭାରତେ ଜାଗ୍ରତ ମହାଯାଗେ ଲାଗ—" ତାହା ହିଁ ଥିଲା ତାଙ୍କ ଜୀବନର ପରମାଦର୍ଶ ।

ଉପନିଷଦ ଯୁଗର ଅଦ୍ୱୈତ ଦର୍ଶନର ବ୍ୟାବହାରିକତା ଥିଲା ଗୋପବନ୍ଧୁଙ୍କ ଜୀବନ ସାଧନା । "ଏ ସଂସାର ଆବର୍ଜ୍ଜନା ପୂର୍ଣ୍ଣ । ଆମ୍ଭେମାନେ ଯେପରି ସୁଖ ଭୋଗ ନିମିତ୍ତ ତା ଉପରେ ନିର୍ଭର ନ କରୁ । ସାତ୍ତ୍ୱିକ ପ୍ରକୃତି ହିଁ ସର୍ବଶ୍ରେଷ୍ଠ । ସେମାନେ ସବୁବେଳେ ଅନ୍ତର୍ମୁଖ, ସେମାନେ ସବୁବେଳେ ଆତ୍ମନିଷ୍ଠ । ଇନ୍ଦ୍ରିୟର, ଏପରି କି ମନର ମଧ୍ୟ ସମୁଦାୟ ସୁଖ ଅନିତ୍ୟ, କିନ୍ତୁ ଆମ ଭିତରେ ସେହି ନିରପେକ୍ଷ ସୁଖ ରହିଛି, ଯାହାକି କାହା ଉପରେ ନିର୍ଭର କରେ ନାହିଁ—ଏହି ସୁଖ ଆନନ୍ଦ ସ୍ୱରୂପ ।

ସୁଖପାଇଁ ବାହାର ବସ୍ତୁ ଉପରେ ନିର୍ଭର ନ କରି ଯେତେ ଭିତର ଉପରେ ନିର୍ଭର କରିବ, ସେତେ ଆମେ "ଅନ୍ତଃ ସୁଖ, ଅନନ୍ତରାମ ଓ ଅନ୍ତର୍ଜ୍ୟୋତିଃ" ହେବୁଁ । ଆମେ ସେତେ ଧାର୍ମିକ ହେବୁଁ—ଏହି ଆତ୍ମାନନ୍ଦକୁ ହିଁ ଜଗତରେ ଧର୍ମ କହିଥାନ୍ତି—ସ୍ୱାମୀ ବିବେକାନନ୍ଦଙ୍କର

ଏହି ଦିବ୍ୟବାଣୀ, ଯାହାକି ହିନ୍ଦୁ ସଭ୍ୟତା ଓ ସଂସ୍କୃତିର ପ୍ରାଣ ତଥା ଉପନିଷଦର ପ୍ରତିପାଦ୍ୟ ବିଷୟ— ଏହି ଗୂଢ଼ତତ୍ତ୍ୱ ହିଁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ତାଙ୍କର 'ବ୍ରହ୍ମତତ୍ତ୍ୱ' ବା 'ନଚିକେତା ଉପାଖ୍ୟାନ' ପୁସ୍ତକରେ ପ୍ରତିପାଦନ କରିଛନ୍ତି । "ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ" —ଗୀତାର ଏହି ଭାବଧାରା ହିଁ ଏଥିରେ ସନ୍ନିବେଶିତ । ସମଗ୍ର ପୁସ୍ତକ ହିଁ କେବଳ ସେହି ଅଦ୍ୱିତୀୟ ନିଖିଳ ସଂସାର ମୂଳାଧାର ପରମପଦ ବ୍ରହ୍ମର ତତ୍ତ୍ୱ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଲିଖିତ । ଗୋପବନ୍ଧୁ ତାଙ୍କର ଜୀବନାଦର୍ଶକୁ 'ଧର୍ମପଦ' ଓ 'ନଚିକେତା'ଙ୍କ ଆତ୍ମବିସର୍ଜନରେ ପ୍ରତିଫଳିତ ହେବାର ଯେପରି ଉପଲବ୍ଧି କରିଥିଲେ, ସେହି ଉପଲବ୍ଧି, ତନ୍ମୟତା, ସହଜାତ ପ୍ରବଣତା ଓ ଦିବ୍ୟ ଉନ୍ମାଦନା ଅଭିବ୍ୟକ୍ତ ଲାଭ କରିଛି ଏହି କଠୋପନିଷଦର ଅନୁବାଦ 'ନଚିକେତା ଉପାଖ୍ୟାନ' ଓ 'ଧର୍ମପଦ'ରେ ।

ଉତ୍କଳୀୟ ସଂସ୍କୃତି ଏପରି କି ମହାଭାରତୀୟ ଆର୍ଯ୍ୟସଂସ୍କୃତିର ସର୍ବଶ୍ରେଷ୍ଠ ପ୍ରତୀକ ରୂପେ ପ୍ରତିଷ୍ଠିତ ଜଗନ୍ନାଥ ଧର୍ମ ଭକ୍ତ ଗୋପବନ୍ଧୁଙ୍କୁ ମଧ୍ୟ ଅନୁପ୍ରାଣିତ କରିଥିବା ସ୍ୱାଭାବିକ । ତାଙ୍କର କେତେ ରଚନା ପଢ଼ି ମନେହୁଏ, ସେ ଉତ୍କଳୀୟ ଧର୍ମଧାରାର ହିଁ ସୁଯୋଗ୍ୟ ପ୍ରତିଭୂ । ତାଙ୍କ ପ୍ରାଣରେ ଥିଲା ଅନନ୍ତ ବିଭୁପ୍ରେମ, ଜଗନ୍ନାଥଙ୍କଠାରେ ଅଟଳ ବିଶ୍ୱାସ । ଜୀବନର ପ୍ରତି ପଦକ୍ଷେପରେ ଆସୁଥିବା ଝଡ଼ଝଞ୍ଜା, ବାଧା ବିଘ୍ନରେ ସେ ହତୋତ୍ସାହ ନ ହୋଇ ବିଭୁସମର୍ପିତ ଅନ୍ତରରେ ତାଙ୍କର କର୍ତ୍ତବ୍ୟ ସାଧନ ପଥରେ ଅଗ୍ରସର ହୋଇଥିଲେ । ତାଙ୍କର ଦୃଢ଼ ଆସ୍ଥା ଥିଲା ଯେ, ଯୁଗେ ଯୁଗେ ସମସ୍ତଙ୍କର ଆରାଧ୍ୟ ଦେବତା ରୂପେ ପୂଜିତ ପତିତପାବନ ଜଗନ୍ନାଥ ସ୍ୱାମୀ ନିଶ୍ଚୟ ତାଙ୍କର ମନୋବାଞ୍ଛା ପୂରଣ କରିବେ । ସେଥିପାଇଁ ସେ ତାଙ୍କର ବନ୍ଦୀ ଅବସ୍ଥାରେ 'ବନ୍ଦୀର ଆତ୍ମକଥା' ପୁସ୍ତକରେ ଶୋକାକୁଳିତ ସମଗ୍ର ଉତ୍କଳବାସୀଙ୍କୁ ଆଶାବାଣୀ ଶୁଣାଇ ସାନ୍ତ୍ୱନା ଦେଇଛନ୍ତି ।

"ନୀଳାଚଳ ନାଥ ପ୍ରଭୁ ଶ୍ରୀନିବାସ
ପୂରାଇବେ ଆଶା ରଖ ଏ ବିଶ୍ୱାସ ।"

ଭଗବତର ଆଦର୍ଶରେ ସେ ପ୍ରଭାବିତ ହୋଇ ଆବାଲ୍ୟରୁ ଜୀବନକୁ ଏହିପରି ଶୁଦ୍ଧ ବୁଦ୍ଧ ଧୀର ଓ ପ୍ରଶାନ୍ତ କରି ଗଢ଼ିଥିଲେ । ଜୀବନର ନିରାଡ଼ମ୍ବର ସରଳତା, ନେତୃତ୍ୱର ନିରହଙ୍କାରତା, ମହାଜନ ସୁଲଭ ବିନମ୍ରତା ଏବଂ ପବିତ୍ର ସେବା ମନୋଭାବ ପ୍ରଭୃତିର ଆଦର୍ଶ ହିଁ ଏତ

ପିଲାଦିନରୁ ସେ ଭଗବତରୁ ପାଇଥିଲେ । ତେଣୁ ସେ ଯେତେବେଳେ ଅସହଯୋଗ ଆନ୍ଦୋଳନର କର୍ମଧାର ହୋଇ ଜନସମାଜରେ ସମ୍ମାନିତ, ସେତେବେଳେ ମଧ୍ୟ ସେ ବନଯୁଦ୍ଧର ପ୍ରକାଶ କରି ଦେଶବାସୀଙ୍କୁ ଶୁଣାଇଛନ୍ତି—

"କର୍ମଭୂମେ କିଏ ନେତା କେବା ମିତ
ସଭିଏ ନିମିତ୍ତ ବଥି ନିୟୋଜିତ ।"

"ଧର୍ମଃ ରକ୍ଷତି ଧାର୍ମିକମ୍"—ଏହି ମାତ୍ରକୁ ସେ ଉତ୍ତମ ରୂପେ ଉପଲବ୍ଧି କରିଥିଲେ—

"ନ ଅଟକେ କର୍ମ ନେତାର ଅଭାବେ
ଧର୍ମ ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ—"

"ବନ୍ଦୀର ଆତ୍ମକଥା"ରୁ ଉଦ୍ଧୃତ ଏହି ପଦ୍ୟାଂଶ ତାହାର ଜ୍ୱଳନ୍ତ ପ୍ରମାଣ । ଏ ନାରାୟଣ ଗୋପବନ୍ଧୁଙ୍କ ଦୃଷ୍ଟିରେ ଆଉ କିଏ ନୁହନ୍ତି । ନୀଳାଚଳବାସୀ ସ୍ୱୟଂ ଜଗନ୍ନାଥ । ଈଶ୍ୱର ଉପରେ ଦୃଢ଼ବିଶ୍ୱାସ ରଖି ଧର୍ମନୀତି ଅନୁସାରେ କାୟମନୋବାକ୍ୟରେ ସ୍ୱ କର୍ତ୍ତବ୍ୟ ସମ୍ପାଦନ କଲେ ମନୁଷ୍ୟ ସିଦ୍ଧିଲାଭ କରେ । ଭଗବାନ୍ ତାର ସହାୟକ ହୁଅନ୍ତି । "ସ୍ୱଳ୍ପ-ମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋଭୟାତ୍'—ସିଦ୍ଧସାଧକ ଗୋପବନ୍ଧୁ ମର୍ମେ ମର୍ମେ ଅନୁଭବ କରିଥିଲେ । ସେଥିପାଇଁ ସେ ଗାଇଛନ୍ତି—

"ଇତିହାସେ ଶୁଣିଅଛ ଜନଶ୍ରୁତି
କାଞ୍ଚିଯୁଦ୍ଧ କାଳେ ଉତ୍କଳ ବିଭୂତି
ଶୁଣିଛ ତ ପ୍ରଭୁ ନୀଳାଦ୍ରିନାୟକ
ନିଜେ ଧରି ହାତେ କୃପାଣ ଶାୟକ,
ଉତ୍କଳ ପ୍ରଧାନ ସେନାପତି ପଣେ
ହୋଇଥିଲେ ନିଜେ ସମର ପ୍ରାଙ୍ଗଣେ ।
ଉଡ଼ିଲା ଉତ୍କଳ ଜୟ-ବୈଜୟନ୍ତୀ
ଆଜି ଯାଏ ଏହା ଗାଏ କିମ୍ବଦନ୍ତୀ ।"

ଗୋପବନ୍ଧୁ କହିଛନ୍ତି—"ସାର୍ବଜନୀନ ମାନବସମାଜ ଭଗବାନଙ୍କର ଅଭିବ୍ୟକ୍ତି । ମାନବ ସେବା ହିଁ ଭଗବତ୍ ସେବା + + + ବସ୍ତୁତଃ

ଜାଗ୍ରତପ୍ରୀତା ଆମର ଧର୍ମ । ଈଶ୍ୱର ହିଁ ଆମର ନେତା ରୂପରେ ଆମ୍ଭମାନଙ୍କ ନିକଟରେ ଉପସ୍ଥିତ ।"

"ଏବେ ନୀଳାଚଳେ ବିଜେ ଜଗନ୍ନାଥ
ତେବେ କିମ୍ପା କହ ଉତ୍କଳ ଅନାଥ ।"

—ଏହା ଜଗନ୍ନାଥ ଦର୍ଶନ ତାଙ୍କର ମୁଖନିଃସୃତ ବାଣୀ ।

ପରକୁ ଉପଦେଶ ଦେଇ ପାଣ୍ଡିତ୍ୟ ଅର୍ଜନ କରିବାର ସୁବିଧା ଅନେକଙ୍କୁ ମିଳିଥାଏ । କିନ୍ତୁ ଧର୍ମର ଅନୁଷ୍ଠାନ କରି ପ୍ରକୃତ ଧାର୍ମିକ ହେବାର ସୌଭାଗ୍ୟ ତଥା ଉପଦେଶକୁ ଆଚରଣରେ ପରିଣତ କରିବାର ଗୌରବ କୌଣସି କୌଣସି ମହାତ୍ମାଙ୍କୁ ମିଳିଥାଏ । ସେଥିପାଇଁ ମହାପୁରୁଷମାନେ କୋଟିକରେ ଗୋଟିଏ ଆବିର୍ଭୂତ ହୁଅନ୍ତି । ଗୋପବନ୍ଧୁ ଥିଲେ ସେଇ ମହାତ୍ମାଙ୍କ ମଧ୍ୟରେ ଜଣେ, ଯେ କି ସନାତନ ଆର୍ଯ୍ୟସଂସ୍କୃତିର ସମସ୍ତ ମତ ଓ ନିୟମକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ କାର୍ଯ୍ୟରେ ମଧ୍ୟ ପ୍ରତିଫଳିତ କରିଥିଲେ ଓ ତତ୍ ସଙ୍ଗେ ସଙ୍ଗେ ସରଳ ସୁବୋଧ ସାହିତ୍ୟ ମାଧ୍ୟମରେ ତାଙ୍କୁ ପ୍ରଚାର କରିଥିଲେ । କାରଣ, ସାହିତ୍ୟକୁ କାଳେ କାଳେ ମନୁଷ୍ୟର ବାସ୍ତବ ଉପଯୋଗରେ ଲଗାଇ ଦିଆଯାଇଛି ।

ଧର୍ମ ଓ ଆଧ୍ୟାତ୍ମିକତାର ମୂଳମନ୍ତ୍ରରେ ଦୀକ୍ଷିତ ଏଇ ସଂସ୍କୃତିର (ସେଥିପାଇଁ ହିଁ ଯାହାର ଅନ୍ୟ ନାମ ମାନବ ଧର୍ମ ବା ମାନବ ସଂସ୍କୃତି) ତାର ଗୋପବନ୍ଧୁ ପ୍ରକୃତ ଦାୟାଦ । "ମନ୍ତ୍ରଂ ବା ସାଧୟେତ୍ ଶରୀରଂ ବା ପାତୟେତ୍" ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟବିନ୍ଦୁ । ମାନବର ଆତ୍ମିକ ଉନ୍ନତିର ପଥ ପରିଷ୍କାର କରି ସେ ଥିଲେ ଉତ୍କଳୀୟ ଜୀବନ ରଥର ଶାଶ୍ୱତ ସାରଥୀ । "କର୍ମ କ୍ଷେତ୍ରଂ ହିଁ ମାନୁଷ୍ୟମ୍"—ନିରବଚ୍ଛିନ୍ନ କର୍ମସ୍ରୋତରେ ଜୀବନ ଗୁନ୍ଥା । ତେଣୁ ସେ ସନ୍ନ୍ୟାସୀଭାବରେ ନିଷ୍ଠାଳରେ ଦେଶହିତାର୍ଥେ କାର୍ଯ୍ୟ କରିବାକୁ ହିଁ ତାଙ୍କର ଜୀବନର ଚରମ ଲକ୍ଷ୍ୟ କରିଥିଲେ । ବନ୍ୟା, ଦୁର୍ଭିକ୍ଷ, ମହାମାରୀଗ୍ରସ୍ତ ଲୋକଙ୍କର ସେ ତାଙ୍କର ଜୀବନର ଶେଷ ରକ୍ତବିନ୍ଦୁ ଦାନ କରି ମଧ୍ୟ ସେବା କରିଥିଲେ । କାରଣ ସ୍ୱାମୀ ବିବେକାନନ୍ଦଙ୍କ ପରି ଆଦର୍ଶବିଚ୍ୟୁତିକୁ ସେ ଜୀବନରେ ମହାପାପ ବୋଲି ମନେ କରୁଥିଲେ ।

"ଯଦ୍ଧ ପ୍ରାଣ୍ୟୁପକାରାୟ ଦେହୋଽୟଂ ନୋପଯୁଜ୍ୟତେ
ତତୋ କିମୁପକାରସ୍ୟ ପ୍ରତ୍ୟହଂ କ୍ରିୟତେ ବୃଥା ।"

ଏ ଶରୀର ଯଦ୍ଧ ପ୍ରାଣୀର ଉପକାରରେ ଲାଗି ନ ପାରିଲା, ତେବେ ପ୍ରତିଦିନ ଏହାକୁ ନାନାବିଧ ସୁଖାଦ୍ୟ ଦେଇ ବଢାଇବାରେ ଲାଭ କଣ ? ତ୍ୟାଗ ଦ୍ୱାରା ଭୋଗ କର । "ତେନ ତ୍ୟକ୍ତେନ ଭୁଞ୍ଜୀଥାଃ" ଜୀବନକୁ ତିଳତିଳ କରି ପରୋପକାରରେ ବ୍ୟୟ କର ପ୍ରାଚ୍ୟ ଆଦର୍ଶର ଏ ମହତ୍ ବାଣୀ ଗୋପବନ୍ଧୁଙ୍କ ସାହିତ୍ୟରେ ଅକ୍ଷରେ ଅକ୍ଷରେ ପ୍ରତିପାଳିତ ହୋଇଅଛି ।

କାପୁରୁଷ ପରି ମରିବା ଜଗତେ ନୁହେଁ ନର ପଉରୁଷ
ପରହିତ ସାଧି ମରେ ଯେ ମର୍ତ୍ତ୍ୟରେ ସେହି ଏକା ସୁପୁରୁଷ ।
"ମାନବ ଜୀବନ ନୁହଇଁ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ"—

ଆର୍ଯ୍ୟ ସଂସ୍କୃତିର ଏହି କର୍ମଧାରାରେ ଜାତିକୁ ଉଦ୍‌ବୁଦ୍ଧ କରିବା ପାଇଁ, ଜାତିର ଜଡ଼ତା ଭାଙ୍ଗିବାପାଇଁ ଗୋପବନ୍ଧୁଙ୍କ ଜୀବନ ଥିଲା ଯେତେ ଯେପରି ଦେବାଭିପ୍ରେତ ।

ମନୀଷ ସଙ୍ଗେ ମଣିଷର, ଅତୀତ ସଙ୍ଗେ ବର୍ତ୍ତମାନର ମଣିକାଞ୍ଚନ ସଂସର୍ଗ, ଜୀବନର ସମସ୍ତ ଘାତ ପ୍ରତିଘାତ ମଧ୍ୟରେ ଅତ୍ୟନ୍ତ ଧୈର୍ଯ୍ୟର ସହ ଶାନ୍ତିର ସନ୍ଧାନ, ଜନ୍ମଭୂମିର ପ୍ରେମରେ ଭୂମାନନ୍ଦର ଅନୁସନ୍ଧାନ, ବ୍ୟକ୍ତି ସତ୍ତା ମଧ୍ୟରେ ବ୍ୟକ୍ତ ଚୈତନ୍ୟାତୀତ ସଚ୍ଚିଦାନନ୍ଦ ଘନ ପରମାତ୍ମାର ସାକ୍ଷାତ୍ ଲାଭ ହିଁ ତାଙ୍କର ଥିଲା ମୌଳିକ ପ୍ରେରଣା । ଏହିପରି ଭାବରେ ଦେବୋପମ ପଣ୍ଡିତ ଗୋପବନ୍ଧୁଙ୍କର ଚିରନ୍ତନ ସାହିତ୍ୟରେ ବହୁମୁଖୀ ବ୍ୟକ୍ତିତ୍ୱ ପର୍ଯ୍ୟବେକ୍ଷଣ କଲେ ଏହା ସ୍ପଷ୍ଟ ପ୍ରତିଭାତ ହୁଏ ଯେ, ତାଙ୍କର ସର୍ବତୋମୁଖୀ ପ୍ରତିଭା ପ୍ରତ୍ୟେକ ମନୁଷ୍ୟ ଜୀବନର ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ ରାଜ୍ୟ ମଧ୍ୟରେ ଇନ୍ଦ୍ରଧନୁ ତୁଲ୍ୟ ଅତି ମନୋହର ତଥା ଏକ ସୁଦୃଢ଼ ଓ ଶାଶ୍ୱତ ସେତୁବନ୍ଧ । ଉତ୍କଳୀୟ ଜୀବନାକାଶରେ ଗୋପବନ୍ଧୁ ଚିରଦିନ ସ୍ଥିର ହୋଇ ରହିଥିବେ, ଠିକ୍ ଧ୍ରୁବତାରା ପରି, ଯାହାକି ଘୋର ଅମା ଅନ୍ଧକାର ମଧ୍ୟରେ ସମଗ୍ର ମାନବ ଜାତିର ଏକମାତ୍ର ସହାୟ ।

●

# ଗୋପବନ୍ଧୁ ସାହିତ୍ୟରେ ଦାର୍ଶନିକ ଚିନ୍ତାଧାରା

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

[ 'ଗୋପବନ୍ଧୁ ସାହିତ୍ୟ ସମୀକ୍ଷା', 'ଭକ୍ତକବି' 'ଚମ୍ପୂ ଓ ଗୀତଗୋବିନ୍ଦର ସୁଧାକୃଷ୍ଟି ତତ୍ତ୍ୱ' ପ୍ରଭୃତିର ପ୍ରଣେତା ଶ୍ରୀଯୁକ୍ତ ମହାପାତ୍ର ବର୍ତ୍ତମାନ ପୌଢ଼ାବସ୍ଥାରେ Paralytical Brain Strokeରେ ପ୍ରପୀଡ଼ିତ ଥାଇ ମଧ୍ୟ ଗୋପବନ୍ଧୁ—ସଂକଳନ ପାଇଁ ଏହି ଯେଉଁ ପ୍ରବନ୍ଧ ଲେଖିଛନ୍ତି, ଏଥିରୁ ତାଙ୍କର ପ୍ରତିଭା-ପ୍ରକାର ପ୍ରକୃଷ୍ଟ ପରିଚୟ ମିଳେ । ବିଭିନ୍ନ ବିଭବରେ ଚିର ପ୍ରସ୍ଫୁଟିତ ଗୋପ ସାହିତ୍ୟକୁ ଦାର୍ଶନିକ ଚିନ୍ତାଧାରା କିଭଳି ଗରୀୟାନ୍ କରିଛି, ତାହାହିଁ ଏ ପ୍ରବନ୍ଧର ପ୍ରତିପାଦ୍ୟ ବସ୍ତୁ—ସଂ ]

ଦର୍ଶନ ହେଉଛି ଏକ ସୂକ୍ଷ୍ମତମ ବିଷୟ, ଯାହାକ ତୀକ୍ଷ୍ଣ ଜ୍ଞାନ ସମ୍ପନ୍ନ ଭାବନା ସହଜେ ଉପଲବ୍ଧ ହୋଇପାରେ ନାହିଁ । ସୃଷ୍ଟି-ରହସ୍ୟ, ବିଭିନ୍ନ ରୂପ ଧାରଣରେ ପ୍ରକୃତିର ବିକାଶ, ଜୀବନର ପର୍ଯ୍ୟାୟରେ ଅନୁଭୂତିର ଉଲ୍ଲାସ ପ୍ରଭୃତି ସୃଷ୍ଟିର ଯେଉଁ ସୂକ୍ଷ୍ମସ୍ତର ଦେଇ ଗତି କରୁଛି, ସେଇଠି ରହିଛି ଦର୍ଶନ ତତ୍ତ୍ୱର ନିଗୂଢ଼ ପ୍ରକାଶ । ତାହା ଯେତେ ସହଜ ବୋଧହୁଏ, ତହୁଁ ବଳି ଅଧିକ ଅଜ୍ଞେୟ ଓ ଅଚିନ୍ତ୍ୟ ।

ହେଲେହେଁ ଭାରତୀୟ ଆର୍ଯ୍ୟ ସଂସ୍କୃତି ବିଶ୍ୱନିୟନ୍ତାଙ୍କର ଏହି ଅତି ସୂକ୍ଷ୍ମତମ ପ୍ରଦେଶରେ ପ୍ରବେଶି କୃତିତ୍ୱର ପରିଚୟ ଦେଇଛି । ସୃଷ୍ଟିର ଜ୍ଞାନାନ୍ଧକାରରେ ଅୟୁମାଉମେ ବିମଳ ଦର୍ଶନ ଲୋକ ଉଚ୍ଛୁଳାଇ ମାନବିକତାର ମହତ୍ତ୍ୱ ବୃଦ୍ଧି କରିଛି । ମାକସମୁଲର ଯଥାର୍ଥରେ ଜାତିର ଆତ୍ମାକୁ ଚିହ୍ନି ଏହି ଦେଶକୁ 'a nation of philosophers' ବୋଲି ଆଖ୍ୟା ଦେଇଅଛନ୍ତି । ବେଦ ବେଦାନ୍ତଠାରୁ ଆରମ୍ଭ କରି ହଳିଆ ଗୀତ ପର୍ଯ୍ୟନ୍ତ ଯଦିଓ ପରିକ୍ରମା କରୁଁ, ତେବେ ଅନାୟାସେ ଜାଣିପାରିବା ଯେ, ପ୍ରତ୍ୟେକ ଗୀତର ଭାବସହ ଏହି ଦାର୍ଶନିକ ଚିନ୍ତାଧାରା ଅତି ସୂକ୍ଷ୍ମ ଓ

କୋମଳ ଭାବ ପରିବେଶିତ ହୋଇଅଛି । ଜ୍ଞାନୀ, ବିଦ୍ୱାନ, ପଣ୍ଡିତ ଓ କବିମାନଙ୍କୁ ଛାଡ଼ିଦେଲେ ମଧ୍ୟ ଅବହେଳିତ ଓ ଘୃଣିତ ପଲ୍ଲୀର ଅଶିକ୍ଷିତା ରମଣୀ ମୁଖରେ ଏହି ଦର୍ଶନତତ୍ତ୍ୱ ବେଶ୍ ଅନୁଭୂତ ହେଉଅଛି ମଧ୍ୟ । ତେଣୁ ବିବେକାନନ୍ଦ ଥରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ପାର୍ଥକ୍ୟ ଦେଖାଇ କହିଥିଲେ ଯେ—"ରାଜନୀତିକ ଚିନ୍ତାଧାରା ଭିତରେ ପାଶ୍ଚାତ୍ୟ ଦେଶ ଯେପରି କୃତିତ୍ୱର ପରିପୂର୍ଣ୍ଣ, ଦାର୍ଶନିକ ଭାବଧାରାରେ ଭାରତୀୟ ପ୍ରାଣ ସେପରି ଉଦ୍ଭାସିତ ।"

ଅତଏବ ଭାରତୀୟ ପ୍ରାଣ ଦାର୍ଶନିକ ତତ୍ତ୍ୱର ଅତି ନିକଟତମ, ପୁଣି ଆଦିମ ସ୍ରଷ୍ଟା ଓ ଦ୍ରଷ୍ଟା । ଅବଶ୍ୟ କେତେକ ଚିନ୍ତାଶୀଳ ବ୍ୟକ୍ତି ଦର୍ଶନର ମାତୃଭୂମି ଗ୍ରୀକ ଦେଶ ବୋଲି ବିବେଚନା କରିଛନ୍ତି । ତାହା ଯେତେଦୂର ଅସମ୍ଭବ, ତେତେ ମଧ୍ୟ ମୂର୍ଖତା ବୋଲି ନ କହିଲେ ସୁଦ୍ଧା ସଙ୍କୀର୍ଣ୍ଣ ଦୃଷ୍ଟିକୋଣର ପରିଚୟ ଦେଉଛି । ଏହି ସମ୍ବନ୍ଧରେ ଭାରତୀୟ ମତ ବାଞ୍ଛିତ ପାଶ୍ଚାତ୍ୟ ପଣ୍ଡିତ ଓ ଗବେଷକ ଯେଉଁ ମତ ବ୍ୟକ୍ତ କରିଅଛନ୍ତି, ତାହା ବିଶେଷ ଉଲ୍ଲେଖଯୋଗ୍ୟ । ଯଥା—"As far as philosophical thought is concerned, we cannot any more allow the history of philosophy to begin with the Greeks because India has a rich literature of philosophical writings in the Upanishads which go back to the 6th century B. C. and in certain hymn of the Rigsveda which go back to 2000 B, C. long before the Greeks had begun to speculate"

କେବଳ ଯେ ଏହି ଗୋଟିଏ ମତ, ତା' ନୁହେ ବିଶ୍ୱର ପ୍ରତ୍ୟେକ ଦେଶର ଜ୍ଞାନୀ, ପଣ୍ଡିତ, ଗବେଷକ, ଐତିହାସିକ ପ୍ରଭୃତି ବିଦ୍ୱାନ ବ୍ୟକ୍ତି-ମାନେ ଭାରତ ପକ୍ଷରେ ମତ ପ୍ରକାଶ କରିଅଛନ୍ତି । Victor Cous in କହିଅଛନ୍ତି "× × × We are constrained to bend the knee befare the philosophy ot the east and to see this the native land of the highest philosophy"

ଅତଏବ ଗୋପବନ୍ଧୁଙ୍କ ଦାର୍ଶନିକ ଚିନ୍ତାଧାରା ପର୍ଯ୍ୟାଲୋଚନା କଲେ ହୃଦ୍‌ବୋଧ ହୁଏ ଯେ, ଭାରତୀୟ କର୍ମପ୍ରଣାଳୀ ପ୍ରତ୍ୟେକ ସ୍ତରରେ

ଯେପରି ଦର୍ଶନର ଆଶ୍ରୟ ନେଇଛନ୍ତି, ସେପରି ଗୋପବନ୍ଧୁଙ୍କ ସାହିତ୍ୟ କ୍ଷୀରସାଗର ସଦୃଶ ଦର୍ଶନଚିନ୍ତା ସହିତ ଓତଃପ୍ରୋତ ଭାବେ ବିଜଡ଼ିତ ହୋଇଛନ୍ତି । ଜାତୀୟତା, ଭାଷା ଓ ଭାବ, ପ୍ରକୃତି, ଐତିହାସିକ ପ୍ରଭୃତି ବର୍ଣ୍ଣନା ମାଧ୍ୟମରେ ନିଗୂଢ଼ ଦାର୍ଶନିକ ଚିନ୍ତା ପରିବେଶିତ ହୋଇଛି— ଯାହାକି ବିଭିନ୍ନ ବିଷୟ ସମାଲୋଚନା ପ୍ରସଙ୍ଗରେ ଏଥିପୂର୍ବେ ଉଲ୍ଲିଖିତ ହୋଇଥିଲେ ମଧ୍ୟ ସେଥିର ସଠିକ୍ ବିବରଣୀ ଏଇଠି ଆବଶ୍ୟକ ମନେହୁଏ । ଉଦାହରଣ ସ୍ୱରୂପ—

‘ଅନ୍ଧାରେ ନ ହୁଡ଼ ପଥରେ ସରଗ ଯାତ୍ରୀ’

ଏଇଠି ‘ସରଗ-ଯାତ୍ରୀ’ ବିଭୂତି ସାଧାରଣ ମାନବ ଦେହରେ ଯାହା ଦେଖିଅଛନ୍ତି; ତାହା ଦର୍ଶନ ତତ୍ତ୍ୱର ଆଭାସ ଦିଏ । ସଂସାର ପିଚ୍ଛିଳ ପଥରେ ଯତ୍ନ ସହକାରେ ଯାତ୍ରା କଲେ ସୁଦ୍ଧା ବାସ୍ତବତାର ନିର୍ଦ୍ଦୟ ପ୍ରକୋପରେ ଧୈର୍ଯ୍ୟଚ୍ୟୁତି ଘଟିବାର ଯଥେଷ୍ଟ ସମ୍ଭାବନା ଥିବା ଯୋଗୁଁ କାଳେ ମାନବର ଅମୃତ ଜୀବନ ଆଦର୍ଶଚ୍ୟୁତ ହୋଇପାରେ, ସେଥିପ୍ରତି ସତର୍କ କରି ଦେଇଅଛନ୍ତି ।

କାରଣ ମାନବ ଯେ ଅନନ୍ତ ଆଦିଶକ୍ତିର ଏକ ଜୀବନ୍ତ ପ୍ରତିମୂର୍ତ୍ତି ବା ସୃଷ୍ଟିର ସର୍ବଶ୍ରେଷ୍ଠ ସମ୍ପତ୍ତି—ଗୋପବନ୍ଧୁ ଏହା ମର୍ମେ ମର୍ମେ ଅନୁଭବ କରୁଥିଲେ । କାରଣ ଯେଉଁ ପ୍ରଜ୍ଞା ଲୋକରେ ମାନବ ଅଭେଦ୍ୟ ସୃଷ୍ଟି ରହସ୍ୟ କିମ୍ବା ବିଚିତ୍ରତାକୁ ଭେଦ କରି ବେଶ ଉପଭୋଗ କରେ— ଅନନ୍ତ ରୂପସତ୍ତାକୁ ବାସ୍ତବ ଚିତ୍ରରେ ରୂପାୟିତ କରି ଜୀବନ୍ତ କରେ— ଅଚିନ୍ତ୍ୟ ଓ ଅଜ୍ଞେୟ ବିଷୟ ବସ୍ତୁକୁ ଚମତ୍କାରଭାବେ ପ୍ରତିଫଳନ କରି ବାସ୍ତବ ଜୀବନ ସହିତ ତାର ଘନିଷ୍ଠ ସମ୍ପର୍କ ଆଣିଦିଏ ତାହାହିଁ ମାନବୀୟ ଗୁଣରେ ଦେବତ୍ୱ ।

ଏହି ସ୍ୱର୍ଗୀୟ ସୌଷ୍ଠବ କର୍ମ ସାଧନାର ପରିଣତି ନୁହେଁ । ଅନ୍ତର୍ଦୃଷ୍ଟି ନିକ୍ଷେପରେ ଯେ ଦେଖେ ଗୋଷ୍ଠୀ ଭିତରେ ନିଜକୁ ଓ ନିଜ ଭିତରେ ଗୋଷ୍ଠୀକୁ—ସେହି କେବଳ ଓ ସକ୍ଷମ ହୁଏ ଏହି ସ୍ୱର୍ଗୀୟ ସୌଷ୍ଠବ ବା ମଧୁରତା ଉପଭୋଗ କରିବାକୁ ।

ଗୋପବନ୍ଧୁ ସେହି ଆଦର୍ଶର ଶ୍ରେଷ୍ଠ ପୂଜକ ଓ ସେବକ । ସେଥି ଯୋଗୁଁ ସେହି ମଧୁରତା ଉପଭୋଗ କରି ଗାଇଅଛନ୍ତି—

"ମଧୁମୟ ଭବେ ମତ୍ତ ହେବ ବିଶ୍ୱପ୍ରାଣୀ,
ସର୍ବ ସିନ୍ଧୁ ସ୍ରୋତେ ଛନ୍ତି ମଧୁମୟ ନୀର
ବହୁ ମଧୁମୟେ ଗନ୍ଧ ଶୀତଳ ସମୀର ।"

କିମ୍ୱା

"ମଧୁମୟ ଗନ୍ଧେ ହେଉ ବିଶ୍ୱ ନିନାଦିତ ।"

ଏହି ପ୍ରସଙ୍ଗରେ ବିଶ୍ୱକବି ରବୀନ୍ଦ୍ର କହିଅଛନ୍ତି—

"ପ୍ରେମ, ପ୍ରାଣେ, ଗାନେ, ଗନ୍ଧେ, ଆଲୋକେ, ପୁଲକେ;
ପ୍ଲାବିତ କରିୟା ନିଖିଳ ଦ୍ୟୁଲୋକେ, ଭୂଲୋକେ
ତୋମାର ଅମଲ ଅମୃତ ପଡ଼ିଛେ ଝରିଆ ।"

କିମ୍ୱା

"ସକଲ ଆକାଶ ସକଲ ଧରା
ଆନନ୍ଦେ ହାସିତେ ଭରା ।"

ବିଶ୍ୱ ସୃଷ୍ଟିର ସୌନ୍ଦର୍ଯ୍ୟ ତତ୍ତ୍ୱ ଭିତରେ ଯେଉଁ ମଧୁମୟ ପ୍ରବାହ ଅହରହ ପ୍ରବାହିତ ହୋଇ ମୃଦୁ ଶୀତଳହିଲ୍ଲୋଳରେ ବିଶ୍ୱପ୍ରାଣ ଆମୋଦିତ କରେ, ତାହା ଦୃଶ୍ୟମାନ ଜଗତର ବସ୍ତୁ ନୁହେଁ କିମ୍ୱା ସ୍ପର୍ଶ ଓ ଆଘ୍ରାଣର ସାମଗ୍ରୀ ନୁହେଁ, ଉତ୍କୃଷ୍ଟ ଚିତ ଶକ୍ତିର ଉପଭୋଗ୍ୟ ମାତ୍ର ଯଦ୍ଦ୍ୱାରା କି ଅନନ୍ତ ବ୍ରହ୍ମଙ୍କର ଯେଉଁ ମଧୁମୟ ସତ୍ତା ବିଶ୍ୱର ଭୂମା ଭୂମା ଭେଦି ଊର୍ମିଳ ଛନ୍ଦରେ ଗତି କରିଯାଉଛି, ତାକୁ ଉପଲବ୍‌ଧି କରିହୁଏ, ପ୍ରାଣରେ ଆସେ ପରମ ଶାନ୍ତି ଓ ଆନନ୍ଦ ।

ସେହି ଦୃଷ୍ଟିରେ ଗୋପବନ୍ଧୁ କହିଅଛନ୍ତି—

ପୂରି ରହିଛନ୍ତି ପ୍ରଭୁ
ସର୍ବଭୂତେ ସର୍ବ ସ୍ଥାନେ
ପାଇବି ପରାଣେ ଶାନ୍ତି
ତାଙ୍କ ପାଦପଦ୍ମ ଧ୍ୟାନେ ।"

ଏହି ପ୍ରସଙ୍ଗରେ ରବୀନ୍ଦ୍ର ଦୁଃଖସୁଖ ଦୁନିଆର ବୈଚିତ୍ର୍ୟଭରା ଜୀବନକୁ ବିଭୁଙ୍କ ପଦପ୍ରାନ୍ତରେ ଶରଣାଗତ କରି ଗାଇଛନ୍ତି—

"ଆମାର ମାଝେ ତୋମାର ଲୀଳା ହବେ
ତାଇ ତୋ ଆମି ଏସେଛି ଏଇ ଭବେ ।

× × ×

ଦୁଃଖ ସୁଖେର ବିଚିତ୍ର ଜୀବନେ
ତୁମି ଛୁଡ଼ା ଆର୍ କିଛୁ ନା ରବେ ।

ଏହା ଯଥାର୍ଥ, କାରଣ ସ୍ଥାବର ଜଙ୍ଗମ ପ୍ରଭୃତି ଯେତେ ଯେତେ ପଦାର୍ଥ ଓ ଜୀବ ଏହି ଦୃଶ୍ୟମାନ ଜଗତରେ ପରିଦୃଷ୍ଟ, ସେଥିଭିତରେ ଭଗବତ୍ ସତ୍ତା ପୂର୍ଣ୍ଣଭାବରେ ବିକଶିତ । ପ୍ରତ୍ୟେକ କ୍ରିୟା ଓ ଭାବନା ତାଙ୍କଦ୍ୱାରା ସମ୍ପୂର୍ଣ୍ଣଭାବେ ନିୟନ୍ତ୍ରିତ । ଯେହେତୁ ସେ ଶାସକ ଓ ଆମେ ଶାସିତ । ସେ ଭୋଗୀ ଓ ପ୍ରତ୍ୟେକ ସୃଷ୍ଟି ପଦାର୍ଥ ଓ ଜୀବ ତାଙ୍କର ଭୋଗ୍ୟ । ଅତଏବ ମନୁଷ୍ୟ ପ୍ରଜ୍ଞାଲୋକରେ ଉଦ୍ଭାସିତ ହୋଇ ସେ ଯେତେ ଐଶୀଶକ୍ତି ବିଶିଷ୍ଟ ଓ ସ୍ୱାଧୀନ ହେଉ ନା କାହିଁକି, ପ୍ରକୃତିର ସେ ଦାସ, ଯେହେତୁ କି ତ୍ରିତାପ ଯନ୍ତ୍ରଣାରେ ଅହରହ ଦୁଃଖ କଷ୍ଟ ଭୋଗ କରେ, ଜରା, ମୃତ୍ୟୁ, ଅଜ୍ଞାନ ପ୍ରଭୃତି ଦୁଃଖଦ୍ୱାରା ନିଷ୍ପେଷିତ ହୁଏ, ପୁଣି ସୀମିତ ପରିବେଷ୍ଟନୀ ମଧ୍ୟରେ ବିଚରଣ କରେ, କିନ୍ତୁ ପରମାତ୍ମା ଅନନ୍ତ ଓ ଅସୀମ । ତାଙ୍କର ଗତିଶୀଳତାରେ ପ୍ରତ୍ୟେକ ପଦାର୍ଥ ଗତିଶୀଳ । କାରଣ କର୍ତ୍ତାର ଅଭାବରେ କର୍ମ କେବେ ସମାପନ ହୁଏନି । ଯେଉଁଠି କର୍ତ୍ତାର ଅଭାବ ସେଇଠି କ୍ରିୟାର ମଧ୍ୟ ଅଭାବ ।

ଅତଏବ ସୃଷ୍ଟିର ଭୂମାଭୂମା ଭେଦ ଯେଉଁ ଐଶ୍ୱରିକ ସତ୍ତା ଫୁଟି-ଉଠୁଛି, ତାହା କେବେହେଲେ ମିଥ୍ୟା ନୁହେଁ; ଅଥଚ ଅଜ୍ଞାନ ତଥା ଅହଙ୍କାର ବଶତଃ ସେହି ଦିବ୍ୟପ୍ରଭାକୁ ଦେଖିପାରୁ ନାହିଁ । କାରଣ ଅଜ୍ଞାନାବୃତ ହେବା ଦ୍ୱାରା ମାନବର ମାନସିକ ଦିବ୍ୟ-ଦୃଷ୍ଟି ଶକ୍ତିରହିତ ହୁଏ । ଈଶ୍ୱର ଓ ଆତ୍ମା ଯେ ଏକ, ଏହି ନିଗୂଢ଼ ସତ୍ୟ ପ୍ରତି ତାର ଆସେ ବିଦ୍ରୋହ । ବିତାହିତ ଜ୍ଞାନଶୂନ୍ୟ ହୁଏ, ସାଂସାରିକ ଆକର୍ଷଣ ଫଳରେ ନିଜକୁ ବିଶ୍ୱର ଅଧିକାରୀ ଓ ଭୋଗୀ ବୋଲି ବିବେଚନା କରେ— ଫଳ୍ପୁର କି ପିହିତ ପାଷାଣ ଜୀବନରେ ଯେଉଁ ଭଗବତ୍ ତତ୍ତ୍ୱର ମଧ୍ୟରୁ ଉତ୍ସ ଆନନ୍ଦଦାନ କରୁଥିଲା, ଅଶାନ୍ତ ଓ ବିପ୍ଳବରେ ଆଣୁଥିଲା ଶାନ୍ତି ଓ ପ୍ରଗତି, ସେହି ଗୁଣକୁ ହରାଇ ବସେ । ଏହି ମାୟାବାଦ ଫଳରେ ବାହ୍ୟରୂପକୁ କେବଳ ପ୍ରକୃତ ପଦାର୍ଥ ବୋଲି ଜ୍ଞାନ କରି ଅନ୍ତର ପ୍ରତି ଦୃଷ୍ଟି ଦିଏ ନାହିଁ । ସୃଷ୍ଟି ଅନ୍ତରାଳରେ ଯେଉଁ ଅଜେୟ ଓ ଅପ୍ରାକୃତିକ ଶକ୍ତି ଅଜର ଅମର ହୋଇ ବିରାଜିତ, ସେହି ଚିନ୍ମୟାନନ୍ଦ ମୂର୍ତ୍ତିକୁ

ତହିଁ ପାରେ ନାହିଁ । ଏମନ୍ତ ଭାବାପନ୍ନ ବ୍ୟକ୍ତି ପ୍ରତି ଉପନିଷଦକାର କହିଅଛନ୍ତି—

"ଅସୂର୍ଯ୍ୟା ନାମ ତେ ଲୋକା ଅନ୍ଧେନ ତମସାବୃତାଃ,
ତାଂସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋ ଜନାଃ ।"

ଅର୍ଥାତ୍—ଈଶ୍ୱରଙ୍କଠାରୁ ଆତ୍ମାକୁ ପୃଥକ୍ କରି ଅର୍ଥାତ୍ ବୈଷୟିକ ଆକର୍ଷଣରେ ସଦାସର୍ବଦା ଲିପ୍ତ ରହି ଯେ କି ଧରାକୁ ସରା ଜ୍ଞାନ କରେ, ସିଏ ହେଉଛି ସୂର୍ଯ୍ୟାଲୋକ ବର୍ଜ୍ଜନ ଘନାନ୍ଧକାରବୃତ ବ୍ୟକ୍ତି । ଏଇଠି "ଅନ୍ଧେନ ତମସାବୃତାଃ" ବୋଲି ଯାହା କୁହାଯାଇଛି, ତାହା କେବଳ ଅଜ୍ଞାନ ଓ ଅବିଦ୍ୟା ଅହଂକାର (Ego) ବୋଲି ଅର୍ଥ ବୁଝାଏ ଏବଂ ଏହି ଅଜ୍ଞାନଶ୍ଳିଷ୍ଟ ମନ ସର୍ବଦା ଅଭିଳାଷ ରୁଚି (objective desire) ପ୍ରତି ଆସକ୍ତ ହୋଇ ମାନସିକ ତଥା ଶାରୀରିକ କ୍ଳେଶ, ଯନ୍ତ୍ରଣା ପ୍ରଭୃତି ଭୋଗ କରିଥାଏ । ଯେହେତୁ ଅଭିଳାଷ ଓ ଆସକ୍ତି ହେଉଛି ସବୁ ଅନର୍ଥର ମୂଳ କାରଣ, ସେଥିହେତୁ ଭଗବାନ୍ ଶ୍ରୀକୃଷ୍ଣ କହିଅଛନ୍ତି ମୋହ, ଅଭିଳାଷ ଓ ଆସକ୍ତି ତ୍ୟାଗ କରି ନିଷ୍କାମ ସେବା ହିଁ ମନୁଷ୍ୟର ଶ୍ରେଷ୍ଠତମ ଗୁଣ ଓ ଆଦର୍ଶ ।

ଅତଏବ ଜୀବନ ସହିତ ପରମାତ୍ମାଙ୍କ ଐକ୍ୟ ଜ୍ଞାନବିଶିଷ୍ଟ ସାଧନା ଓ ଅନାସକ୍ତ ଭାବନା ହିଁ କେବଳ ସ୍ୱର୍ଗୀୟ ଭୋଗର କାରଣ । ତେଣୁ କୁହାଯାଇଛି, ଯଥା—

"ଈଶାବାସ୍ୟ ମିଦଂ ସର୍ବଂ ଯତ୍ କିଂଚଜ୍ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥାଃ ମା ଗୃଧଃ କସ୍ୟଚିତ୍ ଧନମ୍ ।"

ଗୋପବନ୍ଧୁ ଏହି ନିଗୂଢ଼ ଦାର୍ଶନିକ ତତ୍ତ୍ୱ ଦୃଷ୍ଟିରେ ନିଜର କର୍ମପନ୍ଥା ସ୍ଥିରୀକୃତ କରିଥିଲେ । ପ୍ରାଣୀର ଅଜ୍ଞାନଜନିତ ମୋହାନ୍ଧକାର ତଥା ପଶୁତ୍ୱକୁ ସମୂଳେ ବିଲୋପ କରିବା ନିମିତ୍ତ ନିଜ ଅନ୍ତର୍ଦୃଷ୍ଟିର ଉଦବୋଧ ଶକ୍ତିର ସାହଚର୍ଯ୍ୟ ନେଇଥିଲେ । ଯେହେତୁ ସେ ଦୃଢ଼ଭାବେ ଜାଣିଥିଲେ ଯେ, ଅଜେୟ ଓ ଅନନ୍ତ ଶକ୍ତିର ସାହାଯ୍ୟରେ ଅସମ୍ଭବ ସୁଦ୍ଧା ସମ୍ଭବ ହୋଇପାରେ । ଦୁଃଶାସନ ପ୍ରବୃତ୍ତି କୁଟିଳ କୁକୁର ପରି ପୋଷା ମାନିପାରେ । ତେଣୁ ସେ ଦୃଢ଼ ଆତ୍ମବିଶ୍ୱାସରେ କହିଅଛନ୍ତି—

"ଆଧ୍ୟାତ୍ମିକ ଭାବେ ଲଢ଼ିବୁ ଲଢ଼ାଇ
ଭାଙ୍ଗିବାକୁ ପଶୁବଳର ବଡ଼ାଇ ।"

ମାନବିକତାର ଏହି ପୂର୍ଣ୍ଣ ଅଭିବ୍ୟକ୍ତିରେ ଭଗବତ୍ ତତ୍ତ୍ୱକୁ ନିବିଡ଼ ଭାବେ ଉପଲବ୍ଧି କରି ଶାନ୍ତି-ସୁଧା ପାନ କରିଅଛନ୍ତି । ଦୁନିଆଁ ର ନୀରସ ଘଟଣା ମଧ୍ୟରେ ଚିତ୍‌ଶକ୍ତିର ଅଦ୍ଭୁତ ବିକାଶ ହେତୁ ସୃଷ୍ଟିର ମଧୁରତା ଆସ୍ୱାଦନ କରିଅଛନ୍ତି । ମାନବର ସେବା ହିଁ ଭଗବତ୍ ସେବାର ରୂପାନ୍ତର ମାତ୍ର ବୋଲି ଯେଉଁ ଉକ୍ତି ଅଛି, ତାହାର ସାର୍ଥକତା ଏଇଠି ସମ୍ପୂର୍ଣ୍ଣ ଭାବରେ ପ୍ରତିପାଦିତ ହୋଇଛି । ଯେହେତୁ ଆଧୁନିକ ମନୀଷୀ କହିଅଛନ୍ତି –

"It bases its action in the collective life upon an inner experience and inclusion of others in our own beeing, an inner sense or reality and oneness କିମ୍ବା for the divine in others and divine in all."

ଏହି ଦାର୍ଶନିକ ଚିନ୍ତାଲୋକରେ ଗୋପବନ୍ଧୁଙ୍କର ଅନ୍ୟ ଏକ ଅଭିନବ ସ୍ପନ୍ଦନ ଅନୁଭବ କରୁଁ । ସ୍ନେହ, ବନ୍ଧୁତା ଓ ପ୍ରେମର ଅଲୌକିକ ସ୍ଫୁରଣରେ ଶ୍ରୀକୃଷ୍ଣଙ୍କର ବିରାଟ ଅବତାରରେ ଅର୍ଜୁନ ଯେପରି ବିଶ୍ୱରୂପ ଦର୍ଶନ କରିଥିଲେ ଗୋପବନ୍ଧୁ ସେପରି ଅସାଧାରଣ ଆଦର, ସ୍ନେହ ଓ ପ୍ରେମବଶତଃ ସମଗ୍ର ମାନବ ଜାତିକୁ ନିଜର ଅନ୍ତର ମଧ୍ୟରେ ଦେଖି ପାରିଥିଲେ । ତେଣୁ ସେ କହି ଅଛନ୍ତି—

"ପ୍ରେମ ଭାବ ଯାର ଅନ୍ତରେ ପୂରିତ,
ସର୍ବ ପ୍ରାଣୀ-ହୃଦ ତା' ହୃଦେ ଅର୍ପିତ,
ସର୍ବ ଅନୁଭୂତି ସର୍ବ ଭୂତେ ତାର,
ତା ଦୃଷ୍ଟିରେ ବିଶ୍ୱ ଏକ ପରିବାର ।"

ଏହି ଭବ୍ୟାନୁଭୂତି ଦୁର୍ବାର କାମନାଯୁକ୍ତ ପ୍ରେରଣା ନୁହେଁ କିମ୍ବା ସୂଚନା ନୁହେଁ । ବ୍ରହ୍ମସ୍ଥିତି ବା ବ୍ରହ୍ମସମାଧିରେ ମାନସିକ ପ୍ରବୃତ୍ତିର ଅଦ୍ଭୁତ ଓ ଅଲୌକିକ ବିଳାସ । କାରଣ ଆତ୍ମିକ ଅଭିବ୍ୟକ୍ତିରେ ବାସନା କାମନା, ଲୋଭ, ମୋହ, ଅହଂକାର, ମାତ୍ସର୍ଯ୍ୟ ପ୍ରଭୃତି ଅଜ୍ଞାନ-ଶତ୍ରୁ ସମୂହ ଯେପରି ମାନବୀୟ ଗୁଣକୁ ପଥଭ୍ରଷ୍ଟ କରିବାରେ ଅହର୍ନିଶ ବ୍ୟାପୃତ, ସେଇଠି ସାମାନ୍ୟ ମାନବ ନିଜର ଆଦର୍ଶ ରଖିପାରେ ନା । ଖରସ୍ରୋତା

ସ୍ରୋତସ୍ୱିନୀ ପ୍ରବାହରେ ଅଳ୍ପ ଭାରବିଶିଷ୍ଟ ଗାଡ଼ଆର ଅବସ୍ଥା ଯେପରି, ସେପରି ତାର ଅବସ୍ଥା ହୁଏ । ସେଇଠି ଦରକାର ଅନନ୍ତ ସାଗରର ବୈଶିଷ୍ଟ୍ୟ, ଯେଉଁଠି କି ଯେତେ ବେଗଗାମୀ ନଦୀ ହେଲେ ସୁଦ୍ଧା ସାଗରର ନିଶ୍ଚଳ ଓ ଗମ୍ଭୀର ଆତ୍ମାରେ ଲୀନ ହୁଏ ଓ ତତ୍ ପ୍ରାକୃତିକ ଭବେ ନିଜକୁ ନିୟନ୍ତ୍ରିତ କରେ । ଅର୍ଥାତ୍ ନିଜର ସତ୍ତାକୁ ସମ୍ପୂର୍ଣ୍ଣଭବେ ସମୁଦ୍ରର ଅନନ୍ତ ଅଗାଧ ଓ ଗମ୍ଭୀର ଆତ୍ମା ଭିତରେ ହଜାଇଦିଏ ।

ଅତଏବ ଗୋପବନ୍ଧୁଙ୍କର କର୍ମନିଷ୍ଠ ଆତ୍ମା ଅନନ୍ତ ଓ ଗମ୍ଭୀର ପ୍ରାକୃତିକ ହୋଇଥିଲା । 'ପ୍ରେମ କି ଅଟଇ କେବଳ ମାତ ସ୍ୱାର୍ଥର ଛଳନା' କିମ୍ବା 'ବାସ୍ତବ ବିଶ୍ୱର ଯେତେ ନୀରସ ଘଟଣାସମୂହ ତାଙ୍କର କର୍ମପଥରେ ଯାବତୀୟ ପ୍ରତିବନ୍ଧକ ସୃଷ୍ଟି କରି ଲୁହ ନ କନ୍ଦାଇ ରକ୍ତ କନ୍ଦାଇ ଥିଲେ ସୁଦ୍ଧା ଚାଲ ସତ୍ୟ ପଥେ ନାହିଁ ଡରିଭୟ' ଗୁରୁଗମ୍ଭୀର କଣ୍ଠରେ କହି ଯାଉ ଚାଲିଛି—ଶିରଶିଖେ ଲକ୍ଷ୍ୟ ରଖି । ନିଜର ନୈଷ୍ଠିକ କର୍ମରେ ଆତ୍ମା ନିବେଶ କରି ବିଶ୍ୱକୁ ନିଜ ଭିତରେ ଦେଖି ପାରିଛି । ସ୍ୱର୍ଗୀୟ ଶାନ୍ତି ପାଇଁ ଭଗବାନଙ୍କର ଚରଣାବ୍ଜରେ ନିଜକୁ ସମର୍ପି ଦେଇ ଆତ୍ମଜ୍ଞାନ ଓ ଆତ୍ମଲାଭ ପାଇଅଛି, ପୁଣି ବିଶ୍ୱପ୍ରେମରେ ନିଜକୁ ଭସାଇ ଦେଇଅଛି ।

ଏହି ଯେଉଁ ବିଶ୍ୱଧର୍ମ ଧାରଣା ତାହାହିଁ ବ୍ରହ୍ମସମାଧିଭର ବିକାଶ । କାରଣ ବସ୍ତୁତାନ୍ତ୍ରିକ କିମ୍ବା ବହିର୍ଜଗତର ଲୋଭନୀୟ ଆକର୍ଷଣରେ ବିଚଳିତ ହେଉଥିବା ବୁଦ୍ଧି ଯେତେବେଳେ ବିଶ୍ୱଧର୍ମ ଆଦର୍ଶରେ ନିଶ୍ଚଳ ରହେ, ସେତେବେଳେ ମନରେ ଏକାଗ୍ରତା ଆସେ, ଚିତ୍ତଶକ୍ତିର ବିକାଶ ଘଟେ । ଅର୍ଥାତ୍ ଯୋଗପ୍ରାପ୍ତ ହୁଏ ।

ସେହି ଉପଲକ୍ଷେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି—

ଶ୍ରୁତିବିପ୍ରତିପନ୍ନାତେ
ଯଦା ସ୍ଥାସ୍ୟତି ନିଶ୍ଚଳା
ସମଧାବଚଳା ବୁଦ୍ଧିଃ
ତଦା ଯୋଗମବାପ୍ସ୍ୟସି । (୨।୫୩)

ଏହି ଯୋଗ ସିଦ୍ଧାନ୍ତରେ ମନୁଷ୍ୟ ଜ୍ଞାନ କରେ, ବ୍ୟକ୍ତିରେ ଗୋଷ୍ଠୀର ବିକାଶ ସିମିତି; ଗୋଷ୍ଠୀରେ ବ୍ୟକ୍ତିର ବିକାଶ ମଧ୍ୟ ସିମିତି । ଅର୍ଥାତ୍ ଏକରେ ବହୁ, ବହୁରେ ଏକ, ତ୍ୟାଗରେ ଭୋଗ, ଭୋଗରେ

ତ୍ୟାଗ, ଭୂତରେ ଅଧ୍ୟାତ୍ମ୍ୟ, ଅଧ୍ୟାତ୍ମରେ ଭୂତ, ବ୍ୟକ୍ତରେ ଅବ୍ୟକ୍ତ ଓ ଅବ୍ୟକ୍ତରେ ପ୍ରକାଶ—ସହସ୍ରସବୁ କ୍ରିୟା ଓ ପ୍ରକ୍ରିୟା ସମ୍ବନ୍ଧ ଯେତେ ବସ୍ତୁ ଓ ବିଚାର ବୋଲି ଆମର ଧାରଣା ହେଲେ ସୁଦ୍ଧା ପରସ୍ପର ଏକ ମଧୁର ସମ୍ପର୍କରେ ଆବଦ୍ଧ—ସଚରାଚର ପୃଥିବୀ ଯେପରି ଏକ ପରିବାର-ଭୁକ୍ତ ।

ତେଣୁ ଏହି ପରସ୍ପର-ବିରୁଦ୍ଧ ଧର୍ମର ସହଜ୍ଞାନ ଦ୍ୱାରା ଜୀବ ପରମାତ୍ମାଙ୍କ ସତ୍ତା ଉପଭୋଗ କରେ ଏବଂ ଏହି ବିଚାର ତତ୍ତ୍ୱକୁ ଯେ ଦେଖେ ସେ ହୁଏ ସ୍ରଷ୍ଟା କମ୍ବା ଦାର୍ଶନିକ ।

ଆତ୍ମା ଯେତେବେଳେ ପରମାତ୍ମ ଙ୍କ ସହ ମିଳିତ ହୁଏ କମ୍ବା ଏକ ପରିବାରଭୁକ୍ତ ହୁଏ, ସେଇଠି ବ୍ୟବଧାନ ସମସ୍ତର ଯେଉଁ ବିଚାରତା ବା ରହସ୍ୟ ସୃଷ୍ଟି ହେଉଥିଲ, ତାହା ଅନ୍ତରେ ବିଲୋପ ହୋଇଯାଇ ଅନନ୍ତ ଅଭେଦ୍ୟ ଓ ପରମ ନିର୍ବେଦ୍ୟ ମହାସତ୍ତା ଉପଭୋଗ କରେ । ତେଣୁ ବଂଶରକ୍ଷା ଓ ପିତାଙ୍କର ବାତ୍ସଲ୍ୟ ମମତା ପ୍ରତି ଭ୍ରୂକ୍ଷେପ ନ କରି କର୍ତ୍ତବ୍ୟନିଷ୍ଠ ଧର୍ମପଦ ଯେତେବେଳେ 'ବାରଣ ବତାଇଦେଇ ଦାୟ' କହି ପୂତମସ୍ତ ଚନ୍ଦ୍ରଭାଗା ନୀରରେ ଝାସ ଦେବାକୁ ଉଦ୍ୟତ, ସେତେବେଳେ ଗୋପବନ୍ଧୁଙ୍କ ଦାର୍ଶନିକ ହୃଦୟ ମଧୁରଭାବେ ଉପଭୋଗ କରୁଛି—

"ଜଳ ସ୍ଥଳ ନଭ ହେଲ୍ ଏକ ଭାବ
ଲଭିଗଲ୍ ବିଚାରତା
ଅନନ୍ତ ଅଭେଦେ ପରମ ନିର୍ବେଦେ
ବ୍ୟକ୍ତ ବିଶ୍ୱ-ମହାସତ୍ତା ।
ବାଳୁତ ହୃଦୟ ମିଶିଗଲ୍ ସେହି
ମହା ଅନନ୍ତ ବିତାନେ
ଆନ ଭବ ଭୁଲି ମରଣେ ଆଦଶାକୁ
ଏକୀଭୂତ ବିଶ୍ୱ ପ୍ରାଣେ ।
ମୁହୂର୍ତ୍ତିକେ ପୁଣି ସେ କ୍ଷୁଦ୍ର ହୃଦୟେ
ସଙ୍କୁଚିତ ବିଶ୍ୱସାର
ଭିତର ବାହାର କଲ୍ ଏକାକାର
ଅମୃତ-ସଙ୍ଗୀତ-ଧାର ।

ହୋଇ ଏକଧ୍ୟାନ ମିଳାଇଣ ତାନ
ବିଶ୍ୱ-ସଙ୍ଗୀତ-ଲହରେ
ଗାଏ ଧର୍ମପଦ ପରମ ଆନନ୍ଦେ
ଜୟ ଜଗଦୀଶ ହରେ ।”

କି ସୁନ୍ଦର ହୃଦୟର ଅଭିବ୍ୟକ୍ତି । କି ସୁନ୍ଦର ଦାର୍ଶନିକ ଚିନ୍ତାଧାରାର ଉଲ୍ଲୋଳ କଲ୍ଲୋଳ ମାଧୁରୀ ! ! ସତେ କ'ଣ ନିବିଡ଼ାନୁଭୂତି ବିନା ଏପରି ନିଗୂଢ଼ ଓ ଅଚିନ୍ତ୍ୟ ଭାବସମ୍ପଦ ଅର୍ଜନ କରି ହୁଅନ୍ତା ? ଭୂମା ଭୂମା ଭେଦି ଯେଉଁ ଅନାହତ-ସଙ୍ଗୀତ-ଲହରୀ ବିଶ୍ୱ ପୃଷ୍ଠରେ ଅବିରତ ନୃତ୍ୟ କରି ଯାଉଅଛି, ତାର ମଧୁର ଆସ୍ୱାଦନ ବିନା କିଏ ତାଙ୍କର ହୃଦୟ କାନ୍ଦି ଉଠିଥାନ୍ତା, କିଏ ବିହ୍ୱଳିତ ଓ ଉତ୍କଣ୍ଠିତ ଚିତ୍ତରେ ଶୁଣିବାକୁ ସେହି ଅମୃତ ସଙ୍ଗୀତ-ଲହରୀ କାରାରୁଦ୍ଧ ଜୀବନର ରୁକ୍ଷ ଓ କର୍କଶ ପରିସ୍ଥିତି ମଧ୍ୟରେ !

“ଗମ୍ଭୀରାରୁ କିବା ଶ୍ରୀମୁଖ ଆଦେଶ
ପଠାଇ ଅଛନ୍ତି ଦେବ ମୋ ପାଇଁ
କହ ବେଗେ ବାୟୁ କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇ ।”

ଜୀବାତ୍ମା ଓ ପରମାତ୍ମାର ଏଇଠି ଅଦ୍ଭୁତ, ଅପୂର୍ବ ଓ ଅପରୂପ ମିଳନ । ଅମର-ସଙ୍ଗୀତର ମୃଦୁବାଣୀ ମୂର୍ଚ୍ଛନା ଆକୁଳିତ ଆତ୍ମା ପରିତୃପ୍ତି ଲଭିଛି । ଭକ୍ତ ଓ ଭଗବାନଙ୍କର ସମ୍ବନ୍ଧ ମଧୁର ଓ ଘନିଷ୍ଠ ହୋଇ ଉଠିଛି । ଆଶାୟୀର କାମନା ପରିତୃପ୍ତିରେ ଯେମିତି ସେ ମତୁଆଲ୍ ହୋଇ ପରିପୂର୍ତ୍ତିତାର ଯଶଗାନରେ ଅହରହ ମୁଖର, ସିମିତି ଭକ୍ତ ପ୍ରାଣ ଭଗବତ୍ ମିଳନରେ ବିଭୋଳ ରହି ଭଗବାନଙ୍କ ବିଶ୍ୱ-ମୂର୍ଚ୍ଛିତ ଅମୀୟ ସଙ୍ଗୀତ ଶୁଣି ପାରିଛି । ଏହି ଉପଲକ୍ଷେ ବିଶ୍ୱକବି ରବୀନ୍ଦ୍ର କହିଅଛନ୍ତି -

“ତୁମି ନବ ନବ ରୂପେ ଏସ ପ୍ରାଣେ
ଏସ ଗନ୍ଧେ ବରନେ, ଏସ ଗାନେ ।
ତୋମା ଶୁନିସ୍ୱନ କି ତା'ର ପାସ୍ୱେର ଧ୍ୱନି
ଐ ଯେ ଆସେ, ଆସେ, ଆସେ ।”

ଆରାଧ୍ୟ ଦେବତାଙ୍କୁ ଲଭିବା ନିମନ୍ତେ ପ୍ରାଣର ଉତ୍କଣ୍ଠା ଯେପରି ପ୍ରତୀକ୍ଷା କରି ବସିଛି । ତାର ମଙ୍ଗଳମୟତା ଉପରେ ଆସ୍ଥା ରଖି ଭକ୍ତ ପ୍ରାଣ ବ୍ୟାକୁଳିତ ଓ ଉତ୍କଣ୍ଠିତ ହୋଇଛି ।

ଏଇଠି ସ୍ମରଣ ରଖିବା ଦରକାର ଯେ କେବଳ ଏହି ଦିବ୍ୟାନୁଭୂତିର ଉପଭୋଗ ନିମିତ୍ତ ମାନବ-ଜୀବନ ଏକ ଅପୂର୍ବ ଧାତ୍ରିରେ ସୃଷ୍ଟିତ, ନୋହିଲେ ପଶୁଠାରୁ ତାର କିଛି ହେଲେ ପାର୍ଥକ୍ୟ ନାହିଁ । କାରଣ ଜୀବାତ୍ମା ଓ ପରମାତ୍ମାଙ୍କର ମିଳନ ପର୍ଯ୍ୟାୟ ଯେପରି ଅଭୂତ ତ୍ୟାଗ ଓ ସାଧନା ମଧ୍ୟ ଦେଇ ସୃଷ୍ଟି ହେଉଛି ସେ ଗୁଡ଼ିକର ପ୍ରକୃତ ଓ ପ୍ରଧାନ ସାଧକ ହେଉଛି ମନୁଷ୍ୟ, ଯେହେତୁ ସେ ଲଭିପାରିଛି ଚିତ୍ ଶକ୍ତିର ଉତ୍କର୍ଷତା ଓ ବିଚାରିତ ଜ୍ଞାନର ପ୍ରତିଭା । କିନ୍ତୁ ତାର ପୂର୍ଣ୍ଣ ବିକାଶ ହେବା ଦୁର୍ଲ୍ଲଭ । ସାମାନ୍ୟ ଅଗ୍ନି ସଂଯୋଗରେ କାଷ୍ଠ ଲୁକାୟିତ ଅଗ୍ନିକୁ ତେଜୀୟାନ ଯେପରି କରେ; ସେପରି ଚିତ୍‌ଶକ୍ତିର ବିକାଶୋନ୍ମୁଖୀ ପ୍ରତିଭାକୁ ଦୃଢ଼ ଉଦ୍‌ଯୋଗ ବଶତଃ ଅନ୍ତରର ସାଧୁତା, ନୈଷ୍ଠିକତା ଓ ତ୍ୟାଗ ପ୍ରଭୃତି ପୂତମୟ କର୍ମ ସାଧନା ଦ୍ୱାରା ଚରମ ପରିତୃପ୍ତି ପ୍ରଦାନ କରି ଉପଭୋଗ କରିପାରେ ଭଗବତ୍ ବିଭୂତି ।

କାରଣ ମାନବର ହୃଦସ୍ଥଳ ହେଉଛି ଏକ ପବିତ୍ର ଯଜ୍ଞକୁଣ୍ଡ । ଯହିଁରେ ଦୁର୍ବାର ଭୋଗ ଲିପ୍‌ସା, ମନର ଚଞ୍ଚଳତା, ସ୍ୱାର୍ଥପରତା ଓ ନିଚତା ପ୍ରଭୃତି ଦୂଲକ୍ଷଣ ତଥା ଦୁର୍ବଳତା ସମୂହ ଆହୁତି ଦିଆଯାଇ ଏକ ଦିବ୍ୟ ପ୍ରଫୁଲ୍ଲତା ଉପଭୋଗରେ ସଚ୍ଚିଦାନନ୍ଦ ମୂର୍ତ୍ତି ଦର୍ଶନ କରିଯାଇ ପାରେ ।

ତେଣୁ ଆତ୍ମୋତ୍ସର୍ଗ ହିଁ ଯଜ୍ଞ ଅର୍ଥାତ୍ "ସମସ୍ତ କାମନାର ସ୍ୱାତନ୍ତ୍ର୍ୟ ସଙ୍ଗେ ଏଇ ବିଶ୍ୱ କର୍ମରେ ନିଜ କର୍ମକୁ ବଳିଦେବା ମାନବର ଯଜ୍ଞକର୍ମ ।" କିମ୍ବା "ଧର୍ମରେ ନିଜକୁ ଅବିଚ୍ଛିନ୍ନ ବା ବ୍ୟକ୍ତ କରିବା ହିଁ ଏଇ ବ୍ରହ୍ମ-ପୁରୁଷର ଏକ ବିରାଟ ଯଜ୍ଞ କର୍ମ । × × × × ଏଇ ଯଜ୍ଞ ହିଁ ବ୍ରହ୍ମପୁରୁଷର ଆତ୍ମ ବିସ୍ତାର, ଆତ୍ମବଳି ବା ଆତ୍ମତ୍ୟାଗ ରୂପେ ଦେବ ଓ ଋଷିମାନଙ୍କଠାରେ ପ୍ରତିଭାତ ।"

ସେହିହେତୁ ଋଷି ପ୍ରତିମ ଗୋପବନ୍ଧୁ ମାନବର ଜୀବନ ସଙ୍ଜ୍ଞା ନିରୂପିତ କରି କହିଅଛନ୍ତି—

"ଏ ଜୀବନ ସତ୍ୟ ଶୁଦ୍ଧ ସାର ତତ୍ତ୍ୱ,
ତତ୍ତ୍ୱ ଅନୁବନ୍ଧ ମାନବର ସତ୍ତ୍ୱ ।"

ଏହି ଦର୍ଶନତତ୍ତ୍ୱ ହିଁ କବିତାକୁ ମାଧୁର୍ଯ୍ୟମୟୀ ଓ ରସମୟୀ କରେ । କାରଣ ସୃଷ୍ଟି ରହସ୍ୟ ତଥା ବିଚିତ୍ରତାକୁ ଯେତେ ପରିମାଣରେ କବି ତାର ହୃଦୟ ସ୍ପନ୍ଦନରେ ଫୁଟାଇପାରେ, ତେତେ ଉତ୍କୃଷ୍ଟତର ଭାବେ କବିତା ତାର ଆଦୃତ ହୁଏ ।

ଏହି ଭାବ କବିର ଜନ୍ମଗତ ହୋଇଥିବାରୁ ସାର୍ ଫିଲିପ୍ ସିଡ଼ନୀ କହିଅଛନ୍ତି—Poet is indeed the right philosopher ।" ଯେହେତୁ କବି ଯେଉଁ ଅଦୃଶ୍ୟ ଓ ଅନନ୍ତ ଲୀଳାକୁ ଜ୍ଞାନଚକ୍ଷୁ ଦ୍ୱାରା ଦେଖିପାରେ, ଭାବାବ୍ଧିରେ ମଜ୍ଜମାନ ରହି ଭାଷା ତୁଳିକାରେ ଯେଉଁ ରୂପ ରୂପାୟିତ କରେ, ସେହି ଭିତରେ କବି ଲୁକ୍କାୟିତ କରି ରଖିଥାଏ ଏହି ଦାର୍ଶନିକ ତତ୍ତ୍ୱ, ଯଦ୍ଦ୍ୱାରା କି କବିତା-କଳିକା-ଅନ୍ତର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟରେ ଗନ୍ଧସ୍ନାନ ହୋଇ ପ୍ରାଣକୁ ତୃପ୍ତିର ଅବକାଶ ଦେଇ ନ ଥାଏ ।



# ଗୋପବନ୍ଧୁଙ୍କ ସାହିତ୍ୟରେ ସ୍ୱଦେଶାନୁରାଗ

ଶ୍ରୀ ଉଦୟନାଥ ଦାସ, ବି. ଏ., ବି. ଇଡ୍.

[ ସୁନାମଧନ୍ୟ ଶିକ୍ଷକ ଶ୍ରୀ ଦାସ ମାଟ୍ରିକ ଛାତ୍ର ଥିବାବେଳୁ ସାହିତ୍ୟ ପ୍ରତି ଆକୃଷ୍ଟ । ଗଳ୍ପ, କବିତା ଓ ଶିଶୁସାହିତ୍ୟାଦି ବିଷୟରେ ସେ ଲେଖନୀ ଚାଳନା କରିଛନ୍ତି । ତାଙ୍କର ଅନେକ ଲେଖା 'ସଂସାର', 'ପ୍ରଜାତନ୍ତ୍ର', ଓ ଅନ୍ୟାନ୍ୟ ସ୍କୁଲ ପତ୍ରିକାରେ ପ୍ରକାଶ ପାଇଛି । ଲେଖକଙ୍କର ପ୍ରକାଶିତ ପୁସ୍ତକ ମଧ୍ୟରେ 'ପଲ୍ଲୀବଧୂ' ଓ 'ସାମନ୍ତ ଚନ୍ଦ୍ରଶେଖର', ଉଲ୍ଲେଖ ଯୋଗ୍ୟ । ଆଲୋଚ୍ୟ ପ୍ରବନ୍ଧରେ ସେ ଗୋପବନ୍ଧୁ-ସାହିତ୍ୟରେ ବିଶେଷଭାବେ 'କାରାକବିତା' ଓ 'ବନ୍ଦୀର ଆତ୍ମକଥା'ରେ ସ୍ୱଦେଶାନୁରାଗର ବର୍ଣ୍ଣନା କରିଛନ୍ତି ।—ସଂ ]

ସ୍ୱଦେଶ ପ୍ରେମୀ ଗୋପବନ୍ଧୁ ଭାରତର ମୁକ୍ତି ସଂଗ୍ରାମରେ ଉପଯୁକ୍ତ ସୈନିକ ସୃଷ୍ଟି କରିବା ପାଇଁ ସତ୍ୟବାଦୀର ବକୁଳବନରେ ସତ୍ୟବାଦୀ ବନବିଦ୍ୟାଳୟ ସ୍ଥାପନ କରିବା ପରେ ମହାତ୍ମାଗାନ୍ଧୀଙ୍କ ସଂସ୍ପର୍ଶରେ ଆସି ଅସହଯୋଗ ଆନ୍ଦୋଳନରେ ଝାସଦେବାରୁ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା । ସେତେବେଳେ ହଜାରିବାଗ ଜେଲରେ ଦୁଇବର୍ଷ ରହଣି କାଳରେ ତାଙ୍କର ସ୍ୱଦେଶ ଚିନ୍ତା ଚରମ ସୀମା ସ୍ପର୍ଶ କରିଥିଲା ଏବଂ ତାହା 'ବନ୍ଦୀର ଆତ୍ମକଥା' ଓ 'କାରାକବିତା, ମାଧ୍ୟମରେ ପ୍ରକାଶ ପାଇଥିଲା । ତାଙ୍କର ସାମ୍ବାଦିକ ଜୀବନରେ ମଧ୍ୟ 'ସତ୍ୟବାଦୀ' ଓ 'ସମାଜ' ପତ୍ରିକା ମାଧ୍ୟମରେ ସେ ସ୍ୱଦେଶର ନାନା ଦୁଃଖ, କ୍ଲେଶ, ଅଭାବ, ଅସୁବିଧାର ବାସ୍ତବ ନିଖୁଣ ଚିତ୍ର ପରିବେଷଣ କରିଥିଲେ । ତାଙ୍କ 'ଆକାଂକ୍ଷା' ଶୀର୍ଷକ ପ୍ରବନ୍ଧର କିୟଦଂଶ ପାଠକଲେ ତାଙ୍କର ସ୍ୱଦେଶ ପ୍ରୀତି କିପରି ସାର୍ବଜନୀନ ଓ ହୃଦୟଗ୍ରାହୀ, ତାହା ସହଜରେ ଅନୁମିତ ହୁଏ । ସେଥିରେ ସେ ଲେଖିଛନ୍ତି "ଉତ୍କଳବାସୀ ତଥା

ଭାରତବାସୀ ହିଁ ମାନବ ସମାଜର ଅଂଶବିଶେଷ । ସେମାନେ ମାନବଜାତିର ସମସ୍ତ ପ୍ରକାର ଉପାର୍ଜନ ଓ ଅଭିବୃଦ୍ଧିର ଅଧିକାରୀ ଏବଂ ନିଜର ସଂପଦ ଓ ସହଯୋଗିତାଦ୍ୱାରା ମାନବସମାଜର ଉନ୍ନତି ବିଧାନ ନିମନ୍ତେ ଦାୟୀ । ତେଣୁ ଜନ୍ମଭୂମିର ଉନ୍ନତିରେ ଯଥା ସମ୍ଭବ ଆତ୍ମ-ନିୟୋଗ କରିପାରିଲେ ଆମ୍ଭେମାନେ ବିଶ୍ୱସେବା କଲୁ ବୋଲି ମନେ କରି ଆଶ୍ୱସ୍ତ ହେବୁ । ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧୀ ନୁହେଁ, ବରଂ ବିଶ୍ୱପ୍ରୀତି ବିହୀନ ପ୍ରାଣରେ ଜାତୀୟତା ଓ ସ୍ୱଦେଶବାତ୍ସଲ୍ୟ ଅସମ୍ଭବ ।" ତାଙ୍କର ପ୍ରତ୍ୟେକ ଗଦ୍ୟ ଲେଖାରେ ଏଭଳି ଜାତୀୟତା ଆଦର୍ଶ ପ୍ରତିଫଳିତ ।

ବନ୍ୟା ଦୁଃଖ-ଦାରିଦ୍ର୍ୟ ପୀଡ଼ିତ ସାରା ଉତ୍କଳ ପ୍ରଦେଶ ତାଙ୍କ ସାଧନାର କ୍ଷେତ୍ର ଥିଲା । କର୍ମବହୁଳ ଜୀବନରେ କବି ହେବାର ଯେଉଁ ବାସନା ଥିଲା, ତାହା ଦେଶାନୁରାଗ ବଳରେ ବିକଶିତ ହୋଇଥିଲା । କର୍ମମୟ ଜୀବନର ଜୀବନ୍ତ ପ୍ରତିଚ୍ଛବି ତାଙ୍କ ପରବର୍ତ୍ତୀ ସମୟର କବିତା ପୁସ୍ତକମାନଙ୍କରେ ରୂପାୟିତ ହୋଇଅଛି । ଯେ ତାଙ୍କ ପ୍ରାଣର ପ୍ରଗାଢ଼ ମମତା, ପ୍ରୀତି ବିଦଗ୍ଧ ମନୋଭାବ ଦେଶାନୁରାଗ ଗୀତିରେ "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"ର ପ୍ରାଣ ପ୍ରତିଷ୍ଠା କରିଅଛନ୍ତି ।

ବନ୍ଦୀଜୀବନରେ କବି ଗୋପବନ୍ଧୁ ଉତ୍କଳ ସାରସ୍ୱତ ମନ୍ଦିରରେ ତିନୋଟି ଅପରୂପ ନୈବେଦ୍ୟ ବାଢ଼ି ଦେଇଛନ୍ତି, ତାହା ହେଉଛି— 'କାରାକବିତା', 'ବନ୍ଦୀର ଆତ୍ମକଥା', ଓ ଧର୍ମପଦ' । ପ୍ରଥମେ କାରା କବିତାରେ ତାଙ୍କର ସ୍ୱଦେଶାନୁରାଗ ଦେଖାଯାଉ—

**କାରାକବିତା**—ପୁରୀ ଜଗନ୍ନାଥଙ୍କଠାରେ ତାଙ୍କର ଅଚଳା-ଭକ୍ତି ଥିଲା । 'କାରାକବିତା'ର ପ୍ରଥମ କବିତା 'ନିତ୍ୟଧାମ ନୀଳାଚଳ'ରେ ସେ ଲେଖିଛନ୍ତି—

"ନୀଳଚକ୍ର ତଳେ କେ କରିବ ବାସ
କେ ଦେଖିବ ନୀଳାଚଳ ନିତ୍ୟ ରାସ ।"

ଏଥିରୁ ତାଙ୍କର ସ୍ୱଦେଶୀ ମନୋଭାବ ସ୍ପଷ୍ଟ ଜଣାପଡ଼େ । କାରାକବିତାସ୍ଥ "ବନ୍ଦୀର ସ୍ୱଦେଶ ଚିନ୍ତା" କବିତାଟି ହେଉଛି ଓଡ଼ିଆ ସାହିତ୍ୟକୁ ତାଙ୍କର ଅନବଦ୍ୟ ଅବଦାନ । କାରାଦୁର୍ଗର ନିଗଡ଼ ପ୍ରାଚୀର

ମଧ୍ୟରେ ସେ ଥିଲେ ରାଜବନ୍ଦୀ । ମନ୍ଦମଧୁର ମଳୟ ତାଙ୍କର ଦୂତ, ମଳୟ ମରୁତର ମୃଦୁ ପରଶରେ ତାଙ୍କ ହୃଦୟରେ ଆସିଛି ଏକ ଅପୂର୍ବ ଶିହରଣ । ପରାଧୀନ-ଜର୍ଜରିତ-ପ୍ରାଣ ତାଙ୍କର ଚେଇଁ ଉଠିଛି ପ୍ରିୟଜନ-ମାନଙ୍କର ସନ୍ଦେଶ ପାଇବା ପାଇଁ । ତାଙ୍କର ଜନ୍ମଭୂମି ଉତ୍କଳ ଭୂମିର ଆକର୍ଷଣ ଓ ସ୍ମରଣରେ ତାଙ୍କର କବିମାନସ ଉଦବେଗ୍ନ ହୋଇଉଠିଛି, ସେଥିରେ ମାନବ ହୃଦୟସ୍ପନ୍ଦନ ତଥା ଅପୂର୍ବ ଚିତ୍ତବିନୋଦନ ସହିତ ବହିଃ-ପ୍ରକୃତିର ଅପୂର୍ବ ଆଲେଖ୍ୟ ବର୍ଣ୍ଣିତ । ତାହାସହିତ ଉତ୍କଳର ଅତୀତ ବିଭବ, ସ୍ୱର୍ଣ୍ଣ ଯୁଗର ଐତିହାସିକ ଭଗ୍ନ କୀର୍ତ୍ତିରାଜି ତଥା କରୁଣ ଉଦାସିତ ଚିତ୍ର ପାଠକମାନଙ୍କ ମନରେ ଏକ ସ୍ଥାୟୀ ଭାବ ସଞ୍ଚାର କରିଥାଏ ।

କଳ୍ପନାର କଳ୍ପଲୋକରେ କବି ହୃଦୟ ଝଲସି ଉଠିଛି, ବନ୍ଦୀ ଜୀବନରେ ତାରୁଣ୍ୟର କମନୀୟ ଚିତ୍ର ଭାର୍ଗବୀ-ତୀରରେ ଭାସିଉଠିଛି । କବିଙ୍କ ଭାଷାରେ—

"ମନେ ଏବେ ଅସେ ତରୁଣ ବୟସେ
ବୁଲିଥିଲେ ଯେବେ ଭାର୍ଗବୀ ତୀରେ,
ପୁନାଙ୍ଗ ବକୁଳ ସୌରଭ ସଙ୍କୁଳେ
ସୁବାସ ଶୀତଳ ସଞ୍ଜ ସମୀରେ ।"

ଅତୀତ ଜୀବନର କେତେ ସୁଖ-ସ୍ମୃତି ତାଙ୍କ ଅନ୍ତରରେ ଜାଗି ଉଠିଛି—ଆଖିର ପଲକରେ ସେହି ଗ୍ରାମ୍ୟ ଚିତ୍ରଗୁଡ଼ିକ ଝଲମଲ ହୋଇ ଉଠିଛି—ଗୋଧୂଳି-ଲଗ୍ନର ସାୟଂକାଳୀନ ପଲ୍ଲୀଚିତ୍ର ତାଙ୍କୁ ସ୍ୱପ୍ନିଳ କରାଇଛି । ଗ୍ରାମସୀମନ୍ତିନୀଙ୍କ ପାଣିନେବା, ଗାଈଆଳ ପିଲାର ବେଣୁବାଦନ, ହାଟ ବାହୁଡ଼ା ବେପାରୀଙ୍କ ଭଞ୍ଜ ଚଉପଦୀ ଗୀତ, ଯାଗେଶ୍ୱରଙ୍କଠାରେ କୁମାରୀଙ୍କ ଦୀପଦାନ, ହଳଫେରନ୍ତା ଭାଇର ହଳିଆଗୀତ, ଭାଇ ସାଙ୍ଗରେ ଭଉଣୀର ଶାଶୁଘର ଗମନ, ପିଲା କାଖେଇ ଚାଲି ନ ପାରିବାରୁ ଯୁବାଦଳର ପରିହାସ, ପୁନାଗ ଫଳିତ ଶାଖାରେ ବାଦୁଡ଼ି ଝୁଲିବା ପ୍ରଭୃତି ପଲ୍ଲୀ-ଦୃଶ୍ୟର ଜୀବନ୍ତ ସରସ ଚିତ୍ର ଦେଖିଲେ ମନରେ ଅଫୁରନ୍ତ ଭାବ ସୃଷ୍ଟି ହୁଏ ।

ବିହାର ହଜାରୀବାଗ ଜେଲରେ ଥାଇ ଦକ୍ଷିଣାୟନ ପରିମଳମୟ ମଳୟାନିଳକୁ କବି ଆବେଗମୟ ହୃଦୟରେ ତାଙ୍କ ଜନ୍ମଭୂମିର

ସମାଗ୍ରର ପଗ୍ନବଛନ୍ତି । ତାଙ୍କର ପ୍ରିୟସ୍ଥଳୀ ସତ୍ୟବାଦୀ ପୂର୍ବରୁ ବସନ୍ତ ପବନ ଉତ୍କଳର ଉପାନ୍ତ ଅଞ୍ଚଳ ମଞ୍ଜୁଷା-ମୁକୁଟ ମହେନ୍ଦ୍ରଗିରିର ବନ-କୁସୁମର ସୁବାସ ନେଇ ଆସିଥିବ । ବନ୍ଦୀ କବି ଜୀବନରେ ଏହି ସ୍ୱଦେଶାନୁରାଗର ଉପଭୋଗ ଥିଲା ଏକ ବିରାଟ ସ୍ୱପ୍ନ । ପ୍ରାକୃତିକ ତଥା ରାଜନୈତିକ ଓଡ଼ିଶାର ସୀମାନ୍ତ ପ୍ରଦେଶ ମହେନ୍ଦ୍ରଗିରି । ତାପରେ କବିଙ୍କ ଦୃଷ୍ଟି ଆକର୍ଷଣ କରିଛି ରସାଳତାଳନାରିକେଳ ଶୋଭିତ ଗନ୍ଧଭରା ଗଞ୍ଜାମର ସୁରମ୍ୟ ଉଦ୍ୟାନଖଣ୍ଡ । ※ କବିଙ୍କ ଭାଷାରେ—

"କରିଥିବ ଭେଟ ମଞ୍ଜୁଷା ମୁକୁଟ
ମହେନ୍ଦ୍ର ସଇଲ ସୁବାସ ଫୁଲ,
ତବ ସମାଗମେ ନାଚିଥିବ ପ୍ରେମେ
ଦୋହଲାଇ ତରୁ ଭୁଜ ସଂକୁଳ ।
ରସନା ନୟନ ନାସା ରସାୟନ
ସ୍ୱାଦ ଶୋଭା ଗନ୍ଧଭରା ଆଧାର,
ଗଞ୍ଜାମ ମଣ୍ଡନ ସୁରମ୍ୟ ଉଦ୍ୟାନ
ଦେଇଥିବ କେତେ କି ଉପହାର ।
ଅମ୍ବ, ରମ୍ଭା, ବେଲ ଲେମ୍ବୁ ନାରିକେଳ
ପଣସ ସପୁରୀ ଖଜୁରୀ ତାଳ,
ବଧିରକ୍ଷା ପାଇଁ ଆସିଥିବ ଛୁଇଁ
'ଉଦ୍ୟାନ'ର ନାନା ଫଳ ରସାଳ ।

ଉଦ୍ୟାନ ଖଣ୍ଡ ପରେ କୃଶୋଦରୀ "ଋଷିକୁଲ୍ୟା" ନଦୀ କବିଙ୍କର ଦୃଷ୍ଟି ଆକର୍ଷଣ କରିଛି—ସେହି ଅଞ୍ଚଳ କବିସୂର୍ଯ୍ୟଙ୍କର ଅଧ୍ୟୁଷିତ ସ୍ଥାନ ହୋଇଥିବାରୁ ମଳୟ ପବନ କବିସୂର୍ଯ୍ୟ ବଳଦେବ ରଥଙ୍କର 'ଚମ୍ପୂ' ଶୁଣି ଆସିଥିବ । ତା'ପରେ ଶୋକପାଶୋରା ଅମରାବତୀ-ଭୁବନ ଚିଲିକା ତାଙ୍କ ମାନସପଟରେ ନାଚି ଉଠିଅଛି । କବି ଲେଖିଛନ୍ତି—

"ଆଲିଙ୍ଗନ ଆଶେ ତବ ପଥ ପାଶେ
ଚିଲିକା ଆବେଗେ ଥିବ ଅନାଇଁ
ମୁକ୍ତ ନୀଳକେଶୀ ଶ୍ୟାମ ଶୋଭା ବଳି
ଗିରି ଶିରସ୍ଥିତ ବକ୍ଷ ମେଲାଇ ।"

※ ଉଦ୍ୟାନ ଖଣ୍ଡ ବର୍ତ୍ତମାନ ଆନ୍ଧ୍ର ପ୍ରଦେଶର ଅନ୍ତର୍ଗତ ।

କବି ଚିଲିକାଠାରେ ନାୟିକା ଭାବରେ ବ୍ୟକ୍ତି ବିଶେଷର ଆରୋପନା କରି ବସନ୍ତ ସମୀରର ଚଞ୍ଚଳ ହିଲ୍ଲୋଳରେ ତାର ସ୍ୱଚ୍ଛ ଗଣ୍ଡ-ସ୍ଥଳ କମ୍ପି ଯାଇଥିବ ବୋଲି ବର୍ଣ୍ଣନା କରିଛନ୍ତି । ତାପରେ ବସନ୍ତ ପବନ ସୋଲରି, ଭାଲେରି ପର୍ବତର ମଥା ସ୍ପର୍ଶ କରି ପୁଣ୍ୟ ନୀଳାଚଳ-ଧାମରେ ପ୍ରବେଶ କରିଅଛି । କବିଙ୍କର ଶ୍ରେଷ୍ଠ ଲୀଳା ନିକେତନ ହିନ୍ଦୁ ମଉଡ଼ମଣି ଜଗନ୍ନାଥଙ୍କୁ ଦର୍ଶନ କରି ପ୍ରେମଭକ୍ତି ଭାବରେ ଦେଉଳର ନେତ ଉଡ଼ାଇ ଦେଇଥିବ । ସେଠାରେ ସେବକ ମହାନ୍ତ ବସନ୍ତ ପବନକୁ ସ୍ୱରାଜ୍ୟ କଥା ପଚାରିଛନ୍ତି କି ନାହିଁ କବିଙ୍କର ଜିଜ୍ଞାସୁ ମନୋଭାବ ଏହା ପ୍ରଶ୍ନ କରିଅଛି । ଜଗନ୍ନାଥଙ୍କ ଦର୍ଶନ ସାରି କବିଙ୍କର ପ୍ରିୟସ୍ଥଳୀ ସତ୍ୟବାଦୀ ତରୁବ୍ରତତି ବସନ୍ତ ପବନକୁ ଅଟକାଇ ଥିବେ ବୋଲି କବି ଲେଖିଅଛନ୍ତି । ବକୁଳ ବନର କୋକିଳ, ବସନ୍ତ ଦୂତଙ୍କୁ ସ୍ୱାଗତ ଗୀତି ଶୁଣାଇଥିବ । କବିଙ୍କ ଭାଷାରେ—

× × ×

"ଅଟକାଇ ଥିବେ ପଥରେ ଟିକିଏ
ସତ୍ୟବାଦୀକୁଞ୍ଜେ ତରୁ ବ୍ରତତି
ସୁମଧୁର ତାନେ ତବ ଆବାହନେ
ଗାଇଥିବ ପିକ ସ୍ୱାଗତ ଗୀତି ।"

କବି ତାଙ୍କର ପ୍ରିୟସ୍ଥଳୀ, ପ୍ରିୟ ଆଶ୍ରମ ସତ୍ୟବାଦୀକୁ ଦେବଦତ୍ତ ଧାମ ବୋଲି ବର୍ଣ୍ଣନା କରିଅଛନ୍ତି । ନାଗେଶ୍ୱର, କୁରିଅନା ପୁଷ୍ପମାନ କବିଙ୍କ ପାଇଁ ମୃଦୁ ମଧୁମୟ ଗନ୍ଧ ସମ୍ଭାର ପଠାଇଥିବେ ବୋଲି କବି ଆଶା ପ୍ରକାଶ କରିଅଛନ୍ତି । ତାପରେ ମଳୁଆଳ ବସନ୍ତ ମରୁତ ଉତ୍ତର ଦିଗରେ ଆସି ଲିଙ୍ଗରାଜଦେବଙ୍କ ଦେଉଳ ଶିଖର ସ୍ପର୍ଶ କରିଅଛି । ସର୍ବଗ୍ରାସୀ କାଳ ପ୍ରାଚୀନ ଉତ୍କଳର କଳା-କୌଶଳ ଗ୍ରାସ କରିଦେଇ ଥିବାରୁ ଭଗ୍ନକୀର୍ତ୍ତିମାନଙ୍କୁ ଦେଖି ପବନ ପ୍ରାଣରେ ଗଭୀର ତ୍ରାସ ପାଇଥିବ । ଭୁବନେଶ୍ୱରର ବିଧ୍ୱସ୍ତ ଐଶ୍ୱର୍ଯ୍ୟ ନୃପତି ନବରର ମୃତ୍ତିକା ସ୍ତୂପ ଶୈବାଳ ଆବୃତ ଭଗ୍ନ ମନ୍ଦିରର ପଥର ଗଦା କବିଙ୍କ ମନରେ ଭାବାନ୍ତର ଆଣିଛି । ସ୍ୱଦେଶର ବିପର୍ଯ୍ୟୟ ଦେଖି କବିଙ୍କ ମନରେ ଅତିଶୟ ଦୁଃଖ ମଧ୍ୟ ଦେଖାଦେଇଛି ।

ଶମ୍ଭୁ ସୁକଲ୍ୟାଣ ନେଇ ମଳୟସୂତ ଶ୍ରୀ ଖାରବେଳ କଳିଙ୍ଗରାଜ ବିମଣ୍ଡିତ ଖଣ୍ଡଗିରିଠାରେ ପଦାଙ୍କଥିବ । ଅତୀତ କଳିଙ୍ଗର ଗୌରବ ତଥା ଉତ୍କୋଜ୍ଜ୍ୱଳସ୍ମୃତି, ଖଣ୍ଡଗିରିଠାରେ ରହିଅଛି । କବି-ଭାଷାରେ—

"ମହାକାଳ ମାରେ ବୁଦ୍‌ବୁଦ ପରାଏ
ଯାଇଅଛି ମିଳି କଳିଙ୍ଗ ଭୂତି,
କଳିଙ୍ଗ ସନ୍ତାନ ଭୁଲିଅଛି ଏବେ
କଳିଙ୍ଗର ନାମ ଗୌରବ ସ୍ମୃତି ।"

ରାଣୀହଂସପୁର, ହାତୀଗୁମ୍ଫା ପ୍ରଭୃତି ଜୀର୍ଣ୍ଣ ସ୍ମୃତି ଅତୀତ କଳିଙ୍ଗର ଗୌରବ ବିଭୂତିର ମୂକସାକ୍ଷୀ ଓ ପ୍ରତ୍ୟକ୍ଷ ପ୍ରମାଣ । ପୂର୍ବସ୍ମୃତି ଓ ବର୍ତ୍ତମାନ ଓଡ଼ିଶାକୁ ତୁଳନା କରି କବିଙ୍କ ମନରେ ବିଷାଦ ଆସିଛି । ସ୍ୱଦେଶ ସନ୍ଦେଶ ପାଇବାକୁ କବି ମନ ବ୍ୟାକୁଳ ତଥା ଆବେଗମୟ ହୋଇ ଉଠିଛି । ଖଣ୍ଡଗିରି ପରେ କଟକ ସହର । କବି ଲେଖିଛନ୍ତି—

"ଖଣ୍ଡଗିରି ପରେ ଉନ୍‌ମୁକ୍ତ ଅମ୍ବରେ
କରିଥିବ ନବ ଗତି ରଚନା
ବାଟରେ ଅଟକ କଲି କି କଟକ
ମହାନଦୀ ନୀଳ-ନୀରବସନା ।"

ମହାନଦୀ ବକ୍ଷ ବସନ୍ତ ହିଲ୍ଲୋଳରେ ନିଶ୍ଚୟ କମ୍ପି ଉଠିଥିବ । କିନ୍ତୁ କଟକସ୍ଥ ଗଙ୍ଗବଂଶର ଅତୀତ ରାଜଧାନୀ ବାରବାଟୀ ଦୁର୍ଗର ବର୍ତ୍ତମାନ ଅବସ୍ଥାକୁ ଦେଖି ତା ମନରେ ବେଦନା ଆସିଥିବ ବୋଲି ବର୍ଣ୍ଣନା କରି କବି ଗାଇଛନ୍ତି—

"ଦେଖିଥିବ ତହିଁ ବାରବାଟୀ ଦଶା
କି ବେଦନା ଥିବ ମରମେ ବାଧି
ଉତ୍କଳର ବୀର ବିହାର ପ୍ରାଙ୍ଗଣ,
ଏବେ ଯେ ଉତ୍କଳ ସୌର୍ଯ୍ୟ ସମାଧି ।

ଜୀର୍ଣ୍ଣଶୀର୍ଣ୍ଣ ବାରବାଟୀର ନବତଳ ହର୍ମ୍ୟ, ଗଜପତି ମୁକୁନ୍ଦ ଦେବଙ୍କ ଯୁଦ୍ଧଯାତ୍ରା ଏକତ୍ରିତ ହୋଇ ତାଙ୍କର ହୃଦୟ କେଦାରରେ ପ୍ରଗାଢ଼ ସ୍ୱଦେଶାନୁରାଗର ବୀଜ ବପନ କରିଅଛି । ଅତୀତ ଉତ୍କଳର, ଶୌର୍ଯ୍ୟ, ବୀର୍ଯ୍ୟ, ସମ୍ପଦ, ବିଜୟଧ୍ୱଜା, ବୀରବିକ୍ରମୀ ପାଇକ, ଧନୁର୍ଦ୍ଧର

ସୈନିକମାନଙ୍କର କଥା ସ୍ମରଣ କରି କବିଙ୍କ ମନ ଦୁଃଖାଭୂତ ହୋଇ-ଯାଇଛି । ତାଙ୍କ ନୟନ ଲୋତକ ପ୍ଲୁତ ହୋଇ ଉଠିଛି ।

କବି ଗଡ଼ଜାତମାନଙ୍କୁ ଅନ୍ଧାରି ମୁଲକ ବୋଲି ବର୍ଣ୍ଣନା କରି-ଅଛନ୍ତି । ରାଜାମାନଙ୍କ ଅଧୀନରେ ପ୍ରଜାମାନଙ୍କର କଥା କହିବାର ଅଧିକାର ନାହିଁ । ଗଡ଼ଜାତର ବନାନୀ, କାନନ ମଞ୍ଜୁଳ ନାନା ଫୁଲ ଫଳ, ବିହଙ୍ଗ କାକଳୀ-ସେବିତ ବନପଥ, ପୁଷ୍କରିଣୀର ଢଳ ଢଳ ଶୁଭ୍ର ଶତଦଳ, ଅସ୍ଫୁଟ ଅଳି ଗୁଞ୍ଜନ ତଟିନୀତୀରସ୍ଥ କୃଷ୍ଣସାରର ସ୍ୱଚ୍ଛନ୍ଦ ବିହାର, ମାଳତୀ-ମାଧବୀ-ସେବିତ ବିଶାଳ ଶାଳତରୁ, ବୃକ୍ଷସ୍ଥ ସ୍ନିଗ୍ଧ ଛାୟା, ସ୍ନିଗ୍ଧ-ଶ୍ୟାମଳା-ଶସ୍ୟ ଆଭରଣା କେଦାର ପଙ୍କ୍ତି, ସ୍ୱର୍ଗସୁନ୍ଦର ପ୍ରକୃତିର କମଳ-ବିଳାସ-ଭୂମି ଓ ଆଦିବାସୀ ସାନ୍ତାଳ-ସୁନ୍ଦରୀର ସଙ୍ଗୀତ ଲହରୀ କବିଙ୍କୁ ଗଡ଼ଜାତର ବିଶ୍ୱବିମୋହନଶିରୀ ସନ୍ଦର୍ଶନରେ ଉନ୍ମାଦ କରିଅଛି । ବସନ୍ତ ପବନ ଏହିପରି ଗଡ଼ଜାତର ବିଷମ ବନ୍ଧୁର ପଥ ଅତିକ୍ରମ କଲାପରେ ଗିରିନତମ୍ବିନୀ ତରଙ୍ଗ-ହାସିନୀ ପୁଣ୍ୟତୋୟା ମହାନଦୀର ପଶ୍ଚିମ ମୁଖରେ ଥିବା ହୀରପ୍ରସୂ ହୀରାକୁଦଠାରେ ପ୍ରବେଶ କରି ଧୀବର କୁମାରୀର ବିସ୍ମୃତ ଗାନ ଶୁଣିଅଛି ।

ନିଭୃତ ଶ୍ୟାମ ଶୋଭାବନ ପ୍ରକୃତିର ବିଜନମାଧୁରୀ ଉପଭୋଗ କଲାପରେ ବସନ୍ତ ପବନ କବିଙ୍କର ପ୍ରିୟସ୍ଥଳୀ ସମ୍ବଲପୁରରେ ଯାଇ ପ୍ରବେଶ କରିଅଛି । ସମ୍ବଲପୁର ତାହା ଆଗରୁ ମଧ୍ୟପ୍ରଦେଶ ସହିତ ସାମିଲ ଥିଲି । ଲର୍ଡ କର୍ଜନଙ୍କ ସମୟରେ ସେଠାରେ ଓଡ଼ିଆମାନେ ଭାଷା ଆନ୍ଦୋଳନ କରି, ନିଜ ସ୍ୱଦେଶର ଟେକ, ମାତୃଭାଷାର ମହତ୍ତ୍ୱ ଉପଲବ୍ଧି କରି, ତାକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେଇଥିବାରୁ, କବି, ସମ୍ବଲପୁର ଅଧିବାସୀମାନଙ୍କୁ ଧନ୍ୟବାଦ ଜ୍ଞାପନ କରିଛନ୍ତି ।

"ଅଟ ପ୍ରିୟ ମୋର      ସେ ସମ୍ବଲପୁର<br>
ଅଛନ୍ତି କି ତହିଁ ଭଲେ ସକଳ<br>
ନିଜ ଭାଷା ରକ୍ଷା      ଧରି ସେ ଯେ କକ୍ଷା,<br>
ଗାଇବ ସେ ତବ ଯଶ ଉଜ୍ଜ୍ୱଳ ।"

ସ୍ୱଦେଶ-ପ୍ରୀତି ସମ୍ବଲପୁରବାସୀଙ୍କର ବିଶେଷ ଭାବରେ ରହିଛି ବୋଲି କବି ଉଚ୍ଛ୍ୱସିତ କଣ୍ଠରେ ପ୍ରଶଂସା କରିଅଛନ୍ତି । ସେମାନେ ସ୍ୱଦେଶୀ ବସନଭୂଷଣ ଦ୍ୱାରା ଦେହର ଅଙ୍ଗ ସୌଷ୍ଠବ କରନ୍ତି । ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କର ଦାନ ଅଧିକ ଭାବରେ ଦୃଢ ହେବ ବୋଲି କବି ଆଶା ପ୍ରକାଶ କରିଅଛନ୍ତି ।

ମହାନଦୀ ଉତ୍କଳର ଗଙ୍ଗା ବୋଲି ଆମ ପୁରାଣମାନଙ୍କରେ ବର୍ଣ୍ଣିତ ରହିଅଛି । "କଳୌ ଚିତ୍ରୋତ୍ପଳା ଗଙ୍ଗା" ଏଣୁ କବି ଗାଇଛନ୍ତି—
"ଉତ୍କଳ-ଜ ହ୍ନବୀ ଗୁରୁ ମହାନଦୀ ପୁଣ୍ୟ ଅମ୍ବୁକଣା ଆଣ ମୋ ଦ୍ୱାରେ ।"

କବି ନିଜକୁ ରାଜବନ୍ଦୀ ବୋଲି ଘୃଣା-ନୟନରେ ନ ଦେଖିବା ପାଇଁ ବସନ୍ତ ପବନକୁ ନିବେଦନ କରିଅଛନ୍ତି । ଉତ୍କଳର ପ୍ରତ୍ୟେକ ଜନପଦ, ମନ୍ଦିର, ସମୁଦ୍ର, ନଦୀ, ପର୍ବତ, ହ୍ରଦ, ତୀର୍ଥସ୍ଥାନ, କାନନ, କନ୍ଦର, ଏପରିକି 'ସ୍ୱଦେଶ'ର ଜନ୍ମମାଟି, ପଥର ପ୍ରତ୍ୟେକ ରେଣୁ କବିଙ୍କ ପକ୍ଷରେ ଅତି ପବିତ୍ର ଓ ଅମୃତମୟ । ପ୍ରକୃତି ଅନନ୍ତ । ଅପୂର୍ବ ତାହାର ଶୋଭା ସମ୍ଭାର । ଦେଶପ୍ରେମୀ ପକ୍ଷରେ ମାତୃଭୂମିର ଗଗନ, ପବନ, ଚନ୍ଦ୍ରମା, ତପନ, ଜଳ, ସ୍ଥଳ, ଫୁଲ, ଫଳ ସବୁକିଛି ଅତି ଆଦରର ବସ୍ତୁ । ତେଣୁ ମଳୟାନିଳର ସୁଗନ୍ଧ ଶୀତଳ ପ୍ରବାହରେ କବିଙ୍କର କାରାବାସ ଜୀବନର ଦଗ୍‌ଧପ୍ରାଣ ପ୍ରଶମିତ ହୋଇଅଛି । କାରଣ ତାଙ୍କ ସ୍ୱଦେଶ ଉପର ଦେଇ ତାହା ପ୍ରବାହିତ ହୋଇଆସିଅଛି । ତେଣୁ କବି ଶେଷରେ ଗାଇଛନ୍ତି—

ଆସିଅଛ ଭ୍ରମି କେତେ ପୁଣ୍ୟ ଧାମେ
ଲଗାଇ ଦିଅ ମୋ ଶିରେ ପ୍ରସାଦ
ସେ ପୁଣ୍ୟ ପରଶେ ଘୁଞ୍ଚୁ ଅବସାନ
ଅପସରୁ ହୃଦୁଁ ମୋହ ପ୍ରମାଦ ।"[୨]

କବିଙ୍କ ଉପରେ ତାଙ୍କର ପୂର୍ବବର୍ତ୍ତୀ ମହାକବି କାଳିଦାସ କବିବର ରାଧାନାଥ ଓ ସ୍ୱଭାବକବି ମେହେରଙ୍କର କ୍ଷୀଣ ଛାୟାପାତ ହୋଇଛି ବୋଲି ମନେହୁଏ । ରାଜକବି କାଳିଦାସ ତାଙ୍କ ମେଘଦୂତ କାବ୍ୟରେ ମେଘକୁ ଦୂତ ମନେକରି ବିରହୋତ୍କଣ୍ଠିତ ଯକ୍ଷର ଶୁଭ ସମ୍ବାଦ ଦେଇ ତାର ପ୍ରାଣରେ ଆଶାର ସଞ୍ଚାର କରାଇଛନ୍ତି । ତାହା

ଜୀବନ ଓ ପ୍ରକୃତି ଉପଯୋଗରେ ଏକ ଜୀବନ୍ତ ଆଲେଖ୍ୟ । କିନ୍ତୁ ରାଜବନ୍ଦୀ ଗୋପବନ୍ଧୁଙ୍କ ଜୀବନ—ପ୍ରକୃତି ଭିନ୍ନ ଥିବାରୁ ସେ ଉଦ୍‌ବେଗ ମାନସରେ ମଧୁର ମଳୟକୁ ଦୂତ କରି ସ୍ୱଦେଶ ତଥା ପ୍ରିୟଜନଙ୍କ ସନ୍ଦେଶ ଆଣିଛ କି ନାହିଁ ବୋଲି ପଚାରୁଅଛନ୍ତି । କରୁଣରସାଶ୍ରିତ କାବ୍ୟ ମାଧ୍ୟମରେ କବି ତାଙ୍କର ଦୁଃଖ ଅବସାଦ ସହିତ ଉତ୍କଳର ଅତୀତ ଗୌରବ ଓ ଐତିହ୍ୟକୁ ମନେ ପକାଇ ସାତ୍ତ୍ୱିକ ଭାବ ଓ କରୁଣ ରସରେ ନିମଜ୍ଜିତ ହୋଇଛନ୍ତି—

'ଚିଲିକା' ବର୍ଣ୍ଣନାରେ ରାଧାନାଥ ପୁରାତନ ଖଣ୍ଡିତ ସାମନ୍ତବାଦୀ କଥାବସ୍ତୁକୁ ଛୁଇଁ ନାହାନ୍ତି ସ୍ୱଦେଶର ନଦୀ, ପର୍ବତ, ହ୍ରଦ, ତୀର୍ଥସ୍ଥାନର ଯେପରି ବର୍ଣ୍ଣନା କରିଛନ୍ତି, ଗୋପବନ୍ଧୁ ସେହିପରି ତାଙ୍କ ମାତୃଭୂମିର ବିଭିନ୍ନ ଜାଗା ବର୍ଣ୍ଣନା କରି ଲୋକଙ୍କର ସୁଖ ଦୁଃଖ ତଥା ସ୍ୱଦେଶାନୁରାଗରେ ସମ୍ବେଦନଶୀଳ ହୋଇ ପଡ଼ିଛନ୍ତି ।

ସ୍ୱଭାବ କବି ମେହେରଙ୍କ 'ଅର୍ଘ-ଥାଳି'ର 'ମଳୟ ଆବାହନ' କବିତାର ସୁସ୍ପଷ୍ଟ ଛାୟାପାତ କବିଙ୍କ ଲେଖନୀକୁ ଅଧିକ ମୁଖରିତ କରିଛି ବୋଲି ମନେ ହୁଏ । 'ମଳୟ ଆବାହନ' କବିତାର ତିନୋଟି ଉଦାହରଣ ଦେଇ ଏହି ଉକ୍ତିର ବିଶ୍ଳେଷଣ କରାଯାଉ –

"ଧୀରେ ଧୀରେ ଆସ ମଳୟ ପବନ
ଧୀରେ ଧୀରେ ଆସ ବହି
ପୁଲକିତ କର ଉତ୍କଳବାସୀଙ୍କି
ଶୁଭ ସମାଚାର କହି ।"

× × ×

"ଋଷିକୁଲ୍ୟା ଜଳେ ପଯୂର ପଖାଳି
ମହେନ୍ଦ୍ର ଆସନେ ବସ,
ଚିତ୍ରୋତ୍ପଳା ଜଳେ ସ୍ନାନ କରି ପାନ
କର ସ୍ୱର୍ଣ୍ଣରେଖା ରସ ।

+ + +

ମହୋଦଧି ଜଳେ ତର୍ପଣ କରିବ
ବିହରିବ ବନେ ବନେ
ନୃସିଂହ ନାଥର ପ୍ରପାତ ଲଙ୍ଘନ
ହୁଅଁ ମୁଗ୍ଧ ହେବ କ୍ଷଣେ ।"

ଏହି ତନୋଟି ପଦରେ ମେହେର ମଳୟ ପବନକୁ ଆବାହନ କରି ଉତ୍କଳର ଠିକ ଦକ୍ଷିଣ ଦିଗରେ ଥିବା ଋଷିକୁଲ୍ୟା ନଦୀ, ମହେନ୍ଦ୍ର-ପର୍ବତ, ଚନ୍ଦ୍ରୋତ୍ପଳା ବା ମହାନଦୀ, ସୁବର୍ଣ୍ଣରେଖା, ମହୋଦଧି, ସମ୍ବଲପୁରସ୍ଥ ସ୍ୱନାମଧନ୍ୟ ପର୍ବତ ନୃସିଂହନାଥକୁ ସ୍ପର୍ଶ କରିଥିବା କଥା ଲେଖିଛନ୍ତି । ଗୋପବନ୍ଧୁ ଠିକ୍ ଏହି ଦକ୍ଷିଣ ଦିଗରୁ ତାଙ୍କର ମଳୟ ମରୁତକୁ ଆବାହନ କରି, ତା'ର ଅନୁସରଣରେ ସ୍ୱଦେଶ ଚିନ୍ତା କରିଛନ୍ତି । କିନ୍ତୁ ରସ ପରିବେଷଣ, ଭାବୁକତା, ଅନ୍ତଃ ସୌନ୍ଦର୍ଯ୍ୟ, ସ୍ୱଦେଶାନୁରାଗ ତଥା ଜାତୀୟ ଉଦାର ମନୋଭାବ ଦୃଷ୍ଟିରୁ ତାହା ମେହେର କବିଙ୍କର 'ମଳୟ ଆବାହନ' ଠାରୁ ଅନେକ ଗୁଣରେ ଗରୀୟସୀ ଏବଂ ହୃଦୟସ୍ପର୍ଶୀ ।

ଗୋପବନ୍ଧୁଙ୍କ କବିତାରେ ପ୍ରେମର ଅଭିନବ ଅନୁଭବ, ମଧୁର କଳ୍ପନା, ସରଳ ସରସ ଭାବରେ ରସିକ ହୃଦୟର ଅଭିବ୍ୟକ୍ତି, ସମଗ୍ର ଗୋପବନ୍ଧୁ ସାହିତ୍ୟରେ ଏକ ଯୁଗାନ୍ତକାରୀ ସ୍ୱପ୍ନପୁରୀର ଅମର ସୃଷ୍ଟି । —ଏହିଠାରେ ହିଁ ସ୍ୱଦେଶପ୍ରେମର ଜୀବନ୍ତ ଚିର ଅନ୍ତଃସଳିଳା ଫଲ୍‌ଗୁ ଧାରା ପରି ସଞ୍ଜୀବିତ । ତେଣୁ "ବନ୍ଦୀର ସ୍ୱଦେଶ ଚିନ୍ତା" କବିତାଟି ଗୋପବନ୍ଧୁଙ୍କ ଅମର କୃତିର ଚରମ ନିଦର୍ଶନ ତଥା କବି ଜୀବନର ଏକ ସାର୍ଥକ ସୃଷ୍ଟି ।

**ବନ୍ଦୀର ଆତ୍ମକଥା—**

ଗୋପବନ୍ଧୁଙ୍କ କାରାଜୀବନର ମର୍ମନ୍ତୁଦ ଇତିହାସ ହେଉଛି—'ବନ୍ଦୀର ଆତ୍ମକଥା' । କବିଙ୍କର କଳ୍ପନାବିଳାସ ଏଥିରେ ବ୍ୟାହତ ହୋଇଥିଲେ ମଧ୍ୟ ଅନୁଭୂତିବ୍ୟଞ୍ଜକ ପ୍ରାଣ ପ୍ରାଚୁର୍ଯ୍ୟର ଉନ୍ମାଦନା, ଜ୍ୱାଳା, ନୀରସର ଜାତୀୟତାବାଦର ନଗ୍ନରୂପ, ଦୁଃଖ ଦୈନ୍ୟ ଓ ବିପର୍ଯ୍ୟୟର ବାସ୍ତବଚିତ୍ର ସ୍ୱଦେଶ ପ୍ରୀତି ଓ ଦରଦୀ ପ୍ରାଣର ଯେଉଁ ଅଫୁରନ୍ତ ସହାନୁଭୂତି ରହିଛି, ତାହା ଓଡ଼ିଆ ସାହିତ୍ୟରେ ଏକାନ୍ତ ବିରଳ । ପ୍ରତ୍ୟେକ ପଦ ଆଗ୍ନିକଣା ତୁଲ୍ୟ ପାଠକ ମନରେ ଉଦ୍ଭାସିତ ହୋଇ ମନରେ ଏକ ଆବେଗ ଓ ବିଷାଦ ସୃଷ୍ଟି କରିଥାଏ । ତ୍ୟାଗୀ ଗୋପବନ୍ଧୁଙ୍କର ଏହା ଓଡ଼ିଆ ଜାତି ପାଇଁ ଏକ ଅଭିନବ ସୃଷ୍ଟି ।

ଦେଶବାସୀଙ୍କ ଶୋଚନୀୟ ଅବସ୍ଥା ଓ ଦୁର୍ଗତି ଦେଖି ତାଙ୍କ ପ୍ରାଣ କାନ୍ଦିଉଠିଛି । ହୃଦୟ ବ୍ୟଥିତ ଓ ମଥିତ ହୋଇପଡ଼ିଛି । ଦେଶସେବା

ପାଇଁ ତାଙ୍କ ଦେହ ଭସ୍ମୀଭୂତ ହେଉ ପଛକେ ସେ ଦେଶସେବା କରିବେ । "କର୍ମଂ ବା ସାଧୟେତ୍ ଶରୀରଂ ବା ପାତୟେତ୍,"—ଏହି ମନ୍ତ୍ରରେ ସେ କିପରି ଉଦ୍‌ବୁଦ୍ଧ ହୋଇଥିଲେ, ତାଙ୍କ ଉକ୍ତିରୁ ତାହା ଜଣାଯାଏ ।

"ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ॥
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ॥"

୧୯୨୧ ମସିହାରେ ଗାନ୍ଧିଜୀଙ୍କ ଆହ୍ୱାନରେ ଯେଉଁ କେତେଜଣ ଉତ୍କଳୀୟ ଅସହଯୋଗ ବା ସ୍ୱରାଜ୍ୟ ପାଇଁ ଆନ୍ଦୋଳନରେ ଝାସ ଦେଇ ଥିଲେ, ସେମାନଙ୍କ ମଧ୍ୟରେ ସେ ଅଗ୍ରଣୀ ଥିଲେ । ତାଙ୍କୁ ଯେତେବେଳେ ରାଜବନ୍ଦୀ ଭାବରେ ହାତକଡ଼ି ପିନ୍ଧାଇ ଓଡ଼ିଶା ବାହାରକୁ ନିଆଗଲା, ସେତେବେଳେ ଉତ୍କଳବାସୀଙ୍କୁ ଅଧୈର୍ଯ୍ୟ ବା ନିରାଶ ନ ହେବା ପାଇଁ ଉଦ୍‌ବୋଧନ ଦେଇ କହିଛନ୍ତି ଯେ, ଉତ୍କଳ ଦେବଭୂମି । ଜଗନ୍ନାଥ ଉତ୍କଳର ନେତା । ତାଙ୍କର ଧର୍ମ-ନାବ ଧର୍ମ ପ୍ରଭାବରେ ଚଳେ । ବହୁ-ବେଳେ ପ୍ରଭୁ ନୀଳାଚଳପତି ସାହା ହୋଇଥିଲେ ବୋଲି ଇତିହାସ ସାକ୍ଷୀ ଦିଏ । ସେତେବେଳେ ଆମେ ପଢ଼ୁ—

"ଇତିହାସେ ଶୁଣିଅଛ ଜନଶ୍ରୁତି
କାଞ୍ଚି ଯୁଦ୍ଧକାଳେ ଉତ୍କଳ-ବିଭୂତି ।
ଶୁଣିଛ ତ ପ୍ରଭୁ ନୀଳାଦ୍ରିନାୟକ ।
ବିଜେ ଧରି ହାତେ କୃପାଣ ଶାୟକ
ଉତ୍କଳ ପ୍ରଧାନ ସେନାପତି ପଣେ
ହୋଇଥିଲେ ବିଜେ ସମର ପ୍ରାଙ୍ଗଣେ ।
ଉଡ଼ିଲା ଉତ୍କଳ ଜୟ ବୈଜୟନ୍ତୀ
ଆଜିଯାଏ ଏହା ଗାଏ କିମ୍ବଦନ୍ତୀ ।
ଏବେ ସୁଦ୍ଧା ଦେଖ ନୀଳାଚଳେ ଯାଇ
କଳା ଧଳା ଘୋଡ଼ା ପରେ ବେନିଭାଇ ।
ବୀର ମୂର୍ତ୍ତି ଦିଶେ ଯେହ୍ନେ ଅଗ୍ନିଶିଖା
ଦଧି ମୂର୍ଖ ମାଗେ ଚୁମୁରେ ମାଣିକା ।

ଏ ଛବି ତ ନୁହେଁ ଶିଳ୍ପୀର କଳନା
ଏ ସତ୍ୟର ସାକ୍ଷୀ ମାଣିକପାଟଣା ।
ଏହି ସେ ଉତ୍କଳ ପୁଣ୍ୟ ଦେବସ୍ଥଳୀ
ହୋଇଛନ୍ତି ଠୁଳ ଯହିଁ ତୀର୍ଥାବଳୀ ।
ତା' ମଧ୍ୟେ ବିରଜେ ପୁଣ୍ୟ ନୀଳାଚଳ
ଭାରତର ଧର୍ମ-ହୃଦ-ଶତଦଳ ।
ଏବେ ନୀଳାଚଳେ ବିଜେ ଜଗନ୍ନାଥ,
ତେବେ କହ କିମ୍ପା ଉତ୍କଳ ଅନାଥ ।

'ବନ୍ଦୀର ଆତ୍ମକଥା'ରେ ସ୍ୱଦେଶର ଅତୀତ ଚିତ୍ର, ଇତିହାସର ସ୍ୱର୍ଣ୍ଣପୃଷ୍ଠା, ଗଙ୍ଗବଂଶ ଗଜପତି ଭକ୍ତପ୍ରବର ପୁରୁଷୋତ୍ତମ ଦେବଙ୍କ ଅମର କାହାଣୀ କାଞ୍ଚୀ ଅଭିଯାନ, ମାଣିକ ଗଉଡୁଣୀ, ଦେବପୀଠ ନୀଳାଚଳ କ୍ଷେତ୍ରର ମହିମା ଆମ ଆଖି ଆଗରେ ଝଲସି ଯାଉଛି । ଅତୀତର ସେହି ଗୌରବ ଉତ୍କଳ, ବର୍ତ୍ତମାନ ଆନନ୍ଦହୀନ, କର୍ମହୀନ ଓ ବିଶ୍ୱାସହୀନ ହୋଇଥିବାରୁ ସେ ଖେଦୋକ୍ତି ପ୍ରକାଶ କରିଛନ୍ତି । ସେତେବେଳେ ଯେଉଁ ଜଗନ୍ନାଥ, ବଳଭଦ୍ର ଭକ୍ତାଧୀନ ହୋଇ, ଧଳା କଳା ଘୋଡ଼ା ଚଢ଼ି ଜୈତ୍ର ଅଭିଯାନରେ ଗଜପତି-ସୈନିକ ହୋଇଥିଲେ, ଆଜି ସେହି ବଳ ନଥିବାରୁ ଦାରୁଭୂତ ହୋଇପଡ଼ିଛନ୍ତି । ପୁଣି କର୍ମବଳ, ଧର୍ମବଳ, ବିଶ୍ୱାସ ଓ ଭକ୍ତିଭାବ ଆସିଲେ, ଉତ୍କଳବାସୀଙ୍କୁ ସାହାଯ୍ୟ ହୋଇ ଏ ଜାତିକୁ ଆହୁରି ଅଧିକ ପ୍ରଗତିଶୀଳ କରିଇପାରିବେ ।

ଦେଶପ୍ରେମୀ କବିଙ୍କର ଉଦାର ମନୋଭାବ, କହି ଉଠିଛି;— ସେ ଭାରତର ଯେଉଁଠି ଥିଲେ ମଧ୍ୟ ସାମ୍ୟ-ସ୍ୱାଧୀନତା-ପ୍ରେମ ସମୁଦାୟ ନୀଳାଚଳଧାମରେ ଅଛନ୍ତି ଓ ପତିତପାବନ ଜଗନ୍ନାଥଙ୍କଠାରେ ଶରଣ ପଶିଛନ୍ତି । ଏହିପରି ଭାବନା କଲାବେଳକୁ ବାଷ୍ପୀୟ ଶକଟ ଜେନାପୁରରେ ଆସି ପହଞ୍ଚିଛି । ବନ୍ୟା-ପ୍ରପୀଡ଼ିତ ଜେନାପୁର କବିଙ୍କର ଅତି ପ୍ରିୟସ୍ଥଳୀ —କାରଣ ସେହି ଅଞ୍ଚଳକୁ ଦୀନବନ୍ଧୁ ଗୋପବନ୍ଧୁ ଆଗରୁ ଆସି ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କର ଦୁଃଖରେ ସମଦୁଃଖୀ ହୋଇଥିଲେ । ଏଠାରେ କବିତାର ପ୍ରତି ପଂକ୍ତି କରୁଣ ସତ୍ୟରେ ଉଦ୍ଦୀପ୍ତ । ବନ୍ୟାର ବିଭୀଷିକା, ମରଣର ବିକଟ ନୃତ୍ୟରେ ଜେନାପୁର ମ୍ରିୟମାଣ । ସମବ୍ୟଥିତ କବିଙ୍କ ଭାଷାରେ—

"କେତେଗ୍ରାମ, କେତେ ଘର, କେତେ ଧନ
ହୋଇଥିଲା ବନ୍ୟା-ବଜ୍ରାଘାତେ ଉଚ୍ଛନ୍ନ ।
କେତେ ଗ୍ରାମଦାଣ୍ଡେ ଗୃହଥିଲା ସୁଅ,
କେତେ ନୟନରୁ ବହୁଥିଲା ଲୁହ ।
କେତେ ନର ନାରୀ କେତେ ଗୋରୁ ଗାଈ,
ମରୁଥିଲେ କଷ୍ଟେ ଆହାର ନ ପାଇ ।"

ବନ୍ୟା ବଜ୍ରପାତରେ ଉତ୍କଳ ଦୁର୍ଦ୍ଦଶା କଥା ସୁଦୂର ପ୍ରବାସର କାରାବାସ ଜୀବନରେ ଗୋପବନ୍ଧୁଙ୍କର ମନେପଡ଼େ, ଚିଲିକା କୂଳରୁ ସୁବର୍ଣ୍ଣରେଖାଯାଏ ମୂର୍ତ୍ତିକ ମଧ୍ୟରେ ତାଙ୍କର ଆଖିରେ ନାଚିଯାଇଛି । ଉତ୍କଳର କୃଷୀବଳ ଭାଙ୍ଗିପଡ଼ୁଛି । ବନ୍ୟା-ଦୁର୍ଭିକ୍ଷ ପ୍ରହାରରେ ପଲ୍ଲୀସବୁ ଛାରଖାର ହୋଇପଡ଼ୁଛି । ଶସ୍ୟକ୍ଷେତ୍ରମାନ ବାଲିଚର । ଖାଦ୍ୟ ନ ପାଇ ଅନେକ ମୃତ୍ୟୁ ପଥର ପଥିକ । ବନ୍ୟା-ମରୁଡ଼ି-ବାତ୍ୟା-ବିପର୍ଯ୍ୟସ୍ତ ଓଡ଼ିଶାକୁ ଦେଖିଲେ ମନେହୁଏ, ଆଜି ପରଦୁଃଖ ମୋଚନ-ବ୍ରତପର 'ଦାସେ ଆପଣେ' ଥାନ୍ତେ କି ?—ତାଙ୍କ ଆଖିରୁ ଲୁହ ନିର୍ଝର ଲହୁ ଝରୁଥାନ୍ତା । ଗାନ୍ଧିଜୀ ଉତ୍କଳକୁ ଆସିଥିବାବେଳେ ଏମାନଙ୍କ ଦୁଃଖ ଦେଖି ଅତ୍ୟନ୍ତ ମର୍ମାହତ ହୋଇଥିଲେ । ଗାନ୍ଧୀଙ୍କ ମନୋଭାବ ଓ ସକରୁଣ ଅଭିବ୍ୟକ୍ତି କବିଙ୍କ ଲେଖନୀରେ କିପରି ଫୁଟିଉଠିଛି, ତାହା ପ୍ରଣିଧାନଯୋଗ୍ୟ—

"ପଡ଼େ ମନେ ମୋର ଯେବେ ସିନ୍ଧୁକୂଳେ,
ନୀଳାଚଳେ ଗାନ୍ଧୀ ଥିଲେ ପର୍ଣ୍ଣ କୁଟିରେ ।
ଦେଖି ଉତ୍କଳର ଦୁର୍ଭିକ୍ଷ ଆଭାସ,
ପାଇଥିଲେ ହୃଦେ ଗୁରୁତର ତ୍ରାସ ।
କେତେ ନର ନାରୀ ବୃଦ୍ଧ ଯୁବା ବାଳ
( ଅନାହାରେ ଯେହୁ କେବଳ କଙ୍କାଳ )
ଦେଖିଣ ମହାତ୍ମା କାତର ଅନ୍ତରେ
କହିଥିଲେ ମୋତେ ଦୁଃଖେ ଏକାନ୍ତରେ—
ଦେଖି ଏ ଦାରୁଣ ଦୃଶ୍ୟ ହୁଏ ମନ
ଅନଶନେ ଆଜି ତେଜନ୍ତି ଜୀବନ ।"

ନିଜ ଜନ୍ମଭୂମିର ବନ୍ୟାକ୍ଲିଷ୍ଟ ଲୋକମାନଙ୍କ ଦୁର୍ଦ୍ଦଶା ଦେଖି ତ୍ୟାଗୀ ଗୋପବନ୍ଧୁଙ୍କର ଯେଉଁ ହୃଦୟରେ କରୁଣା ଓ ଲୋତକର ଧାର

ୱର ପଡ଼ିଥିଲା, ତାହା ଏକାଧାରରେ ବହୁଗୁଣିତ ହୋଇ ମହାତ୍ମା ଗାନ୍ଧୀଙ୍କ ହୃଦୟକୁ ଆଲୋଡ଼ନ କରିପକାଇଅଛି । ସେହିଠାରେ ହିଁ ତ୍ୟାଗୀ ଗୋପବନ୍ଧୁ ଓ ମହାମାନବ ଗାନ୍ଧୀଙ୍କର ପ୍ରକୃତ ସ୍ୱରୂପ ଫୁଟି ଉଠିଛି । ଦୁହେଁ ବିଶ୍ୱ-ଜୀବନ ପଥର ପଥିକ ଓ ସ୍ୱଦେଶ ଶାନ୍ତାରର ବନ୍ଧେର । ଏଥିପାଇଁ ଗୋପବନ୍ଧୁ ହୋଇଛନ୍ତି—'ଉତ୍କଳମଣି', ଗାନ୍ଧୀ ହୋଇଛନ୍ତି-'ମହାତ୍ମା' । ଦେଶ ଓ ଦଶ ପାଇଁ ପ୍ରାଣୋତ୍ସର୍ଗ କରିବାରେ ଦୁହେଁ କେବଳ ଦୁହିଁଙ୍କର ପର୍ଯ୍ୟାନ୍ତର ।

ଉତ୍କଳମାଳରେ ଓଡ଼ିଶାର ନଦୀମାନେ ସମୁଦ୍ରରେ ପଡ଼ୁଛନ୍ତି । ବନ୍ୟା ପ୍ରକୋପରେ ମହାନଦୀ, ବ୍ରାହ୍ମଣୀ, ବୈତରଣୀ ଓ ସାଳନ୍ଦୀ ପ୍ରଭୃତି ନଦୀଦ୍ୱାରା ସମ୍ପୃକ୍ତ ଅଞ୍ଚଳର ଲୋକମାନେ ସଢ଼ୁଥାନ୍ତି । ଜେନାପୁର ବ୍ରାହ୍ମଣୀ-ସେତୁବନ୍ଧ ଛାଡ଼ିବା ପରେ କବିଙ୍କର ମନେପଡ଼ୁଛି କେନ୍ଦ୍ରାପଡ଼ା । କବି ମାନସ-ଚକ୍ଷୁ-କେନ୍ଦ୍ରାପଡ଼ା ଯାଜପୁର ଅଞ୍ଚଳକୁ ଛାଡ଼ି ଦେଇପାରି ନାହିଁ ।

"କେନ୍ଦ୍ରାପଡ଼ା ଯାଜପୁର ପ୍ରଜାକୁଳ
କରନାହିଁ ବନ୍ୟା ଉତ୍ପାତେ ବ୍ୟାକୁଳ ।
ସେ ଭାଇ ସକଳ ମୋର ପ୍ରିୟତମ
ତାଙ୍କ ସେବା ମୋର ଜୀବନ ପ୍ରଥମ ।"

ବ୍ରାହ୍ମଣୀ ଓ ଖରସ୍ରୋତା ଦୁଇ ନଦୀଙ୍କୁ କବି ନମସ୍କାର ଜଣାଇ ବିନୀତ ଭାବରେ କହୁଛନ୍ତି ଯେ, କବି ଦେଶପାଇଁ କାରାବରଣ କରୁଛନ୍ତି; ଜେଲ୍ ଜୀବନରୁ ଫେରିଲେ ଯାଜପୁର ଓ କେନ୍ଦ୍ରପଡ଼ାବାସୀଙ୍କୁ ଦେଖା-ଦେବେ ବୋଲି ନଦୀ ଦ୍ୱୟ ତରଙ୍ଗ-ହିଲ୍ଲୋଳିତ କଳତାନରେ କବିଙ୍କର ସନ୍ଦେଶ ଜଣାଇ ଦିଅନ୍ତୁ । ବନ୍ୟା ବିପତ୍ତି ସହିତ ରାଜନୈତିକ ଦୃଷ୍ଟିବାତ୍ୟା-ଜନିତ ଅଭିସନ୍ଧିମୂଳକ ଗୃହଦାହ ବ୍ରିଟିଶ ରାଜତ୍ୱର ଆଉ ଗୋଟିଏ ମର୍ମନ୍ତୁଦ ଘଟଣା । ଗୃହଦାହ, ପ୍ରାଣପୀଡ଼ା, ଅର୍ଥନାଶ ତଥା କାରାବାସ ନିରୀହ ପ୍ରଜାଙ୍କର ହୋଇଥିଲା ପ୍ରାଣଶୋଷୀ ଦଣ୍ଡ । ରାଜା ଯଦି ରକ୍ଷକ ନ ହୋଇ ଭକ୍ଷକ ହୁଏ, ସେଥିପାଇଁ ଦାୟୀ କିଏ ? ଦେଶପ୍ରାଣ ଗୋପବନ୍ଧୁଙ୍କ ପ୍ରାଣ କାନ୍ଦିଉଠିଛି—

"କାହା ଗୃହ ଭସ୍ମ, କାହା ଗୃହ ନଷ୍ଟ
କାହା ପୁଅ ଭୋଗେ କାରାଗାରେ କଷ୍ଟ !
ଏଥିଲାଗି ଭାଇ ନ କର ଭାବନା
ଏତ ବିନା ମେଘେ କୁଳିଶ ସୃଜନା ।"

କବି ପ୍ରଜାଙ୍କର ଏହି ଦୁଃଖ ଦେଖି ଅଦୃଷ୍ଟବାଦୀ ହୋଇପଡ଼ିଛନ୍ତି । ମନୁଷ୍ୟ ନିଜ କୃତକର୍ମର ଫଳ ଭୋଗ କରେ । ଧର୍ମକୁ ସାକ୍ଷୀରଖି ଶୋଚନା ନ କରିବାକୁ କବି ବିନମ୍ର ଉପଦେଶ ଦେଇଅଛନ୍ତି । ଧର୍ମ ବା ଭଗବାନଙ୍କର ଅଦୃଶ୍ୟ ଆଖିକୁ ମଣିଷର ପାପ କେବେହେଁ ଅ.ଖିମିଟିକା ମାରିପାରିବ ନାହିଁ । ବହୁଲୋକ ପାପ କରି ନଷ୍ଟ ହେଉଛନ୍ତି ବୋଲି, ପୁରାଣ ଇତିହାସ ଶାସ୍ତ୍ରରୁ ଯଥାର୍ଥ ପ୍ରମାଣ ଦେଇଛନ୍ତି ।

ବ୍ରାହ୍ମଣୀ ବୈତରଣୀ ନଦୀର ବନ୍ୟା ପ୍ରକୋପ, କେନ୍ଦ୍ରାପଡ଼ା ଯାଜପୁରବାସୀଙ୍କ ଦୁଃଖଦୁର୍ଦ୍ଦଶା ଦେଖିଲାପରେ କବିଙ୍କ ମାନସ-ଚକ୍ଷୁ ଫେରିଆସିଛି, ସାଲନ୍ଦୀ-ପୁଳିନକୁ । ଭଦ୍ରଖର ଦେଶପ୍ରେମୀ କର୍ମୀ ଓ ସାଧକଙ୍କ ପରି ସମଗ୍ର ଉତ୍କଳର ଉନ୍ନତି ପାଇଁ ଉପଯୁକ୍ତ ବୀର ଲୋଡ଼ା ବୋଲି କବି ଆଶା ପ୍ରକାଶ କରିଛନ୍ତି । ଭଦ୍ରଖ ଏକ ପୁଣ୍ୟଧାମ, କାରଣ ଏଠାରେ ପରମ-ବୈଷ୍ଣବ 'ନିମାଇଁ' ରହିଥିଲେ । ସାଧୁ ସମାଗମରେ ଭଦ୍ରଖ ପବିତ୍ର ହୋଇଛି—

"ନୀଳାଚଳ ଯାତ୍ରୀ ପ୍ରେମିକ ନିମାଇଁ
ଥିଲେ ପରା ଏଥି କେତେ ଦିନ ପାଇଁ
ସେ ଶୁଭ ଦିନର ପୁଣ୍ୟ ନିଦର୍ଶନ,
ରଖିଛି ଭଦ୍ରଖ କରି ଗଣ୍ଠିଧନ ।"

ମନରୁ ଭେଦଭାବ ଛାଡ଼ି ଧର୍ମରେ ମତି ରଖିବାକୁ କବି ଭଦ୍ରଖ-ବାସୀଙ୍କୁ ଉପଦେଶ ଦେଇଛନ୍ତି । ସାର୍ବଜନୀନ ଧର୍ମର ମହାପ୍ରେରଣା ସେଥିରୁ ସ୍ଫୁରଣ ହୁଏ । ଭଦ୍ରଖରେ ହିନ୍ଦୁ, ମୁସଲମାନ ଥିବାରୁ ଏ ଉପଦେଶ ଅତି ହୃଦୟଗ୍ରାହୀ—

"ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିଆନ,
ଶିଖ, ଜୈନ ଯେତେ ଭାରତ ସନ୍ତାନ ।
ଯେତେ ଧର୍ମ, ଯେତେ ବର୍ଣ୍ଣ ଜାତିକୁଳ
ଭାରତ ଜନନୀ ସମସ୍ତଙ୍କ ମୂଳ ।"

ଦୁଃଖିନୀ ଜନନୀର କରୁଣ-କୁହାଟରେ କବିଙ୍କ ହୃଦୟ ଆଲୋଡ଼ିତ ହୋଇଛି । ପ୍ରଜାଙ୍କ ଉପରେ ଯେଉଁ ଅତ୍ୟାଚାର କବିଙ୍କ ପ୍ରାଣରେ ତାହା କୁଳିଶ ଆଘାତ ସୃଷ୍ଟି କରିଛି । କବିଙ୍କ ଭାଷାରେ ତାହା ଅତି ମର୍ମସ୍ପର୍ଶୀ ହୋଇଛି—

"ବାସିତ କନକ ପ୍ରଜାପ୍ରତି ସଦା
ରଖିଥିବ ଭଲ ହୋଦର—ଶରଧା,
କନକ ଯିବାକୁ ବାଟ ଉଦରଖ,
ଥାନ୍ତା ହେବେ ମୋର ବହଙ୍ଗମ ପକ୍ଷ,
ଉଡ଼ିଯାଇ ଦେଖି ଆସିଥାନ୍ତି ଥରେ
କନକ ପ୍ରଜାଙ୍କୁ ରକ୍ତ ଉଙ୍ଗାଘରେ ।
ଆଉଁସି ପିଠିରୁ ପ୍ରହାର-ପରସ
ହର ପାଇଥାନ୍ତି ପରଶେ ଆଶ୍ୱାସ ।"

କବିଙ୍କ ସ୍ୱଦେଶାନୁରାଗ ତାଙ୍କର ସମସ୍ତ କାବ୍ୟ, କବିତା, ପ୍ରବନ୍ଧରେ ଏପରି ଭାବରେ ରୂପାୟିତ ହୋଇଛି ଯେ, ଅନୁସନ୍ଧିତ୍ସୁ-ମନୋଭାବ ରଖି ପର୍ଯ୍ୟାଲୋଚନା କଲେ, ତାହା ଏକ ଗ୍ରନ୍ଥ ହେବ । ଭକ୍ତିଭାବ ସହିତ ଜାତୀୟ ପ୍ରୀତି ବା ଦେଶାନୁରାଗ ହେଲା—ତାଙ୍କ ସାହିତ୍ୟର ସ୍ୱାତନ୍ତ୍ର୍ୟ ।

ତାଙ୍କ 'ଅବକାଶ ଚିନ୍ତା'ରେ ସେ ସାମନ୍ତ ଚନ୍ଦ୍ରଶେଖର, ଉପେନ୍ଦ୍ର ଭଞ୍ଜ, ବାରବାଟୀ ଦର୍ଶନ, ଖଣ୍ଡଗିରି ଶିଖରେ, ବଳରାମ ଦାସ, ସାରଳା ଦାସ ଓ ଅନଙ୍ଗଭୀମଦେବ ପ୍ରଭୃତି ପ୍ରତିଭାଶାଳୀ କବି, ମନୀଷୀ ଓ ରାଜାମାନଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ନିଜ ଭାବୁକତା ତଥା ବୀର ପୂଜାର ଦ୍ୟୋତନା ଦେଇଛନ୍ତି । ପୂଜ୍ୟପୂଜାର ବ୍ୟତିକ୍ରମ ନ କରି କବି ଗୋପବନ୍ଧୁ ନିଜେ ପୂଜିତ ହୋଇଛନ୍ତି । ଏହିମାନଙ୍କୁ ଅର୍ଚ୍ଚନା କରିବା ହେଲା କବିଙ୍କର ପ୍ରକୃତ ଦେଶାନୁରାଗ ।

ଉପସଂହାରରେ ଏତିକି କୁହାଯାଇପାରେ ଯେ, ଗୋପବନ୍ଧୁଙ୍କ ଦେଶାନୁରାଗ ସଂକୀର୍ଣ୍ଣ ପ୍ରାଦେଶିକତାର ଗଣ୍ଡି ଭିତରେ ସୀମିତ ନୁହେଁ, ତାହା ବିଶ୍ୱବ୍ୟାପୀ । ଉତ୍କଳବାସୀଙ୍କ ପାଇଁ ତାଙ୍କର ବ୍ୟଥିତ ହୃଦୟ ମଥିତ ହେଉଥିଲାବେଳେ ସେ ସମଦୁଃଖୀ ହୋଇ ବିଶ୍ୱପ୍ରୀତି ଉଦ୍ଦେଶ୍ୟରେ ଅନ୍ତିମ ଅଶ୍ରୁ ବୁହାଇ ଗାଇଉଠିଛନ୍ତି ।—

"ଜାତୀୟ ମମତା ବିଶ୍ୱଜନ-ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।"

# ଗୋପବନ୍ଧୁ ଓ ଚିଲିକା

ଶ୍ରୀ ନବଘନ ପଣ୍ଡା

[ ଲୋକପ୍ରିୟ ଶିକ୍ଷକ ଶ୍ରୀ ପଣ୍ଡା ଛାତ୍ରାବସ୍ଥାରୁ ସାହିତ୍ୟ ପ୍ରତି ଶ୍ରଦ୍ଧାବାନ୍ । ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଅନେକ ପ୍ରବନ୍ଧ ଓ କବିତା ପ୍ରକାଶିତ ହୋଇଛି । 'ତ୍ୟାଗପତ୍ର', 'ନିଷ୍କୃତି' 'ସ୍ୱାମୀ' ଇତ୍ୟାଦି ଉପନ୍ୟାସ ତାଙ୍କର ସୃଷ୍ଟି । ତାଙ୍କର 'ପକ୍ଷୀ ମିଥୁନ' ଏକ ସାର୍ଥକ ଅନୁବାଦ । ଆଲୋଚ୍ୟ ପ୍ରବନ୍ଧରେ ଶ୍ରୀ ପଣ୍ଡା ଗୋପବନ୍ଧୁଙ୍କର 'ରେଳ ଉପରେ ଚିଲିକା ଦର୍ଶନ' କବିତାଟିର ଆଲୋଚନା କରିଥିବାରୁ ଏହା ଛାତ୍ରମାନଙ୍କ ପକ୍ଷେ ଉପଯୋଗୀ ମନେ ହୁଏ ।—ସଂ ]

ଓଡ଼ିଆ ସାହିତ୍ୟରେ ଆଧୁନିକତାର ପ୍ରବର୍ତ୍ତନ ନିମନ୍ତେ ରାଧାନାଥ ଯେତିକି ପ୍ରସିଦ୍ଧ, ଏ ସାହିତ୍ୟରେ ଦେଶାତ୍ମବୋଧକତା ଓ ପ୍ରକୃତି ଚିତ୍ରଣ ପ୍ରବର୍ତ୍ତନ ନିମନ୍ତେ ଗୋପବନ୍ଧୁ ତଦପେକ୍ଷା ଅଧିକ । ଏହି ସାହିତ୍ୟରେ ପ୍ରକୃତି ଚିତ୍ର ଯେ ନ ଥିଲା ତାହା ନୁହେଁ, କିନ୍ତୁ ରାଧାନାଥ ତାକୁ ମାର୍ଜିତ, ରସାଣିତ, ପ୍ରାଞ୍ଜଳ ଓ ରସୋଜ୍ଜ୍ୱଳ କରି ଗଢ଼ି ତୋଳିଥିଲେ । ଚିଲିକାରେ ପ୍ରକୃତି ଚିତ୍ରଣ ତାଙ୍କ ବଳିଷ୍ଠ କବି ପ୍ରତିଭାର ପ୍ରଖ୍ୟାପକ । ଏହି ସାହିତ୍ୟରେ ଦେଶପ୍ରେମ ମୂଳକ ବର୍ଣ୍ଣନା ନ ଥିଲା କହିଲେ ଚଳେ । ରାଧାନାଥ ସେହି ଅଭାବ ମୋଚନ କରି ସାହିତ୍ୟକୁ ଜୀବଦାନ କରିବା ସଙ୍ଗେ ସଙ୍ଗେ ଦେଶବାସୀଙ୍କ ଜାତୀୟ ଭାବରେ ଅନୁପ୍ରାଣିତ ହେବାର ପଥ ପ୍ରଶସ୍ତ କରିଛନ୍ତି ।

ଆଧୁନିକ ଯୁଗରେ ସତ୍ୟବାଦୀ ପଞ୍ଚସଖାଙ୍କର ସ୍ଥାନ ଅନସ୍ୱୀକାର୍ଯ୍ୟ । ସାହିତ୍ୟ ଜରିଆରେ ପୁରାତନ ସଂସ୍କୃତିର ପ୍ରତିଷ୍ଠାପନ, ଦେଶବାସୀଙ୍କର ଜାତୀୟ ଚେତନା ଜାଗରଣ, ସେମାନଙ୍କ ସାହିତ୍ୟିକ ବିପ୍ଳବ, ସେମାନଙ୍କର ସାଂସ୍କୃତିକ ଆଦର୍ଶ ଫବସ ନୀଳାଚଳ ପୀଠ । ସତ୍ୟବାଦୀ ପଞ୍ଚସଖାଙ୍କ ମଧ୍ୟରେ ଶ୍ରେଷ୍ଠ ସଖା ହେଉଛନ୍ତି ଗୋପବନ୍ଧୁ । ତାଙ୍କର ପ୍ରେରଣାରେ ବକୁଳ ଛୁରିଅନା ମଞ୍ଜୁଳ କୁଞ୍ଜରେ ଜାତୀୟ ବନବିଦ୍ୟାଳୟ ପ୍ରତିଷ୍ଠିତ

ହୋଇଥିଲା । ଯୁବକଚିତ୍ତକୁ ଦେଶପ୍ରେମରେ ଉଦବୁଦ୍ଧ ତଥା ଜାଗ୍ରତ କରିବା ସେହି ବନବିଦ୍ୟାଳୟର ଥିଲା ଆଦର୍ଶ ଓ ଉଦ୍ଦେଶ୍ୟ । ସେହି ପଞ୍ଚସଖା ଚିନ୍ତନ, ଭାବନ ମାଧ୍ୟମରେ ଦେଶବାସୀଙ୍କ ମନରେ ପ୍ରେରଣା ଭରିଦେଇଥିଲେ । ଗୋପବନ୍ଧୁଙ୍କ ନିର୍ଦ୍ଦେଶ ଓ ଉପଦେଶ ସେମାନଙ୍କୁ ଉତ୍ସାହିତ କରିଥିଲା । ସେତେବେଳକୁ ଭାରତରେ ସ୍ୱାଧୀନତା ସଂଗ୍ରାମର ପ୍ରବଳ ପ୍ରଭଞ୍ଜନ ଆରମ୍ଭ ହୋଇଯାଇଥାଏ; ମାତ୍ର ଓଡ଼ିଶାର ବିପ୍ଳବୀ ବାୟୁମଣ୍ଡଳ ସେତେବେଳେ ଥାଏ ନିସ୍ତେଜ, ମଳିନ । ଗୋପବନ୍ଧୁ ନିଜର ଦୃଢ଼ ବ୍ୟକ୍ତିତ୍ୱ ବଳରେ ସ୍ୱାଧୀନତା ସଂଗ୍ରାମ ନିମିତ୍ତ ଏ ଦେଶକୁ ସକ୍ଷମ କରିଥିଲେ । ମହାଭାରତୀୟ ଜାତୀୟ ସଂଗ୍ରାମର ବାର୍ତ୍ତା ଓଡ଼ିଶାରେ ଘରେ ଘରେ ପହଞ୍ଚାଇବା ଲାଗି ପ୍ରବଳ ଚେଷ୍ଟା କରିଥିଲେ ।

ଗୋପବନ୍ଧୁ ଥିଲେ ଅତି ଭାବପ୍ରବଣ । ସେ ଟିକିଏ ଦୁଃଖ ଦେଖିଲେ କାନ୍ଦିପକାଉଥିଲେ । ଓଡ଼ିଶାର ବନ୍ୟା ମରୁଡ଼ି ପ୍ରପୀଡ଼ିତ ମର୍ମାନ୍ତିକ ଅବସ୍ଥା ବର୍ଣ୍ଣନା କରୁ କରୁ ବିହାର ଓଡ଼ିଶା ବିଧାନସଭାରେ ତାଙ୍କ ଆଖିରୁ ଲୁହ ଗଡ଼ିଯାଇଥିଲା । ତା' ବୋଲି ସେ ଯେ ଦୃଢ଼ ନ ଥିଲେ ତାହା ନୁହେ । ଏହି କୋମଳତା ତାଙ୍କର ଭାବପ୍ରବଣ ଚିତ୍ତବୃତ୍ତିର ପରିଚାୟକ । ସେ ଥିଲେ କବି । ସେ ପ୍ରାକୃତିକ ଶୋଭାରେ ଯେପରି ମଜ୍ଜି ଯାଉଥିଲେ, ଲୋକଙ୍କର ଅଭାବ ଅସୁବିଧାରେ ସେପରି ସହାନୁଭୂତିଶୀଳ ହୋଇ ଉଠୁଥିଲେ; ତଥା ଦେଶକୁ ସ୍ୱାଧୀନ କରିବାକୁ ପ୍ରାଣପଣ ଉଦ୍ୟମ କରୁଥିଲେ । ରାଧାନାଥଙ୍କ ସାହିତ୍ୟରେ ପ୍ରବର୍ତ୍ତିତ ଜାତୀୟତା ଗୋପବନ୍ଧୁଙ୍କ ସାହିତ୍ୟରେ ଯେପରି ଉନ୍ନତ ସୀମା ସ୍ପର୍ଶ କଲା, ତାଙ୍କର 'ଅବକାଶ-ଚିନ୍ତା,' 'ଧର୍ମପଦ' ତଥା 'ବନ୍ଦୀର ଆତ୍ମକଥା'ରେ ତା'ର ଜ୍ୱଳନ୍ତ ସ୍ୱାକ୍ଷର ବିଦ୍ୟମାନ । ବନ୍ଦୀର ଆତ୍ମକଥାରେ ତାଙ୍କର ଦେଶପ୍ରେମର କୋଟୀ ବହୁ ଉନ୍ନତ । ଦେଶକୁ ସେ ଏପରି ଭଲ ପାଉଥିଲେ, ଦେଶକୁ ସ୍ୱାଧୀନ କରିବାକୁ ତାଙ୍କର ଆଗ୍ରହ ଏପରି ବଳବତୀ ଥିଲା ଯେ, ସେ ଗାଇଥିଲେ—

ମିଶୁ ମୋର ଦେହ ଏ ଦେଶ ମାଟିରେ<br>
ଦେଶବାସୀ ଚାଲିଯାଆନ୍ତୁ ପିଠିରେ

ଦେଶର ସ୍ୱରାଜ୍ୟପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ ମୋର ମାଂସ ହାଡ଼ ।

ଗୋପବନ୍ଧୁ-ସାହିତ୍ୟର ଛନ୍ଦେ ଛନ୍ଦେ ଦେଶପ୍ରେମର ଏହିପରି ଜ୍ୱଳନ୍ତ ନିଦର୍ଶନ ମିଳେ । 'ରେଳ ଉପରେ ଚିଲିକା ଦର୍ଶନ' ସେହିପରି ଗୋଟିଏ କ୍ଷୁଦ୍ର କବିତା । ଯେଉଁଥିରେ ଗୋପବନ୍ଧୁଙ୍କ ଭାବପ୍ରବଣ କବିମାନସ ତଥା ଦେଶପ୍ରେମୀ—ସଂଗ୍ରାମୀ ମନୋଭାବର କିପରି ଅପୂର୍ବ ସମନ୍ୱୟ ହୋଇଛି, ତାହା ପାଠକଲେ ମନରେ ଅପାର ଆନନ୍ଦ ତଥା ପ୍ରେରଣାର ମନ୍ଦାକିନୀ ସ୍ୱତଃସ୍ଫୂର୍ତ୍ତ ହୋଇଉଠେ ।

ରାଧାନାଥ 'ଚିଲିକା' କାବ୍ୟରେ ଶୋକପାଟସାଗର-ଅପହରା ଭୁବନ—ଚିଲିକାର ଯେଉଁ ରମଣୀୟ ଚିତ୍ର ଅଙ୍କନ କରିଛନ୍ତି, ଚିଲିକା ଦର୍ଶନ ପୂର୍ବରୁ ଗୋପବନ୍ଧୁ ତାହା ପାଠ କରି ହୋଇଛନ୍ତି ତନ୍ମୟ, ଭାବପ୍ରବଣ । ସେ ଆକାଙ୍‌କ୍ଷିତ ହୋଇଛନ୍ତି ଚିଲିକା ଦେଖିବାପାଇଁ; ମାତ୍ର ଚିଲିକା ଦେଖିବା ପୂର୍ବରୁ ସେ କଳ୍ପନା-ଚକ୍ଷୁରେ ତାହା ସନ୍ଦର୍ଶନ କରିଛନ୍ତି—

"ବସି କେତେଥର ନୀରବେ ବିଜନେ
ଦେଖିଛି ତୋ ରୂପ କଳ୍ପନା-ନୟନେ
ତୋ' ନୀର ତରଙ୍ଗେ ଖେଳେ ନିରନ୍ତର
ଅନୁପମହବ୍ୟ ହିରଣ୍ମୟ କର ।"

ନୀଳବକ୍ଷରେ ବର୍ତ୍ତୁଳ ଇନ୍ଦ୍ରଧନୁର ସ୍ଫୁରଣ ତାଙ୍କୁ ବାରେ—ବିହ୍ୱଳ କରିଛି । ସେ ଚିଲିକାକୁ ଧିରେ ଯାଇଁ ନିର୍ଜନରେ ଦର୍ଶନ କରି ପିପାସା ଶାନ୍ତ କରିବାର ଆକାଙ୍‌କ୍ଷା ପୋଷଣ କରିଛନ୍ତି । ମାତ୍ର କର୍ମଜଞ୍ଜାଳ ଜୀବନର ବ୍ୟସ୍ତତା ମଧ୍ୟରେ ତାଙ୍କର ସେହି ଆଶା ପୂରଣ ହୋଇପାରି ନାହିଁ । କାର୍ଯ୍ୟୋପଲକ୍ଷରେ ଦ୍ରୁତଗାମୀ ରେଳ ଉପରୁ ଚିଲିକାର ସେହି ସୌନ୍ଦର୍ଯ୍ୟ ପସରା ଦେଖି ସେ ଆତ୍ମହରା ହୋଇଛନ୍ତି, ତାକୁ ପୂର୍ଣ୍ଣପ୍ରାଣରେ ଅନୁଭବ କରିବାପାଇଁ ରେଳଗାଡ଼ିକୁ କ୍ଷଣେ ମାତ୍ର ରହିଯିବାକୁ ଅନୁରୋଧ କରିଛନ୍ତି । ରେଳଗାଡ଼ି କେବେ ରହିବ ନାହିଁ, ଏକଥା ଜାଣି ମଧ୍ୟ ତାଙ୍କର ଆବେଗ ବାଷ୍ପୀୟ ଶକଟ ନିକଟରେ ମନୋଗତଭାବ ପ୍ରକାଶ କରିଛି, କାରଣ "କାମାର୍ତ୍ତା ହିଁ ପ୍ରକୃତି କୃପଣା

ଚେତନା ଚେତନେଷୁ ।” ଚିଲିକା ତୀରବର୍ତ୍ତୀ ବୃକ୍ଷ ପାହାଡ଼ ସ୍ୱପ୍ନଲବ୍ଧ ପ୍ରିୟ ପ୍ରତିମା ପରି କମିଷେ ଲୁଚୁଇ କମିଷେ ଦେଖାଉଛି । ଚିଲିକାର ଧବଳ ଧୂସର-ଶ୍ୟାମ କାୟା ତାଙ୍କ ଆଖିରେ ବୋଳିଦେଉଛି ଐନ୍ଦ୍ର-ଜାଲିକ ଅଞ୍ଜନ । ସେ ମାୟାମୁଗ୍ଧ ପରି ଚଳମାନଯାନରୁ ଦେଖିଛନ୍ତି ଚିଲିକାର ଛବି । ତାଙ୍କ ନିକଟରେ ଚିଲିକା ଏକ ପ୍ରାକୃତିକ ଦୃଶ୍ୟ ନୁହେଁ, ତାହା ଗୋଟିଏ ଛବି, ଚିତ୍ରପଟ ।

ପ୍ରକୃତି ବର୍ଣ୍ଣନାରେ ସାଧାରଣତଃ ଦେଖାଯାଏ ଫଟୋଗ୍ରାଫିକ ଚିତ୍ରଣ, ତଥା ପ୍ରକୃତିରେ ମାନବତାର ଆରୋପ । ରାଧାନାଥଙ୍କ ଫଟୋ-ଗ୍ରାଫିକ ଶୈଳୀ ପ୍ରଭାବରେ ସେ ଶଂସିତ କବିତାରେ ପ୍ରକୃତି ସୁଷମା ବର୍ଣ୍ଣନା କରିଛନ୍ତି । ସେ ଦେଖିଛନ୍ତି ଭ୍ରମମାନ ହଂସ ଜଳରେ ପ୍ରତିଫଳିତ ହୋଇ କପତ ଯୁଗଳ ପରି ଦେଖାଯାଉଛନ୍ତି ।

“ସନ୍ତରନ୍ତି ବକ୍ଷେ ପକ୍ଷୀ ଦଳ ଦଳ
ଓଲଟିଣ ତଳେ ଦିଶନ୍ତି ଯୁଗଳ
ଘୋର ନାଦେ ଯହୁଁ ଉଠିଲେ ସେ ନଭେ
ଉଠେ ଶତ ଖଗ ଚିଲିକା ଗରଭେ ।”

ଚିଲିକାର ଅପରୂପ ଶୋଭା ଦେଖି ଦେଖି ତାଙ୍କ ମନରେ ଜେଗିଁ ଉଠିଛି ଅତୀତ ଉତ୍କଳର ଭାଗ୍ୟବୈଭବ । ଅତୀତ ଉତ୍କଳର ବୀର-ଗର୍ବ-ମତ୍ତ ଓଡ଼ିଆ ପାଇକ, ଧର୍ମପ୍ରାଣ ଜନସମୂହ ତଥା ବୋଇତ ଆରୋହୀ ସାଧବପୁଅମାନଙ୍କ ସୁକୃତିରାଶି ତାଙ୍କ ଆଗରେ ନାଚି ଉଠିଛି । ଅତୀତର ସେହି ସୌଭାଗ୍ୟମୟ ସୁବର୍ଣ୍ଣ ଯୁଗରେ ଭଗବାନ ଓଡ଼ିଆମାନଙ୍କ କର୍ମ-ପ୍ରବଣତା, ପୁଣ୍ୟ ଓ ଧର୍ମ ବଳରେ ସେମାନଙ୍କର ଯଶଃ, ସମ୍ମାନ, ପ୍ରତିଷ୍ଠା ପାଇଁ ଯୁଦ୍ଧ ଭୂମିରେ ସୈନିକ ରୂପରେ ଯେଉଁଭଳି ଯୁଦ୍ଧ କରିଅଛନ୍ତି, ତାହା ତାଙ୍କର ସ୍ମରଣ ହୋଇଯାଇଛି । ସେତେବେଳେ ତାଙ୍କ ମୁଖରୁ ସ୍ୱତଃ ନିସୃତ ହୋଇଛି—

“କାହିଁ ସେ ସୌଭାଗ୍ୟ କାହିଁ ସେ ସୁକୃତ ?
ପବିତ୍ର ଉତ୍କଳ ଆହା କି ବିକୃତ !”

ଅତୀତର ବୈଭବ ଓ ବର୍ତ୍ତମାନ ଜଡ଼ତାର ଯୁଗପତ୍ ହର୍ଷ ବିଷାଦ ଅନୁଭୂତ ଗୋପବନ୍ଧୁଙ୍କ ଭାବପ୍ରବଣ ମାନସର ସ୍ୱଚ୍ଛ ଦର୍ପଣ । ସେ ଚିଲିକାର ରୂପ ବିଭବ ଦେଖି ଦେଖି—

"ଅତୀତର ସୁଖ ସ୍ମୃତି ସମୁଦୟ
ହର୍ଷଖେଦ କରେ ଆକୁଳ ହୃଦୟ ।

ଭାବରେ ନିମଜ୍ଜିତ ହୋଇଛନ୍ତି । ଦେଶ-ପ୍ରେମର ଏପରି ପରାକାଷ୍ଠା ଓଡ଼ିଆ ସାହିତ୍ୟରେ ବିରଳ । ରାଧାନାଥଙ୍କର ସେହି ସାହିତ୍ୟିକ ବିଭାବ ଦୁଇଟିର ଅପୂର୍ବ ପରିପ୍ରକାଶ ଓ ଭବ ବିକାଶ ଘଟିଛି, "ରେଳ ଉପରେ ଚିଲିକା ଦର୍ଶନ'ରେ । ରାଧାନାଥଙ୍କର କବିତ୍ୱ 'ଚିଲିକା' କାବ୍ୟରେ ଯେପରି ପ୍ରକାଶିତ, ଗୋପବନ୍ଧୁଙ୍କର ପ୍ରତିଭା ଶଂସିତ କବିତାର ସ୍ୱଳ୍ପ ପରିସର ମଧ୍ୟରେ କୌଣସି ଗୁଣରେ କମ୍ ବିକଶିତ ହୋଇନାହିଁ । 'ରେଳଉପରେ ଚିଲିକା ଦର୍ଶନ' କବି ଗୋପବନ୍ଧୁଙ୍କର ଅପୂର୍ବ ଶକ୍ତି-ମତ୍ତାର ପରିଚ୍ଛାୟକ ।



# ଓଡ଼ିଆ ସାହିତ୍ୟରେ ଗୋପବନ୍ଧୁଙ୍କ ସ୍ଥାନ

ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ., ଓ ଏଫ୍. ଏସ୍.

[ ଗୋପବନ୍ଧୁଙ୍କ ସାହିତ୍ୟିକ କୃତିର ପରିମାଣ ଖୁବ ସ୍ୱଳ୍ପ ହେଲେ ହେଁ ତାଙ୍କର ମୂଲ୍ୟ ଅକଳନ, ତାର ସ୍ୱାତନ୍ତ୍ର୍ୟ ସର୍ବଜନ-ସ୍ୱୀକୃତ । ତାଙ୍କ ରଚନାରେ ପ୍ରଚ୍ଛନ୍ନ ଭାବେ ରହିଥିବା ମୌଳିକତା ଓ ସ୍ୱକୀୟତାର ଗୋଟିଏ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଅଛି । ତେଣୁ ଆଜି ଓଡ଼ିଆ ସାହିତ୍ୟରେ ତାଙ୍କର ସ୍ଥାନ ଅଦ୍ୱିତୀୟ । ଏହାହିଁ ଆଲୋଚ୍ୟ ପ୍ରବନ୍ଧର ସାର ବସ୍ତୁ । ପ୍ରସଙ୍ଗକ୍ରମେ ଏଥିରେ ଗୋପବନ୍ଧୁଙ୍କ ରଚନାଶୈଳୀ, ରସ-ବିନ୍ୟାସ, ଅଳଙ୍କାର ସଂଯୋଜନା, ପ୍ରକୃତି ·ବର୍ଣ୍ଣନା ଇତ୍ୟାଦି ନାନା ବିଷୟ ଆଲୋଚନା କରାଯାଇଛି । ]

ଗୋପବନ୍ଧୁଙ୍କ ସାହିତ୍ୟିକ କୃତିର ପରିମାଣ ଖୁବ୍ ସ୍ୱଳ୍ପ । 'ଅବକାଶ ଚିନ୍ତା', 'ଧର୍ମପଦ'; ବନ୍ଦୀର ଆତ୍ମକଥା', କାରାକବିତା', 'ନଚିକେତା ଉପାଖ୍ୟାନ', 'ଗୋ-ମାହାତ୍ମ୍ୟ' ଏବଂ 'ସତ୍ୟବାଦୀ' ଓ ସମାଜ ପତ୍ରିକାର କେତୋଟି ସଂପାଦକୀୟ ସ୍ତମ୍ଭକୁ ଛାଡ଼ିଦେଲେ ତାଙ୍କର ସୃଷ୍ଟି ଧର୍ମୀ ସାହିତ୍ୟ ବୋଲି ଆଉ କିଛି ନାହିଁ । ସେ ଲେଖି ନାହାନ୍ତି ସୁବୃହତ୍ ଉପନ୍ୟାସ ବା ଗଳ୍ପ, ରଚନା କରିନାହାନ୍ତି ବିରାଟ ନାଟକ ବା କାବ୍ୟ-ରାଶି । ତଥାପି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ତାଙ୍କର ଦାନ ଅକଳନ, ଅନୁପମ । ତାଙ୍କ ସାହିତ୍ୟ-ରତ୍ନର ଗୋଟାଏ ଚିରନ୍ତନ ମୂଲ୍ୟ ଅଛି, ଗୋଟାଏ ସ୍ୱାତନ୍ତ୍ର୍ୟ ଅଛି । ଜାତୀୟ ଚରିତ୍ର ଗଠନ ଦିଗରେ ତାର ଗୁରୁ ଭୂମିକା ରହିଛି । ସର୍ବୋପରି ସାମାଜିକ ଚେତନାରେ ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରିବା ଦିଗରେ ତାର ବଳିଷ୍ଠ ଅବଦାନ ରହିଛି । ଅଧ୍ୟାପକ ଚିନ୍ତାମଣି ଦାସଙ୍କ ଭାଷାରେ—"ଗୋପ-ସାହିତ୍ୟର ପରିମାଣ ସ୍ୱଳ୍ପ ହେଲେ ହେଁ ତାହା ମୂଲ୍ୟବାନ, ଚନ୍ଦନ ପରି ତାର ସୌରଭ ଦିଗଦିଗନ୍ତ ବିଛୁରିତ । ଓଡ଼ିଆ ଜାତି ପ୍ରତି ସେ ସ୍ୱଳ୍ପ ସାହିତ୍ୟ ଚିର ପ୍ରେରଣାମନ୍ତ

ଆଲୋକ ବର୍ତ୍ତିକା । ସେ କୃତିରେ କେବଳ ପ୍ରାପ୍ତି ନାହିଁ, ନୂତନଭିର ଋଦ୍ଧର୍ଦ୍ଦର୍ଶନ ଅଛି, ସର୍ବୋଦୟର ବ୍ୟାପ୍ତି ଅଛି, ସନ୍ନ୍ୟାସୀର ବୈରାଗ୍ୟ ସାଧନା ଅଛି । ଅହିଂସାଧର୍ମୀ ବୀର ପୁରୁଷର 'ରଣ ହୁଂକାର' ଅଛି । କର୍ମଯୋଗର ପ୍ରବୃଦ୍ଧ ସ୍ପନ୍ଦନ ଓ ଜାଗରଣ ଅଛି, ସାମ୍ପ୍ରଦାୟିକତା ସହିତ ଚିରନ୍ତନ-ସାହିତ୍ୟର ସମ୍ମେଳନ ଅଛି । ଆଶା ନୈରାଶ୍ୟର ଆଲୋକ ଛାୟା ଅଛି । ଜାତିର ସର୍ବତୋମୁଖୀ ଶ୍ରେୟବୋଧର କଲ୍ୟାଣଶ୍ରୀ ମଣ୍ଡିତ ଅଭି-ପ୍ରକାଶ ଅଛି ଏବଂ ଅଛି ଏକ ସୂତ୍ରରେ ଗ୍ରଥିତ ମଣିଗଣ ପରି ମହାକାଳର ପ୍ରବହମାନ ଗତିଶୀଳତା—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗ ସାଧନା । × × ସୃଷ୍ଟି ସ୍ୱଳ୍ପ ହେଲେ ସୁଦ୍ଧା ଗୋପ-ସାହିତ୍ୟ ରତ୍ନ ପ୍ରସବ, ବିଶ୍ୱଜନୀନ, ଆତ୍ମାର ଉଦ୍ବୋଧନର ପ୍ରଶସ୍ତ ହେତୁ, ସଚେତନତାର ପ୍ରେରକ, ସୁନ୍ଦର, ମଧୁର, ଶ୍ରେୟ ଓ ମହତ୍ତ୍ୱର ଜାଗ୍ରତ-ମନ୍ତ୍ର ଏବଂ ମାନବତାର ପରମାଦର୍ଶ ।"

ବସ୍ତୁତଃ କହିବାକୁ ଗଲେ, ଗୋପବନ୍ଧୁ ସାହିତ୍ୟ ତାଙ୍କ ଜୀବନାନୁଭୂତି ପ୍ରସୂତ । ପରାଧୀନ ଓଡ଼ିଶାରେ ଦୁର୍ଦ୍ଦାନ୍ତ ବ୍ରିଟିଶ ସରକାରର ଦମନ, ଶୋଷଣ ଓ ପେଷଣ ସାଙ୍ଗକୁ ବ୍ୟାଧି, ବନ୍ୟା, ଦୁର୍ଭିକ୍ଷ ଭଳି ପ୍ରାକୃତିକ ବିପର୍ଯ୍ୟୟଜନିତ ସାମାଜିକ ସଂକଟ ବିଲୋକନରେ ମର୍ମାହତ ଗୋପବନ୍ଧୁଙ୍କର ଅନ୍ତରର ବେଦନା, ଯାତନା, ଶୋକୋଚ୍ଛ୍ୱାସ ଓ ସହାନୁଭୂତି କବିତା ରୂପରେ ସ୍ୱତଃ ଆତ୍ମପ୍ରକାଶ କରିଛି । ତାଙ୍କ ସାହିତ୍ୟ ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ । ତେଣୁ ସରଳ, ତରଳ, କାନ୍ତକୋମଳ ଭାଷାରେ ତାହା ରଚିତ । ଜାତୀୟ ଚେତନା ଜାଗରଣ ତାଙ୍କ ସାହିତ୍ୟର ଉଦ୍ଦେଶ୍ୟ, ତେଣୁ ତାଙ୍କ କବିତାବଳୀର ଛନ୍ଦେ ଛନ୍ଦେ ଜାତୀୟତାବାଦୀ ମନୋଭାବ ପ୍ରତିଫଳିତ । ଗୋପବନ୍ଧୁ ବ୍ୟକ୍ତିଗତ ଜୀବନରେ ଜଣେ ଧର୍ମପ୍ରାଣ, କର୍ମଯୋଗୀ, ସହାନୁଭୂତିଶୀଳ ପୁରୁଷ ଥିଲେ । ତେଣୁ ତାଙ୍କ ସାହିତ୍ୟରେ ଗୀତା ଉପନିଷଦର ଆଦର୍ଶ, କର୍ମଯୋଗର ଉତ୍କର୍ଷ ଏବଂ ଉନ୍ନତ ମାନବବାଦର ସ୍ୱରୂପ ପ୍ରକଟିତ । ଏତଦ୍ବ୍ୟତୀତ ତାଙ୍କ ରଚନାବଳୀର ସାହିତ୍ୟିକ ମୂଲ୍ୟ ମଧ୍ୟ କିଛି କମ୍ ନୁହେଁ । ତାହା ଭାଷା ବୈଭବର କାନ୍ତକୋମଳ ପଦାବଳୀରେ ରସାଣିତ, ଭାବ ପ୍ରବାହରେ ପ୍ରାଣବନ୍ତ, ଅଳଙ୍କାର ଝଙ୍କାରରେ ନିନାଦିତ, ରସ ବିନ୍ୟାସରେ ଜୀବନ୍ତ । ସେଥିରେ ତାଙ୍କର ମୌଳିକତା ଓ ସ୍ୱକୀୟତା ପୂର୍ଣ୍ଣମାତ୍ରାରେ ଅକ୍ଷୁର୍ଣ୍ଣ ରହିଛି ।

## ଗୋପ-ସାହିତ୍ୟର ପୃଷ୍ଠଭୂମି—

ଯୁଗେ ଯୁଗେ ସାହିତ୍ୟିକ ନିଜର ଜୀବନର ଜୀବନାନୁଭୂତି ଓ ପାରିପାର୍ଶ୍ୱିକ ପରିସ୍ଥିତିର ପ୍ରଭାବରେ ତାର ସାହିତ୍ୟକୁ ରୂପ ଦେଇଥାଏ । ଗୋପବନ୍ଧୁ ମଧ୍ୟ ଏହି ନିୟମରୁ ବ୍ୟତିକ୍ରାନ୍ତ ନୁହନ୍ତି । ସେ ଯେପରି ବାଲ୍ୟ ଜୀବନରେ ମାତାପିତାଙ୍କୁ ହରାଇ ଅତି ଦୁଃଖ କଷ୍ଟରେ ଜୀବନ କଟାଇଥିଲେ ଏବଂ ସାମାନ୍ୟ ଖନା ଥିବାରୁ ତାଙ୍କୁ ଯେଉଁଭଳି 'ଗୋପ ଦେଶଟାକୁ ଟେକି ଧରିବ' ଇତ୍ୟାଦି ଆକ୍ଷେପ ଓ ଅପମାନ ସହିବାକୁ ପଡ଼ିଥିଲା; ସେ ସବୁର ପ୍ରତିକ୍ରିୟା ସ୍ୱରୂପ ଖୁବ୍ କମ୍ ସମୟରେ ତାଙ୍କ ଅନ୍ତରରେ କବିତ୍ୱର ସଞ୍ଚାର ହୋଇଥିଲା । ସେ ପୁରୀ ଜିଲ୍ଲା ସ୍କୁଲରେ ଚତୁର୍ଥଶ୍ରେଣୀର ଛାତ୍ର ଥିଲାବେଳେ ,ଇନ୍ଦ୍ରଧନୁ'ରେ ତାଙ୍କର କବିତା ପ୍ରକାଶ ପାଉଥିଲା । ସେତେବେଳେ ସମୟ ଓ ଘଟଣାବଳୀର ପ୍ରଭାବରେ ସେ ଯେଉଁ କେତୋଟି କବିତା ରଚନା କରିଥିଲେ ସେଥିରୁ କେତେକ 'ଅବକାଶ ଚିନ୍ତା' ନାମରେ କବିତାଗୁଚ୍ଛ ଆକାରରେ ୧୮୯୯ରେ ପ୍ରଥମେ ପ୍ରକାଶ ପାଇଥିଲା । ୧୮୯୯ ଠାରୁ ୧୯୨୩ ପର୍ଯ୍ୟନ୍ତ ତାଙ୍କ କର୍ମମୟ ଜୀବନର ବ୍ୟସ୍ତତା ମଧ୍ୟରେ ଲେଖନୀ ଧାରଣ ଲାଗି ସୁଯୋଗ ମିଳି ନ ଥିଲା । ୧୯୨୩ ମସିହା ଜାନୁୟାରୀ ମାସରେ ସେ ଯେତେବେଳେ ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ରାଜନୈତିକ ବନ୍ଦୀ ରୂପେ ହଜାରିବାଗ୍ ଜେଲରେ ନିକ୍ଷିପ୍ତ ହେଲେ, ସେତେବେଳେ ପୁଣି ସାହିତ୍ୟ ସୃଷ୍ଟି ଲାଗି ସୁଯୋଗ ପାଇଲେ । ତାଙ୍କର ଅନ୍ତର୍ନିହିତ କବି-ପ୍ରତିଭା ସ୍ୱତଃସ୍ଫୂର୍ତ୍ତ ପରିପ୍ରକାଶ ପାଇଲା । 'ଧର୍ମପଦ', 'କାରାକବିତା' ଓ 'ବନ୍ଦୀର ଆତ୍ମକଥା' ମାଧ୍ୟମରେ ଏବଂ ସେଥିରେ ରୂପ ପାଇଲା ପ୍ରେମ, ବିଚ୍ଛେଦ, ପ୍ରକୃତି ବର୍ଣ୍ଣନା, ସ୍ୱଦେଶାନୁରାଗ, ବିଶ୍ୱପ୍ରୀତି, ବିଶ୍ୱପ୍ରୀତି ଜାତୀୟ ସମସ୍ୟା ଓ ସଙ୍କଟ ତଥା ମାନବ ଜାତିର ଅଭାବ, ଅନଟନର ମର୍ମନ୍ତୁଦ କରୁଣ କାହାଣୀ । ପରିଶେଷରେ ପ୍ରୌଢ଼ାବସ୍ଥାରେ 'ବ୍ରହ୍ମତତ୍ତ୍ୱ' ବା 'ନଚିକେତା ଉପାଖ୍ୟାନ' ରଚନା କରି ସେ ଦାନ, ଧର୍ମ, ନୀତି ଓ ଆଦର୍ଶର ପ୍ରଚାର କଲେ ଏବଂ 'ଗୋ-ମହାତ୍ମ୍ୟ'ର ଉତ୍କର୍ଷ ପ୍ରତିପାଦନ କରି ଧର୍ମ, ଅର୍ଥ, କାମ, ମୋକ୍ଷର ତାତ୍ପର୍ଯ୍ୟ ବ୍ୟାଖ୍ୟାନ କଲେ ।

## ଗୋପ-ସାହିତ୍ୟର ଆଭିମୁଖ୍ୟ—

ଗୋପବନ୍ଧୁଙ୍କ ସାହିତ୍ୟର ମୁଖ୍ୟ ଆଭିମୁଖ୍ୟ ହେଲା ପରାଧୀନା, ନିପତିତା, ଲାଞ୍ଛିତା, ନିଷ୍ପେଷିତା ଉତ୍କଳମାତାକୁ ସ୍ୱାଧୀନା, ସମୃଦ୍ଧା,

ସୁଜଳା, ସୁଫଳା ଜନନୀ ରୂପେ ଦଣ୍ଡାୟମାନ କରାଇବା । ତେଣୁ ଦେଶର ଯୁବଗୋଷ୍ଠୀ ପ୍ରତି ଆହ୍ୱାନ ଦେଇ ସେ ବରଂ ଜାତୀୟପ୍ରେମ ମାଧ୍ୟମରେ ମହାନ ବିଶ୍ୱପ୍ରେମର ସନ୍ଧାନ ଦେଇଥିଲେ । ତାଙ୍କ ନିଜ ଭାଷାରେ ପ୍ରକାଶ କଲେ—

"ଦଗ୍ଧ ହେଉ ଦେହ, ଭସ୍ମ ହେଉ ଘର,
ସ୍ୱରାଜ୍ୟ-ସାଧନେ କେବେହେ ନ ଡର ।
ନ ଛାଡ଼ ସାହସ, ନ ହୁଅ ନିରାଶ,
ହେଲେ ହେଉ ପଛେ କାରାଗାରେ ବାସ ।"
+ + +
"ଜାତୀୟ ମମତା ବିଶ୍ୱଜନ-ପ୍ରୀତି,
ଉତ୍କଳବାସୀର ହେବ ଏହା ନୀତି ।"

ଏହା ବ୍ୟତୀତ ମାନବ ସମାଜର ଆର୍ଥିକ ଉନ୍ନତି, ଚରିତ୍ରଗଠନ ଓ ବ୍ୟକ୍ତିତ୍ୱ ବିକାଶ ଥିଲା ତାଙ୍କ ସାହିତ୍ୟର ଅନ୍ୟତମ ମୁଖ୍ୟ ଉଦ୍ଦେଶ୍ୟ । ଏହାର ଉଦାହରଣସ୍ୱରୂପ 'ବନ୍ଦୀର ଆତ୍ମକଥା' ଓ 'ନଚିକେତା ଉପାଖ୍ୟାନ'ରୁ ଦୁଇଟି ପଂକ୍ତି ନିମ୍ନରେ ଉଦ୍ଧାର କରାଗଲା ।

"ସତ୍ୟ-ଶାନ୍ତି-ପଥେ ଚାଲ ଅବିରତ;
ଗ୍ରାମେ ଗ୍ରାମେ ସର୍ବେ କର ପଞ୍ଚାୟତ ।
ଚଳାଅ ଅରଟ ଛାଡି ମନ୍ଦ ଖିନ୍ତ;
ତେଜ ଉଚ୍ଚନୀଚ ଘୃଣା ଭେଦ-ନୀତି ।
ବେଶ୍ୟା, ନାରୀ, ନିଶା ଆଦି ଦୁରାଚାର,
ନ କରୁ ଦୂଷିତ ଗ୍ରାମ ପରିବାର ।
ଏ ଆଚାରେ ହେବ ଜଗତ ମଙ୍ଗଳ,
ଯଥାକାଳେ ମେଘ ବରଷିବ ଜଳ ।
ଧନଧାନ୍ୟେ ସୁଖୀ ହେବ ପ୍ରଜାଗଣ,
ନ ଦେଖ କି ଭାଇ ଏ ଶୁଭ ସୂଚନ ?"
(ବନ୍ଦୀର ଆତ୍ମକଥା)
× × ×
"ଚପଳ ବାଳକମତି ଅବିବେକୀ ନରେ
ଅନୁରାଗ ପ୍ରକାଶନ୍ତି ବାହ୍ୟ ବିଷୟରେ ।

ସୁଖଶଯ୍ୟା ଧନ ମାନ ବନିତ-ବିଳାସ
ଏ ଆଦି ଅନିତ୍ୟ କାମେ କରନ୍ତି ପ୍ରୟାସ ।
ସୁବିସ୍ତୀର୍ଣ୍ଣ ମୃତ୍ୟୁ ପାଶେ ହୁଅନ୍ତି ସେ ବନ୍ଦୀ
ଅବିଦ୍ୟା ଅନ୍ଧାରେ ବୃଥା କାମ କର୍ମେ ଛନ୍ଦି ।
ଜନ୍ମ, ମୃତ୍ୟୁ , ଜରା, ବ୍ୟାଧି, ଯନ୍ତ୍ରଣା ଅପାର
ଲଭନ୍ତି ଏ ମର୍ତ୍ତ୍ୟ ଧାମେ ଆସି ବାରମ୍ବାର ।
ବିବେକୀ ପୁରୁଷ ତେଣୁ ଡେକ ଭୋଗ ରାଶି
ଅମୃତତ୍ତ୍ୱ ଲାଗି ହୁଏ ଏକାନ୍ତ ପ୍ରୟାସୀ ।
×　　×　　×
ତେଣୁ ଅତି ସାବଧାନେ ଏକାଗ୍ର ମାନସେ
ନିରୋଧି ଇନ୍ଦ୍ରିୟଗଣ ରଜନୀ ଦିବସେ ।
ଜ୍ଞାନ-ଦୀପ ଜାଳି କର ଚିତ୍ତ ସମାହିତ
ଆତ୍ମ ଦରଶନେ ଯେବେ ବାଞ୍ଛା ନିତ୍ୟ ହିତ ।"
(ନଚିକେତା ଉପାଖ୍ୟାନ)

**ଗୋପବନ୍ଧୁଙ୍କ କବି-ପ୍ରତିଭା**—ଗୋପବନ୍ଧୁଙ୍କ ସାହିତ୍ୟ ଆଦର୍ଶାଭିମୁଖୀ ଓ ଧର୍ମାନୁରାଗୀ ହେଲେ ସୁଦ୍ଧା ତାହା ଶୁଷ୍କ, ନୀରସ ନୁହେଁ । ତାଙ୍କର ଭାବ-ଦ୍ୟୋତନା ଓ ପ୍ରକାଶଭଙ୍ଗୀ ପାଷାଣବତ୍ କଠିନ, କଠୋର ପ୍ରାଣକୁ ମଧ୍ୟ ମୁହୂର୍ତ୍ତକ ମଧ୍ୟରେ ଦ୍ରବୀଭୂତ କରିଦେବ । ଭଞ୍ଜ, ଦୀନକୃଷ୍ଣ, ରାଧାନାଥ ଓ ଗଙ୍ଗାଧରଙ୍କ ଭଳି ଗୋପବନ୍ଧୁଙ୍କ ସ୍ୱଳ୍ପ ସୃଷ୍ଟିରେ ମଧ୍ୟ ରସ-ବିନ୍ୟାସ, ଅଳଙ୍କାର ସଂଯୋଜନାଦି କାବ୍ୟୋପାଦାନ ଦେଖିବାକୁ ମିଳେ । ତେବେ ଗୋପବନ୍ଧୁଙ୍କ କବିତା କଳ୍ପନା-ବିଳାସର ଏକ ମନୋଜ୍ଞ ପ୍ରତିଚ୍ଛବି ନୁହେଁ, ତାହା ତାଙ୍କ ନିଜ ଜୀବନର ବିଷାଦ, ବିପର୍ଯ୍ୟୟ, ମାଧୁର୍ଯ୍ୟ, ପ୍ରାଚୁର୍ଯ୍ୟ, ଗାମ୍ଭୀର୍ଯ୍ୟ, ଔଦାର୍ଯ୍ୟ ଓ ପ୍ରସାରଶୀଳ ମନୋଭାବର ସରସ ମରପ୍ରକାଶ ମାତ୍ର । ତାହା ହିଁ ଗୋପବନ୍ଧୁଙ୍କ ସାହିତ୍ୟ ସୃଷ୍ଟିର ବୈଶିଷ୍ଟ୍ୟ, ସ୍ୱାତନ୍ତ୍ର୍ୟ । ତାହା ତାଙ୍କର ମୌଳିକତା, ସ୍ୱକୀୟତା । ତାଙ୍କର ଏକାନ୍ତ ନିଜସ୍ୱ ।

**ରଚନା ଶୈଳୀ**—ଆଗରୁ କୁହାଯାଇଛି, ଗୋପବନ୍ଧୁଙ୍କ ସାହିତ୍ୟ ସର୍ବସାଧାରଣ ଉଦ୍ଦେଶ୍ୟରେ ରଚିତ; ତାହା ସମଗ୍ର ଉତ୍କଳବାସୀଙ୍କ

ପାଇଁ ଉଦ୍ଦିଷ୍ଟ । ସେଥିପାଇଁ ସେ ନିଜର ମନୋଭାବର ପରିପ୍ରକାଶ ଲାଗି ଏଭଳି ଭାଷା ବ୍ୟବହାର କରିଛନ୍ତି ଯେ, ତାହା ଅତି ସରଳ, ସାବଲୀଳ, ହୃଦୟଗ୍ରାହୀ, ମର୍ମସ୍ପର୍ଶୀ, ଗାମ୍ଭୀର୍ଯ୍ୟବ୍ୟଞ୍ଜକ ଓ ରସୋଦ୍ଦୀପକ । ପଲ୍ଲୀ-ଜୀବନର ଜୀବନ୍ତ ଚିତ୍ର ପରିବେଷଣ କରିବାକୁ ଯାଇ ସେ ଯେଉଁ ଭାଷା ପ୍ରୟୋଗ କରିଛନ୍ତି, ଯଥା—

"ହଳ ଲେଉଟାଇ ଆସୁଥାଏ ଘେରି
ମୁଣ୍ଡେ ଘାସଗୋଚ୍ଛ ହାତେ ପାଞ୍ଚଣ,
ବଳଦ ଅଡ଼ାଇ ଢାଏ କେବେ ଗାଇ
'କିପାଁ ଗୁଡିଗଲୁ ତୁ ଲଇଖଣ ।"

ନିଜର ଗଭୀର ବିଷାଦାନୁଭୂତି ଓ ଭାବୋଚ୍ଛ୍ୱାସର ପରିପ୍ରକାଶ ବେଳକୁ ତାଙ୍କର ସେହି ଭାଷା ବଦଳି ଯାଇଛି । ଯଥା—

"ଉପୁଜିଲି ଅଲକ୍ଷିତେ କାହିଁ ଅମ୍ଳବିନ୍ଦୁ
ସ୍ୱାର୍ଥତାପେ ଛୁଣ୍ଡାଇଲା ପ୍ରୀତି-ପୟସିନ୍ଧୁ,
ଅହୋ ଶ୍ୟାମଳ ସ୍ନିଗ୍ଧ ଶୈଳଗର୍ଭେ ଲୁଚି
ଥିଲା ଶିଳା-ଭେଦକ୍ଷମ ସୂକ୍ଷ୍ମ ବଜ୍ରସୂଚୀ
ଅକସ୍ମାତେ ବିଦାରିଲା ଶଇଳ ଶିଖର
ଏକ ଶୃଙ୍ଗ ଦ୍ୱିଧା ଏବେ ଯୋଜନ ଅନ୍ତର ।"

ସେହିପରି ଜନନୀର ଦାରୁଣ ଦୁରବସ୍ଥା ବର୍ଣ୍ଣନା କଲାବେଳକୁ କମ୍ପା ଆତୁର, କାତର ପ୍ରଜାମଣ୍ଡଳକୁ ଉଦ୍‌ବୋଧନ ଦେଲାବେଳକୁ କବିଙ୍କର ଭାଷାବିନ୍ୟାସରେ ନୂତନତା ଦେଖାଦେଇଛି । ଯଥା—

"ଶୁଭେ ଚଉଦିଗେ କାତର ଚିତ୍କାର
ପଳାଏ ପରଜା ଛାଡ଼ି ଘର ଦ୍ୱାର ।
ପଥେ ଗର୍ଭିଣୀର ଭୟେ ଗର୍ଭସ୍ରାବ,
ଉଠଇ ଗୋଗୋଷ୍ଠେ ବିକଟାଳ ରାବ ।
ମହାବିପର୍ଯ୍ୟୟ, ମହା ବିଭୀଷିକା,
କମ୍ପେ ମହାତଙ୍କେ ଦୁଃଖିନୀ ଜନନୀ ।
+ + +

ଦୁଃଖିମା ଜନନୀ ନ ହୁଅ ଆତୁର,
ହେଉ ନର୍ଯ୍ୟାତନା ଧନଦ୍ରବ୍ୟ ଜୁର ।
+ + +
ନିଜ ଅଧିକାର ବୃଦ୍ଧି ଗୁଡ ଭୟ
ଧୈର୍ଯ୍ୟଧର ହେବ ନ୍ୟାୟ୍ୟଯୁଦ୍ଧେ ଜୟ ।
ପାଇବେ ତୋ ପୁଏ ନ୍ୟାୟ୍ୟ ଅଧିକାର,
ଘୁଞ୍ଚିବ ଉତ୍କଟ ଚିର ଅତ୍ୟାଚାର ।
ତୋ ଆଦର୍ଶ ହେଉ ଉତ୍କଳେ ଅକ୍ଷୟ
ଜାଗୁ ପ୍ରଜାକୁଳ ତୁଟୁ ରାଜଭୟ ।”

ଏହିପରି ଦେଖିବାକୁ ଗଲେ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଗୋପବନ୍ଧୁଙ୍କର ସମଗ୍ର ରଚନାରେ ଭାବ ପ୍ରକାଶ ସାଙ୍ଗକୁ ଭାଷା-ବିନ୍ୟାସ ତାଳ ମିଳାଇ ଚାଲିଛି; ଏବଂ ତାହା କେବଳ ଶ୍ରୁତି-ମଧୁର ହୋଇନାହିଁ, ତାହା ସଙ୍ଗେ ସଙ୍ଗେ ଅତି ମର୍ମସ୍ପର୍ଶୀ ହୋଇଛି ।

କେବଳ କବିତା ନାହିଁକି ଗୋପବନ୍ଧୁଙ୍କର ଗଦ୍ୟ ରଚନା ମଧ୍ୟ ଅତି ଭାବୋଦ୍ଦୀପକ ଓ କାବ୍ୟୋପମ । ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ରାବାସରେ ପରଲୋକ ଯାତ୍ରା କରିଥିବା ଭାଗୀରଥି ନାମକ ଜଣେ ପିତୃମାତୃହୀନ ଦରିଦ୍ର ବାଳକର ସ୍ମୃତିତର୍ପଣ କରି ସେ ମାସିକ 'ସତ୍ୟବାଦୀ'ର ସ୍ତମ୍ଭରେ ଯାହା ଲେଖିଥିଲେ—"ଆଜି ଶ୍ରୀପଞ୍ଚମୀ, ପିଲାଏ ଗୀତ ବୋଲୁଛନ୍ତି କାହିଁ ତୋ ସ୍ୱର ଶୁଭୁନାହିଁ । ସଙ୍ଗୀମାନଙ୍କର ସଙ୍ଗୀତର ଝଙ୍କାର ସେତେ ଉଠୁନାହିଁ । ଗଛ ଉହାଡ଼ରେ ରହି ଥରେ ହେଲେ ମିଶାଇ ଦଉନାହିଁ । + + + ଅବୋଧଶିଶୁ, ଏବେ ସରସ୍ୱତୀ ନେଲାବେଳେ ବାଟରେ ସେଇ ଚିତାଭସ୍ମରେ ଗଡ଼ୁଛି ଯେ ଭାଗୀରଥି କି ଆଉ କାହିଁ ପାଇବ ? ଚିତାମାଟିକି ଦେହରେ ବୋଳି ହେଉଛ, ହୁଅ, ଭାଗୀରଥି କ'ଣ ଆଉ ସେଠରୁ ଉଠି ବାହାରିବ ?" ତାହା ତାଙ୍କର ପଦ୍ୟାତ୍ମକ ଗଦ୍ୟଶୈଳୀର ପ୍ରକୃଷ୍ଟ ପରିଚ୍ଛେଦକ । ଏଭଳି ଭାବବହୁଳ ଭାଷାରେ ତାଙ୍କ ଗଦ୍ୟ ସାହିତ୍ୟ ଭରପୂର ।

**ରସ-ବିନ୍ୟାସ**—କେବଳ ଭାଷା ବୈଭବ ନାହିଁକି, ରସ-ବିନ୍ୟାସରେ ମଧ୍ୟ ଗୋପବନ୍ଧୁଙ୍କ ରଚନାବଳୀ ଋଦ୍ଧିମନ୍ତ । ନିମ୍ନଲିଖିତ କେତୋଟି ଉଦାହରଣ ଏହାର ଭୂୟିଷ୍ଠ ପ୍ରମାଣ ଦେବ । ପ୍ରଥମତଃ,

ଗୋପବନ୍ଧୁ ଶୃଙ୍ଗାର ରସୋଦ୍ଦୀପକ କବିତାଗୁଡ଼ିକ ରଚନା କରି ନ ଥିଲେ ମଧ୍ୟ ତାଙ୍କ କବିତାରେ ଆଦ୍ୟରସର ଇଙ୍ଗିତ ଦୃଷ୍ଟିଗୋଚର ହୁଏ । ଯଥା—

"ଏକକୁ ଅନାଇ ଆନ ନେଇ ଅଶ୍ରୁ ଧାର,
ବହିବ କାହିଁକି ଭେଦି ହୃଦୟ ଦୁଆର ।
ତୁ ଛାଡ଼ିଲେ ମୁଁ ତ ତତେ ନ ଛାଡ଼ିବି କ୍ଷଣେ,
କହିବ କି ଏକ ଆନେ ଇଙ୍ଗିତ ଲକ୍ଷଣେ ।
+ + +
ବିକଶିବ ପ୍ରେମ ତେବେ ଅଭିନବ ରାଗେ,
ଯୁଗଳ କମଳ କଳି ଫୁଟିବ ପରାଗେ ।"

କିମ୍ବା

"ଫୁଲଶରେ ପ୍ରେମ ଖୋଜିଲେ କି ବନେ,
ପ୍ରେମ ଯେ ଅନନ୍ତ ଅକ୍ଷୟ ଧାର ।
ଦୂରେ କଲେ ସତେ ହେବ କି ଅନ୍ତର,
ତୁମେ ଯେ ମୋ ପ୍ରାଣ ପ୍ରତ୍ୟୟ-କାର ।"

ଏହା ବ୍ୟତୀତ, ଶାନ୍ତ, କରୁଣ, ବୀର, ବାତ୍ସଲ୍ୟ, ରୌଦ୍ର, ଅଦ୍ଭୁତାଦି ରସର ମୂର୍ଚ୍ଛନା ମଧ୍ୟ ତାଙ୍କ ରଚନାରେ ଅଭାବ ନାହିଁ । ଯଥା—

ପ୍ରିୟଜନ ପ୍ରିୟସ୍ଥାନ ମୁଁ ଛାଡ଼ି ବନ୍ଦୀ ଏଠାରେ,
ବିରହ ବିଷମ ବିନ୍ଧେ ମୋ ମନ-ମର୍ମ ଘାରେ ।"
+ + +
"କାତରତା ବିନା କାପୁରୁଷ ପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ,
ନ ମରେ ସେ କେଉଁ ପରୱା ଆତଙ୍କେ ।"
+ + +

"ମୋ ନୈବପିଭୁଳ          ଗୁଣ୍ଡ଼ି କରେ ତୋତେ
ପାରିବ କି କ୍ଷଣେ ବାନ୍ଧି;
ମୋ ଅନ୍ଧାର ଘରେ          ତୁ ଏକା ପ୍ରଦୀପ
ମୋ ହୃଦ-ସିନ୍ଧୁର କଣ୍ଢି ।"

\+ + +

"କନକାର ରାଜଧାନୀ ଚଉପାଶେ
ପ୍ରେତ ଆତ୍ମା ଯେବେ ଉଡ଼ଇ ଆକାଶେ ।
ବିନ୍ଦୁ ବିନ୍ଦୁ ରକ୍ତ ପଡ଼େ ତଳୁଁ ତଳେ,
ସେ ରକ୍ତେ ଭୀଷଣ ଅଗ୍ନିଶିଖା ଜଳେ ।"

\+ + +

"ମହା ବିପର୍ଯ୍ୟୟ, ମହା ବିଭୀଷିକା,
କମ୍ପେ ମହାତଙ୍କେ ଦୁଃଖିନୀ କନକା ।
ବହେ ଅଣଗ୍ରିଶ ଝଡ଼ଝଡ଼ା ବାତ,
ଏ କି ଭୟଙ୍କର ଅଦ୍ଭୁତ ଉତ୍ପାତ ।"

\+ + +

"ନବ ଯଉବନୀ          କାଖେ ପିଲା ଧେନି
ଚାଲି ନ ପାରଇ ଜଘନ ଭରେ,
ତା ପୃଷ୍ଠେ ଚପଳ          ଯୁବା ସଙ୍ଗୀଦଳ
ପରିହାସେ ଏକ ଆନକୁ ଠାରେ ।"

**ଅଳଙ୍କାର ସଂଯୋଜନା**—ଗୋପବନ୍ଧୁ-ସାହିତ୍ୟ ରସ ବିନ୍ୟାସରେ ଯେପରି ବୁଦ୍ଧିମନ୍ତ, ଅଳଙ୍କାର ସଂଯୋଜନାରେ ମଧ୍ୟ ସେପରି ଉନ୍ନତ । ତାଙ୍କର ରଚନାରେ ଉପମା, ରୂପକ, ଅନୁପ୍ରାସାଦି କେତେକ ଅଳଙ୍କାରର ଉଦାହରଣ ବିରଳ ନୁହେଁ । ଯଥା—

"ନର ଶରୀର ଏକ ଅପୂର୍ବ ସ୍ୟନ୍ଦନ
ଚକ୍ଷୁ ଆଦି ପଞ୍ଚ ଅଶ୍ୱ ଏଥିରେ ବାହନ ।
ଜୀବ ରଥୀ ପୁଣି ବୁଦ୍ଧି ସାରଥି ଏ ରଥେ
ଦଉଡ଼ନ୍ତି ଅଶ୍ୱେ ରୂପ ରସ ଆଦି ପଥେ ।"

\+ + +

"ପରଶିବା ମାତ୍ରେ ତୋ ତନୁ     ସୁଶୀତଳ ସମୀର
ଊର୍ମି ଛଳେ ଲଜ ଭୟରେ     କମ୍ପି ଉଠେ ତୋ ନୀର ।
କୁଳକାମିନୀର ଏପରି     ସିନା ମହତ ସ୍ୱତ
ଲଜ୍ଜାବଶ ହୋଇ ଏକାନ୍ତେ     କାନ୍ତେ ଆଚରେ ପ୍ରୀତି ।"

\+ \+ \+

"ଶୁଖିଲା ବାଉଁଶ ରଣ୍ଡି     ଫୁଟୁଥିବ ଘନ ଘନ
ହେଙ୍ଗୁଳା ପବନ ବେଗେ     ବଜୁଥିବ ସନସନ ।"

\+ \+ \+

"ମିଶେ ସରିତ ଯଥା ମହାସାଗରେ
ଜଡ଼େ ବଲ୍ଲରୀ ଯଥା ତରୁ ଅଙ୍ଗରେ,
ନୀଳ ନୀରଦେ ଯଥା ଖେଳେ ଚପଳା
ନଝର ଧାର ଯଥା ଗିରି ମେଖଳା ।
ନାଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବି-କରେ ହରଷେ,
ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବ ବିଶ୍ୱପ୍ରେମେ ପରମାନନ୍ଦେ ।"

\+ \+ \+

"କାହା ଗୃହ ଭସ୍ମ, କାହା ଶସ୍ୟ ନଷ୍ଟ
କାହା ପୁଅ ଶୋକେ କାରାଗାରେ କଷ୍ଟ !
ଏଥିଲାଗି ଭାଇ ନ କର ଭାବନା
ଏ ତ ବିନାଶେଷେ କୁଶଳ ସୃଜନା ।"

\+ \+ \+

"କୃଷ୍ଣ ମେଘେ ପଡ଼ି କନକ କିରଣ
ସୃଜନ୍ତି ଆହା କି ବିଚିତ୍ର ବରଣ,
ଏପରି ମହତ ଜନର ପ୍ରଭାବ
ଜନ୍ମାଏ ଅପର ପ୍ରାଣେ ନିଜ ଭାବ ।"

\+ \+ \+

"ବିନା ପ୍ରଜାଶକ୍ତି     ରାଜାର କି ଗତି
ରାଜା ପ୍ରଜା ନୁହେଁ ଶ୍ୟେନ କପୋତ,
ପ୍ରଜା-ଜଳ-ବିନ୍ଦୁ     ମିଳି ରାଜ୍ୟସିନ୍ଧୁ
ରାଜା ସେ ସଲିଳେ କେବଳ ସ୍ରୋତ ।"

ସର୍ବୋପରି, ରାଧାନାଥ, ଗଙ୍ଗାଧର, ମଧୁସୂଦନ ପ୍ରମୁଖଙ୍କ ସାହିତ୍ୟ ଭଳି ଗୋପବନ୍ଧୁଙ୍କ ରଚନାରେ ମଧ୍ୟ ପ୍ରକୃତି-ପ୍ରେମ, ସ୍ୱଦେଶାନୁରାଗ, ମାନବପ୍ରୀତି ଓ ଈଶ୍ୱରଭକ୍ତିର ବର୍ଣ୍ଣନା ସ୍ପଷ୍ଟ ପ୍ରତିଭାତ ହୁଏ ।

**ପ୍ରକୃତି ବର୍ଣ୍ଣନା**—ଗୋପବନ୍ଧୁଙ୍କୁ ପ୍ରକୃତି-କବି ଆଖ୍ୟା ମିଳିନାହିଁ ସତ, ତଥାପି ତାଙ୍କ ପ୍ରକୃତି ବର୍ଣ୍ଣନା ଅତି ଚମତ୍କାର ଓ ହୃଦୟସ୍ପର୍ଶୀ । କବି ନିଜେ ସ୍ୱୀକାର କରିଅଛନ୍ତି ଯେ—

"ସମାଜ ନିଷ୍ଠୁର  କରେ ଯାକୁ ଦୂର,
ସେ ଲୁଚେଁ ପ୍ରକୃତି ପ୍ରେମୁଁ ବାହାର,"

ସୁତରାଂ ସେ ପ୍ରକୃତିକୁ ମୁକ୍ତ ପ୍ରାଣରେ ଅତି ଆନ୍ତରିକତାର ସହ ସନ୍ଦର୍ଶନ କରିଛନ୍ତି ଏବଂ ତାକୁ ବିଭିନ୍ନ ଦୃଷ୍ଟିକୋଣରୁ ଚିତ୍ରଣ କରିଛନ୍ତି । କବି ଗୋପବନ୍ଧୁ ହଜାରିବାଗ୍ ଜେଲରେ ରାଜନୈତିକ ବନ୍ଦୀ ରୂପେ ଥିବା ସମୟରେ ସ୍ୱଦେଶ ଚିନ୍ତାରେ ବିଭୋର ହୋଇ ମଳୟ ପବନର ସଂସ୍ପର୍ଶରେ ଆସିଥିବା ଉତ୍କଳର ପ୍ରାକୃତିକ ବିଭବ ବର୍ଣ୍ଣନା କରି ଗାଇଛନ୍ତି—

"ସେ ସ୍ନିଗ୍ଧ ପରଶେ  ନିମିଷ ସମ୍ଭାଷେ
ତାପିତ ପ୍ରାଣ ମୋ ପୂରେ ପୁଲକେ
କେତେ ସୁଖ-ସ୍ମୃତି  ଜାଗେ ଏ ଅନ୍ତରେ
କେତେ ଚିତ୍ରଚିହ୍ନ ନାଚେ ପଲକେ ।

× × ×

କରିଥିବ ଭେଟ  ଚମ୍ପା ମୁକୁଟ
ମହେନ୍ଦ୍ର ଶଇଳ ସୁବାସ ଫୁଲ,
ତବ ସମାଗମେ  ନାଚିଥିବ ପ୍ରେମେ
ଦୋହଲାଇ ଚତୁର୍ଭୁଜ ସଂକୁଳ ।

× × ×

ଆଲିଙ୍ଗନ ଆଶେ  ତବ ପଥ ପାଶେ
ଚିଲିକା ଆବେଗେ ଥିବ ଅନାଇ,
ମୁକ୍ତ ନୀଳକେଶୀ  ଶ୍ୟାମ ଶୋଭାରାଶି—
ଗିରି-ଶିଖ ସ୍ଥିତ ବକ୍ଷ-ମେଲାଇ ।

ଚଞ୍ଚଳ ହିଲ୍ଲୋଳେ ଗୁରୁ ଗଣ୍ଡସ୍ଥଳେ
ଚୁମ୍ବି ଥିବ ଯେବେ ଗାଢ଼େ ସମୀର,
ସୁଂଦର ସର୍ବାଙ୍ଗେ ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସ କମ୍ପାଇ ମୀର ।

× × ×

ସୁମଧୁର ତାନେ ତବ ଆବାହନେ
ଗାଇଥିବ ପିକ ସ୍ୱାଗତ ଗୀତି
ବକୁଳ ତମାଳ ଦେଇଥିବେ ତାଳ
ପୂରି ଉଠିଥିବ ପରମ ପ୍ରୀତି ।

× × ×

ସର୍ବଗ୍ରାସୀ କାଳ ପ୍ରାଚୀନ ଉତ୍କଳ
କଳା କଉଶଳ କରେ ଗରାସ,
ବୈଭବ କଙ୍କାଳ ବଳେଇକ ଅନଳ
ପାଇଥିବ ପ୍ରାଣେ ଗଭୀର ତ୍ରାସ ।

× × ×

ବିଧ୍ୱସ୍ତ ଐଶ୍ୱର୍ଯ୍ୟ ମଧ୍ୟେ ଧରି ଧୈର୍ଯ୍ୟ
ଉଭା ଲିଙ୍ଗରାଜ ତୁଙ୍ଗ ମନ୍ଦିର
ମହା ଶମଶାନେ ଯଥା ଖରାସନେ
ଯୋଗାରୂଢ କଳ୍ପଯୋଗୀ ଶଙ୍କର ।

× × ×

ବେଶି ବେଳ ତହିଁ ନ ଥିବ ତ ରହି
କିଏ ସେ ରହିବ ହୃଦୟ ବନ୍ଧି !
ସେ ବିଷାଦମୟ ଭଗ୍ନ ଦୃଶ୍ୟଚୟ
ଦେଖି କାହା ଛାତି ପାରିବ ସହି ।

× × ×

ଆସି ଅଛ ଭ୍ରମି କେତେ ପୁଣ୍ୟ ଧାମେ
ଲଗାଇ ଦିଅ ମୋ ଶିରେ ପ୍ରାସାଦ,
ସେ ପୁଣ୍ୟ ପରଶେ ଘୁଞ୍ଚୁ ଅବସାଦ
ଅପସରୁ ହୃଦୁଁ ମୋହ ପ୍ରମାଦ ।”

ଉଲ୍ଲିଖିତ ବର୍ଣ୍ଣନାରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ଗୋପବନ୍ଧୁଙ୍କ ପ୍ରକୃତି ଜଡ଼ ନୁହେଁ, ଜୀବନ୍ତ । ମଳୟ ସମୀର ଦକ୍ଷିଣ ଓଡ଼ିଶା ମଞ୍ଜୁଷା-ଠାରୁ ଆରମ୍ଭ କରି ଖଣ୍ଡଗିରି, ଭୁବନେଶ୍ୱର, ସାକ୍ଷୀଗୋପାଳ, ପୁରୀ, କଟକ, ସମ୍ବଲପୁର ଦେଇ ହଜାରିବାଗ୍‌ରେ ପହଞ୍ଚିଛି । ତାକୁ ମହେନ୍ଦ୍ର ଶଇଳ, ଚିଲିକାର ନୀଳ ଜଳ, ସନ୍ଧ୍ୟାବାଗର ବକୁଳ, ତମାଳ ସମସ୍ତେ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଛନ୍ତି । କିନ୍ତୁ ସୁଜଳା, ସୁଫଳା, କଳାଶ୍ରୀମଣ୍ଡିତା ଉତ୍କଳର ବିଧ୍ୱସ୍ତ ଐଶ୍ୱର୍ଯ୍ୟ ଦେଖି ତାର ପ୍ରାଣରେ ଖେଦ, ବିଷାଦ ଭରିଉଠିଛି । ସେ ସେଠାରେ ବେଶି ସମୟ ନ ରହି ଚାଲିଆସିଛି । ସ୍ଥୂଳତଃ କହିବାକୁ ଗଲେ, କବି ପ୍ରକୃତିଠାରେ ମନୁଷ୍ୟତ୍ୱ ଆରୋପ କରି ତାକୁ ପ୍ରାଣବନ୍ତ କରିଛନ୍ତି । କେବଳ ସେତିକି ନୁହେଁ, ତାଠାରେ ସେ ଦେବତ୍ୱ ମଧ୍ୟ ଆରୋପ କରିଛନ୍ତି । ତାଙ୍କର ଭୂଲୀର ରୂପାୟିତ ମଳୟ-ସମୀର ସାକ୍ଷୀଗୋପାଳ ମନ୍ଦିରର ଗୋପୀନାଥ-ରାଧିକାଙ୍କର ମନ କଥା ମଧ୍ୟ ଜାଣି ପାରିଛି ।

"ଦେଉଳେ ପ୍ରବେଶି ଗୋପୀନାଥ ବଂଶୀ
ରନ୍ଧ୍ରେ ରଚୁଥିବ ଅସ୍ଫୁଟ ସ୍ୱନ,
ରାଧିକା-ଅଞ୍ଚଳ ଉଡ଼ାଇ ଚଞ୍ଚଳ
କରିଥିବ ଜାଣି ଦୋହିଙ୍କ ମନ ।
ହସି ଉଠିଥିବେ ଯୁଗଳ ମୂରତି
ଖସି ପଡ଼ିଥିବ ଶ୍ରୀଅଙ୍ଗୁ ଫୁଲ,
ନବ ଘନ ଶିରେ ଆହା କି ରୁଚିରେ
ହଲୁଥିବ ତାଙ୍କ ମୟୂରଚୂଳ ।"

ଗୋପବନ୍ଧୁଙ୍କ ପ୍ରକୃତି କେବଳ ଜୀବନ୍ତ ନୁହେଁ, ତାହା ଆଦର୍ଶ-ମୟ ମଧ୍ୟ । ତାହା ମାନବ-ସମାଜ ପାଇଁ କେବଳ ଶାନ୍ତି, ସୌନ୍ଦର୍ଯ୍ୟ ଓ ପ୍ରେରଣାର ଭଣ୍ଡାର ନୁହେଁ, ନୀତି ଶାସ୍ତ୍ରର ଏକ ମହାନ୍ ଗ୍ରନ୍ଥ ମଧ୍ୟ । ପ୍ରକୃତିଠାରେ ଏପରି ଅନେକ ସଦ୍‌ଗୁଣ ଅଛି, ଯାହା ମନୁଷ୍ୟର ଏକାନ୍ତ ଅନୁକରଣୀୟ । ଗୋପବନ୍ଧୁଙ୍କ ପ୍ରକୃତିରାଣୀ ଶାନ୍ତି, ସେବା, ଦୟା, ସମତା, ବଦାନ୍ୟତା ଆଦି ବହୁ ଗୁଣର ଅଧିକାରିଣୀ । ତାଙ୍କ ଭାଷାରେ ବର୍ଣ୍ଣନା କାଲେ—

"ମାଳତୀ ମାଧବୀ ସର୍ବଦା ସାଧବୀ
ଦେବଦାରୁ ଶାଳ ଭୁଜ ଆଶ୍ରୟେ,
ସୁଗୃହିଣୀ ସମ ଢାଳନ୍ତି ଆରାମ
ସ୍ନିଗ୍ଧ ଛାୟାଦାନେ ପାନ୍ଥ ହୃଦୟେ ।"

+ + +

"ନର ପ୍ରତି ନର କରେ ଅବିଚାର
ପ୍ରକୃତି ସକଳେ ଦେଖେ ସମାନ,
ହେ ମଳୟାନିଳ ସୁଗନ୍ଧ ଶୀତଳ
ପ୍ରବାହେ ପରଶ ମୋ ଦଗ୍ଧ ପ୍ରାଣ ।"

× × ×

"ବିଶ୍ୱ ପ୍ରକୃତିରେ ଦେଖିଲେ ସମ ହୃଦ-ବେଦନା
ତାପିତ ଅନ୍ତରେ ଆସିବ ଅବା କ୍ଷଣେ ସାନ୍ତ୍ୱନା ।"

ଗୋପବନ୍ଧୁ ପ୍ରକୃତିକୁ କେବଳ ପ୍ରଶାନ୍ତ, ସୌମ୍ୟ ଓ ଉଦାର ଭାବେ ବର୍ଣ୍ଣନା କରି ନାହାନ୍ତି, ତାର ରୌଦ୍ର, ପ୍ରଚଣ୍ଡ ମୂର୍ତ୍ତି ମଧ୍ୟ ଜୀବନ୍ତ କରି ତୋଳିଛନ୍ତି । ଯଥା—

"ଶୃଙ୍ଖଳ ବାଉଁଶ ଗଣ୍ଡି ଫୁଟୁଥିବ ଘନ ଘନ,
ହେଙ୍ଗୁଳା ପବନ ବେଗେ ବହୁଥିବ ସନ ସନ ।
ସିନ୍ଦୂର ବରଣ ଶିଖା ରକ୍ତ ଜିଭ ଲହ ଲହ,
ପରୁଷ ପବନ ପାତେ ଉଠୁଥିବ ଶହ ଶହ ।"

ସଂକ୍ଷେପରେ ଶ୍ରୀ ପ୍ରାଣନାଥ ମହାନ୍ତିଙ୍କ ଭାଷାରେ କହିଲେ, "ଗୋପବନ୍ଧୁ-କବିତାରେ ପ୍ରକୃତି ଚିତ୍ର-ଛବି ଅନୁଶୀଳନ କଲେ ଜଣାଯାଏ ଯେ—(୧) କବିଙ୍କ ଦୃଷ୍ଟିରେ ପ୍ରକୃତି ହେଉଛି ସୌନ୍ଦର୍ଯ୍ୟ, ଶାନ୍ତି ଏବଂ ପ୍ରେରଣାର ଏକ ଅକ୍ଷୟ ଭଣ୍ଡାର । (୨) ପ୍ରକୃତି ସହିତ ମାନବଜୀବନର ସମ୍ବନ୍ଧ ଅବିଚ୍ଛିନ୍ନ; ପ୍ରକୃତିର ମାନବଜୀବନ ଉପରେ ପ୍ରଭାବ ଏବଂ ମାନବଜୀବନର ପ୍ରକୃତି ଉପରେ ପ୍ରଭାବ ଅନ୍ତର୍ନିହିତ । (୩) ସାମାଜିକ, ରାଷ୍ଟ୍ରୀୟ ଓ ଅନ୍ତଃରାଷ୍ଟ୍ରୀୟ ଜୀବନ ସଂଘର୍ଷ ମଧ୍ୟରେ ପ୍ରକୃତି ହିଁ ସମଦର୍ଶୀ ଭାବାପନ୍ନ । (୪) ପ୍ରକୃତିର ମାଧ୍ୟମରେ କବି ଜାତୀୟ ଭାବ, ମହାଭାରତୀୟ ଭାବ ଏବଂ ସର୍ବୋପରି ବିଶ୍ୱଶାନ୍ତିର ଏକ ମହିମାମୟ ଆଦର୍ଶ ଦେଶ ଓ ଜାତି ସମକ୍ଷରେ ଉପସ୍ଥାପିତ କରିଛନ୍ତି ।"

**ସ୍ୱଦେଶପ୍ରୀତି**—ଗୋପବନ୍ଧୁ ପ୍ରଥମେ ଉତ୍କଳୀୟ, ପରେ ଭାରତୀୟ ଏବଂ ଶେଷରେ ବିଶ୍ୱ-ନାଗରିକ । ତେଣୁ ଗୋପବନ୍ଧୁଙ୍କ ସାହିତ୍ୟର ଛନ୍ଦେ ଛନ୍ଦେ ତାଙ୍କ ସ୍ୱଦେଶପ୍ରୀତିର ପରିଚୟ ମିଳେ । ସେ ମୁକ୍ତ କଣ୍ଠରେ ଗାଇଛନ୍ତି—

"ଜଗତ-ସରସେ ଭାରତ-କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।
ଥିଲେ ଯହିଁ ତହିଁ ଭାରତ ବକ୍ଷରେ
ମଣିବି ମୁଁ ଅଛି ଆପଣା କକ୍ଷରେ
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ,
ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟଧାମ ।
ସକଳ ସଲିଳ ପଞ୍ଚତୀର୍ଥ ଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।"

ଏହା ବ୍ୟତୀତ, ପୂର୍ବ ବର୍ଣ୍ଣିତ ପ୍ରକୃତି ଚିତ୍ରଣ ମଧ୍ୟରେ ବି ତାଙ୍କର ଗଭୀର ସ୍ୱଦେଶାନୁରାଗ ପ୍ରଚ୍ଛନ୍ନ ରହିଛି । ତେବେ ଗୋପବନ୍ଧୁ ସଙ୍କୀର୍ଣ୍ଣ ଉତ୍କଳୀୟତାର ଏକାନ୍ତ ପକ୍ଷପାତୀ ନ ଥିଲେ । ସେ କହୁଥିଲେ—

"ଜାତୀୟ ମମତା ବିଶ୍ୱ ଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ରୀତି ।"

**ମାନବପ୍ରୀତି ଓ ଈଶ୍ୱରଭକ୍ତି**—ପ୍ରକୃତି ପ୍ରୀତି ଓ ସ୍ୱଦେଶବତ୍ସଳତା ସାଙ୍ଗକୁ ଗୋପବନ୍ଧୁଙ୍କର ହୃଦୟର ଉଦାରତା ଓ ବିଶାଳତା ତଥା ମନର ଦୃଢ଼ତା, ଜ୍ଞାନର ବିଶୁଦ୍ଧତା ଓ ବିବେକର ପରିପକ୍ୱତା ବିଶେଷ ଉଲ୍ଲେଖଯୋଗ୍ୟ । ସେ ଜନସମାଜର ଦୁଃଖଯନ୍ତ୍ରଣାରେ ଯେଭଳି ମ୍ରିୟମାଣ, ଭଗବାନଙ୍କ ନିକଟରେ ଆତ୍ମସମର୍ପଣ କରିବାରେ ସେପରି ମୁକ୍ତପ୍ରାଣ । ଏଣୁ ତାଙ୍କ ସାହିତ୍ୟରେ ଦେଖିବାକୁ ମିଳେ "କୁଳାଙ୍ଗନା ପରେ ଘୋର ଆକ୍ରମଣ, ବିକଳେ ବିଧୁରା କରଇ ରୋଦନ" ଭଳି ସହାନୁଭୂତି ଓ ସମବେଦନାସୂଚକ ବାଣୀ ସାଙ୍ଗକୁ ଅନ୍ତରର ଆକୁଳ କାତର ପ୍ରାର୍ଥନା-ବାଣୀ—

"ମାତ ଜଗଦମ୍ବା କୁଳ କୁଣ୍ଡଳିନୀ
ଅଗୋଚର ତୋର କିବା ଗୋ ଭାବିନୀ !
ପ୍ରପୀଡ଼ନେ ପ୍ରଜା କରେ ହା ହା ନାଦ
ମିଳି ନାହିଁ କି ମା ତୋତେ ଏ ସମ୍ବାଦ ?

ଯେତେ ଦେବ ଦେବୀ ଅନନ୍ତ ଉତ୍କଳେ
ଯାଆନ୍ତି ସବୁ ସେ ସର୍ବେ ନୀଳାଚଳେ ।
\+ \+ \+
କରୁଣା କଟାକ୍ଷେ ଗୃହାନ୍ତୁ ସେ ବାରେ
ବାଜବ ସ୍ୱରାଜ୍ୟ ଶଙ୍ଖ ସିଂହଦ୍ୱାର ।"

ପ୍ରକୃତରେ ଗୋପବନ୍ଧୁଙ୍କର ପ୍ରଭୁଭକ୍ତି ଅତି ପ୍ରଗାଢ଼ ଥିଲା । ସେ ଭାରତର ଯେ କୌଣସି ସ୍ଥାନରେ ଥିଲେ ନୀଳଚକ୍ର ତଳେ ଥିଲା ପରି ମଣୁଥିଲେ ଏବଂ ଜଗନ୍ନାଥ ହିଁ ଶରଣ ବୋଲି ଭାବୁଥିଲେ । ତାଙ୍କ ନିଜ ଭାଷାରେ ପ୍ରକାଶ କଲେ—

"ଥିଲେ ଯହିଁ ତହିଁ ଭାରତ ଶଯ୍ୟାରେ
ମଣିବି ମୁଁ ଅଛି ନୀଳଚକ୍ର ତଳେ ।
ପ୍ରଭୁ ଜଗନ୍ନାଥ ପତିତପାବନ !
ଜୀବନେ ମରଣେ ତୁମ୍ଭେ ମୋ ଶରଣ ।"

ଏ ସମସ୍ତ ଦିଗରୁ ବିଚାର କଲେ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ପଣ୍ଡିତ ଗୋପବନ୍ଧୁଙ୍କର ଅନନ୍ୟସାଧାରଣ କବି ପ୍ରତିଭା, ମୌଳିକ ଚିନ୍ତାଧାରା, ସର୍ବଜନବୋଧ କାନ୍ତ କୋମଳ ପଦାବଳୀ, ସରସ ରସ ବିନ୍ୟାସ ଓ ଅଳଙ୍କାର ସଂଯୋଜନାର ପଟାନ୍ତର ନାହିଁ; ତାଙ୍କର ସୂକ୍ଷ୍ମ ପ୍ରକୃତି ପ୍ରାଣତା, ଗଭୀର ସ୍ୱଦେଶାନୁରାଗ, ଚରମ ମାନବ ପ୍ରୀତି ଓ ଆନ୍ତରିକ ବିଭୁ-ଭକ୍ତିର ତୁଳନା ନାହିଁ । ବନ୍ୟା, ବାତ୍ୟା, ଦୁର୍ଭିକ୍ଷପ୍ରପୀଡ଼ିତ ଜନତାଙ୍କ ପାଇଁ କର୍ମାଦର୍ଶସମ୍ବଳିତ ଗୋପବନ୍ଧୁ-ସାହିତ୍ୟ ଆଶା-ଆଲୋକର ଏକ ଅଫୁରନ୍ତ ଉତ୍ସ । ନୀତି, ଆଦର୍ଶ ଓ ଆଧ୍ୟାତ୍ମିକ ଚେତନା ଦ୍ୟୋତକ ଗୋପବନ୍ଧୁ ସାହିତ୍ୟରେ ନିହିତ ଆଜିର ନୈତିକ ଅରାଜକତା ଦୁନିଆର ବିଭିନ୍ନ ବିଷମ ସମସ୍ୟାର ସମାଧାନ ସୂତ୍ର । ରାଜ୍ୟ ଶାସନ ତଥା ରାଷ୍ଟ୍ରୀୟ ଓ ଅନ୍ତଃରାଷ୍ଟ୍ରୀୟ ସ୍ତରରେ ପ୍ରଶଂସନୀୟ ନୀତି ନିରୂପଣ ଲାଗି ତାହା ଏକ ଶାସନ-ସଂହିତା ସ୍ୱରୂପ । କେବଳ ବର୍ତ୍ତମାନ କାଳରେ କାହିଁକି, ଆଗାମୀ ଯୁଗ ଯୁଗ ପାଇଁ ଗୋପବନ୍ଧୁ ସାହିତ୍ୟର ମୂଲ୍ୟ କଳନାତୀତ । ଏଥିଯୋଗୁଁ ଓଡ଼ିଆ ସାହିତ୍ୟରେ ଗୋପବନ୍ଧୁ ଏକ ବିଶିଷ୍ଟ ଆସନର ଅଧିକାରୀ ଏବଂ ତାଙ୍କର ସେହି ଆସ୍ଥାନ ଅଟି ସୁଦୃଢ଼, ଚିରନ୍ତନମୟ ।

●

# ଗାନ୍ଧିବାଦର ପୂର୍ବରୂପ

## ଶ୍ରୀ ବିଶ୍ୱନାଥ ଦାସ

[ ସ୍ୱାଧୀନତା ସଂଗ୍ରାମ ଓ ନବ ଉତ୍କଳ ନିର୍ମାଣର ବରିଷ୍ଠ କର୍ଣ୍ଣଧାର ଆଧୁନିକ ଓଡ଼ିଆ ତଥା ଭାରତର ସୁପରିଚିତ ଜନନେତା, ଓଡ଼ିଶା ପ୍ରଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଓ ପୂର୍ବତନ ମୁଖ୍ୟମନ୍ତ୍ରୀ, ଉତ୍ତର ପ୍ରଦେଶର ପୂର୍ବତନ ରାଜ୍ୟପାଳ ଓ ଲୋକସେବକ ମଣ୍ଡଳର ସଭାପତି ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ସ୍ୱର୍ଗତ ଗୋପବନ୍ଧୁଙ୍କ କର୍ମପ୍ରବାହ ଓ ଚିନ୍ତାଧାରା ସହିତ ଓତପ୍ରୋତ ଭାବେ ଜଡ଼ିତ ଥିଲେ । ଆଲୋଚ୍ୟ ପ୍ରବନ୍ଧରେ ସେ ସ୍ୱୀୟ ଅନୁଭୂତିକୁ କେନ୍ଦ୍ର କରି ଗୋପବନ୍ଧୁଙ୍କୁ ଗାନ୍ଧିଜୀଙ୍କର ପୂର୍ବ ଅବତାର ରୂପେ ଚିତ୍ରଣ କରିଅଛନ୍ତି – ସଂ ]

ଶ୍ରୀମଦ୍ଭାଗବତରେ ଲୁହାଯାଇଛି ଯେ ଶ୍ରୀକୃଷ୍ଣଙ୍କର ଅବତାର ପୂର୍ବରୁ କେତେକ ସାଧକ ସେହି ଅବତାର ପୁରୁଷଙ୍କର ଯେଉଁ ଉଦ୍ଦେଶ୍ୟ ତାହାର ସମର୍ଥନ କରି ସେହି ଦିଗରେ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ଚୈତନ୍ୟ ଚରିତାମୃତରେ ମଧ୍ୟ କବିରାଜ ଗୋସ୍ୱାମୀ ଏହି ପ୍ରଦର୍ଶନୀ ମାତ୍ର ଅବଲମ୍ବନ କରି ଲେଖିଛନ୍ତି । ଆମ୍ଭମାନଙ୍କର ପୂଜ୍ୟ ଗୋପବନ୍ଧୁଙ୍କ ଆଦର୍ଶ ସେହିପରି ଗାନ୍ଧିବାଦର ପୂର୍ବ ରୂପ ଥିଲା । ଏପରିକି ଖଦଡ଼ ପିନ୍ଧିବା, ସୂତା କାଟିବା, କପାଚାଷ କରିବା ଇତ୍ୟାଦି ଗାନ୍ଧିବାଦର ଯେଉଁ ଗଠନମୂଳକ ଯୋଜନା, ତାହା ଗାନ୍ଧି ଦକ୍ଷିଣ ଆଫ୍ରିକା ଛାଡ଼ି ଭାରତ ଆସିବା ପୂର୍ବରୁ ଓଡିଶାରେ ଗୋପବନ୍ଧୁ ଆରମ୍ଭ କରିଦେଇ-ଥିଲେ । କୁଟୀରଶିଳ୍ପର ପ୍ରସାର ଦିଗରେ ସେ ଆପ୍ରାଣ ଉଦ୍ୟମ କରିଥିଲେ । ବିଶେଷତଃ ଓଡ଼ିଶାରେ ଲୁଣଶିଳ୍ପର ପୁନରୁଦ୍ଧାର ନିମନ୍ତେ ସେ ବହୁ ଶ୍ରମ ସ୍ୱୀକାର କରିଥିଲେ ।

ଆଦର୍ଶ ଶିକ୍ଷାର ପ୍ରବର୍ତ୍ତନ ବିନା ସମାଜର ପୁନର୍ଗଠନ ଅସମ୍ଭବ । ଏ ଯୋଗରେ ମଧ୍ୟ ସେ ଗାନ୍ଧୀଙ୍କର ପୂର୍ବ ରୂପ ଥିଲେ । ଗାନ୍ଧୀ ଯେପରି

'ନୟୀ ତାଲିମ'ର ସ୍ଲୋଗାନ ଦେଇ ଓ୍ୱାର୍ଦ୍ଧାଠାରେ ଶିକ୍ଷାଶ୍ରମ ପ୍ରତିଷ୍ଠା କରିଥିଲେ, ଗୋପବନ୍ଧୁ ମଧ୍ୟ ସେହିପରି ସତ୍ୟବାଦୀରେ ତାଙ୍କର ଜାତୀୟ ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରିଦେଇଥିଲେ । ରାଷ୍ଟ୍ର ନିୟନ୍ତ୍ରଣର ବାହାରେ ସ୍ୱାଧୀନ ଭାବେ ଭାରତୀୟ ସଂସ୍କୃତି ଓ ପରମ୍ପରାର ପୁନରୁଦ୍ଧାର କରିବା ଥିଲା ଉଭୟଙ୍କର ଲକ୍ଷ୍ୟ । ସେତେବେଳେ ଡକ୍ଟର ସେଡ୍‌ଲର୍ କମିଶନ ଭାରତ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ସାର୍ ଆଶୁତୋଷ ମୁଖାର୍ଜି ଥିଲେ ସେହି କମିଶନର ଅନ୍ୟତମ ସଦସ୍ୟ । କମିଶନ ଆସି ସତ୍ୟବାଦୀ ଶିକ୍ଷା ପଦ୍ଧତି ଅନୁଧ୍ୟାନ କରି ଗୋପବନ୍ଧୁଙ୍କ ଉଦ୍ୟମର ଭୂୟସୀ ପ୍ରଶଂସା କରିଥିଲେ ।

ମହାତ୍ମା ମୁନସିରାମଙ୍କ * ପରି ଗୋପବନ୍ଧୁ ବି. ଏଲ୍. ପାଶ କଲା ପରେ ପ୍ରଥମେ ଓକିଲାତି କଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ସତ୍ୟବାଦୀଠାରେ ଆଦର୍ଶ ବିଦ୍ୟାଳୟ ମାଧ୍ୟମରେ ଆଦର୍ଶ ଶିକ୍ଷାର ପ୍ରବର୍ତ୍ତନ ଓ ପ୍ରସାର । ସେଥିପାଇଁ ସେ ପ୍ରଥମେ ଧନ, ସ୍ଥାନ ଓ କର୍ମୀର ସନ୍ଧାନ ନେଲେ ଏବଂ କିଛି ଧନ ଅର୍ଜନ କରିସାରିବା ପରେ ଶିକ୍ଷାପ୍ରସାର ଦିଗରେ ମନ ନିୟୋଗ କଲେ ।

ସତ୍ୟବାଦୀ ସ୍କୁଲ୍ ବନ୍ଦ ହୋଇଯିବାର କିଛି ବର୍ଷ ପରେ ଗୋଦାବରୀଶ ବାବୁ, ନୀଳକଣ୍ଠ ବାବୁ ଓ ମୋର ଉଦ୍ୟମରେ ସତ୍ୟବାଦୀ

---

*—ମହାତ୍ମା ମୁନ୍‌ସିରାମ (ସ୍ୱାମୀ ଶ୍ରଦ୍ଧାନନ୍ଦ)ଙ୍କର ପ୍ରଧାନ ଉଦ୍ଦେଶ୍ୟଥିଲା ବୈଦିକ ଧର୍ମକୁ ପୁନରୁଜ୍ଜୀବିତ କରି ତାହାର ଆଦର୍ଶରେ ନୂଆ ଦୁନିଆ ଗଠନ । ସେଥିପାଇଁ ବିଶ୍ୱବିଦ୍ୟାଳୟକୁ ମାଧ୍ୟମ ରୂପେ ନେଇ ଗୁରୁକୁଳ ଆଶ୍ରମର ପରିକଳ୍ପନା କରି ବୈଦିକ ଆଦର୍ଶକୁ ବଞ୍ଚାଇବାକୁ ହେଲେ ଅର୍ଥ, ସ୍ଥାନ ଓ କର୍ମୀ ଦରକାର । ତେଣୁ ସେ ଅର୍ଥ ଉପାର୍ଜନ ଉଦ୍ଦେଶ୍ୟରେ ଓକିଲାତି ଆରମ୍ଭ କଲେ । ଯେଉଁଦିନ ଉପାର୍ଜନ ପଚିଶ ହଜାର ଟଙ୍କାରେ ପହଞ୍ଚିଗଲା, ସେହିଦିନ ସେ ଓକିଲାତି ବନ୍ଦ କରିଦେଲେ ଏବଂ ହରିଦ୍ୱାର ଠାରେ ଗୁରୁକୁଳ କାଙ୍ଗାଡି ପ୍ରତିଷ୍ଠା କଲେ । ତାହା ବର୍ତ୍ତମାନ ଗୁରୁକୁଳ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଛି ।

ସ୍କୁଲର ପୁନରୁଦ୍ଧାର କରିବା ନିମନ୍ତେ ଗୋଟିଏ ବିଧିବଦ୍ଧ ଯୋଜନା ପ୍ରସ୍ତୁତ ହେଲା । ମୁଁ କହିଲି—"ଦାସେ ଆପଣ ସମ୍ମତ ହେଲେ ମୁଁ ଏଥିରେ ଯୋଗ ଦେବି ।" ଦାସେ ଆପଣଙ୍କ ସହ ଏ ବିଷୟରେ ପରାମର୍ଶ କରିବା ଭାର ମଧ୍ୟ ମୋ ଉପରେ ପଡ଼ିଲା । ପ୍ରଦେଶ କଂଗ୍ରେସ କମିଟି ବୈଠକକୁ ଯିବା ବାଟରେ ଖୋର୍ଦ୍ଧାଠାରେ କଥାବାର୍ତ୍ତା ଛଳରେ ମୁଁ ତାଙ୍କ ନିକଟରେ ଏ ପ୍ରସଙ୍ଗ ଉଠାଇଲି । ସଙ୍ଗେ ସଙ୍ଗେ ତାଙ୍କ ମନୋଭାବର ପରିବର୍ତ୍ତନ ଦେଖାଗଲା । ସେ କହିଲେ—"ବିଶ୍ୱନାଥ ! ତୁମେ ଏ ସମ୍ବନ୍ଧରେ ମୋତେ କେବେ କିଛି କହିବ ନାହିଁ ।" "କାହିଁକି ?" ବୋଲି ମୁଁ ପଚାରିଲି । ସେ କହିଲେ—

"ଦେଖ, ସେ ସ୍କୁଲର ଉନ୍ନତି ପାଇଁ ମୁଁ ମନ ପ୍ରାଣ ଦେଇ ଲାଗିଲି ଏବଂ ବନ୍ଧୁମାନଙ୍କୁ ମଧ୍ୟ ସେଥିରେ ଲଗାଇଲି । ମୁଁ ଆଶା କରିଥିଲି, ଏଇ ଶ୍ରେଣୀର ବିଦ୍ୟାର୍ଥୀମାନେ ଦେଶ ପାଇଁ ଛିଡ଼ା ହେବେ ଏବଂ ଯେ କୌଣସି ପ୍ରକାର ତ୍ୟାଗ ବରଣ କରିବାକୁ କୁଣ୍ଠାବୋଧ କରିବେ ନାହିଁ । ଦେଶର ଡାକରା ଆସିଲା; ସତ୍ୟାଗ୍ରହ ଡାକ ପଡ଼ିଲା । ସତ୍ୟବାଦୀ ସ୍କୁଲରୁ ଯାଇ ଯେତେ ଜଣ ସରକାରୀ ଚାକିରି କରିଥିଲେ, କାହିଁ କେହି ହେଲେ ତ ସରକାରୀ ଚାକିରୀ ଛାଡ଼ି ଜାତୀୟ ସଂଗ୍ରାମରେ ଯୋଗ ଦେବାକୁ ଆସିଲେ ନାହିଁ ? ଅତଏବ ଏ ଶିକ୍ଷାପଦ୍ଧତିରେ ମୋର ଆଉ ବିଶ୍ୱାସ ନାହିଁ ।"

ତାଙ୍କଠାରୁ ଏହା ଶୁଣିବା ପରେ ମୁଁ ଚୁପ୍ ରହିଲି । ମୁଁ ସେଥିରୁ କ୍ଷାନ୍ତ ହେବା ସଙ୍ଗେ ସଙ୍ଗେ ସେହି ଉଦ୍ୟମର ଉପସଂହାର ଘଟିଥିଲା ।

ଗୋପବନ୍ଧୁ ଦାସ, ଅଭିରାମ ଭଞ୍ଜ, ବ୍ରଜସୁନ୍ଦର ଦାସ ଓ ଗୋପାଳ ପ୍ରହରାଜ—ଏ ଚାରିଜଣଯାକ ମେଧାବୀ, ଯୋଗ୍ୟ ଓ ବନ୍ଧୁ ମଧ୍ୟ । ଏ ସମସ୍ତେ ଥିଲେ କୁଳବୃଦ୍ଧ ମଧୁସୂଦନଙ୍କର ଶିଷ୍ୟ । ସମସ୍ତେ ଦେଶ ପାଇଁ ମିଳିତ ଉଦ୍ୟମ ଆରମ୍ଭ କଲେ । ଗୋପାଳବାବୁ ସାଂସ୍କୃତିକ କ୍ଷେତ୍ରରେ ମନଯୋଗ କଲେ । ଭାଷାକୋଷ ତାଙ୍କର ଶ୍ରେଷ୍ଠ ଅବଦାନ । ବ୍ରଜସୁନ୍ଦର ଦାସ ଅନ୍ୟତମ ପ୍ରଧାନ ସାହିତ୍ୟସେବୀ ଓ 'ମୁକୁର'ର ସମ୍ପାଦକ । ଅଭିରାମ ଭଞ୍ଜ ମଧ୍ୟ ଅନୁପମ ସାହିତ୍ୟସେବୀ । କିନ୍ତୁ ଏ

ସ୍ୱମସ୍ତଙ୍କୁ ଗୋପବନ୍ଧୁ ଟପିଗଲେ ତାଙ୍କର ଅସୀମ ସେବା ଓ ତ୍ୟାଗ ବଳରେ । ସେ ନିଜ ପରିବାର, କନ୍ୟା, ନାତି, ନାତୁଣୀ କାହା ପାଇଁ କିଛି ନ ରଖି ତାଙ୍କର ଉତ୍ତରାଧିକାରଗତ ସମ୍ପତ୍ତି ଥିଲା ସବୁ ଦେଶ ପାଇଁ ଅର୍ପଣ କରିଗଲେ । ତାଙ୍କର ଦେଶପ୍ରୀତି ଥିଲା ଅପରିସୀମ ।

ଏତଦୁପରି ସେ ମହାତ୍ମା ଗାନ୍ଧୀଙ୍କ ଭଳି ମାନବିକ ସହାନୁଭୂତିର ପ୍ରତୀକ ଥିଲେ । ଥରେ ସେ ତାଙ୍କର ସହକର୍ମୀ ଆସିକାର ହରିହର ପଣ୍ଡାଙ୍କ ଘରକୁ ଆସିଥିଲେ । ପଣ୍ଡେ ବିଶ୍ରାମ କରିଥିବା ସମୟରେ ଜଣେ ମହକିଲ ଆସି ଅତି ବ୍ୟାକୁଳ ହେଲା । ତାର ବ୍ୟାକୁଳତା ସହ୍ୟ କରି ନ ପାରି ଗୋପବନ୍ଧୁ ତାକୁ କହିଲେ—"ଦେଖ, ମୁଁ ମଧ୍ୟ ଜଣେ ଓକିଲ । ମୁଁ ଯାଇ ଛିଡ଼ାହେଲେ ଯଦି ଚଳିବ, ତେବେ ମୁଁ ଯିବାକୁ ପ୍ରସ୍ତୁତ ଅଛି ।"

ଜଣେ ଜଣେ ବିଶିଷ୍ଟ ମହାପୁରୁଷଙ୍କର ଅବିର୍ଭାବ ପୂର୍ବରୁ ଅନ୍ୟ କେତେକ ମହାନ୍ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଥାଏ । ପୁରାଣ ଓ ଇତିହାସ ଏହାର ପ୍ରଧାନ ସାକ୍ଷୀ । ସେହି ନୀତିରେ ଭାରତରେ ଗାନ୍ଧୀଙ୍କର ଆବିର୍ଭାବ ପୂର୍ବରୁ ଓଡ଼ିଶାରେ ତାଙ୍କର ପୂର୍ବ ରୂପ ଗ୍ରହଣ କରି ଗୋପବନ୍ଧୁ ଜନ୍ମ ହୋଇଥିଲେ ।

# ମନୁଷ୍ୟତାର ମାପକାଠି

## ୬ ପଣ୍ଡିତ ଗୋଦାବରୀଶ ମିଶ୍ର

[ ପଣ୍ଡିତ ଗୋପବନ୍ଧୁଙ୍କର ସହକର୍ମୀ ତଥା ଓଡ଼ିଶାର ଅନ୍ୟତମ ସ୍ୱନାମଧନ୍ୟ କବି, ଲେଖକ, ବକ୍ତା ଓ ବ୍ୟବସ୍ଥାପକ ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର ଆଲୋଚ୍ୟ ପ୍ରବନ୍ଧରେ ନିଜ ଅନୁଭୂତିକୁ କେନ୍ଦ୍ର କରି ଗୋପବନ୍ଧୁଙ୍କର ବିଶ୍ୱସ୍ତ ଭୃତ୍ୟ ବ୍ରମାକୁ ଉତ୍କଳମଣିଙ୍କ ମହାନ୍ ବ୍ୟକ୍ତିତ୍ୱର ପରିମାପକ ରୂପେ ଉପସ୍ଥାପନ କରିଅଛନ୍ତି । ଏହି ପ୍ରବନ୍ଧଟି ୧୯୫୫ ମସିହାରେ ରଚିତ ହୋଇଥିଲା ଏବଂ 'ସମାଜ'ର ୨୭ତମ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ପ୍ରକାଶ ପାଇଥିଲା ।—ସଂ ]

ପଣ୍ଡିତ ଗୋପବନ୍ଧୁ ବିଭିନ୍ନ କ୍ଷେତ୍ରରେ ଅତି ଉଚ୍ଚ ଆସନ ପାଆନ୍ତି । ସେ ସୁକବି, ସୁଲେଖକ, ସୁବକ୍ତା । ତାଙ୍କ ମୃତ୍ୟୁ ପରେ ଏବେ ଚଉଠା ଶତାବ୍ଦୀ ଉପରେ ବିତିଗଲାଣି । ଦେଶର କବି, ଲେଖକ ଓ ବକ୍ତା ବାହାରିଲେଣି । ହୁଏତ ଏସବୁ କ୍ଷେତ୍ରରୁ କୌଣସି କୌଣସିଟିରେ ତାଙ୍କୁ ଟପିବା ଭଳି ବ୍ୟକ୍ତି ଓଡ଼ିଶାରେ ବାହାରିଲେଣି । କିନ୍ତୁ ସବୁ କ୍ଷେତ୍ରରେ ସମାନ ଭାବରେ ତାଙ୍କ ସମକକ୍ଷ ବ୍ୟକ୍ତି ଜଣେ ଏକାଧାରରେ ବାହାରିଥିବାର ଦେଖାଯାଉ ନାହିଁ । ଏସବୁ ଛଡ଼ା ଗୋପବନ୍ଧୁଙ୍କର ଆହୁରି ଅନେକ ଗୁଣ ଥିଲା । ସେ ଦରିଦ୍ରର ବନ୍ଧୁ, ଦୁଃସ୍ଥର ସେବକ ଓ ନିରାଶ୍ରୟର ଆଶ୍ରୟଦାତା ଥିଲେ । ପ୍ରାଣମୂର୍ଚ୍ଛି ଅନ୍ୟର ସେବା ରେ ନିଜକୁ ନିଯୁକ୍ତ କରୁଥିଲେ । ତାଙ୍କର ବିଶାଳ ପରିକଳ୍ପନା ଥିଲା ।

କିନ୍ତୁ ଏସବୁଥିରୁ ତାଙ୍କର ପୂର୍ଣ୍ଣ ମହତ୍ତ୍ୱ କଳନା କରିହେବ ନାହିଁ ତାଙ୍କର ବିଶେଷତ୍ୱ ହେଉଛି ତାଙ୍କର ବିରାଟ ବ୍ୟକ୍ତିତ୍ୱ । ସେହି ବ୍ୟକ୍ତିତ୍ୱ ବଳରେ ସେ ଶତ୍ରୁଠାରୁ ସୁଦ୍ଧା ପ୍ରଶଂସା ପାଉଥିଲେ । ୧୯୧୦ରୁ ୧୯୨୦ ମସିହା ମଧ୍ୟରେ ପୁରୀରେ ଜଣେ ଧନୀ ବଙ୍ଗୀୟ ଯୁବକ ବାସ କରୁଥିଲେ ।

ତାଙ୍କ ନାମ କୁମାର ଶାନ୍ତିଶେଖରେଶ୍ୱର ରାୟ । ସେ ତାଙ୍କ ଉଚ୍ଚ ଅଭିଳାଷର ବିକାଶ ନିମନ୍ତେ ନିଜ ପ୍ରଦେଶରେ କ୍ଷେତ୍ର ନ ପାଇ ଓଡ଼ିଶାକୁ ଆସିଥିଲେ । ବିଭିନ୍ନ ନିର୍ବାଚନରେ ଠିଆ ହୋଇ ଜୟଯୁକ୍ତ ହେବାକୁ ନାନା ଉପାୟ ଅବଲମ୍ବନ କରୁଥିଲେ । ଥରେ ଏକ ନିର୍ବାଚନରେ ସେ ପଣ୍ଡିତ ଗୋପବନ୍ଧୁଙ୍କ ସାହାଯ୍ୟ ଲୋଡ଼ିଲେ । ଦୁହିଁଙ୍କ ମଧ୍ୟରେ ଦୁଇ ତିନି ଘଣ୍ଟା କଥାବାର୍ତ୍ତା ଓ ଯୁକ୍ତିତର୍କ ହେଲା । ମୁଁ ଉପସ୍ଥିତ ଥାଏ । ଶେଷରେ ଶାନ୍ତି ଶେଖର ନିରାଶ ହୋଇ ଫେରିଲେ । ମୁଁ ତାଙ୍କୁ ଆଗେଇ ଦେବାକୁ ଗଲି । ସେ ମୋତେ କହିଲେ, "ଯାହାଙ୍କର କି ଚୁମ୍ବକ ଅଛି କେଜାଣି, ମୁଁ ପରାହତ ଓ କ୍ଷୁବ୍ଧ ହୋଇଯାଉଥିଲେ ସୁଦ୍ଧା ଯାହାଙ୍କ ପ୍ରତି ମୋ ଭକ୍ତିର କଣିକାଏ କମୁ ନାହିଁ । ସେଥିପାଇଁ ବିଦାୟ ନେଲାବେଳେ ମୁଁ ପାଦରୁ ଧୂଳିନେଇ ମୁଣ୍ଡରେ ଲଗାଇ ଆସିଲି ।

ଗୋପବନ୍ଧୁଙ୍କର ଏ ବିରାଟ ବ୍ୟକ୍ତିତ୍ୱ ନାନା ଘଟଣାରେ ପରିସ୍ଫୁଟ ହୋଇଛି । ତେଣୁ ଆଜି ତାଙ୍କ 'କାରା କବିତା' ଆବୃତ୍ତି କରି କର୍ମୀମାନେ ଉଦ୍‌ବୁଦ୍ଧ ହୁଅନ୍ତି । ସେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ପରି ଦାତା, ଲୋକମାନ୍ୟ ତିଳକଙ୍କ ପରି ପଣ୍ଡିତ ବା ରାଜଗୋପାଳାଚାରୀଙ୍କ ପରି କୂଟନୀତିଜ୍ଞ ନ ଥିଲେ, ସେ ଥିଲେ ମନୁଷ୍ୟ ଓ ଦେଶବାସୀଙ୍କୁ ମାନବିକତା ବନ୍ଧନରେ ବାନ୍ଧି ପାରୁଥିଲେ । ନିଜର ଭୋଗବିଳାସରେ ସେ ପାହୁଲାଏ ବ୍ୟୟ କରୁ ନ ଥିଲେ । ଅଳ୍ପ ପରିଚୟରେ ଲୋକେ ତାଙ୍କୁ କୃପଣ ମଣିବାର ଅବକାଶ ନ ଥିଲା, ଅବଶ୍ୟ କେହି ସେପରି ମନେ କରୁ ନ ଥିଲେ ।

ଏବେ ମାସେ, ଦେଢ଼ ମାସ ତଳେ ମୁଁ ଭୁବନେଶ୍ୱରରେ ମୋ କୋଠରୀରେ ବସିଛି । ଜଣେ ଦାଢ଼ି ରଖିଥିବା ବୟସ୍କ ଲୋକ ହଠାତ୍ ଆସି ପହଞ୍ଚିଲେ । ସେ ନିଜର ପରିଚୟ ଦେଇ କହିଲେ, "ମୁଁ ରାମା ।" ମୋର ଆଉ ବେଶି ପରିଚୟ ଦରକାର ହେଲା ନାହିଁ । ରାମାକୁ ମୁଁ ଭଲରୂପେ ଜାଣେ । ମୋ ପାଖେ ଚଉକି ଥିଲା, ସେଥିରେ ମୁଁ ତାକୁ ବସିବାକୁ କହିଲି । ସେ ବସିଲେ ନାହିଁ । ଖଟରେ ମଧ୍ୟ ନ ବସି ସେ ତଳେ ବସି ପଡ଼ିଲେ । ଚାଳିଶ ବର୍ଷ ତଳର ଅନେକ ହାଲଚାଲ ପଡ଼ିଲା । ସେ ଏ ମଧ୍ୟରେ ଜୀବିକା ଉପାର୍ଜନ ନିମନ୍ତେ ବର୍ତ୍ତମାନ ସମୟରେ ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟରେ ଦପ୍ତରି କାମ କରୁଥିଲେ । ସେ ଗୁରୁଙ୍କର

ତାଙ୍କର ଆଉ ନାହିଁ । ସେ କପଟ ଚକ୍ରୁଛନ୍ତି, ମୁଁ ପଚାରିଲି । ସେ କେତେକ କଥା କହିଲେ । ସେଥିରୁ ମୁଁ ବୁଝିପାରିଲି ଯେ ତାଙ୍କର ନିଅଣ୍ଟିଆ ପକ୍ଷ । ତାହୁଁ ଆଉ କଅଣ କାହିଁକି କରୁ ନାହାନ୍ତି, ମୁଁ ପଚାରିଲି ।

ରାମା ନିଜର ସ୍ୱଭାବସୁଲଭ ସରଳତାରେ କେତେଗୁଡ଼ାଏ କଥା କହିଗଲେ । ତା ଭିତରେ ସେ କହିଲେ, "ଆନ ବୃତ୍ତି କରିବାକୁ ମନ ଯାଉ ନାହିଁ ପରା ! ମୁଁ ଦାସ ଆପଣଙ୍କ ପାଖେ ରହିଲି ଦଶ ବର୍ଷରୁ ଅଧିକ । ମୁଁ ତାଙ୍କର ଚାକର; ସେ ମୋ ମୁନିବ । ସେ ମୋତେ ନିଜ ଅନ୍ନ ଜଳରେ ପାଳିଥିଲେ । କିନ୍ତୁ ଦିନେ ମୁଁ ଚାକର ବୋଲି ଅନୁଭବ କରି ନାହିଁ । ମୁଁ ଶୋଇପଡ଼ିଲେ ସେ ମୋତେ ଉଠାନ୍ତି ନାହିଁ, ହାତେ ହାତେ କାମ କରି ନିଅନ୍ତି । ସେତେବେଳେ ମୋର ବାପାଙ୍କ କଥା ମନେ ପଡ଼ିଯାଏ । ପ୍ରକୃତରେ ଗୋପବନ୍ଧୁ ବାବୁ ମୋତେ ପୁଅ ଦୃଷ୍ଟିରେ ଦେଖୁଥିଲେ । କାହାକୁ ସେ ପର ମଣୁଥିଲେ ? ଆପଣ କ'ଣ ଜାଣନ୍ତି ନାହିଁ ?"—କହି, ସେ ଆଖି ଛଳ ଛଳ କରିପକାଇଲେ । ବହୁ କାଳର ବିସ୍ମୃତ ସ୍ମୃତି ଜାଗିଉଠିଲା । ମୋ ଆଖି ମଧ୍ୟ ଓଦା ହୋଇଆସିଲା ।

ମୁଁ ସତ୍ୟବାଦୀ ବିଦ୍ୟାଳୟରେ ଶିକ୍ଷକତା କରୁଥିବା ବେଳେ ରାମା ବୋଧହୁଏ ମୋ ପ୍ରତି ଅନୁରକ୍ତ ଥିଲେ । କାରଣ ଗୋପବନ୍ଧୁ ବାବୁ ନଥିଲା ଦିନମାନ ସେ ମୋ ପଛେ ପଛେ ବହୁତ-ଗୋଡ଼ାନ୍ତି । ଗୋଡ଼ାଇବାର କାରଣ ହେଉଛି, ଗୋପବନ୍ଧୁ ବାବୁଙ୍କ ନଗୁଆଣି ଦୁଧ ମୋତେ ଖାଇବାକୁ ଦେବା । ମୁନିବଙ୍କ ଅନୁପସ୍ଥିତିରେ ଭୃତ୍ୟର ଭୋଗ୍ୟ ଖାଇବାରେ ମୋର ବିଶେଷ ଆଗ୍ରହ ନ ଥାଏ । ତେଣୁ ମୁଁ ଦୁଧ ଖାଇବାକୁ ଧରାହୁଅଁ ଦିଏ ନାହିଁ । ଦିନେ ଦିନେ ରମାକୁ ଖାଇଦେବାକୁ କହେ । ଶୁଣିଛି, ମୁନିବ ଘରେ ଚାକରମାନେ ଦୁଧ ଡାବରେ ମୁହଁ ଲଗାଇ ପିଇ ଅଇଁଠା ଦୁଧ ମୁନିବଙ୍କ ପାଇଁ ରଖିଦିଅନ୍ତି । କିନ୍ତୁ ରମା ସେ ଧରଣର ଚାକର ନ ଥିଲେ । ସେ ଥିଲେ ଗୋପବନ୍ଧୁଙ୍କ ପରି ନିଜେ ଜଣେ ସେବକ । ଦୁଧ ବାସି ପଛକେ ହୋଇଯାଏ, କିନ୍ତୁ ସେ ଖାଇ ଦିଅନ୍ତି ନାହିଁ ।

ରମାଙ୍କର ପଡ଼ାପଢ଼ି ନାହିଁ, ଜୀବନରେ ଉଚ୍ଚ ଲକ୍ଷ୍ୟ ନାହିଁ, ରାଜନୀତି କ୍ଷେତ୍ରରେ ନାମ କରିବାର ଅଭିଳାଷ ନାହିଁ । ସେ କେବଳ ଗୋପବନ୍ଧୁଙ୍କ ବିରାଟ ବ୍ୟକ୍ତିତ୍ୱର ଆଦର୍ଶରେ ଗୋଟିଏ ଛୋଟିଆ ଜୀବନ ଗଢିଛନ୍ତି । ଆମେମାନେ ମୂଷା ମାରୁ, କିନ୍ତୁ ଗୁଣ୍ଡୁଚିମୂଷା ଦେହରେ ଟିପ ଲଗାଉ ନାହିଁ । କାରଣ ଗୁଣ୍ଡୁଚିମୂଷା ରାମଚନ୍ଦ୍ରଙ୍କ ଲାଗି ପ୍ରାଣମୂର୍ଚ୍ଛା ପରିଶ୍ରମ କରିଥିଲା । ରମା ଆଜି ଏକ ଗୁଣ୍ଡୁଚିମୂଷା । ଏକଥା ଅବଶ୍ୟ ସମସ୍ତେ ବୁଝିବେ ନାହିଁ; କିନ୍ତୁ ପଣ୍ଡିତ ଗୋପବନ୍ଧୁଙ୍କ ବିଶାଳ ମାନବିକତାରେ ଅଳ୍ପାଧିକ ଅନୁପ୍ରାଣିତ ବ୍ୟକ୍ତିମାନେ ବୁଝିଥିବେ ।

ପଣ୍ଡିତ ଗୋପବନ୍ଧୁଙ୍କର ଉନ୍ନତ ମନୁଷ୍ୟତାର ମାପକାଠି ଆଜି ରମା । ମନୁଷ୍ୟ ଯେତେ ସରଳ ପ୍ରକୃତିରେ ଗଢ଼ା ହୋଇ ନା କାହିଁକି, ତାର ଭିତର ଓ ବାହାର ସର୍ବଦା ସମାନ ହୁଏ ନାହିଁ । ମୁଁ ଗୋପବନ୍ଧୁଙ୍କର ସବୁ ଗୁଣର ଆଦର କରୁଥିଲି; କିନ୍ତୁ ତାଙ୍କର ଗୋଟାଏ କାର୍ଯ୍ୟ ମୁଁ କେବେ ପସନ୍ଦ କରି ନାହିଁ । ତାହା ଗୋଟାଏ ନିତାନ୍ତ ସାମାନ୍ୟ କାର୍ଯ୍ୟ । ସେ ଗାଧୋଇ ସାରିଲା ପରେ ପାନିଆରେ ମୁଣ୍ଡ କୁଣ୍ଡାଉଥିଲେ । ମୋ ମୁଣ୍ଡରେ କେବେ ତେଲହାତ ବା ପାନିଆ ବାଜୁ ନ ଥିଲା । ତେଣୁ ମୁଁ ମନେ କରୁଥିଲି ଯେ ସେ ନିଜର ଶାରୀରିକ ସୌନ୍ଦର୍ଯ୍ୟ ବଢ଼ାଇବା ଲାଗି ମୁଣ୍ଡ କୁଣ୍ଡାଇ ବାଳ ସଜାଉଛନ୍ତି । କେବଳ ସେତିକି ସେ ବାହାରକୁ ଦେଖାଉଥିବାର ମୋ ଆଖିରେ ପଡ଼ୁଥିଲା । ଆହୁରି କଅଣ କଅଣ ଥିବ, ଯାହା କି ସେ ବାହାରକୁ ସ୍ୱଚ୍ଛନ୍ଦରେ ଦେଖାଉ ନ ଥିବେ ।

କିନ୍ତୁ ନିଜ ଭୃତ୍ୟ ନିକଟରେ ଦୋଷଦୁର୍ବଳତା ଲୁଚାଇବା ଭାରି କଠିନ । ଭୃତ୍ୟ ସର୍ବଦା ପାଖେ ପାଖେ ଥାଏ । ମୁନିବଙ୍କର ସକଳ କାର୍ଯ୍ୟ ସବୁବେଳେ ତା ଆଖିରେ ପଡ଼େ । ଲୋକେ ସାଧାରଣ କ୍ଷେତ୍ରରେ ଓ ବନ୍ଧୁମାନଙ୍କ ମେଳରେ ସାବଧାନ ହୋଇ ଚଳନ୍ତି, ଦୋଷଦୁର୍ବଳତା ଘୋଡ଼ାଇ ରଖନ୍ତି । କିନ୍ତୁ ଭୃତ୍ୟ ନିକଟରେ ତାହା ଏକ ପ୍ରକାର ଅସମ୍ଭବ । ସେଥିପାଇଁ ଶତ୍ରୁମାନେ କାହାର କ୍ଷତି କରିବାକୁ ବସିଲେ ନିଜର ଉଦ୍ଦେଶ୍ୟସାଧନ ଲାଗି ଭୃତ୍ୟର ସାହାଯ୍ୟ ନିଅନ୍ତି । ଘରୁ ଚୋର ଗଲେ

ବୁଝିବାକୁ ହୁଏ ଯେ ଗୃହର ସେଥିରେ ସମ୍ପୃକ୍ତ ଅଛି । ମୁନିବ ନାମରେ ମାଲିମକଦ୍ଦମା ହେଲେ ତହିଁରେ ପ୍ରଧାନ ସାକ୍ଷୀ ହୁଅନ୍ତି ଗୃହର । ଗୃହର-ମାନେ ମୁନିବ ଘରୁ ଗୁଳିପିବା ପରେ ଦାଣ୍ଡ ହାଟରେ ତାଙ୍କର ଦୋଷ ଗାଇବୁଲନ୍ତି । କାରଣ ସେମାନେ ମୁନିବଙ୍କର ସବୁ ଦୋଷ ଆଖିରେ ଦେଖିଥାନ୍ତି ।

ରାମା ଗୃହର, ଜଣେ ମନୁଷ୍ୟ ଓ ବଦ୍ୟା ବୁଦ୍ଧିରେ ଜଣେ ତଳପାହ୍ୟାର ମନୁଷ୍ୟ । ସେ ଯେ ପୂର୍ବ ମୁନିବଙ୍କର ଭକ୍ତ ହୋଇ ଏ ପର୍ଯ୍ୟନ୍ତ ରହିଛନ୍ତି, ତାର କାରଣ, ସେ ତାଙ୍କର ଦୋଷଦୁର୍ବଳତା ଦେଖିପାରି ନାହାନ୍ତି । ଗୋପବନ୍ଧୁ ନିଶ୍ଚୟ ଜନସମାଜରେ ସାବଧାନତା ସହିତ ଚଳୁଥିଲେ । କିନ୍ତୁ ସେ ସାବଧାନତା କଦାପି ନିଜ ଭୃତ୍ୟ ନିକଟରେ ଅବଲମ୍ବନ କରିପାରି ନ ଥିବେ । ମୁନିବମାନେ ଭୃତ୍ୟଙ୍କୁ ମନୁଷ୍ୟ ମଧ୍ୟରେ ଗଣନ୍ତି ନାହିଁ । ତେଣୁ ତାଙ୍କୁ କୌଣସି ଦୋଷଦୁର୍ବଳତା ଲୁଚାଇବା ଦରକାର ମଣନ୍ତି ନାହିଁ । ରାମା ଯେ ଗୋପବନ୍ଧୁଙ୍କର ଗୁଡ଼ାଏ ଦୋଷଦୁର୍ବଳତା ଦେଖି ନ ଥିଲେ, ତାର କାରଣ ଗୋପବନ୍ଧୁଙ୍କଠାରେ ସେସବୁ ବେଶୀ ନ ଥିଲା । ଭୃତ୍ୟଙ୍କୁ ମୁନିବଚରିତର ମାପକାଠି କୁହାଯାଇପାରେ । କୌଣସି ବଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ ଲେଖିବାକୁ ଗଲେ ତାଙ୍କ ବନ୍ଧୁବାନ୍ଧବ ପ୍ରଭୃତିଙ୍କଠାରୁ ତ ଅନେକ ଉପାଦାନ ମିଳିପାରେ; କିନ୍ତୁ ସେସବୁ ଅଳ୍ପାଧିକ ରଞ୍ଜିତ । କେବଳ ଭୃତ୍ୟଙ୍କଠାରୁ ବିନା ରଞ୍ଜନରେ ଉପାଦାନ ଯୋଗାଇପାରେ । ସେଥିପାଇଁ ରାମାକୁ ମୁଁ ଗୋପବନ୍ଧୁଙ୍କ ମନୁଷ୍ୟତାର ମାପକାଠି ମନେ କରୁଛି, ଯାହାକି ମୋର ତାଙ୍କ ସହିତ ଘନିଷ୍ଠ ସମ୍ପର୍କ ସତ୍ତ୍ୱେ ମୁଁ କୁହେଁ ଓ ତାଙ୍କର ଅନ୍ୟାନ୍ୟ ସଙ୍ଗୀ ସହକର୍ମୀ ହୋଇ ନ ଥିବେ ।

[ 'ସମାଜ' ସୌଜନ୍ୟରୁ ]

# ଦେଶନିର୍ମାତା ଗୋପବନ୍ଧୁ

## ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

[ ଓଡ଼ିଶାର ସୁପରିଚିତ ସାହିତ୍ୟିକ ଓ ସାମ୍ବାଦିକ ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀ 'ସମାଜ' ଅନୁଷ୍ଠାନ ସହିତ ଓତପ୍ରୋତ ଭାବେ ଜଡ଼ିତ ହୋଇ ଗୋପବନ୍ଧୁଙ୍କ ସ୍ମୃତି ତଥା ଏ ଜାତିର ସାହିତ୍ୟ-ଜଗତକୁ ଯେଉଁଭଳି ଉଦ୍ଦୀପ୍ତ କରି ରଖିଅଛନ୍ତି, ତାହା କାହାକୁ ଅବିଦିତ ନୁହେଁ । ତାଙ୍କର ଆଲୋଚ୍ୟ ପ୍ରବନ୍ଧଟି ମଧ୍ୟ ଉତ୍କଳମଣି ଜୟନ୍ତୀ ଉପଲକ୍ଷେ ରଚିତ ହୋଇଥିଲା । ଏଥିରେ ଶ୍ରୀଯୁକ୍ତ ଷଡ଼ଙ୍ଗୀ ଦେଶପ୍ରାଣ ଗୋପବନ୍ଧୁଙ୍କର କର୍ମମୟ ଓ ତ୍ୟାଗମୟ ଜୀବନର ଆଲେଖ୍ୟ ଅଙ୍କନ କରି ତାଙ୍କୁ 'ଦେଶନିର୍ମାତା' ରୂପେ ଉପସ୍ଥାପନ କରିଅଛନ୍ତି ।— ସଂ ]

**ବେଦର ଗୋଟିଏ ସୂକ୍ତ—**

"ପଶ୍ୟନ୍ତି ସର୍ବେ ଚକ୍ଷୁଷା
ନ ସର୍ବେ ମନସା ବିଦୁଃ ।"

ଯେଉଁମାନେ ବଡ଼, ଆମର ନମସ୍ୟ, ସେମାନଙ୍କୁ ଆମେ ନିଜ ଆଖିରେ ଦେଖୁ, ସେମାନଙ୍କର ଗୁଣ କୀର୍ତ୍ତନ କରୁ, ଇତିହାସ ବା କାବ୍ୟ କବିତାରେ ସେମାନଙ୍କ ସମ୍ପର୍କରେ ବହୁତ କଥା ଜାଣୁ ଓ ଆଲୋଚନା କରୁ ସତ, ମାତ୍ର ସେମାନଙ୍କ ଭିତରୁ ଅନେକଙ୍କୁ ଚିହ୍ନି ବି ପାରୁ ନାହିଁ । ଆମର ମନ-ପ୍ରାଣ ଦେଇ ଏକାଗ୍ରତାର ସହିତ ଅନ୍ତରରେ ଧ୍ୟାନ ନ କଲେ କେବଳ ଆଖିରେ ଦେଖି ବା ସାହିତ୍ୟରେ ପଢ଼ି ଏହି ମହାନ୍ ବ୍ୟକ୍ତିଙ୍କୁ ଚିହ୍ନିବା ସହଜସାଧ୍ୟ ନୁହେଁ । ତେଣୁ ବେଦର ଉପଦେଶ—'ତପସା ବିଜିଜ୍ଞାସସ୍ୱ' । ତପସ୍ୟାଦ୍ୱାରା, ସାଧନାଦ୍ୱାରା ହିଁ ସେମାନଙ୍କୁ କେବଳ ଚିହ୍ନିବାକୁ ହୁଏ; ତା ହେଲେ ଯାଇ ତୁମ ଅନ୍ତରରେ ସେମାନଙ୍କ ହୃଦୟ ପ୍ରତିବିମ୍ବିତ ହେବ; ସେମାନଙ୍କ ପରିଚୟ ପାଇ ତୁମେ ଧନ୍ୟ ହେବ ।

ଏ ପ୍ରଚାରସର୍ବସ୍ୱ ଯୁଗରେ 'ସ୍ଲୋଗାନ' ଦେବା ବା ପତ୍ରପତ୍ରିକାରେ ଗୁଣ କୀର୍ତ୍ତନ କରିବା କେବଳ ଅନ୍ଧଭକ୍ତର ପରିଚୟ ଦେଇପାରେ; ମାତ୍ର ତାହାଦ୍ୱାରା ପୂଜ୍ୟର ପ୍ରଭାବ ପୂଜକ ଉପରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରିପାରିବ ନାହିଁ ।

ପଣ୍ଡିତ ଗୋପବନ୍ଧୁ ଏହି ଶ୍ରେଣୀର ଜଣେ ମହାନ୍ ବ୍ୟକ୍ତି ଯାହାଙ୍କୁ କି କେବଳ ସାଧନାଦ୍ୱାରା ଚିହ୍ନାଯାଇପାରିବ । ତାଙ୍କର ବହୁମୁଖୀ ପ୍ରତିଭା ଏବଂ ବିଭିନ୍ନ ଦିଗରେ ସଫଳ କାର୍ଯ୍ୟାନୁଷ୍ଠାନ ଅତି ବିରାଟ । ତାଙ୍କ ସମ୍ପର୍କରେ କିଛି କହିବାକୁ ଗଲେ ତାହା କେବେହେଲେ ପୂର୍ଣ୍ଣତା ଲାଭ କରିବ ନାହିଁ, ବରଂ 'ଅନ୍ଧମାନଙ୍କର ହସ୍ତୀ ଦର୍ଶନ' ଗଳ୍ପକୁ ସାର୍ଥକ କରିବ—ଏ କଥା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏକାଧାରରେ ଚିନ୍ତାଶୀଳ, ଶିକ୍ଷାବିତ୍, ମାନବପ୍ରେମୀ, ନିଃସ୍ୱାର୍ଥପର ସେବକ, ଆଦର୍ଶ ତ୍ୟାଗୀ, ସାହିତ୍ୟିକ, ସାମ୍ବାଦିକ, ଶେଷରେ କହିଲେ ମଧ୍ୟ ବିଶେଷ ଭାବରେ ସ୍ୱଦେଶବତ୍ସଳ ରାଜନୀତିଜ୍ଞ ତାଙ୍କ ପରି କ୍ୱଚିତ୍ ଦେଖାଯାଆନ୍ତି । ଦେଶର ସମୃଦ୍ଧ କଲ୍ୟାଣ କାମନାରେ ସେ ତାଙ୍କର ଅନ୍ୟ ସମସ୍ତ ପ୍ରତିଭାକୁ ଜଳାଞ୍ଜଳି ଦେଇଥିଲେ । ସେ ସ୍ୱାଧୀନତା ଯଜ୍ଞ-ପୀଠରେ ତାଙ୍କର ଅତି ପ୍ରିୟ ସତ୍ୟବାଦୀ ବିଦ୍ୟାନୁଷ୍ଠାନକୁ ବଳି ଦେଇଥିଲେ, ସାହିତ୍ୟ ସାଧନା ତ୍ୟାଗ କରିଥିଲେ । କ୍ଷୁଦ୍ର ଘର-ସଂସାରର ମାୟା-ମମତା ତ ତାଙ୍କର କୌଣସି କାଳେ ନ ଥିଲା । ତାଙ୍କର ଘର ଥିଲା ବିରାଟ ଦେଶ ଓ ପରିବାର ଥିଲା ସମଗ୍ର ଜାତି । ଗୋପବନ୍ଧୁ ଜନ୍ମ ହୋଇଥିଲେ ଗୋଟିଏ କ୍ଷୁଦ୍ର ପରିବାରର ଦୁଇଗୃହ ଜଣଙ୍କୁ ହସାଇ; କିନ୍ତୁ ଯେତେବେଳେ ଦେହତ୍ୟାଗ କଲେ, ତାଙ୍କ ପାଇଁ ସମଗ୍ର ଦେଶର କୋଟି କୋଟି ଜନତା —ଧନୀ ଦରିଦ୍ର, ବୃଦ୍ଧ ବାଳକ, ଘରକାଣ୍ଡ ବେସରକାରୀ, ସ୍ତ୍ରୀ ପୁରୁଷ ସମସ୍ତେ ନିଜର ଅତି ପ୍ରିୟ ବ୍ୟକ୍ତିଙ୍କୁ ହରାଇ ଶୋକରେ ମୂହ୍ୟମାନ ହୋଇ ପଡିଥିଲେ । ଦେଶର ଯେ ସେ କଣ ଥିଲେ, ଦେଶ ପାଇଁ କଣ କରିଥିଲେ, ତାର କିଞ୍ଚିତ ପରିଚୟ ଏଇଥିରୁ ହିଁ ଜଣାପଡ଼େ ।

ଗୋପବନ୍ଧୁ ବି· ଏ· ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାପରେ ତାଙ୍କର କେତେକ ଅନ୍ତରଙ୍ଗ ବନ୍ଧୁଙ୍କ ସହ ବାଲ୍ୟ ଜୀବନର ଘୋଷାଗୁରୁ ରାମଚନ୍ଦ୍ର

ତାହଙ୍କୁ ଭେଟିବାକୁ ଆସିଥିଲେ । ଚିତ୍ତରଞ୍ଜନ୍ ଦାସ ସେମାନଙ୍କୁ ଆଶୀର୍ବାଦ କରି ସେତେବେଳେ ପ୍ରଶ୍ନକଲେ—ଏହାପରେ କଣ କରିବ, ସେତେବେଳେ ଅନ୍ୟ ବନ୍ଧୁମାନେ କହିଥିଲେ—ସରକାରୀ ଚାକିରୀ କରିବୁ । କାରଣ, ସେତେବେଳେ ଏ ଦେଶରେ 'ଗ୍ରାଜୁଏଟ'ଙ୍କ ସଂଖ୍ୟା ଅତି ନଗଣ୍ୟ ଥିଲା ଏବଂ ଯେ ବି. ଏ. ପାଶ କରୁଥିଲେ, ଗୋଟିଏ ଡେପୁଟି ଚାକିରୀ ସେ ଯେ ନିଶ୍ଚୟ ପାଇବେ, ଏହା ନିଃସନ୍ଦେହରେ ଧରି ନିଆଯାଉଥିଲା । ପୁଣି ସେ କାଳର ଡେପୁଟି ଚାକିରୀ କଣ ଥିଲା, ତାହା କବିବର ରାଧାନାଥଙ୍କ 'ଦରବାର' ଶବ୍ଦରୁ ସ୍ପଷ୍ଟ ଜଣାଯାଏ ।

"ଆନ ବୋଲେ ମୁହିଁ ଅଟଇ ହପୋଟି
କଳା ଲୋକଙ୍କର ଉନ୍ନତିର କୋଟି ।"

ବନ୍ଧୁମାନଙ୍କର ଏ ଉତ୍ତର ଶୁଣି ଗୋପବନ୍ଧୁଙ୍କ ଦୁଇ ଆଖିରୁ ସ୍ୱତଃ ଧାର ଧାର ଲୁହ ଗଡ଼ି ପଡ଼ୁଥିଲା । ସେ ତଳକୁ ମୁହଁ ପୋତି ବିନମ୍ର ସ୍ୱରରେ କହିଥିଲେ, "ଦେଶସେବା, ଦେଶର ସଙ୍ଗଠନ ହିଁ ମୋର କାର୍ଯ୍ୟ ହେବ । " ଗୋପବନ୍ଧୁଙ୍କ ଅନ୍ତର ଦେଶ ପାଇଁ କିପରି ବ୍ୟାକୁଳ ଥିଲା, ତାହାର ହିଁ ଏହା ଗୋଟି ସୂଚନା ।

ମାଟ୍ରିକୁଲେସନ ପାଶ୍ କରି କଲେଜରେ ଅଧ୍ୟୟନ କଲାବେଳେ ସେ ତାଙ୍କର ସହପାଠୀମାନଙ୍କୁ ପ୍ରବର୍ତ୍ତାଇ 'କର୍ତ୍ତବ୍ୟବୋଧିନୀ ସମିତି' ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ । ଛାତ୍ରଜୀବନରେ ଏପରି ସାଧାରଣ ଅନୁଷ୍ଠାନ ଗଢ଼ି ଦେଶ ଓ ଦଶର କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ଓଡ଼ିଶାରେ ଏହା ହିଁ ପ୍ରଥମ । ସାହିତ୍ୟଚର୍ଚ୍ଚାଠାରୁ ଆରମ୍ଭ କରି ଆପଦ ବିପଦରେ ଲୋକଙ୍କୁ ସାହାଯ୍ୟ କରିବା ଏ ସମିତିର କର୍ତ୍ତବ୍ୟ ଥିଲା । ସେହିଦିନଠାରୁ ଗୋପବନ୍ଧୁ ମର୍ମେ ମର୍ମେ ଅନୁଭବ କରିଥିଲେ ଯେ, ଏ ଦେଶ ସଙ୍ଗଠିତ ନ ହେଲେ ଏହାର ଉନ୍ନତି ଅସମ୍ଭବ । ସେଥିପାଇଁ ଦରକାର ଶିକ୍ଷାବିସ୍ତାର । ତାହା ସମ୍ଭବ ହେବ କେବଳ ଦଳେ ଉଚ୍ଚଶିକ୍ଷିତ ତ୍ୟାଗୀ ଯୁବକ ସଙ୍ଗଠିତ ଭାବରେ ଏକମନ୍ତ୍ର ଓ ଏକଧ୍ୟାନରେ କାର୍ଯ୍ୟ କଲେ ।

ଏହି ଲକ୍ଷ୍ୟରେ କଲେଜ ଛୁଟି ସମୟରେ ଦଳେ ସାଙ୍ଗ ସାଥୀଙ୍କୁ ସଙ୍ଗରେ ଧରି ଗୋପବନ୍ଧୁ ଦେଶର ବିଭିନ୍ନ ମଫସଲ ଅଞ୍ଚଳ ବୁଲିବାକୁ ଗଲେ । ଯୁବକମାନେ ଗେରୁଆ ପୋଷାକ ପିନ୍ଧି ସନ୍ନ୍ୟାସୀ ରୂପେ ଗ୍ରାମ ଗ୍ରାମ ବୁଲି ଲୋକଙ୍କ ସହିତ ମିଶିଥିଲେ ଓ ସେମାନଙ୍କୁ ନାନା ଭାବରେ ଉଦ୍‌ବୋଧିତ କରିଥିଲେ । କର୍ମଜୀବନରେ ସେ ଏହି ଯୁବକଙ୍କ ମଧ୍ୟରୁ ଅନେକଙ୍କ ସାହାଯ୍ୟ ସହଯୋଗରେ ପ୍ରସିଦ୍ଧ ସତ୍ୟବାଦୀ ବିଦ୍ୟାଳୟ ପ୍ରତିଷ୍ଠା କଲେ । ଏହାର ପ୍ରଧାନ ଉଦ୍ଦେଶ୍ୟ ହେଲା, ଦେଶରେ ଶିକ୍ଷାବିସ୍ତାର ଓ ତା-ସଙ୍ଗେ ସଙ୍ଗେ ଜାତିର ସର୍ବବିଧ ଉନ୍ନତି ଲାଗି ନିଃସ୍ୱାର୍ଥପର ଶିକ୍ଷିତ ଯୁବକ ସୃଷ୍ଟି କରିବା । ଏହି ଅନୁଷ୍ଠାନ ଅଳ୍ପଦିନସ୍ଥାୟୀ ହୋଇଥିଲେ ମଧ୍ୟ ପ୍ରତିଷ୍ଠାତାଙ୍କ ଉଦ୍ଦେଶ୍ୟ ଯେ ବହୁଳାଂଶରେ ପୂରଣ କରିପାରିଛି, ଏହା ଯେ କୌଣସି ବ୍ୟକ୍ତି ମୁକ୍ତକଣ୍ଠରେ ସ୍ୱୀକାର କରିବ । ସ୍ୱାଧୀନତା ଆନ୍ଦୋଳନଠାରୁ ଆରମ୍ଭ କରି ସ୍ୱାଧୀନ ଭାରତର ଏ ଯୁଗରେ ମଧ୍ୟ ଓଡ଼ିଶାର ବହୁ କ୍ଷେତ୍ରରେ ଏହି ସତ୍ୟବାଦୀ ଅନୁଷ୍ଠାନର ସହକାରୀ, ଛାତ୍ର ବା ଏହାର ପ୍ରଭାବରେ ପ୍ରଭାବିତ ସାଧାରଣ କର୍ମୀବୃନ୍ଦ କୃତିତ୍ୱ ବା କୀର୍ତ୍ତିତ୍ୱ ହାସଲ କରିଛନ୍ତି, ଏହା ସର୍ବବାଦୀସମ୍ମତ ।

ସ୍ୱାଧୀନତା ସଂଗ୍ରାମର ସେନାପତି ଯୁଗପ୍ରବର୍ତ୍ତକ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ସମଗ୍ର ଦେଶ ଯେତେବେଳେ ଉଦ୍‌ବେଳିତ ହୋଇ-ଉଠିଲା, ପଣ୍ଡିତ ଗୋପବନ୍ଧୁ ଦେଶର ଓ ଜାତିର କଲ୍ୟାଣ ପାଇଁ ସେଥିରେ ଅମ୍ଳାନ ବଦନରେ ଝାସ ଦେଲେ । ସେଥିପାଇଁ ତାଙ୍କର ଏହି ଅତିପ୍ରିୟ ଅନୁଷ୍ଠାନ ସତ୍ୟବାଦୀ ବିଦ୍ୟାଳୟକୁ ଅକୁଣ୍ଠ ଚିତ୍ତରେ ସେ ବଳି ଦେଇଥିଲେ । ବହୁ ସୁହୃଦ୍ ବ୍ୟକ୍ତିଠାରୁ ତାଙ୍କୁ ଏ କାର୍ଯ୍ୟ ଲାଗି କଠୋର ସମାଲୋଚନା ସହିବାକୁ ପଡ଼ିଥିଲା । ଉତ୍ତରରେ ସେ କହିଥିଲେ—

"ତେଜିବ ଜଣକୁ ହେଲେ ହେଉ ପଛେ ସେ ଯେତେ ସ୍ନେହଭାଜନ
ନ ହୋଇ ବ୍ୟାକୁଳ ଗ୍ରାମ ହିତେ କୁଳ ବରିଛନ୍ତି ସାଧୁଜନ,
ଦେଶ ହିତେ ଗ୍ରାମ ଜଗତ କଲ୍ୟାଣେ କର ପ୍ରାଣ ବିସର୍ଜନ ।"

ଗୋପବନ୍ଧୁଙ୍କ ଅନ୍ତର ଏପରି ନିର୍ମଳ, କାର୍ଯ୍ୟରେ ଏପରି ନିଷ୍ଠା ଓ ପର ପାଇଁ ଏତେ ବ୍ୟାକୁଳତା ଥିଲା ଯେ, ତାହା ହିଁ ତାଙ୍କୁ ସମସ୍ତଙ୍କ

ପାଖରେ ଅତି ଆପଣାର କରି ନେଉଥିଲା । ସମସ୍ତଙ୍କର ତାଙ୍କ ଉପରେ ଅଗାଧ ବିଶ୍ୱାସ ଜନ୍ମୁଥିଲା । ତେଣୁ ଯେ କୌଣସି କାର୍ଯ୍ୟରେ ସେ ଅଗ୍ରସର ହେଉଥିଲେ, ସେଥିପାଇଁ ଦେଶର ଚାରିଆଡ଼ୁ ତାଙ୍କୁ ଅକୁଣ୍ଠ ସମର୍ଥନ ମିଳୁଥିଲା । ସେ ନିଜକୁ ଜଣେ ସାମାନ୍ୟ ସେବକ ବା କର୍ମୀ ମନେ କରୁଥିଲେ; କିନ୍ତୁ ଦେଶବାସୀ ତାଙ୍କୁ ଅବିସମ୍ବାଦିତ ନେତା ରୂପେ ନିଜ ହୃଦୟରେ ଗ୍ରହଣ କରି ନେଇଥିଲେ । ସେହି କାରଣରୁ ତାଙ୍କ ବାକ୍ୟକୁ ବେଦବାକ୍ୟ ରୂପେ ଗ୍ରହଣ କରି ନେଉଥିଲେ । ଦେଶନିର୍ମାଣରେ, ଦେଶବାସୀଙ୍କ ସଂଗଠନରେ ତାଙ୍କର ଏହା ହିଁ ଅପୂର୍ବ କୃତିତ୍ୱ ।



# ବ୍ୟବସ୍ଥାପକ ଗୋପବନ୍ଧୁ

## ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ

[ ଉତ୍କଳ ବିଶ୍ୱବିଦ୍ୟାଳୟସ୍ଥ ରାଜନୀତି ବିଭାଗର ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ ଏବଂ ଓଡ଼ିଶା ତଥା ଭାରତର ଜଣେ ଖ୍ୟାତନାମା ବକ୍ତା, ଲେଖକ ଓ ସମାଲୋଚକ ଡକ୍ଟର ଦାଶ ଆଲୋଚ୍ୟ ପ୍ରବନ୍ଧରେ ଗୋପବନ୍ଧୁଙ୍କ ଆଦର୍ଶ ବ୍ୟବସ୍ଥାପକ ଜୀବନର ମହନୀୟତା ଓ ସଫଳତା ପ୍ରଖ୍ୟାପନ କରିଛନ୍ତି । ଏହି ମୂଲ୍ୟବାନ୍ ପ୍ରବନ୍ଧଟି ୧୫ ବର୍ଷ ତଳେ ଗୋପବନ୍ଧୁ ଜୟନ୍ତୀ ଉପଲକ୍ଷେ ରଚିତ ହୋଇଥିଲା ଓ ଦୈନିକ 'ସମାଜ'ରେ ପ୍ରକାଶ ପାଇଥିଲା ।—ସଂ ]

ଦେଶ ସ୍ୱାଧୀନ ହେବା ପରେ ଭାରତର ଅନ୍ୟାନ୍ୟ ରାଜ୍ୟ ପରି ଓଡ଼ିଶାରେ ମଧ୍ୟ ବ୍ୟବସ୍ଥାପକ ଗଣତନ୍ତ୍ର ଓ ଦାୟିତ୍ୱମୂଳକ ଶାସନ ଚାଲିଛି । ଓଡ଼ିଶାରେ ଗୋଟିଏ ବିଧାନସଭା ରହିଛି ଏବଂ ତାହାର ନିୟନ୍ତ୍ରଣାଧୀନ ମନ୍ତ୍ରିମଣ୍ଡଳ ଶାସନ ଦାୟିତ୍ୱ ବହନ କରିଛନ୍ତି । ୧୯୩୬ରେ ଓଡ଼ିଶା ସୃଷ୍ଟି ହେବା ଦିନୁ ପ୍ରାୟ ୩୦୦ ଜଣ ଏମ. ଏଲ୍. ଏ. ହେଲେଣି । ଏବେ ମଧ୍ୟ ୧୪୦ ଜଣ ଏମ୍. ଏଲ୍. ଏ. ଅଛନ୍ତି । ବର୍ଷକୁ ଅନ୍ତତଃ ତିନି ଥର ବିଧାନସଭା ବୈଠକ ବସୁଛି । କେତେକ ଆଲୋଚନା ଚାଲିଛି । କେତେ ପ୍ରସ୍ତାବ ଆସୁଛି, ସେଥିରୁ କେତେ ନାକଚ ହେଉଛି । ବେଳେ-ବେଳେ ବିଧାନସଭା ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ନିନ୍ଦାବାଦ ଓ ଅବିଶ୍ୱାସ ପ୍ରସ୍ତାବ ଆଣୁଛନ୍ତି । ଏସବୁ ଦେଖିବା ସତ୍ତ୍ୱେ ମନେହୁଏ ଯେ ପଣ୍ଡିତ ଗୋପବନ୍ଧୁ ବ୍ୟବସ୍ଥାପକମାନଙ୍କ ମଧ୍ୟରେ କୋଟିକରେ ଗୋଟିଏ ଥିଲେ ।

ପଣ୍ଡିତ ଗୋପବନ୍ଧୁ ୧୯୧୭ରୁ ୧୯୨୧ ପର୍ଯ୍ୟନ୍ତ ବିହାର ଓ ଓଡ଼ିଶା ବିଧାନସଭାର ସଭ୍ୟ ଥିଲେ । ସେତେବେଳେ ୧୯୦୯ ସାଲର ଭାରତ ଶାସନ ଆଇନ ଚାଲିଥାଏ । ଏହାକୁ ଲୋକେ ମର୍ଲେ-ମିଣ୍ଟୋ ଶାସନ ସଂସ୍କାର କହୁଥାନ୍ତି । ମର୍ଲେ-ମିଣ୍ଟୋ ଶାସନ ସଂସ୍କାର ଅନୁସାରେ ସମଗ୍ର ଓଡ଼ିଶାର ସ୍ୱାୟତ୍ତ-ଶାସନ ଅନୁଷ୍ଠାନମାନଙ୍କ ତରଫରୁ ଜଣେ ମାତ୍ର ପ୍ରତିନିଧି ବିହାର ଓ ଓଡ଼ିଶା ବିଧାନସଭାରେ ଥାଆନ୍ତି । ନିର୍ବାଚିତ ସଭ୍ୟମାନେ ସଂଖ୍ୟାନ୍ୟୂନ ଥିଲେ । ସରକାରୀ ସଭ୍ୟ ସଂଖ୍ୟା ଅତି ବେଶୀ

ଥିଲା । ତେଣୁ ବେସରକାରୀ ସଭ୍ୟମାନେ ଇଚ୍ଛା କରିପାରିବା ଭଳି ଅବସ୍ଥାରେ ନ ଥିଲେ । ତଥାପି ୧୯୧୭ରେ କୁଳବୃଦ୍ଧ ଶ୍ରୀଯୁକ୍ତ ମଧୁସୂଦନ ଦାସଙ୍କ ବ୍ୟବସ୍ଥାପକ କାର୍ଯ୍ୟକାଳ ପୂରିଯିବା ପରେ ପଣ୍ଡିତ ଗୋପବନ୍ଧୁ ଓଡ଼ିଶାର ସ୍ୱାୟତ୍ତ-ଶାସନ ଅନୁଷ୍ଠାନମାନଙ୍କ ତରଫରୁ ପ୍ରତିନିଧି ନିର୍ବାଚିତ ହେଲେ । ଗୋପବନ୍ଧୁ ଜାଣିଥିଲେ ଯେ ବ୍ୟବସ୍ଥାପକସଭାରେ ଯେ କୌଣସି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିପାରିବେ ନାହିଁ । ତେବେ ସୁଦ୍ଧା ମଧୁବାବୁଙ୍କ ନିର୍ଦ୍ଦେଶରେ ସେ ସେଠାକୁ ଯିବାକୁ ରାଜି ହୋଇଥିଲେ । ନିଜେ ମଧୁବାବୁ ଗୋପବନ୍ଧୁଙ୍କ ପ୍ରାର୍ଥୀପଦରେ ପ୍ରସ୍ତାବକ ଥିଲେ । ତା ନ ହୋଇଥିଲେ ଶେଷ ପର୍ଯ୍ୟନ୍ତ ସେ ଯିବାକୁ ଅମଙ୍ଗ ଥାଇ ଶେଷରେ ଯାଇଥାଆନ୍ତେ କି ନାହିଁ ସନ୍ଦେହଜନକ ଥିଲା ।

ଗୋପବନ୍ଧୁ ଥିଲେ ନିଷ୍ଠା ଓ ଆନ୍ତରିକତାର ପ୍ରତୀକ । ସେ ଯେଉଁ କାର୍ଯ୍ୟ ହାତକୁ ନେଉଥିଲେ, ତାହା ନିଜ ଶକ୍ତି ମୁତାବକ ସମ୍ପନ୍ନ କରିବାକୁ ଚାହୁଁଥିଲେ । ସୁନିଷ୍ଠ ଦେଶସେବା ତାଙ୍କର ମୁଖ୍ୟ ଅଭିଳାଷ ଥିଲା । ସେ ବିଧାନସଭାକୁ ନ ଯାଇଥିଲେ ଚଳିଥାନ୍ତା । ଯଦିଓ ମଧୁବାବୁଙ୍କ ଜିଗର ହେତୁ ସେ ସଭ୍ୟପଦ ଗ୍ରହଣ କରିବାକୁ ବାଧ୍ୟ ହେଲେ, ତଥାପି ତାହା ସୁଚାରୁ ରୂପେ ସମ୍ପନ୍ନ କରିବା ଓ ତଦ୍ଵାରା ମାଧ୍ୟମରେ ଦେଶର ଉପକାର କରିବା ନିମିତ୍ତ ସେ ଦୃଢ଼ପ୍ରତିଜ୍ଞ ହେଲେ । ସେତେବେଳେ ମୁଷ୍ଟିମେୟ ପ୍ରତିଷ୍ଠିତ ବ୍ୟକ୍ତି ସମଗ୍ର ଓଡ଼ିଶା ଭଳି ବିସ୍ତୀର୍ଣ୍ଣ ଅଞ୍ଚଳରୁ ପ୍ରତିନିଧି ରୂପେ ନିର୍ବାଚିତ ହେଉଥିଲେ । ବିଧାନସଭାରେ ନିଜେ ଲାଟସାହେବ ସଭାପତିତ୍ୱ କରୁଥିଲେ ଏବଂ ଲାଟଙ୍କ ଶାସନ ପରିଷଦର ସଭ୍ୟବୃନ୍ଦ ବିଧାନସଭା ସଦସ୍ୟମାନଙ୍କ ଘନିଷ୍ଠ ସମ୍ପର୍କରେ ଆସୁଥିଲେ । ଗୋପବନ୍ଧୁ ଚାହିଁଥିଲେ ନିଜ ପାଇଁ ଅନେକ ସୁବିଧା ହାସଲ କରି ପାରିଥାନ୍ତେ ଏବଂ ନିଜ ବନ୍ଧୁବାନ୍ଧବ, ପ୍ରିୟପାତ୍ର ଓ ପରିଜନମାନଙ୍କୁ ସରକାରୀ ଅନୁଗ୍ରହ ଆଣି ସୁପ୍ରତିଷ୍ଠିତ କରାଇ ପାରିଥାନ୍ତେ । ଏଭଳି ବ୍ୟବସାୟିକ ବୁଦ୍ଧି ତାଙ୍କର ନ ଥିଲା ଏବଂ ଆଧୁନିକ ସ୍ୱାର୍ଥସାଧନାର ଲକ୍ଷ୍ୟ ସେ ପୋଷଣ କରି ନ ଥିଲେ । ଯେଉଁମାନେ ଏ ଯୁଗର ବିଭିନ୍ନ କିସମର ବ୍ୟବସ୍ଥାପକମାନଙ୍କୁ ଦେଖୁଥିବେ ସେମାନେ କେବେହେଲେ ଗୋପବନ୍ଧୁଙ୍କ ବ୍ୟବସ୍ଥାପକ ମହତ୍ତ୍ୱ ଉପଲବ୍ଧି କରିପାରିବେ ନାହିଁ ।

ଗୋପବନ୍ଧୁ ବ୍ୟବସ୍ଥାପକ ହେବା ବେଳକୁ ଭାରତରେ ମହାତ୍ମାଗାନ୍ଧୀ ବିଶେଷ ପ୍ରତିଷ୍ଠିତ ହୋଇ ନ ଥିଲେ ତାଙ୍କ ଚମ୍ପାରଣ ସତ୍ୟାଗ୍ରହ ଆରମ୍ଭ ହେଉଥିଲା ମାତ୍ର । ଗାନ୍ଧୀ ଯୁଗରେ ଦେଶସେବକ-ମାନଙ୍କ ପରିଧେୟ ଧୋତି ଓ ଗୁଦର ହେଲା ସିନା, ଗୋପବନ୍ଧୁ ତେର୍ ଆଗରୁ ଏଭଳି ପରିଚ୍ଛଦ ଗ୍ରହଣ କରି ନେଇଥିଲେ । ସେତେବେଳେ ଗୋରା ହାକିମଙ୍କ ଯୁଗ ଥିଲା । ବ୍ୟବସ୍ଥାପକମାନେ ଇଉରୋପୀୟ ପରିଚ୍ଛଦରେ ବିଭୂଷିତ ପାଶ୍ଚାତ୍ୟ ରୁଚି ପ୍ରଦର୍ଶନ କରିବା ବିଷୟରେ ଗୋରା ହାକିମମାନଙ୍କୁ ବଳି ଯାଉଥିଲେ । ଏହା ସତ୍ତ୍ୱେ ଦୀନ ଓଡ଼ିଆର ପ୍ରତିନିଧି ପଣ୍ଡିତ ଗୋପବନ୍ଧୁ ଜଣେ ନିଃସ୍ୱ ଓଡ଼ିଆର ପରିଚ୍ଛଦ ଧୋତି ଓ ଗୁଦର ବ୍ୟବହାର କରି ବିଧାନସଭା ବୈଠକରେ ଯୋଗ ଦେଉଥିଲେ । ଏଥିପାଇଁ ଲୋକେ, ଏପରିକି ସରକାରୀ କର୍ମକର୍ତ୍ତାମାନେ ତାଙ୍କୁ ବିଶେଷ ଭକ୍ତି କରୁଥିଲେ । ଥରେ ସିଂହଭୂମି ଜିଲାର ଡେପୁଟି କମିଶନର ବା କଲେକ୍ଟର ତାଙ୍କୁ ଚକ୍ରଧରପୁର ଷ୍ଟେସନରେ ଭେଟିଥିଲେ । ଏହି ହାକିମ ଜଣେ କଡ଼ା ମେଜାଜର ଲୋକ ଥିଲେ । ରେଲ ଷ୍ଟେସନରେ ତାଙ୍କୁ ଦେଖି ଲୋକେ ଭୟରେ ଜଡ଼ସଡ଼ ହୋଇ ଯାଉଥିଲେ । ସେ ଯେତେବେଳେ ଦେଖିଲେ ଯେ ପଣ୍ଡିତ ଗୋପବନ୍ଧୁ ପ୍ଲାଟଫର୍ମ ଉପରେ ଠିଆ ହୋଇଛନ୍ତି, ସେ ଯାଇ ଏହି ଧୋତି-ଗୁଦରଧାରୀ ବ୍ୟକ୍ତିଙ୍କୁ ବିନମ୍ର ଭାବରେ ପ୍ରଣାମ କଲେ । ପଣ୍ଡିତ ଗୋପବନ୍ଧୁ ପଚାରିଲେ, "ଆପଣ ମୋତେ ଚିହ୍ନିଲେ କିପରି ?" ହାକିମ କହିଲେ, "ଆଜ୍ଞା ମୁଁ ଆପଣଙ୍କୁ ବିଧାନସଭାରେ ଦେଖିଛି । ଯେ ଥରେ ଆପଣଙ୍କୁ ଦେଖିଥିବ ଏବଂ ବିଧାନସଭାରେ ଆପଣଙ୍କ ଭାଷଣ ଶୁଣିଥିବ, ସେ ଆପଣଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ନ ହୋଇ ରହି-ପାରିବ ନାହିଁ ।

ପଣ୍ଡିତ ଗୋପବନ୍ଧୁ ଜଳ୍ପିବଗ୍ରାହୀ ନ ଥିଲେ । ବିଧାନସଭା ଆଲୋଚନାରେ ଭାଗ ନେବାକୁ ଥିଲେ ସେ ଗଭୀର ଅଧ୍ୟୟନ କରି ପ୍ରସ୍ତୁତ ହେଉଥିଲେ । ପ୍ରତ୍ୟକ୍ଷ ଅନୁଭୂତି ଥିବା ଲୋକେ ବର୍ଣ୍ଣନା କରିଛନ୍ତି ଯେ ସେ ବିଧାନସଭା ବୈଠକରେ ଯୋଗ ଦେବା ଲାଗି ପାଟଣା ଯାଉଥିବା ବାଟରେ କଲିକତାରେ ରହି ପଣ୍ଡିତମାନଙ୍କ ସଙ୍ଗେ ଆଲୋଚନା କରୁ-ଥିଲେ ଓ ଜାତୀୟ ଗ୍ରନ୍ଥାଗାରରେ ଦିନ ଦିନ ଧରି ଅଧ୍ୟୟନ କରୁଥିଲେ । ପୁଣି ଯେଉଁ ଓଡ଼ିଆ ଜାତିର ପ୍ରତିନିଧିରୂପେ ସେ ବିଧାନସଭାକୁ ଯାଇ-ଥିଲେ, ସେହି ଜାତିର ଲୋକଙ୍କ ହାଡ଼ଗୁହାରି ଦେଖି ଓ ଶୁଣି ପ୍ରତ୍ୟକ୍ଷ

ଅନୁଭୂତ ଆହରଣ କରିବା ଉଦ୍ଦେଶ୍ୟରେ ସେ ଦେଶର ନାନା ସ୍ଥାନରେ ପରିଭ୍ରମଣ କରୁଥିଲେ । ଫଳରେ ସେ ବିଧାନସଭାରେ ଯେଉଁ ଭାଷଣ ଦେଉଥିଲେ ତାହା ସରକାର ଓ ଅନ୍ୟାନ୍ୟ ସଭ୍ୟମାନଙ୍କୁ କେବଳ ମୁଗ୍ଧ କରୁ ନ ଥିଲା, ବିଚଳିତ ମଧ୍ୟ କରୁଥିଲା । ତାଙ୍କ ଅକାଟ୍ୟ ଯୁକ୍ତିକୁ ଏଡ଼ିଦେବା ସରକାରଙ୍କ ପକ୍ଷରେ ସମ୍ଭବପର ନ ଥିଲା । ଏହି ପ୍ରସଙ୍ଗରେ ଉଲ୍ଲେଖ କରଯାଇପାରେ ଯେ ସେ ଯେତେବେଳେ ୧୯୧୯ର ଡୋଙ୍ଗର ଦୁର୍ଭିକ୍ଷ ସମ୍ବନ୍ଧରେ ବର୍ଣ୍ଣନା କଲେ ଏବଂ ଲୋକଙ୍କ ତତ୍କାଳୀନ ଖାଦ୍ୟର ନମୁନା ସ୍ୱରୂପ ମୁଠିଶାଗ, କୁଣ୍ଡା ଆଦି କାନରେ ବାନ୍ଧି ନେଇ ସଭ୍ୟ-ମାନଙ୍କୁ ଦେଖାଇଲେ, ସରକାର ତାଙ୍କ ଉକ୍ତିକୁ ଗ୍ରହଣ କରିବା ଦୂରେ ଥାଉ, ଓଡ଼ିଶାର ତଦାନୀନ୍ତନ କମିଶନର ଗ୍ରୁନ୍ଂ ସାହେବ ଉଠି ଚିତ୍କାର କଲେ, "ଗୋପବନ୍ଧୁଙ୍କ ବର୍ଣ୍ଣନା ଅତିରଞ୍ଜିତ । ଲୋକେ ଖୁବ୍ ସୁଖରେ ଅଛନ୍ତି । ପୁରୀର କଲ୍ଲାମାଜିଷ୍ଟ୍ରେଟ ଯାହା କରିବାର କଥା କରିଛନ୍ତି । ମୁଁ ନିଜେ ଯାଇ ଦେଖିଆସିଛି, ନୀଚ ଜାତିର ସ୍ତ୍ରୀଲୋକମାନେ ବିଶା ବିଶା ସୁନା ଅଳଙ୍କାର ପିନ୍ଧିଛନ୍ତି ।" ଗୋପବନ୍ଧୁ ଉଠିପଡ଼ି ଉତ୍ତରରେ କହିଲେ, "ଯାହା କରିବାର କଥା ସରକାର କରି ନାହାନ୍ତି । ଗ୍ରୁନ୍ଂ ସାହେବ ମଟରରେ ଯାଇ ବଡ଼ରାସ୍ତାକଡ଼ରେ ଥିବା ତିନି, ଚାରି ଖଣ୍ଡି ଗାଁ ଦେଖିଆସିଛନ୍ତି । ସେ ଯାହାକୁ ସୁନା ଖଡ଼ୁ ବୋଲି କହୁଛନ୍ତି, ତାହା ପ୍ରକୃତରେ ପିତ୍ତଳ ଖଡ଼ୁ । ମୁଁ କହି ରଖୁଛି, ଯଦି ଜଣେ ଲୋକ ଅନା-ହାରରେ ପ୍ରାଣ ଦିଏ, ଆମେ ସମସ୍ତେ ଓ ସରକାର ସେଥିପାଇଁ ଦାୟୀ ହେବେ ।" ତାଙ୍କ ବିକଳ ଅନୁରୋଧ ଫଳରେ ନିଜେ ଲାଟ ସାହେବ ଏଡ଼ଓ୍ୱାର୍ଡ଼ ଗେଟ ଦୁର୍ଭିକ୍ଷପ୍ରପୀଡ଼ିତ ଅଞ୍ଚଳରେ ଭ୍ରମଣ କରି କହିଗଲେ, "ଗୋପବନ୍ଧୁ ବାବୁ, ପ୍ରକୃତରେ ଯାହା କରିବାର କଥା ସରକାର ତାହା କରି ନାହାନ୍ତି ।"

୧୯୩୦ର ଆଇନ ଅମାନ୍ୟ ଆନ୍ଦୋଳନ ବେଳେ ମହାତ୍ମା ଗାନ୍ଧୀ ଲୁଣମରକୁ ସଂଗ୍ରାମର ଉପାୟ ରୂପେ ଗ୍ରହଣ କରିଥିଲେ । ତାହାର ବାର ବର୍ଷ ଆଗରୁ ପଣ୍ଡିତ ଗୋପବନ୍ଧୁ ବିଧାନସଭାରେ ଅବାଧ ଲୁଣମାରି ସମ୍ବନ୍ଧରେ ଦାବି ଉପସ୍ଥାପିତ କରିଥିଲେ । ଲୁଣ ଗୋଟିଏ ସାର୍ବଜନୀନ ବ୍ୟବହାର୍ଯ୍ୟ ପଦାର୍ଥ । ଏହା ପୁଣି ପ୍ରକୃତିଦତ୍ତ । ଲୁଣ ପାଣିରୁ ଉତ୍ପନ୍ନ ହୁଏ । ଓଡ଼ିଶାର ଉପକୂଳବର୍ତ୍ତୀ ଲୋକେ ଯୁଗ ଯୁଗ ଧରି ଅବାଧରେ

ଲୁଣ ମାରି ପୋଷି ହେଉଥିଲେ । ଇଂରେଜ ସରକାର ସେମାନଙ୍କଠାରୁ ଏହି ଧନ୍ଦା ଛଡ଼ାଇ ନେଇ ଲୁଣରେ ଏକଚାଟିଆ ବ୍ୟବସାୟ ଚଳାଇଲେ । ଗୋପବନ୍ଧୁ ଏହି ସରକାରୀ ନୀତି ବିରୁଦ୍ଧରେ ବାରମ୍ବାର ପ୍ରତିରୋଧ କଲେ । ସରକାରୀ କର୍ତ୍ତାମାନେ ତାଙ୍କ ପ୍ରତିବାଦ ଶୁଣି କୌଣସି ଉତ୍ତର ଦେଇପାରୁ ନ ଥିଲେ । ଶେଷରେ ଲୋକଙ୍କୁ ଲୁଣମରା ବିଷୟରେ ସୁବିଧା ଦେବା ଓ ଧନ୍ଦା ଯୋଗାଇ ଦେବା ଲାଗି ଗୋଟିଏ ଲୁଣମରା କମ୍ପାନୀ ପ୍ରତିଷ୍ଠା ନିମିତ୍ତ ସୁବନ୍ଦୋବସ୍ତ ହୋଇଥିଲା । ପରେ ଏଥିରେ ଲାଭ ହେବ ନାହିଁ ବୋଲି ଜଣା ପଡ଼ିବାରୁ ପ୍ରସ୍ତାବଟି କାର୍ଯ୍ୟକାରୀ ହୋଇପାରିଲା ନାହିଁ । ବାର ବର୍ଷ ପରେ ମହାତ୍ମା ଗାନ୍ଧୀଙ୍କ ଆନ୍ଦୋଳନ ଫଳରେ ଉପକୂଳବାସୀ ଲୋକେ ଅବାଧରେ ଲୁଣ ମାରିବା ଓ ମୁଣ୍ଡ ବୋଝରେ ବିକି କରିବା ଲାଗି ଗାନ୍ଧୀ-ଇରଉଇନ୍ ଚୁକ୍ତି ଅନୁସାରେ ଅଧିକାର ପାଇଲେ । ଗୋପବନ୍ଧୁ ଆରମ୍ଭ କରିଥିବା ଆନ୍ଦୋଳନ ମହାତ୍ମା ଗାନ୍ଧୀଙ୍କ ପ୍ରଭାବ ଯୋଗୁଁ ଫଳପ୍ରସୂ ହେଲା ।

ଶିକ୍ଷାନୁଷ୍ଠାନ ସ୍ଥାପନ ସମ୍ବନ୍ଧରେ ସରକାରୀ କଟକଣା କୋହଳ କରିବା ଗୋପବନ୍ଧୁଙ୍କର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ କାର୍ଯ୍ୟ । ସେ ନିଜେ ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଯେଉଁଥିରେ କୌଣସି ବ୍ୟୟସାପେକ୍ଷ ଗୃହ ବା ଆସବାବପତ୍ର ନ ଥିଲା । ତଥାପି ଶିକ୍ଷାଦାନ କ୍ଷେତ୍ରରେ କୌଣସି ଅସୁବିଧା ଅନୁଭୂତ ହେଉ ନ ଥିଲା । ସେ ଜାଣିଥିଲେ ଯେ ଓଡ଼ିଶା ଭଳି ଦରିଦ୍ର ରାଜ୍ୟରେ ଲୋକେ ଶିକ୍ଷା ପାଇବାକୁ ଆଗ୍ରହୀ; କିନ୍ତୁ ବ୍ୟୟବାହୁଳ୍ୟ କୋଠାବାଡ଼ି ନିର୍ମାଣ କରିବା କ୍ଷମତା ସେମାନଙ୍କର ନ ଥିଲା । ସରକାର ଏହି କଟକଣା କୋହଳ ନ କଲେ ଶିକ୍ଷା ବିସ୍ତାର ହେବା ସମ୍ଭାବନା ସୀମାବଦ୍ଧ ଥିଲା । ତାଙ୍କର ଅନବରତ ଉଦ୍ୟମ ଫଳରେ ଶିକ୍ଷାବିଭାଗୀୟ କଟକଣା କୋହଳ ହୋଇ ପାରିଥିଲା ।

ବ୍ୟବସ୍ଥାପକ ସଭା ଗୋପବନ୍ଧୁଙ୍କ ଦେଶସେବା ଲାଗି ଗୋଟିଏ ପ୍ରଶସ୍ତ କ୍ଷେତ୍ର ଯୋଗାଇ ଦେଇଥିଲା । ସେ ସେଠାରେ ରହି ପ୍ରଥମେ ଦୁର୍ଭିକ୍ଷ ନିବାରଣ ଲାଗି ବ୍ୟବସ୍ଥା କରାଇଥିଲେ । ସେ ରେଭେନ୍‌ସା କଲେଜରେ ଇଂରାଜୀରେ ଏମ୍. ଏ. ଶ୍ରେଣୀ ଓ ଆଇନ୍ ପାଠ୍ୟ ପ୍ରବର୍ତ୍ତନ କରାଇଥିଲେ । କଟକର ଇଂଜିନିୟରିଂ ସ୍କୁଲ୍ ତାଙ୍କ ଉଦ୍ୟମର ଫଳ । ପୁଣି ସେ ଚେଷ୍ଟା କରୁଥିଲେ ବୋଲି ସ୍କୁଲମାନଙ୍କରେ ଅଧ୍ୟୟନ କରୁଥିବା

ଛାତ୍ରମାନଙ୍କ ମଧ୍ୟରୁ ଶତକଡ଼ା ଦଶ ଜଣ ବିନା ବେତନରେ ଅଧ୍ୟୟନ କରିବା ସୁବିଧା ପାଇଲେ । ତାଙ୍କ ଚେଷ୍ଟା ଫଳରେ ପୁରୀର ସଂସ୍କୃତ କଲେଜ ସରକାରୀ ଅନୁଷ୍ଠାନ ରୂପେ ଗୃହୀତ ହୋଇଥିଲା । ଏହିପରି ନାନା ଦେଶହିତକର କାର୍ଯ୍ୟ କରି ଓ କରାଇ ସେ ବ୍ୟବସ୍ଥାପକମାନଙ୍କ ସମ୍ମୁଖରେ ଯେଉଁ ମହାନ୍ ଆଦର୍ଶ ରଖି ଯାଇଛନ୍ତି, ତାହା ସେମାନେ ଅନୁସରଣ କଲେ ଓଡ଼ିଶାର ପ୍ରଭୂତ ହିତ ସାଧନ ହୋଇପାରନ୍ତା ।

ସେତେବେଳେ ବିଧାନସଭାର କାର୍ଯ୍ୟକାଳ ମାତ୍ର ତିନି ବର୍ଷ ଥିଲା । ଗୋପବନ୍ଧୁଙ୍କ କାର୍ଯ୍ୟକାଳ ୧୯୧୯।୨୦ରେ ସରିଯାଇଥାନ୍ତା, କିନ୍ତୁ ୧୯୨୧ ଅପ୍ରେଲ ପହିଲା ଦିନ ୧୯୧୯ର ଭାରତ ଶାସନ ଆଇନ ବା ମଣ୍ଟେଗୁ-ଚେମସ୍ ଫୋର୍ଡ଼ ଶାସନ ସଂସ୍କାର କାର୍ଯ୍ୟକାରୀ ହେବାକୁ ଥିବାରୁ ବିଧାନ-ସଭାର କାର୍ଯ୍ୟକାଳ ଆଉ ଗୋଟିଏ ବର୍ଷ ବଢ଼ାଇ ଦିଆଗଲା । ତେଣୁ ମାତ୍ର ତିନି ବର୍ଷ ପାଇଁ ନିର୍ବାଚିତ ହୋଇ ଗୋପବନ୍ଧୁ ଚାରିବର୍ଷ କାଳ ବ୍ୟବସ୍ଥାପକ ରୂପେ ରହିଲେ । ସେ ଯେତେବେଳେ ୧୯୨୧ରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ବିଧାନସଭା ଛାଡ଼ିବାକୁ ଘୋଷଣା କଲେ, ତଦାନୀନ୍ତନ ଲାଟ ସାର୍ ଗେଟ ତାଙ୍କୁ ଡକାଇ କହିଲେ, "ଗୋପବନ୍ଧୁ, ତୁମେ ଓଡ଼ିଶାର ଉପକାର ପାଇଁ ବିଧାନସଭାରେ ଯେଉଁସବୁ ଉଦ୍ୟମ କରି ପାରୁଥିଲେ, ଅସହଯୋଗରେ ଯୋଗ ଦେଲେ ତାହା ହୋଇପାରିବ କି ? ଫଳରେ ସେଗୁଡ଼ିକ ଭାଙ୍ଗିଯିବ ସିନା !" ଗୋପବନ୍ଧୁ ଉତ୍ତର ଦେଲେ, ଆପଣଙ୍କ ଶାସନତନ୍ତ୍ର ଲୁହାଠାରୁ ବଳି କଠିନ । ମୋର ତିନି ବର୍ଷ କାଳ ବିଧାନସଭାରେ କରୁଣ ପ୍ରାର୍ଥନାର କି ଫଳ ହେଲା ? ବନ୍ୟା ପ୍ରତିକାର ଲାଗି କୌଣସି ଉଦ୍ୟମ ହେଲା ନାହିଁ । ଲୁଣ ପୋକ୍ତାନର କୌଣସି ବିଚାର ହେଲା ନାହିଁ । ଯଥାର୍ଥ ଶିକ୍ଷା ପ୍ରଚାର କଳ୍ପନା ମଧ୍ୟ ଏ ଶାସନତନ୍ତ୍ର ପକ୍ଷରେ ବିଡ଼ମ୍ବନା । ପୁରୀ ଦୁର୍ଭିକ୍ଷରେ ଲୋକେ ପୋକ ମାଛି ପରି ମଲେ । ତଥାପି ଆପଣଙ୍କ ଶାସନତନ୍ତ୍ର କହିଲା ଏହା ଦୁର୍ଭିକ୍ଷ ନୁହେଁ । ଏ ଅବସ୍ଥାରେ ଏ ସରକାର ସଙ୍ଗେ ଅଧିକ ଦିନ ଯୋଗାଯୋଗ ହେଲେ କି ଫଳ ମିଳିବ ? ଅସହଯୋଗ ଏହିସବୁ କାର୍ଯ୍ୟ-ସାଧନର ଉପଯୁକ୍ତ ପନ୍ଥା । ଏ ଦେଶ ଲୋକେ ଯଦି ଅସହଯୋଗରେ ବ୍ରତୀ ହୁଅନ୍ତି, ଆପଣଙ୍କ ସରକାର ସେମାନଙ୍କ ଦାବୀକୁ ଆଉ ଉପେକ୍ଷା କରିପାରିବେ ନାହିଁ । ମୁଁ ଏହା ଯଥାର୍ଥରେ ବୁଝିଛି ।"

# ଆଦର୍ଶ ଶାସନକର୍ତ୍ତା ଗୋପବନ୍ଧୁ

## କୁମାରୀ ଶୈଳବାଳା ବେହେରା

[ କଟକ ଶୈଳବାଳା ମହିଳା କଲେଜର ଛାତ୍ରୀ ଥିଲାବେଳୁ କୁମାରୀ ଶୈଳବାଳା ବେହେରା ଲେଖିକା ହିସାବରେ ସୁନାମ ଅର୍ଜନ କରି ନ ଥିଲେ ମଧ୍ୟ ସାହିତ୍ୟ ସୃଷ୍ଟି ଲାଗି ତାଙ୍କର ଆଗ୍ରହ ଓ ଆନ୍ତରିକତା ପ୍ରକାଶ ପାଇଥିଲା । ଆଲୋଚ୍ୟ ପ୍ରବନ୍ଧରେ ସେ ଗୋପବନ୍ଧୁଙ୍କ ଅସାମାନ୍ୟ ବ୍ୟକ୍ତିତ୍ୱ ଓ ଅସାଧାରଣ ସାହିତ୍ୟ ସମ୍ପର୍କରେ ଆଲୋଚନା କରି ତାଙ୍କୁ ଜଣେ 'ଆଦର୍ଶ ଶାସନକର୍ତ୍ତା' ରୂପେ ଉପସ୍ଥାପନ କରିବାକୁ ଚେଷ୍ଟା କରିଅଛନ୍ତି ।—ସଂ ]

ଉତ୍କଳୀୟ ସାହିତ୍ୟ, ରାଜନୀତି, ଅର୍ଥନୀତି, ଦର୍ଶନ ଏବଂ ବହୁବିଧ ସାଂସ୍କୃତିକ ସ୍ଥିତିର ଆଲୋଚନା ଓ ସମାଲୋଚନା ଆମେ ଯେତେବେଳେ କରୁ, ସେତେବେଳେ ଆମ ଆଗରେ ଜଣେ ପ୍ରଶାନ୍ତ ସୌମ୍ୟ ମୂର୍ତ୍ତିମନ୍ତ ପୁରୁଷ ଆସି ଦଣ୍ଡାୟମାନ ହୁଅନ୍ତି । ସେ ହେଉଛନ୍ତି ଉତ୍କଳମଣି ଗୋପବନ୍ଧୁ ବା ପ୍ରିୟ ଦାସେ ଆପଣ । ପ୍ରାୟ ଷାଠିଏ ବର୍ଷ ପୂରିଯିବାକୁ ବସିଲା । ସେ ଆମଠାରୁ ବିଦାୟ ନେଇଗଲେଣି; କିନ୍ତୁ ତାଙ୍କର ପ୍ରକୃତ ସ୍ୱରୂପ ବି ଏଯାଏ ଉତ୍କଳୀୟମାନଙ୍କର ହୃଦୟରେ ପ୍ରତିଫଳିତ ହୋଇପାରିଲା ନାହିଁ । ତାଙ୍କୁ ଆମେ ଚିହ୍ନିଲେ ତ୍ୟାଗୀ ଗୋପବନ୍ଧୁ ରୂପରେ, ତାଙ୍କୁ ଆମେ ଦେଖିଲେ ଦରିଦ୍ର ପ୍ରାଣ ଗୋପବନ୍ଧୁ ଭାବରେ, ତାଙ୍କୁ ଆମେ ପୂଜା କଲେ ଉତ୍କଳମଣି ଗୋପବନ୍ଧୁ ରୂପେ । ତାଙ୍କର ଅକ୍ଷୟ ସ୍ମୃତି ଉତ୍କଳୀୟ ପ୍ରାଣକେନ୍ଦ୍ରରେ ପ୍ରତିଷ୍ଠା ହେଲା ସୁକବି, ସୁରାଜନୈତିକ ଏବଂ ସୁବାଗ୍ମୀ ହିସାବରେ । କିନ୍ତୁ ସେ ଯେ ଜଣେ ଆଦର୍ଶ ଶାସନକର୍ତ୍ତାର ଏକ ମୂର୍ତ୍ତିମନ୍ତ ଅବତାର ଥିଲେ, ତାହା ଆମ ନିକଟରେ ଅଛପା ରହିଗଲା । ହୁଏ ତ ରହିଯାଇଥାନ୍ତା ବି; କିନ୍ତୁ ଆଜିର ରାଜନୈତିକ ଧର୍ମସଙ୍କଟ ବେଳେ ସେ

ଆମପାଇଁ ଅଧିକନ୍ତୁ ସ୍ମରଣୀୟ ହୋଇ ପଡ଼ିଛନ୍ତି । ଯେଉଁବେଳେ ହିନ୍ଦୁରଣାୟ ସ୍ତରରେ ଏ ଜାତିର, ଏ ସମାଜର କ୍ଷିତିକେନ୍ଦ୍ରରେ ଗୁଞ୍ଜିଆ ପ୍ରକାଶ ପାଏ, ସେତେବେଳେ ଆମେ ଗୌରବରେ ସ୍ମରଣ କରୁ ସେଦିନର ସେ ସାନ ଦୁଃଖୀ ଗୋପବନ୍ଧୁ ଆମ ମେଳରେ ଥାନ୍ତେ କି ? କିନ୍ତୁ ଆମର ହତଭାଗ୍ୟ ଓଡ଼ିଆ ଏ ଯାଏ ବି ଅନ୍ଧକୂପ ମଧ୍ୟରେ ପତିତ । କାରଣ ଅମୂଲ୍ୟନିଧି ରୂପକ ତାଙ୍କର ପରିକଳ୍ପନାସମ୍ବଳିତ ମହାନ୍ ଆଦର୍ଶବାଦକୁ ଆମେ ପଛରେ ପକାଇ ଦେଇଛୁ ।

ସେ ସମୟରେ ଗୋପବନ୍ଧୁ ଆଦର୍ଶ ଲୋକଶାସନର ପରିକଳ୍ପନା କରିଥିଲେ—ଏହା ହୁଏତ ଆମକୁ ଅଡୁଆ ଲାଗିପାରେ । କାରଣ ଗୋପବନ୍ଧୁଙ୍କ ଭଳି ଜଣେ ଦୟାବନ୍ତ, ପରଦୁଃଖକାତର ସ୍ନେହଶୀଳ ବ୍ୟକ୍ତିର ହୃଦୟରେ ଅନ୍ୟ ପାଇଁ ଯେ ଶାସନ କରିବାର କ୍ଷମତା ଥିଲା, ଏହା ଆମ ସାଧାରଣ କଳ୍ପନାର ବହୁ ଊର୍ଦ୍ଧ୍ୱରେ । କିନ୍ତୁ ସେଥିରୁ ହିଁ ଆମକୁ ଅନୁସନ୍ଧାନ କରିବାକୁ ପଡ଼ିବ—ଜାତିର ଚତୁର୍ମୁଖୀ ଜାଗୃତି ମଧ୍ୟରେ ଗୋପବନ୍ଧୁ ଆଦର୍ଶ ଶାସନଗତ ପରମ୍ପରାର ସୁପ୍ରତିଷ୍ଠା ପାଇଁ କ'ଣ ଛାଡ଼ିଗଲେ ?

ଏକାବନ ବର୍ଷ ଜୀବନକାଳ ମଧ୍ୟରେ ସେ ଆମ ପାଇଁ ଅନେକ କିଛି କରିଗଲେ । ଅଧିକନ୍ତୁ କିଛି କରିଗଲେ ଜଣେ ସୁରାଜନୈତିକ ତଥା ସୁଶାସକ ହିସାବରେ । ସେଦିନର ରାଜତନ୍ତ୍ରରେ ସେ କେବେ ଶାସକ ସାଜି ନ ଥିଲେ; କିନ୍ତୁ ତାଙ୍କର ବାସ୍ତବ ପରିକଳ୍ପନା ଆଜି ତାଙ୍କର ମୃତ୍ୟୁର ପ୍ରାୟ ଷାଠିଏ ବର୍ଷ ପରେ ମଧ୍ୟ ତାଙ୍କୁ ଗଣତନ୍ତ୍ରର ରାଜସିଂହାସନରେ ଅଧିଷ୍ଠିତ କରାଇବ । ଦରିଦ୍ରପ୍ରାଣ ଦରଦୀ ଗୋପବନ୍ଧୁ ପୁଣି ଶାସକ ! ! !

ତୁମ ଆମ ଭଳି ସେ ଥିଲେ ଶାସିତ । ଅନ୍ୟମାନଙ୍କ ଭଳି ସେ ତଥାକଥିତ ବ୍ୟକ୍ତିଜୀବନର ସ୍ୱାଧୀନତାରୁ ବଞ୍ଚିତ ହୋଇ ନ ଥିଲେ । ଖାଇବା, ପିନ୍ଧିବା, ଘର ସଂସାର କରିବା ମଧ୍ୟ ତାଙ୍କ ଜୀବନରୁ ବାଦ୍ ଯାଇ ନ ଥିଲା । ତେବେ ତାଙ୍କର ଅଧିକା କି ଗୁଣ ଥିଲା ଯାହା ପାଇଁ ଆଜି କୋଟି ଉତ୍କଳୀୟର ମଥା ସ୍ୱତଃ ନତ ହୁଏ ! ଏହା ଦୃଢ଼ ସତ୍ୟ ଯେ ସେ ସଂସାର କରିଥିଲେ; କିନ୍ତୁ ସେଦିନର (ଆଜିର ବି) ତେଲ ଲୁଣର ସଂସାରଠାରୁ ତାଙ୍କର ସେ ସଂସାର ଗଠନପ୍ରଣାଳୀ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଥିଲା ।

ଯେଉଁଭି ଆମ ପରି ମଣିଷ ଥିଲେ, କିନ୍ତୁ ସାଧାରଣ ଜୀବନରେ ସେ ଯାହା କିଛି କରିଗଲେ ସେଥିରେ ଆମର ବ୍ୟକ୍ତିଗତ ଜୀବନକୁ କଠୋର ଭାବେ ଶାସନ କରିବାର ଉତ୍କୃଷ୍ଟ ପନ୍ଥା ନିହିତ ଥିଲା । ତାଙ୍କର ଶାନ୍ତ ଗାମ୍ଭୀର୍ଯ୍ୟପୂର୍ଣ୍ଣ କଥାବାର୍ତ୍ତା, ତାଙ୍କର ଚାଲିଚଳଣ ଏବଂ ନିରାଡ଼ମ୍ବର ଜୀବନ ବି ଥିଲା ଆମର ଅନୁକରଣୀୟ । କେବଳ ସେଥିପାଇଁ ସେ ଆଜି ଆମର କାହିଁକି, ଭାରତୀୟ ଗଣହୃଦୟରେ ମଧ୍ୟ ଶାସକ ଭାବରେ ପ୍ରତିଷ୍ଠିତ ହେବାର ସମ୍ମାନ ଅଧିକାର କରିଛନ୍ତି ।

ସେ ବିପ୍ଳବର ଅଗ୍ନିଦାହ ମଧ୍ୟରେ ଜନ୍ମ ନେଇ ତାର ଉତ୍ତପ୍ତତା ମଧ୍ୟରେ ହିଁ ମୃତ୍ୟୁବରଣ କଲେ । କାହାପାଇଁ ? ନିଜ ପାଇଁ ? ନିଜ ସ୍ତ୍ରୀ ପାଇଁ ନା ନିଜର ପରିବାର ପାଇଁ ? ନିଜ ରକ୍ତମାଂସରେ ଗଢ଼ା ଦୁଇନିଧିକୁ ମୃତ୍ୟୁମୁଖରେ ପକାଇ ଶୁଷ୍କ ନୟନରେ ପ୍ରିୟତମାଠାରୁ ବିଦାୟ ନେଇ-ଥିଲେ । ପତ୍ନୀଙ୍କର ଦାରୁଣ ବିୟୋଗାତ୍ମକ ବିରହରେ ବି ନିଜକୁ ଦାରୁ-ଭୂତମୁରାରି କରିପାରିଥିଲେ । ପାରିବାରିକ ସୁଖଶାନ୍ତିକୁ ଜାତୀୟ ସ୍ୱାର୍ଥରେ ବଳି ଦେଇଥିଲେ । ଜୀବନରେ ଯାହା ଉପଭୋଗ୍ୟ, କର୍ମମୟ ଜୀବନରେ ତାହାର ଉପଯୋଗ କରିଥିଲେ ମାତ୍ର । ଏ ପ୍ରକାର ଅଲୌକିକତା ଆମ ବ୍ୟକ୍ତିଗତ ଜୀବନ ତଥା ଆମର ଶାସକମାନଙ୍କ ପାଇଁ ଆଦର୍ଶ ଶାନସର, ମାନଦଣ୍ଡ ନୁହେଁ ତ ଆଉ କ'ଣ ? ଅନ୍ୟମାନେ ଯାହା କରିଛନ୍ତି, ଗୋପବନ୍ଧୁ ହୁଏତ ତାହା ଆଂଶିକ ଭାବେ କରିପାରିଥିବେ, କିନ୍ତୁ ଗୋପବନ୍ଧୁ ଯାହା କରିଗଲେ ତାହା ଅନ୍ୟ କେହି ପାରି ନାହାନ୍ତି । ନିଜର ବ୍ୟକ୍ତିଗତ ଜୀବନକୁ ଜାତୀୟ ସ୍ୱାର୍ଥରେ ଆହୁତି ଦିଆଯାଇପାରେ; କିନ୍ତୁ ପାରିବାରିକ ତଥା ସାମୁହିକ ଜୀବନକୁ ଯେପରି ଦୟାମୟ ଭାବେ ଉତ୍ସର୍ଗୀକୃତ କରିଗଲା ତାହାର ଦୃଷ୍ଟାନ୍ତ ଅନ୍ୟ କୌଣସି ଇତିହାସରେ ନାହିଁ ।

ଏ ତ ଗଲା ତାଙ୍କ ବ୍ୟକ୍ତିଗତ ଜୀବନର କଥା । ଠିକ୍ ସେହିପରି ତାଙ୍କର ସାହିତ୍ୟିକ, କବି ଜୀବନ ମଧ୍ୟ ଶୁଦ୍ଧ, ତ୍ୟାଗପୂତ ଏବଂ ଚିର ଦେଦୀପ୍ୟମାନ । ଗୋପବନ୍ଧୁଙ୍କ କାବ୍ୟକବିତାର ସୃଷ୍ଟି ଯେ ଅନ୍ୟମାନଙ୍କ ଠାରୁ ସ୍ୱତନ୍ତ୍ର, ଏହାର ସ୍ପଷ୍ଟୀକରଣ ଆବଶ୍ୟକ ନାହିଁ । ତାହାର ଉଦାହରଣ କିମ୍ବା ତୁଳନା ଅନ୍ୟଠାରେ ଦୃଷ୍ଟିଗୋଚର ହୁଏ ନାହିଁ ।

ସେ ନିଜେହିଁ ତାଙ୍କର ତୁଳନା ଏବଂ ସେହିଁ ତାଙ୍କର ଜୀବନ୍ତ ଉଦାହରଣ । ସ୍ୱଦେଶ ପ୍ରେମରେ ପ୍ରମତ୍ତ ତାଙ୍କର କବିପ୍ରାଣ ଉଚ୍ଛ୍ୱସିତ ଆବେଗରେ ଯାହା ଗାଇଉଠିଛି ତାହା ଆଜିର ଶାସକମାନଙ୍କୁ ଯେ ଯଥେଷ୍ଟ ପ୍ରେରଣା ଦେବ, ଏଥିରେ ସନ୍ଦେହ ନାହିଁ ।

ଅରବିନ୍ଦଙ୍କ ଭାଷାରେ "The first and lowest use of art is purely aesthetic,the second is she intellectual or educational, the third and highest is the spiritual",ଅର୍ଥାତ୍ ଆଧ୍ୟାତ୍ମିକ ଭାବସମ୍ପନ୍ନ କଳା ବା ସାହିତ୍ୟ ସର୍ବାପେକ୍ଷା ଶ୍ରେଷ୍ଠ ଓ ଉତ୍କୃଷ୍ଟ । ସେଭଳି ଉତ୍କୃଷ୍ଟ ସାହିତ୍ୟର ଅଧିକାରୀ ଥିଲେ କବି ଗୋପବନ୍ଧୁ । ତାଙ୍କ ସାହିତ୍ୟ ଏବଂ କାବ୍ୟକଳ୍ପନାର ଅନ୍ତରାଳରେ ପ୍ରଚ୍ଛନ୍ନ ଥିଲା ଆଧ୍ୟାତ୍ମିକ ଶାସନ-ପ୍ରଣାଳୀର ଆଦର୍ଶ ।

କେବଳ ସେତିକି ନୁହେଁ, "Universality in action is the law of divine living" ବା ବିଶ୍ୱଜନୀନ ଭାବହିଁ ଭଗବତ୍ ଜୀବନର ବିଧି—ଏହି ସୂତ୍ରକୁ ସେ ନିଜ ଜୀବନର ବ୍ରତ ବୋଲି ଧରି ନେଇଥିଲେ । ବିଶ୍ୱାତ୍ମାରେ ଏକାତ୍ମତା ପାଇଁ ଜୀବନ ପଣ କରି ସେ ସଂଗ୍ରାମୀ ସାଜିଥିଲେ । ସେ ତ୍ୟାଗ, ସେ କଠୋର ଆଦର୍ଶ ଆଜି କାହିଁ ? ଦେଶ ପ୍ରତି ତାଙ୍କର ଯେଉଁ ଅଗାଧ ପ୍ରୀତି, ଦୀନ ଓଡ଼ିଆଙ୍କ ପାଇଁ ତାଙ୍କର ଯେଉଁ ଆକୁଳ କ୍ରନ୍ଦନ, ବନ୍ୟାଦୁର୍ଭିକ୍ଷପ୍ରପୀଡ଼ିତ ନରନାରୀଙ୍କ ପାଇଁ ତାଙ୍କର ଯେଉଁ ବ୍ୟାକୁଳତା, ତାହା ମଧ୍ୟରେ ସେ ଯେ ଆମ ପାଇଁ ଏତେ ଆଦର୍ଶ ରଖିଗଲେ, ସେଥିପାଇଁ ଆଜି ତାଙ୍କ ଉଦ୍ଦେଶ୍ୟରେ ସ୍ୱତଃ ମଥା ନଇଁଯାଏ ।

ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ "You may invent an image through which to worship God, but a better image already exists in the living man"ଦରିଦ୍ରନାରାୟଣର ସେବା ହିଁ ପ୍ରକୃତ ସେବା । ମଣିଷର ରକ୍ତମାଂସର ଶରୀର ମଧ୍ୟରେ ଦେବାତ୍ମାର ଅଧିଷ୍ଠାନ, ଏଇକଥା ସେ ବୁଝି ପାରିଥିଲେ । ତେଣୁ ଅନ୍ୟର ଦୁଃଖ ଦୈନ୍ୟ ପ୍ରତି ସେ ସମ୍ବେଦନଶୀଳ ହୋଇଥିଲେ । ଉତ୍କଳୀୟ ନାରୀର ଦୁରବସ୍ଥା ଅବଲୋକନ କରି ସେ ସ୍ୱତଃ ଗାଇ ଉଠିଥିଲେ—

"ଉତ୍କଳର କେତେ କନ୍ୟା ନାରଖାଟ
ନ କରନ୍ତୁ ପେଟ ପୂରାଇ ଆହାର
ଲଜ୍ଜା ଢାଙ୍କିବାକୁ ନ ପାନ୍ତୁ ବସନ
ଫୁଟେ ନାହିଁ କେବେ ଅଙ୍ଗ ଯଉବନ ।"

ତାଙ୍କର ତ କନ୍ୟା ନ ଥିଲା, ସେ ତେବେ ଅନ୍ୟ ଉତ୍କଳୀୟ କନ୍ୟାଙ୍କ ପ୍ରତି ଏ ଦରଦ ପୋଷଣ କରିଥିଲେ କାହିଁକି ? ତାଙ୍କର ଦରଦୀ ଲେଖନୀ ସେଥିପାଇଁ ଶତମୁଖ ହୋଇଉଠିଛି କାହିଁକି ? କାରଣ ସେ ନିଜେ ଅନୁଭବ କରିପାରିଥିଲେ ଏବଂ ଆମ ଭଳି କେତେକ ଅବୋଧ ବସ୍ତୁବାଦୀଙ୍କ ଚିନ୍ତାରହିତ ମସ୍ତିଷ୍କକୁ ଆନୁଷଙ୍ଗିକ ଉପାଦାନ ଯୋଗାଇବା ପାଇଁ ଚେଷ୍ଟା କରିଥିଲେ । କିନ୍ତୁ ଆଜି ଆମ ମନରେ କ୍ଷୋଭ ଆସୁଛି ଯେ ଏ ପ୍ରକାର ଉନ୍ନତ ଚିନ୍ତାଧାରାର ପ୍ରାଣଦାତାଙ୍କୁ ଆମେ ସେତେବେଳେ ଏ ଦେଶର ପୁରୋଧା ରୂପେ ଅଧିଷ୍ଠିତ କରାଇ ପାରିଲୁ ନାହିଁ ।

କବିର ଲେଖନୀ ଶାଣିତ ଶାୟକଠାରୁ ମଧ୍ୟ ତୀକ୍ଷ୍ଣ । ଦୁଃସ୍ଥ, ପତିତଙ୍କ ପାଇଁ ଅଶ୍ରୁସଜଳ ନୟନରେ ସେ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ—ସେତେବେଳର ସାମନ୍ତବାଦୀ, ଏକଛତ୍ରପତି, ନିର୍ମମ, ଅତ୍ୟାଚାରୀ ଏବଂ ଅମାନୁଷିକ କ୍ରିୟାକଳାପରେ ରତ ଥିବା ଶାସକବର୍ଗଙ୍କ ଉଚ୍ଛେଦ ସାଧନ ନିମନ୍ତେ । ଦରିଦ୍ରନାରାୟଣର ପୂଜା ପାଇଁ ପ୍ରସ୍ତୁତ ହେଉଥିବା ବେଳେ ତାଙ୍କର ସ୍ୱଚ୍ଛନ୍ଦ ଗତିପଥରେ ବାଧା ସୃଷ୍ଟି କରୁଥିବା ପ୍ରତିକ୍ରିୟାଶୀଳମାନଙ୍କ ଉଦ୍ଦେଶ୍ୟରେ ସେ ବିଦ୍ରୋହୀ ହୋଇ କହନ୍ତି—

"ଯମଦୂତ ପ୍ରାୟେ କ୍ରୂର ରାଜଥାଟ
ବୁଲନ୍ତି ଚୌଦିଗେ ଗ୍ରାମ-ହାଟ ବାଟ ।
× × ×
ଶାନ୍ତ ସୁଶାସନ ନାମେ ପଶୁ ଅତ୍ୟାଚାର
ସତ୍ତ୍ୱ ସ୍ୱାଧୀନତା ଶିରେ ଉତ୍କଟ ପ୍ରହାର ।"

ତା ବ୍ୟକ୍ତିଗତ ଜାତୀୟ ଜୀବନରେ ରାଜନୈତିକ ସଙ୍କଟର ସନ୍ଧିକ୍ଷଣରେ ସେ ଯେତେବେଳେ ପାଦ ଦେଇଛନ୍ତି, ସେତେବେଳେ ଅନୁତାପ ଏବଂ ଅନୁଶୋଚନାର ଦାବାଗ୍ନିରେ ତାଙ୍କ ହୃଦୟ ଜଳିଉଠିଛି । ସେ ଜାତୀୟ କବି, ଜାତୀୟବାଦୀ, ଜାତିର ପ୍ରାଣକେନ୍ଦ୍ରରେ ପରିବର୍ଦ୍ଧିତ ଏକ ବ୍ୟାସାର୍ଦ୍ଧ

ମାନ । ତେଣୁ ତାଙ୍କର ଏ ବ୍ୟଥା ସ୍ୱାଭାବିକ । ସେହି ଅଲୌକିକ ସ୍ୱାଭାବିକତା ହିଁ ତାଙ୍କ ବ୍ୟକ୍ତିତ୍ୱର ଉତ୍କର୍ଷ । ସେ ଅନୁଭବ କରିଥିଲେ, ଯେଉଁ ଦେଶର ଶାସନ କଳୁଷିତ, ସେ ଦେଶର କୌଣସି ନାଗରିକଙ୍କଠାରୁ ଉନ୍ନତ ଭାବଧାରା ଆଶା କରିବା ବୃଥା । ସେ ନିଜେ ଶାସକ ନ ଥିଲେ, ଶାସକର ସ୍ୱର୍ଣ୍ଣ ସିଂହାସନ ପଦ ପାଇଁ ଲାଳାୟିତ ହୋଇ ନ ଥିଲେ କିମ୍ବା କ୍ଷମତା ଭୋଗର ଅମୀୟ ସୁଧାର ସ୍ୱାଦୁ ଆସ୍ୱାଦନ ପାଇଁ ଆଶା ପୋଷଣ କରି ନ ଥିଲେ । ତାଙ୍କ ମହାନ ଋଷି ପ୍ରକୃତିର ସ୍ୱାତନ୍ତ୍ର୍ୟ ହିଁ ତାଙ୍କୁ ଆଜି ସେହି ଆସନରେ ଆସୀନ କରାଇବା ପାଇଁ ଅସମର୍ଥ ହୋଇଛି । ସେତେବେଳେ ସେ ଯଥାର୍ଥରେ ଲେଖିଥିଲେ—

"ଭାରତ ଶାସନେ କିନ୍ତୁ ବ୍ୟବସ୍ଥା ସ୍ୱତନ୍ତ୍ର
ଏ ରାଜ୍ୟେ ଅମାତ୍ୟ ସଂସ୍ଥା ରାଜମାତ୍ର ଯନ୍ତ୍ର ।
କାହିଁ ଏଥି ରାଜା ଏ ଯେ ନିଜକର ସାହି
ପ୍ରଜା ସୁଖ-ଶାନ୍ତି ନାମେ ବୃଥା ଧର୍ମ ଦାହି ।"

ଆଦର୍ଶ ପ୍ରଶାସକ ହିଁ ସେ ଜନହୃଦୟରେ ବିପୁଳ ସୁଖ-ଶାନ୍ତିର ବୀଜ ବପନ କରି ସାତ୍ତ୍ୱିକ ତଥା ଆଧ୍ୟାତ୍ମିକତା ପ୍ରତି ଅନୁରକ୍ତ ହେବାକୁ ପ୍ରେରଣା ଯୋଗାଏ । ଗୋପବନ୍ଧୁ ଏହି ପ୍ରକାର ଶାସନମାନ୍ତିର ଅନୁସନ୍ଧାୟୀ ଥିଲେ । ମାନବିକ ପ୍ରବୃତ୍ତିକୁ କେନ୍ଦ୍ରୀଭୂତ କରି ଅନ୍ତରାତ୍ମାରେ ବିରାଜମାନ କରୁଥିବା କଳୁଷିତ ଜାନ୍ତବ ପ୍ରବୃତ୍ତିର ଦମନ ପାଇଁ ସେ ସର୍ବଦା ଚେଷ୍ଟା କରୁଥିଲେ । ତେଣୁ ସର୍ବଭାରତୀୟ ସ୍ତରରେ ଯେତେବେଳେ ଆମେ ଗାନ୍ଧିଜୀଙ୍କୁ ଏ ଜାତିର ଜନକ (Father of the Nation) ବୋଲି କହୁ, ଉତ୍କଳୀୟ ସ୍ତରରେ ଗୋପବନ୍ଧୁଙ୍କୁ ଆମେ ନବଉତ୍କଳର ନିର୍ମାତା (The Builder of the New Orissa) ବୋଲି କହିପାରିବା ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଗାନ୍ଧିଜୀ ରାମ ରାଜ୍ୟର ପରିକଳ୍ପନା କରିଥିଲେ, ଯାହାର ନାମାନ୍ତର ହୋଇ ଆଜି ଶତାବ୍ଦୀର ଶେଷାର୍ଦ୍ଧରେ ପଞ୍ଚାୟତିରାଜରେ ପରିଣତ ହେଲାଣି । ସେହିପରି ରୁଷର ଭାଗ୍ୟ ବିଧାତା ଷ୍ଟାଲିନ୍-ଲେନିନ୍‌ବାଦର ପ୍ରତିଷ୍ଠା କଲେ । ଚୀନ୍‌ରେ ମାଓ ସେ-ତୁଙ୍ଗ୍ କମ୍ୟୁନିଜମ୍‌ର ଭିତ୍ତିପ୍ରସ୍ତର ସ୍ଥାପନ କଲେ । ସେହି ଅନୁସାରେ ତୁଳନା କଲେ ଗୋପବନ୍ଧୁ ଉତ୍କଳ ପାଇଁ କ'ଣ କଲେ ? ସେ କୌଣସି ବାଦର

ପ୍ରତିଷ୍ଠାତା ନୁହନ୍ତି; କିନ୍ତୁ ମାନବବାଦର ଉପାସକ । ସେ ଶିଖାଇଲେ 'Plain living and high thinking'—ସରଳ ଜୀବନ ଯାପନ ଏବଂ ଉଚ୍ଚ ଚିନ୍ତନ, ଯାହା କି ସନାତନ ଆର୍ଯ୍ୟ ଧର୍ମର ମୌଳିକ ନୀତି । ସେ ଶିଖାଇଲେ ମାନବପ୍ରୀତି—ମଣିଷ ପାଇଁ ମଣିଷ କିପରି ଅଶ୍ରୁ ଝରାଇ-ପାରେ । ସେ ଦେଖାଇଲେ ଦୈହିକ, ମାନସିକ ତଥା ଆଧ୍ୟାତ୍ମିକ ପୁଷ୍ଟି-ସାଧନର ମାର୍ଗ । ଅନ୍ୟ ପକ୍ଷରେ ସ୍ୱାବଲମ୍ବନଶୀଳତା ପ୍ରତି ଦୃଷ୍ଟି ଦେଇ ତାଙ୍କର ଭାବୀ ବଂଶଧରଗଣଙ୍କୁ ତାଲିମ ଦେବା ମାଧ୍ୟମରେ ସମାଜର ମେରୁଦଣ୍ଡକୁ ସୁଦୃଢ଼ କରିବାକୁ ଯାଇ ସେ ସ୍ପଷ୍ଟ ମତ ବ୍ୟକ୍ତ କରିଥିଲେ—

"ଗୃହରେ ଅଟଇ ଗ୍ରାମେ ପଞ୍ଚାୟତ
ଗ୍ରାମବାସୀଗଣ ମଧ୍ୟେ ଏକମତ ।
ସ୍ୱରାଜ୍ୟ ସାଧନେ ଏହି ତିନି ପଦ
ପାଳିଲେ ଖଣ୍ଡିବ ଉତ୍କଳ ବିପଦ ।"

କିନ୍ତୁ ଆମେ ଆଜି ଶାସନ ତଥା ରାଜନୀତିର କୁଟିଳତା ମଧ୍ୟରେ ଯେପରି ଆବଦ୍ଧ, ଗୋପବନ୍ଧୁ ନିଜ ବ୍ୟକ୍ତିତ୍ୱକୁ ରାଜନୀତିର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ସେପରି ସୀମିତ କରି ନ ଥିଲେ । ତାଙ୍କର ଅନ୍ତର୍ଦୃଷ୍ଟି ସମାଜ ଆଡ଼ୁଆଳରେ ଥିବା ଗଣ-ରାଜନୀତି ଉପରେ ସର୍ବଦା ନିବଦ୍ଧ ଥିଲା । ତେବେ ବି ସେ ଯେ ଜଣେ କୁଶଳୀ ରାଜନୀତିଜ୍ଞଙ୍କର ହୃଦୟ ଏବଂ ବୌଦ୍ଧିକ ଚିନ୍ତାଧାରା ସହିତ ଜଡ଼ିତ ଥିଲେ ତାହା ନୁହେଁ, ପାପପଙ୍କିଳ ଶାସନ-ତନ୍ତ୍ରକୁ ସଜାଡ଼ିବା ପାଇଁ ସେ ବ୍ୟଗ୍ର ଓ ଉଦ୍‌ବିଗ୍ନ ଥିଲେ ମାତ୍ର । ରାଜନୀତି ବରଂ ନ ରହୁ, କିନ୍ତୁ ମାନବସମାଜ ମଧ୍ୟରେ ସହଯୋଗିତା, ସହାନୁଭୂତି ଶୀଳତା ତଥା ବନ୍ଧୁତାର ପ୍ରତିଷ୍ଠା ହେଉ—ଏହା ହିଁ ଥିଲା ତାଙ୍କର କାମ୍ୟ । ଦୁନିଆ ଦରବାରରେ ପ୍ରତ୍ୟେକକୁ ସତ୍ୟ-ଶିବ-ସୁନ୍ଦର ରୂପରେ ଠିଆ କରାଇବାର ବିରାଟ କଳ୍ପନା ପୋଷଣ କରି ସେ 'ପ୍ରଜାତନ୍ତ୍ର'ର ପ୍ରତିଷ୍ଠା ଉଦ୍ଦେଶ୍ୟରେ କହିଥିଲେ—

"ପ୍ରଜା ଲାଗି ରାଜ୍ୟ ପ୍ରଜାର ଶାସନ
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।"

ଆଜିର Political ideal ବା ରାଜନୀତିକ ଆଦର୍ଶବାଦ ଅନ୍ତରାଳରେ ଯେଉଁ ଲାଞ୍ଚ, ମିଛ, ପ୍ରତାରଣା, ପ୍ରିୟାପ୍ରୀତି ତୋଷଣ,

ସାମାଜିକ ଅନାଗ୍ରହ, ଅତ୍ୟାଗ୍ରହର ସୃଷ୍ଟି ହୋଇଛି, ତାର ବିରୋଧ ପାଇଁ ଗୋପବନ୍ଧୁଙ୍କ ଅନୁସୃତ ମଧ୍ୟମାର୍ଗ ଆଦର୍ଶର ଭାବଧାରା ହିଁ ଅନୁକୂଳ ପନ୍ଥା ବୋଲି ସ୍ପଷ୍ଟ ପ୍ରତୀୟମାନ ହୁଏ । ତାଙ୍କର ସ୍ୱଚ୍ଛ ହୃଦୟ, ସାଧୁତା, ନିଷ୍ଠାପରତା, ନିଃସ୍ୱାର୍ଥପରତା, ତ୍ୟାଗ ଓ ସେବା ମଧ୍ୟରେ ସେ ନିଜ ଜୀବନକୁ ଯେପରି ନିୟନ୍ତ୍ରିତ କଲେ, ତାହା ହିଁ ଆମ ପାଇଁ ଆଜି ଅନୁକରଣୀୟ । ସେ Communism ବା ସାମ୍ୟବାଦର ପ୍ରତିଷ୍ଠାତା ନ ଥିଲେ, Socialism ବା ସମାଜବାଦର ପ୍ରାଣଦାତା ନ ଥିଲେ କିମ୍ବା Federalism ବା ଜାତୀୟ ବାଦର ପୁନଃ ପ୍ରତିଷ୍ଠା କରି ନ ଥିଲେ । କିନ୍ତୁ ସବୁର ସମନ୍ୱୟରେ ତାଙ୍କର ସ୍ୱତନ୍ତ୍ରତା ପ୍ରକାଶ ପାଇଲା ମାନବବାଦ ବା Humanism ରୂପରେ । ତାଙ୍କର ପରିଦର୍ଶିତ ମାର୍ଗ କଠୋରେ ନୁହେଁ, ଅଧିକନ୍ତୁ ସରଳ; କିନ୍ତୁ ତାର ପରିକଳ୍ପନା ଏକ ଅତି ମାନବିକ ଚିନ୍ତାଶକ୍ତି ଉପରେ ପ୍ରତିଷ୍ଠିତ । ନିଜ ଜୀବନରେ ଯାହା ଅନୁଭବ କଲେ— ଯାହା ଉପଭୋଗ କଲେ ଏବଂ ଉପଯୋଗ କଲେ ତାହା ହିଁ ସେ ଆମ ପାଇଁ ରଖିଗଲେ ।

ସେ ଯାହା ରଖିଗଲେ, ସେହି ଅକ୍ଷୟ ସ୍ମୃତି ହିଁ ଆମ ଭିତରେ ତାଙ୍କ ଆତ୍ମାର ଉପସ୍ଥିତି ସମ୍ବନ୍ଧରେ ସମ୍ୟକ୍ ଧାରଣା ଦିଏ । ତଥାପି ଆମର ନୈତିକ ଓ ରାଜନୈତିକ ସ୍ଥିତି ଅଧୋଗତି ସମ୍ବନ୍ଧରେ ଆମେ ସଚେତନଶୀଳ ନୋହୁଁ । ପ୍ରକୃତରେ ଆମେ ଯଦି ଆମର ନୈତିକ ଓ ରାଜନୈତିକ ପରିସ୍ଥିତିର ଉନ୍ନତି ଇଚ୍ଛା କରୁ ଏବଂ ତାଙ୍କୁ ସମ୍ମାନ ଦେବାକୁ ଚାହୁଁ, ତେବେ ତାଙ୍କ ପରିକଳ୍ପିତ ସୁଚିନ୍ତିତ ଯୋଜନାରେ ହିଁ ଆଜିର ଲୋକତନ୍ତ୍ରକୁ ଆମେ ନିୟନ୍ତ୍ରିତ କରିବା ଉଚିତ ।

# ଜନଜୀବନର ପ୍ରତିନିଧି ଗୋପବନ୍ଧୁ

ଅଧ୍ୟାପକ **ସୀତାରାମ ମହାପାତ୍ର** ଏମ୍. ଏ., ଏଲ୍ ଏଲ୍. ବି.

[ ଅଧ୍ୟାପକ ମହାପାତ୍ର ବିଭିନ୍ନ ସାହିତ୍ୟାନୁଷ୍ଠାନ ସହିତ ସମ୍ପୃକ୍ତ ରହି ଗ୍ରନ୍ଥ ରଚନା ପାଇଁ ସମୟ ପାଇ ନ ଥିଲେ ମଧ୍ୟ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର ଏକାଧିକ ଚିନ୍ତାମୂଳକ ପ୍ରବନ୍ଧ ଲେଖକଙ୍କର ସାହିତ୍ୟିକ-ସ୍ପୃହାର ଭୂୟିଷ୍ଠ ପ୍ରମାଣ ଦିଏ । 'ସମାଲୋଚନା ସମାରୋହ' ତାଙ୍କର ଏକ ଉପାଦେୟ ସମାଲୋଚନା ଗ୍ରନ୍ଥ । ଅଧ୍ୟାପକ ଶ୍ରୀ ମହାପାତ୍ର ଆଲୋଚ୍ୟ ପ୍ରବନ୍ଧରେ ଗୋପବନ୍ଧୁଙ୍କର ସମାଜବାଦୀ ଆଦର୍ଶ, ବୈପ୍ଳବିକ ଚିନ୍ତାଧାରା, ଆଧ୍ୟାତ୍ମିକ ମନୋଭାବ, ମାନବିକ ଚେତନା ଏବଂ ବିଶ୍ବଜନୀନ ପ୍ରେମ ଉପରେ ବିଶ୍ଳେଷଣାତ୍ମକ ଆଲୋକ ସମ୍ପାତ କରିଛନ୍ତି ।—ସଂ ]

**ଦେଶ** ଓ ଜାତିର ଇତିହାସରେ ବେଳେ ବେଳେ ଏପରି ଏକ ଘଡ଼ିସନ୍ଧି ବେଳ ଆସେ ଯାହା ଦେଶର ଜନନାୟକ ଏବଂ ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କୁ ବିଶେଷ ଭାବେ ପ୍ରଭାବିତ କରି ସେମାନଙ୍କ ପ୍ରାଣକୁ ସ୍ପନ୍ଦିତ କରିଦିଏ । ସମୟର ସ୍ପନ୍ଦନ, ଜାତୀୟ ସଙ୍କଟବେଳାର ଘନ ଘନ ଆହ୍ୱାନ, ଯୁଗର ଚେତାବନୀ ଦେଶର ନରନାରୀଙ୍କ ପ୍ରାଣରେ ଜରୁରୀ ମୁହୂର୍ତ୍ତର ପ୍ରୟୋଜନ-ପ୍ରଦୀପ ପ୍ରଜ୍ଜ୍ୱଳିତ କରି ରଖେ । ସମୟର ଏହି ଆହ୍ୱାନକୁ କେହି ଏଡ଼ିପାରନ୍ତି ନାହିଁ । ଜାତିର ଆଶା, ଆକାଂକ୍ଷାର ସ୍ପଷ୍ଟ ସଙ୍କେତରେ ବ୍ୟକ୍ତି ଆତ୍ମତ୍ୟାଗର ପୂଜାବେଦୀ ଉପରେ ସାଧନାର ଯଜ୍ଞ ଆରମ୍ଭ କରେ । ବ୍ୟକ୍ତି ସେତେବେଳେ ଜାତିକୁ ଗ୍ରହଣ କରେ ଏବଂ ସେହି ବ୍ୟକ୍ତିର ତ୍ୟାଗ ଓ ସାଧନା ଜାତିର ଲକ୍ଷ୍ୟସାଧନ ଦିଗରେ ସାହାଯ୍ୟ କରିଥାଏ. ସେହି ବ୍ୟକ୍ତି ଯଥାର୍ଥରେ ଯୁଗପୁରୁଷ, ଜାତିର ନମସ୍ୟ ଏବଂ ସେହି ଯୁଗପୁରୁଷହିଁ ଜନଜୀବନର ସାଫଲ୍ୟ ଓ ବ୍ୟର୍ଥତାକୁ ଭଲ ଭାବେ ଉପଲବ୍ଧି କରିପାରେ ।

ଓଡ଼ିଆ ଜାତିର ଇତିହାସରେ ଏହିପରି ଏକ ଯୁଗପୁରୁଷଙ୍କ ଆବିର୍ଭାବ ହୋଇଥିଲା, ଯେ କି ନିଜ ପ୍ରତିଭାର ସ୍ଫୁରଣ କରି ଜନଜୀବନର ଶ୍ରେଷ୍ଠ ପ୍ରତିନିଧି ରୂପେ ଦେଶ ଓ ସମାଜ ଆଗରେ ଠିଆ ହୋଇଥିଲେ । ସେ ହେଉଛନ୍ତି ଗାନ ଜନଙ୍କର ଶ୍ରେଷ୍ଠ ବନ୍ଧୁ କବି ଗୋପବନ୍ଧୁ । ଗୋପବନ୍ଧୁଙ୍କ ଅମୂଲ୍ୟ ଜୀବନ ଯେତିକି ଦୀପ୍ତ ପ୍ରତିଭାରେ ସମୁଜ୍ଜ୍ୱଳ, ସେତିକି ମାନବତାର ମହାନ୍ ଆଦର୍ଶରେ ମହୀୟାନ୍ । ସାହିତ୍ୟସୃଷ୍ଟି ତାଙ୍କ ଜୀବନର ଅପୂର୍ବ କୀର୍ତ୍ତି ହେଲେ ସୁଦ୍ଧା ସେ ଏକାଧାରରେ ମର୍ମୀ, ସମାଜନାୟକ, ରାଜନୀତିଜ୍ଞ, ଆଧ୍ୟାତ୍ମବାଦୀ ଏବଂ କବି । କବି ଗୋପବନ୍ଧୁ ଜୀବନର ସୁଖ-ଦୁଃଖ, ଆଶା-ନିରାଶା ମଧ୍ୟରେ ଜୀବନ-ଦେବତାର ଆରାଧନା କରିଛନ୍ତି । କବିଙ୍କର ଦେଶପ୍ରେମ ସୃଜନାତ୍ମକ ଏବଂ ତାଙ୍କ ସାହିତ୍ୟସାଧନା ମୂଳରେ ରହିଛି ଗଭୀର ଦେଶପ୍ରୀତି, ନିଷ୍ଠା, ତ୍ୟାଗ ଏବଂ ଆଧ୍ୟାତ୍ମିକ ଚେତନା ।

ବ୍ରିଟିଶ ଶାସନର ଦମନ, ଶୋଷଣ ଓ ଅତ୍ୟାଚାର ଭାରତର ସାମାଜିକ ଜୀବନରେ ଏକ ନୂତନ ଜାଗରଣ ଆଣିଥିଲା । ଅସହଯୋଗ ଆନ୍ଦୋଳନ, ଅହିଂସା ମାର୍ଗରେ ସତ୍ୟାଗ୍ରହ ଭାରତୀୟ ଚିନ୍ତାଧାରାରେ ଏକ ନୂତନ ରାଜନୈତିକ ଯୁଗର ସୂତ୍ରପାତ କଲା । ଫଳରେ ଉଗ୍ର ଜାତୀୟ ଚେତନାର ଉଦ୍ଦାମ ସ୍ଫୁରଣରେ ଭାରତ ମାଟି ତେଜୀୟାନ ହେଲା । ଏହି ନୂତନ ଯୁଗର ନୂତନ ଚିନ୍ତା ଅଧିକାଂଶ ଦେଶପ୍ରେମୀ କବିଙ୍କ ରଚନାରେ ଆତ୍ମପ୍ରକାଶ କଲା । ତେଣୁ କବି ଗୋପବନ୍ଧୁ ସେହି ରାଜନୈତିକ ପରିବେଶରେ ତାଙ୍କର ବିଭିନ୍ନ କର୍ମମୟ ଜୀବନର ବୈପ୍ଳବିକ ଚିନ୍ତାର ଉଗ୍ର ସ୍ୱରୂପ ପ୍ରକାଶ କଲେ 'ବନ୍ଦୀର ଆତ୍ମକଥା', 'କାରାକବିତା', 'ଧର୍ମପଦ', 'ଅବକାଶ ଚିନ୍ତା' । ଏହି କବିତାଗୁଡ଼ିକର ସମ୍ବେଦନଶୀଳତା, ଆବେଗପ୍ରବଣତା ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ତାହା ଯେପରି ଜୀବନ-ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପିତ ଅର୍ଘ୍ୟ ପରି ମନେହୁଏ—

"ଦେଶବାସୀ ବନ୍ଧୁ ଆତ୍ମୀୟ ସୋଦର
କାରାଦଣ୍ଡେ ମୋର ହେଲେ କି କାତର ?
× × ×
ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।

ଦେଶର ସ୍ୱରାଜ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
\+ \+ \+
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ମରଣେ ଏହି ଶେଷ ଭିକ୍ଷା ।"

ବାସ୍ତବିକ ଗୋପବନ୍ଧୁଙ୍କ ପ୍ରାଣର ଏହି ଆବେଗ ବିଶ୍ୱ ସାହିତ୍ୟରେ ଅଦ୍ୱିତୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗୋପବନ୍ଧୁଙ୍କ ସାହିତ୍ୟରେ ମୁକ୍ତି, ମୈତ୍ରୀ ଓ ସାମ୍ୟବାଦର ପ୍ରତିଷ୍ଠା ପାଇଁ ଯେତିକ ଜୀବପ୍ରାଣ ଉଦ୍‌ବେଳିତ, ସେତିକ ମାନବରେ ମାନବସେବା ଓ ମହାଭାରତୀୟ ଭାବଧାରାର ସନ୍ଧାନ ପାଇବା ପାଇଁ ଉତ୍କଣ୍ଠିତ । ଦେଶରେ ସମାଜବାଦର ପ୍ରତିଷ୍ଠା, ଲୋକମତର ମହତ୍ତ୍ୱ ଓ ଗଣତାନ୍ତ୍ରିକ ରାଷ୍ଟ୍ରଶାସନ ପଦ୍ଧତିର ସ୍ୱରୂପ ବିଷୟରେ ସେ ଯେପରି ଭାବେ ବିଶ୍ଳେଷଣ କରିଛନ୍ତି, ତାହା ବାସ୍ତବିକ ପ୍ରଣିଧାନଯୋଗ୍ୟ । ତାଙ୍କ ସମାଜବାଦର ପରିକଳ୍ପନା ବିଶ୍ୱର ଯେକୌଣସି ସାମ୍ୟବାଦୀ-ରାଜନୀତିଜ୍ଞଙ୍କ ପରିକଳ୍ପନାଠାରୁ ଢେର୍ ବାସ୍ତବବାଦୀ । ସାମ୍ୟବାଦର ପ୍ରତିଷ୍ଠା ପାଇଁ କୌଣସି ଉଗ୍ର, ବୈପ୍ଲବିକ ଚିନ୍ତା ବା ହିଂସାକାଣ୍ଡର ଆଶ୍ରୟ ନ ନେଇ ବିଶ୍ୱାସାନୁରାଗ, ଭଗବତ୍‌ପ୍ରେମ, ଜାତିର ପରମ୍ପରା ଓ ଆତ୍ମୋତ୍ସର୍ଗରେ ଗଭୀର ବିଶ୍ୱାସ ରଖି ଦେଶରେ ସମାଜବାଦ ପ୍ରତିଷ୍ଠା ପାଇଁ ଗୋପବନ୍ଧୁ ସର୍ବଦା ସଚେତନ ଥିଲେ ଏବଂ ଏଥିପାଇଁ ସେ ଅହିଂସା ଓ ଶାନ୍ତିର ମାର୍ଗକୁ ଶ୍ରେଷ୍ଠ ମାର୍ଗ ରୂପେ ବାଛି ନେଇଥିଲେ । ଏହାହିଁ ଗୋପବନ୍ଧୁଙ୍କ ସମାଜବାଦ ନୀତି ଓ ଆଦର୍ଶର ବୈଶିଷ୍ଟ୍ୟ ।

ଦେଶର ସ୍ୱାଧୀନତା ହିଁ ତାଙ୍କ ଜୀବନର ସ୍ୱପ୍ନ । 'ସ୍ୱରାଜ' ହାସଲ ପାଇଁ ଆହ୍ୱାନ ଦେଇ, ଆନ୍ଦୋଳନ କରି ସେ ଯେତେବେଳେ କାରାବରଣ କରିଥିଲେ, ସେତେବେଳେ 'ବନ୍ଦୀର ଆତ୍ମକଥା' ରଚନା କରିଥିଲେ । ୧୯୨୩ ସାଲରେ ରାଜନୈତିକ ବନ୍ଦୀ ହିସାବରେ 'ହଜାରିବାଗ୍ ଜେଲ୍'ରେ ଥିଲାବେଳେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଆହ୍ୱାନ ଜଣାଇ ସେ ଲେଖିଛନ୍ତି—

"ମୋ ଭାଇ ଭଉଣୀ ହେ ଉତ୍କଳବାସୀ,
ସ୍ୱରାଜ୍ୟ-ସାଧନେ ନ ହୁଅ ଉଦାସୀ ।
ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର
ଏହା ବିନେ ଦେଶ ହୁଏ ଛାରଖାର ।
\+ \+ \+
କରଯୋଡ଼ି କରେ ବିନତି ଏତିକି
ଅସହଯୋଗରେ ରଖିବ ମତିକି ।
ଢାଳିଦିଅ ପ୍ରାଣ ସ୍ୱରାଜ୍ୟ-ସାଧନେ
ଆଶ୍ୱାସି ବନ୍ଦିଯେବେ ମୋତେ ନିବାସନେ
\+ \+ \+
ଉଇଁ ଆସୁଅଛି ସ୍ୱରାଜ୍ୟ ତପନ
ଭାରତେ ଜାଗ୍ରତ ନରନାରୀଗଣ ।
ଘୁମାଇ ନ ରହ ଏ ସମୟେ ଆଉ
ଉଠ ଉଠ ବେଗେ ବେଳ ଥାଉ ଥାଉ ।"

ଯୁଗପୁରୁଷ ଗୋପବନ୍ଧୁ ଦେଶର ମୁକ୍ତି ଆନ୍ଦୋଳନ ପାଇଁ ଯେପରି ଭାବବହ୍ୱଳ ହୋଇ ବିନତି ଜଣାଇଛନ୍ତି, ଯୁଗସ୍ରଷ୍ଟା ନେହେରୁ ମଧ୍ୟ ଠିକ୍ ସେହିପରି ୧୯୩୦ ସାଲରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହ ଚାଲିଥିବା ବେଳେ ଦେଶବାସୀଙ୍କୁ ଆହ୍ୱାନ ଦେଇ କହିଛନ୍ତି—

"Will you be more lookers-on in this glorious struggle ? The field of battle lies before you. The flag of India awaits your coming....Who lives if India dies and who dies if India lives ?"

"ତୁମେ କ'ଣ ଏହି ଗୌରବୋଜ୍ଜ୍ୱଳ ସଙ୍ଘର୍ଷରେ କେବଳ ଦେଖଣାହାରି ହୋଇ ରହିବ ? ତୁମ ଆଖି ଆଗରେ ସମର ପ୍ରାଙ୍ଗଣ । ଭାରତର ଜାତୀୟ ପତାକା ତୁମକୁ ଚାହିଁ ରହିଛି ।···ଯଦି ଭାରତର ମୃତ୍ୟୁ ଘଟେ ବଞ୍ଚିବ କିଏ ? ଯଦି ଭାରତ ଅମର ବଞ୍ଚିଛି ମରିବ କିଏ ?" *

* ଶ୍ରୀ ସୂର୍ଯ୍ୟନାରାୟଣ ଦାସଙ୍କର 'ଯୁଗସ୍ରଷ୍ଟା ନେହେରୁ', ୧ମ ସଂସ୍କରଣ, ପୃ. ୬୮ ଦ୍ରଷ୍ଟବ୍ୟ ।

ଗୋପବନ୍ଧୁଙ୍କ ପ୍ରାଣରେ ଯେଉଁ ଆବେଗ ଦେଖା ଦେଇଛି, ଅବିକଳ ସେହି ଆବେଗ ନେହେରୁଙ୍କ ପ୍ରାଣରେ ମଧ୍ୟ ଦେଖାଦେଇଛି ।

ସ୍ୱାଧୀନତା ପ୍ରାପ୍ତି ପରେ ଦେଶରେ ଗଣତାନ୍ତ୍ରିକ ଶାସନ ସଂସ୍ଥା ଓ ସମାଜବାଦର ପ୍ରତିଷ୍ଠା ପାଇଁ ଲୋକମାନ୍ୟ ତିଲକ, ଲାଲା ଲଜପତ ରାୟ, ଗୋପାଳକୃଷ୍ଣ ଗୋଖଲେ, ପଣ୍ଡିତ ନେହେରୁ ପ୍ରଭୃତି ବିଶିଷ୍ଟ ଜନନାୟକମାନେ ନିଜ ନିଜର ବ୍ୟକ୍ତିଗତ ଚିନ୍ତାଧାରା ଯେପରି ପ୍ରକାଶ କରିଥିଲେ, ଉତ୍କଳମଣି ଗୋପବନ୍ଧୁ ମଧ୍ୟ ଅନୁରୂପ ଚିନ୍ତାଧାରା ପ୍ରକାଶ କରିଛନ୍ତି । ଅର୍ଥନୈତିକ ସ୍ୱାଧୀନତା ବିନା ରାଜନୈତିକ ସ୍ୱାଧୀନତା ମୂଲ୍ୟହୀନ । ତେଣୁ ଦେଶର ଜନନାୟକମାନେ ଅର୍ଥ ନୈତିକ ସମସ୍ୟାର ସମାଧାନ କରି ଜନସାଧାରଣଙ୍କ ମନର ଦୁଃଖ ଓ ଦୈନ୍ୟକୁ ଦୂରକରି ଦେଶରେ ଏକ ସୁସ୍ଥ ଗଣତାନ୍ତ୍ରିକ ସରକାର ଗଢ଼ିବାର ଯେଉଁ ସ୍ୱପ୍ନ ଦେଖୁଥିଲେ, ସମ୍ବେଦନଶୀଳ କବି ଗୋପବନ୍ଧୁ ମଧ୍ୟ ସେହି ସ୍ୱପ୍ନ ଦେଖିଛନ୍ତି । ଅବହେଳିତ, ଲାଞ୍ଛିତ, ଶୋଷିତ ନରନାରୀଙ୍କ ପ୍ରାଣର ବ୍ୟାକୁଳତା ସେ ନିଜେ ଅନୁଭବ କରି ଗାଇଛନ୍ତି—

"ଉତ୍କଳର କେତେ କନ୍ୟା ନାରଖାର
ନ କରନ୍ତି ପେଟ ପୂରାଇ ଆହାର
ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।
\+ \+ \+
ଥିଲେ ଯେଉଁ ମଲ୍ଲ ଉତ୍କଳ ସୈନିକ
ପାଇକ ପ୍ରଧାନ ମାଗୁଛନ୍ତି ଭିକ
ଦେହେ ନାହିଁ ମାଂସ ଦୋହଲୁଛି କଣ୍ଠା
ଅନାହାରେ ଆହା ନ ଉଠଇ ଅଣ୍ଟା ।"

ଏହି ସମସ୍ୟାର ସ୍ଥାୟୀ ସମାଧାନ ପାଇଁ ବିଶ୍ୱବରେଣ୍ୟ ନେହେରୁ ଏକ ପନ୍ଥା ନିର୍ଦ୍ଦେଶ କରି କହିଥିଲେ—

"I am convinced that the only key to the solution of the world's problems and of India's problems lies in socialism."

"ମୁଁ ହୃଦୟଙ୍ଗମ କରିଛି ଯେ ପୃଥିବୀ ଏବଂ ଭାରତର ସମସ୍ୟା-ଗୁଡ଼ିକର ସମାଧାନ ଲାଗି ସମାଜବାଦ ହିଁ ଏକମାତ୍ର ସୂତ୍ର।" *

ଗୋପବନ୍ଧୁଙ୍କ କଣ୍ଠରୁ ମଧ୍ୟ ଝରିଥିଲା—

"ପ୍ରଜା ଲାଗି ରାଜା, ପ୍ରଜା ହିତେ ରାଜନୀତି,
ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳ ଭିତ୍ତି,
ସାର୍ବଭୌମ ସନାତନ ଏ ଶାସନ ବିଧି
ଲଭିଛି ସର୍ବତ୍ର ଆଜ ବିଶେଷ ପ୍ରସିଦ୍ଧି।"

ଏହିପରି ଗଣତାନ୍ତ୍ରିକ ଶାସନ ସଂସ୍ଥା ଯଦି ସ୍ୱଦେଶରେ ମୂଣ୍ଡ ଟେକି-ଉଠେ, ତେବେ ସମସ୍ୟାର ସମାଧାନ ଆପେ ଆପେ ହୋଇଯିବ—ଏହି ବିଶ୍ୱାସ ଗୋପବନ୍ଧୁଙ୍କର ଚିରନ୍ତନ ବିଶ୍ୱାସ। ତାଙ୍କ ମତରେ—

"ସ୍ୱରାଜ୍ୟେ ଏ ମାତି ହୋଇବ ପ୍ରଚାର
ନ ରହିବ ଆଉ ଦୁଃଖ ଦୁରାଚାର
ନ ସହିବ କଷ୍ଟ କେହି ଅନାହାରେ
ନ ମରିବ ଦୁଃଖୀ ଧନୀଙ୍କ ପ୍ରହାରେ।"

ପଣ୍ଡିତ ନେହେରୁ ମଧ୍ୟ ଦୃଢ଼ତାର ସହ କହିଥିଲେ—

"I have been and am a convinced socialist and a believer in democracy."

"ମୁଁ ଜଣେ ହୃଦ୍‌ବୋଧ ସମାଜବାଦୀ ଥିଲି ଓ ଅଛି ଏବଂ ଗଣତନ୍ତ୍ରରେ ମୁଁ ଆସ୍ଥାବାନ୍।"

ଭାରତର ସ୍ୱାଧୀନତା-ସଂଗ୍ରାମ ଓ ସମାଜବାଦର ପ୍ରତିଷ୍ଠା ପାଇଁ ଗୋପବନ୍ଧୁ ଯେଉଁ ପନ୍ଥା ନିର୍ଦ୍ଦେଶ କରିଛନ୍ତି ତାହାର ମୂଳରେ ଆଧ୍ୟାତ୍ମିକ ରହସ୍ୟର ସନ୍ଧାନ ସେ ପାଇଛନ୍ତି ଏବଂ ଦେବଭୂମି, କର୍ମଭୂମି ତଥା ଧର୍ମଭୂମି ଭାରତର ପରମ୍ପରା ପ୍ରତି ଗଭୀର ଅନୁରାଗ ପ୍ରକାଶ କରି ଗାଇଛନ୍ତି—

* ଏଜନ୍ ପୃ ୧୦୪। ଏଜନ୍-ପୃ ୧୧୧

"ମହତ୍ମ ସାଧନ ମହାତ୍ମା କହଣ
ନ ଯାଏ ଜଗତେ କେବେ ଅକାରଣ
ଅନ୍ୟାୟ ଅଧର୍ମ ପାପ ଅତ୍ୟାଚାର
ମାନେ ଅବଶେଷ ସତ୍ୟ ପାଖେ ହାର
ଏ ବିଶ୍ୱାସେ ସର୍ବେ ଦୃଢ଼ କରି ମନ
ସ୍ୱରାଜ୍ୟ ଧରମ କର ଆଚରଣ ।

\+ + +

ଏକତା ମନ୍ତ୍ରରେ ରଖ ସଦା ମତି
ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି ।"

ପୁଣି ସେ ଆଧ୍ୟାତ୍ମିକ ଭାବରେ ଅନୁପ୍ରାଣିତ ହୋଇ କହୁଛନ୍ତି—

"ନ ଅଟକେ କର୍ମ ନେତାର ଅଭାବେ
ଧର୍ମନାବ ଚଳେ ଧର୍ମର ପ୍ରଭାବେ ।

ଗୋପବନ୍ଧୁ ନିଜର ପରମ୍ପରା ଓ ଐତିହ୍ୟ ସହିତ ବିଳକ୍ଷଣ ବୈପ୍ଳବିକ ଚିନ୍ତା ଓ ସ୍ୱଦେଶପ୍ରୀତିର ଅପୂର୍ବ ସମନ୍ୱୟ ରଖି ପାରିଛନ୍ତି । ତେଣୁ ତାଙ୍କ କବିତାରେ ମୌଳିକତା ଅତି ସୁନ୍ଦର ଭାବେ ପ୍ରକାଶ ପାଇଛି ଏବଂ ଏହା ହିଁ ତାଙ୍କ ସାହିତ୍ୟର ନିର୍ଯ୍ୟାସ ।

ପରିଶେଷରେ ଏତିକି କଥା ଯେ ବିଶ୍ୱକବି ରବୀନ୍ଦ୍ରନାଥ ଯେପରି ବିଶ୍ୱପ୍ରେମୀ ହେଲେ ବି ନିଜର ସ୍ୱଦେଶ ଓ ସ୍ୱଦେଶର ସାଂସ୍କୃତିକ ଐକ୍ୟ ପାଇଁ ସର୍ବଦା ସଚେତନ ଥିଲେ, ପୁଣ୍ୟଶ୍ଳୋକ ଗୋପବନ୍ଧୁ ମଧ୍ୟ ନିଜ ଦେଶ ଏବଂ ଦେଶର ସଂସ୍କୃତି ଓ ଐତିହ୍ୟ ପ୍ରତି ସର୍ବଦା ସଚେତନ ଥିଲେ । 'ସ୍ୱଦେଶ' ନାମ ଉଚ୍ଚାରିତ ହେଲା ମାତ୍ରେ ବିଶ୍ୱକବି କହୁଥିଲେ— "ଆମର ସ୍ୱଦେଶ, ଆମର ଚିରନ୍ତନ ସ୍ୱଦେଶ, ଆମର ପିତୃପିତାମହଙ୍କର ସ୍ୱଦେଶ, ଆମର ସନ୍ତାନସନ୍ତତିର ସ୍ୱଦେଶ, ଆମର ପ୍ରାଣଦାତା, ଶକ୍ତିଦାତା, ସମ୍ପଦଦାତା ସ୍ୱଦେଶ ।" ଗୋପବନ୍ଧୁ ମଧ୍ୟ ନିଜ ଦେଶର

କଥା ଚିନ୍ତା କଲାବେଳେ ଠିକ୍ ସେହିଭଳି କହୁଥାନ୍ତି ଏବଂ କରି କରି କାନ୍ଦୁଥାନ୍ତି । ତାଙ୍କର 'କାବ୍ୟକବିତା', 'ବନ୍ଦୀର ଆତ୍ମକଥା' ପ୍ରଭୃତି ପାଠକଲେ ଏହାର ସତ୍ୟତା ପୂର୍ଣ୍ଣମାତ୍ରାରେ ଉପଲବ୍ଧ ହେବ । ଭାରତୀୟ ସଂସ୍କୃତିର ଅଖଣ୍ଡତା ଓ ସମୃଦ୍ଧି ପାଇଁ ସେ ଯେତିକି ସଜାଗ ରହିଛନ୍ତି, ସେତିକି ବିଶ୍ୱର ସମଗ୍ର ମାନବ ଜାତିର ଆଶା, ଆକାଂକ୍ଷା ପ୍ରତି ସଜାଗ ରହିଛନ୍ତି । ବିଶ୍ୱର କଲ୍ୟାଣ ପାଇଁ ଭଗବାନଙ୍କ ଚରଣରେ ନୈବେଦ୍ୟ ଢାଳି ସେ ଗାଇଛନ୍ତି—

"ମଧୁମୟ ହଉ ହେଉ ବିଶ୍ୱ ନନ୍ଦାଦିତ
ଉଠୁ ବିଶ୍ୱପ୍ରାଣେ ମଧୁ ଅଭୃତ-ସଙ୍ଗୀତ ।"

ପୁଣି—

"ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତ ତେଜ ଅଭିମାନ ।"

ଏହି ବାଣୀ ତାଙ୍କ ସାର୍ବଜନୀନ ଚିନ୍ତାର ଅମର ପ୍ରତୀକ । ଜନଜୀବନର ପ୍ରତିନିଧି ଗୋଦାବରୀଶ ସମଗ୍ର ବିଶ୍ୱରେ ଏହି ସାର୍ବଜନୀନ ଚିନ୍ତା, ମାନବିକତା ଓ ସେବାଧର୍ମର ପ୍ରଚାର ପାଇଁ ବୋଧହୁଏ ଏ ମାଟିରେ ଜନ୍ମ ହୋଇଥିଲେ ।



# ଜାତୀୟତାବାଦ ଓ ଗୋପବନ୍ଧୁ

ଶ୍ରୀ ସତ୍ୟନାରାୟଣ ମହାପାତ୍ର, ଏମ୍. ଏ.

[ ତରୁଣ ଲେଖକ ଶ୍ରୀ ମହାପାତ୍ର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ସ୍ନାତକୋତ୍ତର ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଶିକ୍ଷାୟତନଠାରୁ ଦୂରରେ ରହି ମଧ୍ୟ ପ୍ରବନ୍ଧ, ଜୀବନୀ, ଗଳ୍ପ, କବିତା ପ୍ରଭୃତି କ୍ଷେତ୍ରରେ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି ନିମିତ୍ତ ଯେଉଁଭଳି ଦୃଢ଼ ପ୍ରୟାସୀ, ତାହା ବାସ୍ତବିକ ପ୍ରଶଂସନୀୟ । ତାଙ୍କର ବହୁ ଗଳ୍ପ ଓ କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ କଟକ ଓ ଜୟପୁର ଆକାଶବାଣୀ କେନ୍ଦ୍ରରୁ ମଧ୍ୟ ପ୍ରଚାରିତ ହେଉଛି । ତାଙ୍କ ପ୍ରଣୀତ ପୁସ୍ତକମାନଙ୍କ ମଧ୍ୟରେ "ଦେଶସେବକ ଲକ୍ଷ୍ମୀନାରାୟଣ", "ପଣ୍ଡିତ ଗୋଦାବରୀଶ", "ବ୍ୟାସକବି ଫକୀରମୋହନ", "ପ୍ରିୟଦର୍ଶିନୀ ଇନ୍ଦିରା" "ଉତ୍କଳମଣି ଗୋପବନ୍ଧୁ" ଇତ୍ୟାଦି ଉଲ୍ଲେଖଯୋଗ୍ୟ । ଆଲୋଚ୍ୟ ପ୍ରବନ୍ଧଟିରେ ଶ୍ରୀ ମହାପାତ୍ର ଗୋପବନ୍ଧୁଙ୍କ ଜାତୀୟତାବାଦର ସପ୍ରମାଣ ଆଲୋଚନା ଉପସ୍ଥାପନ କରିଛନ୍ତି । —ସ ]

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତ ପଡ଼ି ମୋର ମାଂସ ହାଡ଼ ।"

ଏ ଥିଲେ କବି, ଲେଖକ, ବକ୍ତା, ରାଜନୀତିଜ୍ଞ. 'ସମାଜ' ସମ୍ବାଦ ପତ୍ରର ପ୍ରତିଷ୍ଠାତା. ଦେଶସେବକ ତଥା ସେବାପର ଉଗ୍ର ଜାତୀୟତାବାଦୀ ସ୍ୱଚ୍ଛପୂତଚିତ୍ତ ଗୋପବନ୍ଧୁଙ୍କ ଅନ୍ତରର ନିଗୂଢ଼ତମ ପ୍ରଦେଶର ବାର୍ତ୍ତା । ଯେତେବେଳେ ଓଡ଼ିଆ ଜାତି ତାର ସତ୍ତା ହରାଇ ବସୁଥିଲା, ଓଡ଼ିଆ ପ୍ରାଣରୁ ଯେତେବେଳେ ଜାତୀୟତା ଭାବ କ୍ରମେ କ୍ରମେ ବିଲୀନ ହେବାକୁ ଆରମ୍ଭ କରିଥିଲା, ସମାଜର ଛତ୍ରେ ଛତ୍ରେ ବିଭିନ୍ନ କୁସଂସ୍କାର ପୂରି

ଉଦ୍ଧୃଥିଲ ଓ ବଙ୍ଗ, ବିହାର, ଆନ୍ଧ୍ର ତଥା ମାନ୍ଦ୍ରାଜ ତିନି କୋଣରୁ ଆମର ପଡ଼ୋଶୀମାନେ ସେମାନଙ୍କର ଭୌଗୋଳିକ ସୀମା ବିସ୍ତାର କରିବା ସଙ୍ଗେ ସଙ୍ଗେ ଭାଷାର ପ୍ରାଧନ୍ୟ ଓଡ଼ିଶାରେ ପ୍ରତିଷ୍ଠା କରିବା ଲାଗି ଉଦ୍ୟମ ଉଦ୍ୟମ ଆରମ୍ଭ କରିଥିଲେ, ସେହିଭଳି ଏକ ସଙ୍କଟସନ୍ଧି ମୁହୂର୍ତ୍ତରେ ଉତ୍କଳର ଅନ୍ଧାରି ମୂଲକକୁ ମଣିର ଆଲୋକରେ ଉଦ୍‌ଭାସିତ କରିଥିଲେ ପଣ୍ଡିତ ଗୋପବନ୍ଧୁ ଦାସ ।

ନିଃସ୍ୱାର୍ଥପର ଭାବେ ଜାତିର ସେବା କରିବା ଥିଲା ତାଙ୍କ ଜୀବନର ଚରମ ଓ ପରମ ଲକ୍ଷ୍ୟ । ଅବହେଳିତ, ବନ୍ୟା-ବାତ୍ୟା ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଓଡ଼ିଆମାନଙ୍କର ଦୁଃଖଦୁର୍ଦ୍ଦଶା ଗୁରୁତାବସ୍ଥାରୁ ହିଁ ଗୋପବନ୍ଧୁଙ୍କ ଜୀବନରେ ଦାରୁଣ ଆଘାତ ଦେଇଥିଲା । ପୁନଶ୍ଚ ଇଂରେଜ ଶାସନର ଅତ୍ୟାଚାରର ମାତ୍ରାରେ ସେ ବିଚଳିତ ହୋଇ ପଡ଼ିଥିଲେ । ସେଥିଲାଗି ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ହୋଇ ଅହିଂସା ନୀତିରେ ଦେଶକୁ ସ୍ୱାଧୀନ କରିବାଲାଗି ଉପଯୁକ୍ତ କର୍ମକ୍ଷେତ୍ର ପ୍ରସ୍ତୁତ କରିବା ଥିଲା ତାଙ୍କର ଐକାନ୍ତିକ କାମନା । ତେଣୁ ତାଙ୍କ ଜୀବନର ସହଯାତ୍ରୀ ରୂପେ ଆଚାର୍ଯ୍ୟ ହରିହରଙ୍କ ସମେତ ପଣ୍ଡିତ ଗୋଦାବରୀଶ, ପ୍ରଚାରକ ଅନନ୍ତ ମିଶ୍ର, ପଣ୍ଡିତ ନୀଳକଣ୍ଠ ପ୍ରଭୃତିଙ୍କ ସାହଚର୍ଯ୍ୟକୁ କେବଳ ସ୍ୱାଗତ ହିଁ କରି ନ ଥିଲେ, ବରଂ ସେମାନଙ୍କୁ ସଂଗଠିତ କରିଥିଲେ । ବିଶେଷ କରି ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଓ ଆଚାର୍ଯ୍ୟ ହରିହରଙ୍କ ମଧ୍ୟରେ ଥିଲା ଏକ ଅଭୂତପୂର୍ବ ଆକର୍ଷଣ ।

ପବିତ୍ର ଦେଶସେବା ମାଧ୍ୟମରେ ଜନସାଧାରଣଙ୍କ ମନରେ ଜାତୀୟ ଭାବର ଉଦ୍ରେକ କରାଇବା ଲାଗି ତାଙ୍କ ଆନ୍ତରିକ କାମନାକୁ ଶତଗୁଣ ଉତ୍ସାହ ଦେଇଥିଲେ ପୁରୀର ଉଗ୍ରଜାତୀୟତାବାଦ ନେତା ମୁକ୍ତ୍ୟାର ରାମଚନ୍ଦ୍ର ଦାସ । ପଣ୍ଡିତ ଗୋପବନ୍ଧୁ ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା ସ୍ୱର୍ଗତ ପଣ୍ଡିତ ହରିହର ଦାସଙ୍କ ବ୍ୟକ୍ତିତ୍ୱଦ୍ୱାରା ମଧ୍ୟ ଗଭୀର ଭାବରେ ଅନୁପ୍ରାଣିତ ହୋଇଥିଲେ । ପ୍ରକୃତରେ "ହରିହର ଦାସଙ୍କୁ ଗୋପବନ୍ଧୁ ଦେଖି ନଥିଲେ । କିନ୍ତୁ ସଂସ୍କାରବାଦୀ ହରିହରଙ୍କଠାରେ ସେ ଯେଉଁ ଅଗ୍ନିଗର୍ଭ ତେଜସ୍ୱିତା, ଅକପଟ ଦେଶହିତୈଷିତା, ପ୍ରାଚ୍ୟ-ପାଶ୍ଚାତ୍ୟର ମିଳନସ୍ପୃହା ଏବଂ ଦେଶର ଶିକ୍ଷାପ୍ରସାର ନିମନ୍ତେ ଉଦ୍ୟମ ବ୍ୟାକୁଳତାର

ପରିଚୟ ପାଇଥିଲେ, ତାହା ହିଁ ହରିହରଙ୍କ ବ୍ୟକ୍ତିତ୍ୱ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନର କାରଣ ।” (୧) କେବଳ ସେତିକି ନୁହେଁ, ଏ ବୟସରେ ତାଙ୍କ ପ୍ରିୟ ପବିତ୍ର ଭାଗବତର ପ୍ରଭାବକୁ ମଧ୍ୟ ଅସ୍ୱୀକାର କରିହେବ ନାହିଁ । “ଜୀବନର ନିରାଡ଼ମ୍ବରତା, ସରଳତା, ନେତୃତ୍ୱର ନିରହଂକାରିତା, ମୁନିଜନସୁଲଭ ବିନମ୍ରତା ଏବଂ ପବିତ୍ର ସେବା ମନୋଭାବ ପ୍ରଭୃତିର ଆଦର୍ଶ ହୁଏତ ପିଲାଦିନରୁ ସେ ଏହି ଭାଗବତରୁ ପାଇଥିଲେ” (୨) ।

ଗୋଟିଏ ବୈଶାଖ ପୂର୍ଣ୍ଣିମୀ ରାତିର ସ୍ମରଣୀୟ ଘଟଣା । ଦେଶ ଓ ଜାତି ପାଇଁ ପ୍ରାଣବଳୀ ଦେବାଲାଗି ଶପଥ ଗ୍ରହଣ ।

ସେଦିନ ଥିଲା ସପ୍ତାଙ୍ଗ ଭାଗବତ ପାଠର ଉଦ୍‌ଯାପନ ଦିବସ ।

ଗୋପବନ୍ଧୁଙ୍କ ଜନ୍ମସ୍ଥାନ ସୁଆଣ୍ଡୋ ଗ୍ରାମରେ ଯାଇ ପହଞ୍ଚିଥିଲେ ନୀଳକଣ୍ଠ, ହରିହର ଓ ଅନନ୍ତ ମିଶ୍ର । ସେଦିନ ଚନ୍ଦ୍ରପକ୍ଷ ରାତିରେ ସେମାନଙ୍କ ସହିତ ଗୋପବନ୍ଧୁ ଯାଇଥିଲେ ଭାର୍ଗବୀ ନଦୀ ବନ୍ଧ ତଳର ଯୋଗେଶ୍ୱରୀଙ୍କ ମନ୍ଦିର ନିକଟକୁ । ସେଠି ଏକ ବରଗଛ ତଳେ ଗୁଞ୍ଚ ପକାଇ, ତା ଉପରେ ଚାରି ଜଣ ବସି, ପ୍ରାଣର ସମସ୍ତ ଆବେଗ ନେଇ ସଂକଳ୍ପ କରିଥିଲେ “ସରକାରୀ ଚାକିରି କରିବା ନାହିଁ । ଜନ୍ମ ହୋଇ ଦେଶକୁ ଯାହା ଦେଖିଥାଇଁ ମଲାବେଳେ ତାହାଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିଯିବା ଓ ସେଇଥିପାଇଁ ବରାବର ପ୍ରଯତ୍ନରେ ରହିବା” । ଏ ସଂକଳ୍ପ, ଏ ପ୍ରତିଜ୍ଞା ତାଙ୍କର ଭୀଷ୍ମଙ୍କ ପ୍ରତିଜ୍ଞା ପରି ସାରା ଜୀବନରେ ଅଟଳ ରହିଥିଲା । ତାହାଙ୍କର କର୍ମପଥ ସେବାପଥରୁ ତିଳେ ହେଲେ ବିଚ୍ୟୁତ ହୋଇ ନ ଥିଲା । ଜୀବନରେ ଅନେକ ବାଧା ଆସିଥିଲା, ବନ୍ଧନ ଆସିଥିଲା, ଚୀନର ପ୍ରାଚୀର ଭଳି ଅନେକ ବିପଦ ସମ୍ମୁଖରେ ଉପସ୍ଥିତ ହୋଇଥିଲା, ପରିବାରିକ ଅଶାନ୍ତି ଥିଲା, କିନ୍ତୁ କୌଣସିଥିରେ ମଧ୍ୟ ସେ ସାମାନ୍ୟତମ ବିଚଳିତ ହୋଇ ନଥିଲେ । “କୋ ଈପିସିତାର୍ଥ ସ୍ଥିରନିଶ୍ଚୟଂ ମନଃ-ପୟଶ୍ଚ ନିମ୍ନାଭିମୁଖଂ ପ୍ରତୀପୟେତ୍ ।” ଯେଉଁଦିନ ବି. ଏ. ପରୀକ୍ଷା ଫଳ ପ୍ରକାଶ ପାଇଥିଲା ସେ ପାସ୍ କରିଥିବା ଶୁଭ ସମ୍ବାଦ ପାଇବା ସଙ୍ଗେ ସଙ୍ଗେ ଆଉ ଗୋଟିଏ ଦୁଃସମ୍ବାଦ ପାଇଥିଲେ ଯେ ତାଙ୍କର ଶିଶୁ

(୧) କବି ଗୋପବନ୍ଧୁ—ଶ୍ରୀ ଚିନ୍ତାମଣି ଦାସ, ପୃଷ୍ଠା ୧୫
(୨) କବି ଗୋପବନ୍ଧୁ— ” ପୃଷ୍ଠା-୧୩

ପୁଣ ଆଉ ଇହ ଜଗତରେ ନାହାଁନ୍ତି । ଠିକ୍ ସେମିତି ଯେଉଁଦିନ ଓକିଲାତି ପାସ୍ କରିବା ଖବର ପାଇଥିଲେ, ସେହିଦିନ ଆଉ ଏକ ଦାରୁଣ ଦୁଃଖଦାୟକ ସମ୍ବାଦ ପାଇଥିଲେ ଯେ ତାଙ୍କ ସହଧର୍ମିଣୀ ତାଙ୍କୁ ଛାଡ଼ି ଚାଲି ଯାଇଛନ୍ତି ଅମରପୁରକୁ ଚିରଦିନ ପାଇଁ । ସାଧାରଣ ଲୋକ ପକ୍ଷରେ ଏହା ଅସହ୍ୟ, କିନ୍ତୁ ଅସାଧାରଣ ବ୍ୟକ୍ତିତ୍ୱସମ୍ପନ୍ନ ପୁରୁଷ ଗୋପବନ୍ଧୁ ସେସବୁକୁ ଦୃଢ଼ ମନୋବଳ ସହିତ ଭଗବାନଙ୍କ ଆଶୀର୍ବାଦ ବୋଲି ଗ୍ରହଣ କରିଥିଲେ । "ଏହାଦ୍ୱାରା ଯାହା କିଛି ପାରିବାରିକ ସମ୍ପର୍କ ଦେଶସେବା କାର୍ଯ୍ୟରେ ବାଧା ଘଟାଇ ପାରିଥାନ୍ତା ସେସବୁ ବନ୍ଧନ ମଧ୍ୟ ଛିଣ୍ଡିଗଲା । ଫଳରେ କର୍ମବୀର ଗୋପବନ୍ଧୁଙ୍କ ବଜ୍ରକଠୋର ହୃଦୟ ଦେଶସେବା ବ୍ରତରେ ଅଟଳ ଅଚଳ ପରି ସ୍ଥିର ରହିଲା" (୩) ।

ଏ ଦଳିତ ମାନବର ସେବା କରିବାଲାଗି, ଏ ନିଷ୍ପେଷିତ ଜାତିର ଉତ୍ଥାନ ଲାଗି ଗୋପବନ୍ଧୁଙ୍କ ଅଧିନାୟକତ୍ୱରେ ଗଢ଼ା ଯାଇଥିଲା 'ୟଙ୍ଗ ଓଡ଼ିଶା ଏସୋସିଏସନ' କଟକଠାରେ ୧୯୦୪—୧୯୦୫ ମସିହାରେ । ଏହି ତରୁଣ ଉତ୍କଳ ସଙ୍ଘର ସ୍ଥାୟୀ ସଭାପତି ଥିଲେ ରେଭେନ୍ସା କଲେଜର ଅଧ୍ୟକ୍ଷ ଓ ସ୍ଥାୟୀ ସାଧାରଣ ସମ୍ପାଦକ ଥିଲେ ଗୋପବନ୍ଧୁ ଦାସ । ତାର ବିଭିନ୍ନ ବିଭାଗ ତଥା ସାହିତ୍ୟ ଶାରୀରିକ ଶିକ୍ଷା, ସାମାଜିକ ଏବଂ ଅର୍ଥନୈତିକ ବିଭାଗଗୁଡ଼ିକର କାର୍ଯ୍ୟ ସମ୍ପାଦନା କରୁଥିଲେ ନୀଳକଣ୍ଠ, ହରିହର, ଗୋଦାବରୀଶ, କୃପାସିନ୍ଧୁ ଇତ୍ୟାଦି । ତେବେ କେତେକ ନିର୍ଦ୍ଦିଷ୍ଟ ଯୁବକଙ୍କୁ ନେଇ କେତୋଟି ଗୋପନ ବୈଠକ ଅନୁଷ୍ଠିତ ହେଉଥିଲା ।

ସେ ବୈଠକଗୁଡ଼ିକ ପରିଚାଳନା କରୁଥିଲେ ସ୍ୱୟଂ ଗୋପବନ୍ଧୁ ଓ ବ୍ରଜସୁନ୍ଦର । ସେଠି ଆଲୋଚନାର ବିଷୟବସ୍ତୁ ଥିଲା ଫରାସୀ ବିପ୍ଳବର କାହାଣୀ, ଇଟାଲିର ସ୍ୱାଧୀନତା ଆନ୍ଦୋଳନର ଇତିହାସ ଇତ୍ୟାଦି । ବଙ୍ଗଳାର ତତ୍କାଳୀନ ଉଗ୍ର ଜାତୀୟ ଭାବପନ୍ନ ସନ୍ତ୍ରାସବାଦୀ ଦଳଙ୍କ ସହିତ ଏ ଗୁପ୍ତ ବୈଠକର ସଂଯୋଗ ମଧ୍ୟ ଥିଲା । ସେହି ଦଳ ଏ ଦେଶର ବିଦେଶୀ ଶାସନକାଳକୁ ଅକାମୀ କରି ସେ ସରକାରର ଅସ୍ତିତ୍ୱ ଲୋପ କରିଦେବାପାଇଁ ଗୁପ୍ତରେ ବୋମା ତିଆରି କରିବାଠାରୁ ଆରମ୍ଭ କରି ଗୋରା ହାକିମମାନଙ୍କୁ ହତ୍ୟାକରିବା ପର୍ଯ୍ୟନ୍ତ ଅନେକ ଆତଙ୍କପୂର୍ଣ୍ଣ କାର୍ଯ୍ୟରେ ନିଜକୁ ନିୟୋଜିତ କରାଉଥିଲେ ।

(୩) ସତ୍ୟବାଦୀ ଯୁଗ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ପୃ : ୧୨

ଉତ୍କଳ ତରୁଣ ସଙ୍ଘ ଗଠନ କରିବା ମୂଳରେ ଥିଲା ସ୍ୱାଧୀନ-ଚେତା ବିଶ୍ୱନାଥ କରଙ୍କ ପ୍ରେରଣା । ତେବେ ଦେଶର ଦୁର୍ଗତି ବେଳେ ଏ ସଙ୍ଘ ବିଶେଷ ତତ୍ପର ହୋଇ ଉଠିଥିଲା । ୧୯୦୭ ମସିହାରେ ଯେଉଁ ପ୍ରବଳ ବନ୍ୟା ହୋଇଥିଲା ତାର କବଳିତ ହୋଇଥିଲେ ସମଗ୍ର କେନ୍ଦ୍ରା-ପଡ଼ା ଓ ଯାଜପୁର ଅଞ୍ଚଳର ଅଧିବାସୀଗଣ । ସେତିକବେଳେ ଏ ସଙ୍ଘର ସଭ୍ୟମାନେ ସ୍ୱେଚ୍ଛାସେବକ ଭାବେ ଗୋପବନ୍ଧୁଙ୍କର ନେତୃତ୍ୱରେ ଚୂଡ଼ା, ଗୁଡ଼, ଚାଉଳ, ଲୁଗାପଟା ଇତ୍ୟାଦି ନେଇ ବିଭିନ୍ନ ଅଞ୍ଚଳର ବନ୍ୟା-ପ୍ରପୀଡ଼ିତ ଜନସାଧାରଣଙ୍କ ସେବା ଲାଗି ବାହାରି ପଡ଼ିଥିଲେ । ସେମାନଙ୍କ ଭିତରୁ ଦଳେ କଟକରେ ରହି ଚାନ୍ଦା ତଥା ଲୁଗାପଟା ଓ ଖାଦ୍ୟସାମଗ୍ରୀ ସବୁ ସମିତି କରି ଆଦାୟ କରୁଥିଲେ । ସେତେବେଳେ "ଗୋପବନ୍ଧୁ ଓ ବିଶ୍ୱନାଥ କରଙ୍କ କୁଶିକ୍ଷାରେ ଛାତ୍ରମାନେ ଉତ୍କଳ ସଙ୍ଘ ଜରିଆରେ ବିପଥ ଗାମୀ ହେଉଥିବା କଥା ସରକାରୀ ସ୍ତରରେ ଆତଙ୍କ ସୃଷ୍ଟି କରିଥିଲା ।"୪

ଏ ଜାତିକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ଲାଗି ଯେଉଁ-ମାନେ ଆତ୍ମୋତ୍ସର୍ଗ କରିପାରିବେ, ସେମିତି କେତେ ଜଣଙ୍କୁ ଗୋପବନ୍ଧୁ ପ୍ରଥମରୁହିଁ ମନେ ମନେ ଠିକ୍‌କରି ନେଇଥିଲେ । ଥରେ ୧୯୦୯ ମସିହାରେ ସେମିତି ପଚିଶ ଜଣ ଯୁବକଙ୍କୁ ସଙ୍ଗରେ ନେଇ କଟକରୁ ଧବଳେଶ୍ୱର ଯାଇଥିଲେ—ଉଦ୍ଦେଶ୍ୟ, ଧର୍ମକ୍ଷେତ୍ର ସେଇ ପୁଣ୍ୟ ପବିତ୍ର ଦେବପୀଠରେ ସ୍ୱାଧୀନତା ସଂଗ୍ରାମର ସୈନିକ ଦୀକ୍ଷା ନେବ । ନିଜେ ନିଜେ ଶପଥ ଗ୍ରହଣ କରିବେ ଧବଳେଶ୍ୱର ମହାଦେବଙ୍କ ଚରଣତଳେ । ଜାତିର ଉନ୍ନତି କରିବା ଲାଗି ଜୀବନ ଉତ୍ସର୍ଗ କରିବେ ବୋଲି ପ୍ରତିଜ୍ଞାବଦ୍ଧ ହେବେ । ଜାତିର ବନ୍ଧୁ ଗୋପବନ୍ଧୁଙ୍କ ପୌରୋହିତ୍ୟରେ ଜଣ ଜଣ କରି ଦେବବିଗ୍ରହକୁ ଛୁଇଁ ଶପଥ କରିଥିଲେ ଗୋଟିଏ ଗୋଟିଏ ଗୁଣର ସମ୍ୟକ ବୃଦ୍ଧି ଜୀବନରେ ସାଧିତ କରିବାକୁ । ସେଇ ବିଭିନ୍ନ ଗୁଣଗୁଡ଼ିକ ମଧ୍ୟରେ ଥିଲା ସତ୍ୟ, ନିଷ୍ଠା, ସେବା, ସାହସ, କ୍ଷମା, ଅହିଂସା, ମିତବ୍ୟୟିତା ଇତ୍ୟାଦି । ଦେବ ବିଗ୍ରହକୁ ପ୍ରଣାମ କରି ଗୋଦାବରୀଶ କହିଥିଲେ, "ମୁଁ ଆଜି ସତ୍ୟ ଗୁଣ ବରଣ କରୁଛି, କାୟମନୋବାକ୍ୟରେ ସତ୍ୟ ପାଳନ କରିବି । ସର୍ବନିୟନ୍ତା ଭଗବାନ ମତେ ଏଥିପାଇଁ ବଳ ଦିଅ ।" ସେଦିନର ଶପଥ

(୪) ସତ୍ୟବାଦୀ ଯୁଗ : ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ପୃ : ୧୩

ଗ୍ରହଣ ସମ୍ପର୍କରେ ନିଜର ଅନୁଭୂତି ବର୍ଣ୍ଣନା କରିବାକୁ ଯାଇ ଗୋଦାବରୀଶ କହିଛନ୍ତି, "ଶପଥ ଗ୍ରହଣ କରିବାକୁ ଗଲାବେଳେ ମୋର ହୃଦୟତନ୍ତ୍ରୀ ବାଜିଉଠିଲା । ଦେହର ଗ୍ରନ୍ଥିମାନ ଛିଣ୍ଡିବାକୁ ବସିଲା । ମାଂସପେଶୀସବୁ ମନ୍ଥି ହୋଇଗଲା । ଶିରପ୍ରଶିରା ଟିକଟିକ ହେଲା ପରି ଲାଗିଲା । ହୃତ୍‌ପିଣ୍ଡ ଠକଠକ୍ ଶବ୍ଦ କଲା । ମିଥ୍ୟା ସହିତ କେତେକ ଅଚ୍ଛେଦ୍ୟ ବଂଧୁତା ବାନ୍ଧିଥିଲି । ସବୁ ଛିଣ୍ଡାଇ ଦେବାକୁ ପଡ଼ିଲା" (୫) । ଏହାର କାରଣଥିଲା ମାତ୍ର ଗୋଟାଏ ଲୋକର ବ୍ୟକ୍ତିତ୍ୱର ପ୍ରଭାବ ଏବଂ ସେ ଥିଲେ ପଣ୍ଡିତ ଗୋପବଂଧୁ । ସମସ୍ତଙ୍କ ମନରେ ଜାତୀୟ ଚେତନାର ଅବାରିତ ଧାରା ବୁହାଇବା ଥିଲା ଗୋପବଂଧୁଙ୍କ ପ୍ରଧାନ ଉଦ୍ଦେଶ୍ୟ—ଉଦ୍ଦେଶ୍ୟ ଥିଲା ଭବିଷ୍ୟତ ଜାତୀୟ ବାହିନୀର ମୂଳଭିତ୍ତି ଦୃଢ଼ଭାବେ ଗଠନ କରିବା ।

ପଣ୍ଡିତ ଗୋପବଂଧୁ ଚାହୁଁଥିଲେ ଆଗାମୀକାଲର ଯୁବସମାଜ ତଥା ଆଜିର ଯୁବ ଦେଶପ୍ରେମରେ ଉଦ୍‌ବୁଦ୍ଧ ହେଉ, ନିଜ ଜାତି ପ୍ରତି ମାୟା, ମମତା ନେଇ ବଡ଼ ହେଉ । ନଚେତ୍ ସମାଜରେ ଆଲୋଡ଼ନ ସୃଷ୍ଟି ହୋଇ ପାରିବ ନାହିଁ ଓ ଜାତିର ପରାଧୀନତାର ଶୃଙ୍ଖଳ କଟିବ ନାହିଁ । ଏହି ଜାତୀୟ ଚେତନାକୁ ପ୍ରକୃତ କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗ କରିବା ପାଇଁ—ଉନ୍ନତ ଜାତୀୟ ଜୀବନ ଗଠନକରିବାପାଇଁ ସେ ସତ୍ୟବାଦୀ ବନବିଦ୍ୟାଳୟର ପରିକଳ୍ପନା ଓ ପ୍ରତିଷ୍ଠା କରିଥିଲେ । ବିଦ୍ୟାଳୟର ଉଦ୍ଦେଶ୍ୟ ନେଇ ସେ ହରିହର ଓ ଗୋଦାବରୀଶଙ୍କୁ କହିଥିଲେ, "ସ୍ୱାଧୀନତା ପାଇଁ ଆମେ ଆଉ ଆମେରିକା ପରି ଯୁଦ୍ଧ କରିବା ନାହିଁ । କିନ୍ତୁ ଏପରି ଲୋକସମାଜ ଗଢି ପାରିବା ଯାହାକୁ ଶାସନ କରିବା ପଶୁବଳ ଉପରେ ନିର୍ଭର କରୁଥିବା ଇଂରେଜ ପକ୍ଷେ ଅସମ୍ଭବ ହେବ । କିନ୍ତୁ ଏ ଲୋକସମାଜ ଗଢ଼ିବ କିଏ ? ଠିକା ମନୁଷ୍ୟ ତିଆରି କରୁଛି । ମନୁଷ୍ୟ ଲୋଡ଼ିଲେ ପାଇବ । ପ୍ରଧାନ ଦରକାର ଶିକ୍ଷକ, ଯେଉଁମାନେକି ନିଜର ସ୍ୱାର୍ଥରେ ବଳି ଦେଇ ସତ୍ୟର ପ୍ରଚାର ନିମନ୍ତେ ଦେଶୋଦ୍ଧାରକୁ ନିଜର ବ୍ରତ କରି ଦେଶରେ ଲକ୍ଷ ଲକ୍ଷ କୋଟି କୋଟି ମାନବ ଗଢ଼ିଯିବେ । କୁମ୍ଭାର ମାଟିପିଣ୍ଡୁଳା ଧରି ଦେବ-ପ୍ରତିମା ଗଢ଼ୁଛି; ମନୁଷ୍ୟପିଣ୍ଡରୁ ଶିକ୍ଷକମାନଙ୍କୁ ପ୍ରକୃତ ମନୁଷ୍ୟ ଗଢ଼ିବାକୁ ହେବ । ଏ କାର୍ଯ୍ୟ ଅତି କଠିନ । କିନ୍ତୁ ଏହା ଛଡ଼ା ଉପାୟ ନାହିଁ ।

(୫) ସତ୍ୟବାଦୀ ଯୁଗ : ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ପୃ : ୧୪-୧୫

ସେଥିପାଇଁ ଏ ସତ୍ୟବାଦୀ ବିଦ୍ୟାଳୟର ପରିକଳ୍ପନା ।" (୬) ଠିକ୍ ଏହା ପୂର୍ବରୁ ସେମାନଙ୍କର ଗୋଟିଏ ପ୍ରଶ୍ନର ଉତ୍ତରରେ ଗୋପବନ୍ଧୁ କହିଥିଲେ ଯେ ଦେଶରୁ ପରାଧୀନତାର ଘନାନ୍ଧକାରକୁ ଦୂରୀଭୂତ କରିବା ପାଇଁ କେବଳ ସେ ବିଦ୍ୟାଳୟ ସ୍ଥାପନ କରିଛନ୍ତି । ତାଙ୍କ ଭାଷାରେ ବିଦ୍ୟାଳୟଟି ଥିଲା "ମଣିଷଗଢ଼ା କାରଖାନା" ମଣିଷ ଭଳି ମଣିଷମାନେ ସେଠାରେ ବାସ୍ତବିକ୍ ତିଆରି କରାଯାଉଥିଲେ ।

ସତ୍ୟବାଦୀ ବନବିଦ୍ୟାଳୟ ଥିଲା ଗୋପବନ୍ଧୁଙ୍କ ଚିନ୍ତାଧାରାର ପ୍ରାଣକେନ୍ଦ୍ର ! ସାଧନାର ପ୍ରଧାନ ପୀଠସ୍ଥଳ । ବିଦ୍ୟାଳୟର ସଙ୍ଗଠକ ତଥା ଶିକ୍ଷକମାନଙ୍କ କର୍ମ କେବଳ ଶିକ୍ଷାଦାନରେ ଆବଦ୍ଧ ରହି ନ ଥିଲା । ସମାଜରେ ଯେଉଁସବୁ କୁସଂସ୍କାର ଓ ଅଂଧବିଶ୍ୱାସ ଅନେକ ଦିନୁ ଆସ୍ଥାନ ଜମେଇ ବସିଥିଲା, ତାହା ଦୂର କରିଯାଇ ଏକ ବିକାଶୋନ୍ମୁଖୀ ସମାଜ ଗଠନ କରିବାକୁ ସେମାନେ ସେମାନଙ୍କର କର୍ତ୍ତବ୍ୟର ଏକ ଅଙ୍ଗ ବୋଲି ଧରି ନେଉଥିଲେ ! ତାହା ସ୍କୁଲ ଛାତ୍ରାବାସରେ ବ୍ରାହ୍ମଣ ପିଲାଙ୍କ ସହିତ ଅନ୍ୟ ସବୁ ଜାତିର ପିଲାଙ୍କୁ ଏକାଠି ଗୋଟିଏ ଧାଡ଼ିରେ ବସାଇ ଭୋଜନ କରାଇବା (ପଂକ୍ତି ଭୋଜନ)ଠାରୁ ଆରମ୍ଭ କରି ଦାଢ଼ି କାଟି ନିଶ ରଖିବା ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇପଡ଼ିଥିଲା । ନିଜେ ନୀଳକଣ୍ଠ ଥିଲେ 'ନିଶ' ଆନ୍ଦୋଳନର ଅଗ୍ରଣୀ । ତାଙ୍କର 'ମୋ ନିଶ' ପ୍ରବନ୍ଧ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇ ବ୍ରାହ୍ମଣଶାସନମାନଙ୍କରେ ବିଶୃଙ୍ଖଳା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ପୁଅର ଏ ପ୍ରକାର ତଥାକଥିତ ସମାଜବିରୋଧୀ କାର୍ଯ୍ୟକଳାପ ଯୋଗୁଁ ନୀଳକଣ୍ଠଙ୍କ ପିତାଙ୍କୁ ବ୍ରାହ୍ମଣ ସମାଜ ସଙ୍ଗୁଡ଼ି ସଭାରୁ ବହିଷ୍କାର କରିଦେଇଥିଲେ । ତୁଏତ ଗୋପବନ୍ଧୁଙ୍କ ଦ୍ୱାରା ପ୍ରତିଷ୍ଠିତ ବିଦ୍ୟାଳୟର କର୍ମକର୍ତ୍ତାମାନଙ୍କ ଏ ପ୍ରକାର କାର୍ଯ୍ୟକଳାପର ପରିଣାମ ସ୍ୱରୂପ ଶିଶୁ ସତ୍ୟବାଦୀ ବିଦ୍ୟାଳୟ ଗୃହରେ ସେହି ନୈଷ୍ଠିକ ବ୍ରାହ୍ମଣମାନଙ୍କ ଦ୍ୱାରା ୧୯୧୨ ମସିହା ମାର୍ଚ୍ଚ ବାର ତାରିଖ ଦିନ ଅଗ୍ନି ସଂଯୋଗ କରାଯାଇ-ଥିଲା । ସଙ୍ଗଠକମାନେ ଏଥିରେ ଅଧୈର୍ଯ୍ୟ ହୋଇ ନ ଥିଲେ । ଏ ଅସ୍ୱାଭାବିକ ଦୁର୍ଘଟଣା ପରେ ପୁରୀରୁ ଗୋପବନ୍ଧୁ ଆସି ସମସ୍ତ ଘଟଣା ଅନୁଧ୍ୟାନ କରି ମନ୍ତବ୍ୟ ଦେଇଥିଲେ, "ସତ୍ୟବାଦୀ ସ୍କୁଲ ପାଇଁ କୋଠାଘର ହେବା ବୋଧହୁଏ ଭଗବାନଙ୍କ ଇଚ୍ଛା ।"

(୬) ସତ୍ୟବାଦୀ ଯୁଗ ' ଶ୍ରୀବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ପୃ : ୧୬

ସେ ଦୁର୍ଘଟଣା ପରେ ୧୯୧୩ ମସିହାରେ ଗ୍ରୀଷ୍ମାବକାଶ ପୂର୍ବରୁ ଏକ ସଭାରେ ସେଠା ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ ଉତ୍କଳଗୌରବ ମଧୁସୂଦନ କହିଥିଲେ, "ଏ ବିଦ୍ୟାଳୟ ଧନରେ ଗଢ଼ା ହେଉ ନାହିଁ, ରକ୍ତମାଂସ-ମସ୍ତିଷ୍କରେ ଗଢ଼ାହେଉଛି । ଗୋପବନ୍ଧୁ, ନୀଳକଣ୍ଠଙ୍କୁ ମୁଁ ବହୁଦିନୁ ଜାଣେ । ସେ ଦୁହେଁ ଏବଂ ଯେଉଁ ଗୋଦାବରୀଶ, କୃପାସିନ୍ଧୁ ଆସିବେ ଏ ସମସ୍ତେ କେବଳ ଏ ବିଦ୍ୟାଳୟରେ ସମ୍ପୃକ୍ତ ନୁହନ୍ତି । ପରାଧୀନ ଭାରତର ଓ ଖଣ୍ଡ ବିଖଣ୍ଡିତ ଓଡ଼ିଆ ଜାତିର ମୁକ୍ତି ସାଧନ ପାଇଁ ପ୍ରାଣବଳି ଦେଇଛନ୍ତି । + + + ଘର ପୋଡ଼ିଗଲା, ଇଟାର କାନ୍ଥ ଭାଙ୍ଗିଗଲା—ବିଦ୍ୟାଳୟର ଗୃହ ରକ୍ତମାଂସ ଦ୍ୱାରା ଗଢାହେଉଛି । ସରକାର ସନ୍ଦେହ ଦୃଷ୍ଟିରେ ଆମର ଏ ଉଦ୍ୟମକୁ ଦେଖୁଛନ୍ତି, ସି. ଆଇ. ଡ଼ି. ଜଗିଛନ୍ତି । ମାତ୍ର ସରକାର ଜାଣିବେ, ଏଠାରେ ତୋପ-କମାଣ ଯୁଦ୍ଧପାଇଁ ଯୋଦ୍ଧା ତିଆରି ହେଉ ନାହାନ୍ତି, ନୀରବ ଯୋଦ୍ଧା ଗଢ଼ା ହେଉଛନ୍ତି" (୭) । ବାସ୍ତବିକ ଗୋପବନ୍ଧୁଙ୍କ ବନ ବିଦ୍ୟାଳୟ ତାହାହିଁ ଥିଲା । ସେଠାରେ ନୀରବ ଯୋଦ୍ଧା ତିଆରି କରାଯାଉଥିଲା ।

ଉନବିଂଶ ଶତାବ୍ଦୀର ଶିଥିଳ ଜାତୀୟ ମମତା ଅତି ଉଗ୍ରଭାବରେ ରୂପ ନେଇଥିଲା । ସତ୍ୟବାଦୀର ଶ୍ରେଷ୍ଠ ସାଧକ ଗୋପବନ୍ଧୁଙ୍କଠାରେ ଓ ତାଙ୍କ ପ୍ରେରଣାରେ ସତ୍ୟବାଦୀ ଗୋଷ୍ଠୀସମୂହ ଜନଜାଗରଣ ଆଣିବା ଲାଗି ଅକ୍ଳାନ୍ତ ପରିଶ୍ରମ କରିଥିଲେ । ସେମାନେ ହୃଦୟଙ୍ଗମ କରିଥିଲେ ଯେ ଉତ୍କଳଜନନୀର ସେବା କରିବା ଅର୍ଥ କେବଳ ସମଗ୍ର ଭାରତର ସେବା ନୁହ, ବରଂ ସାରା ବିଶ୍ୱର ସେବା—ଉତ୍କଳୀୟ ଜନତାର ସେବାରେ କେବଳ ଭାରତୀୟଙ୍କ ସେବା ନୁହ, ସମଗ୍ର ବିଶ୍ୱବାସୀଙ୍କ ସେବା । ଜଗତର ନାଥ ଜଗନ୍ନାଥଙ୍କ ଧର୍ମର ଆଦର୍ଶ ଗ୍ରହଣ କରି ସେ ଗାଇଉଠିଥିଲେ—

"ନିଜ ସ୍ୱାର୍ଥ ଲାଗି ଜାତି ନୁହେଁ ହିନ୍ଦୁ
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।"

'ସତ୍ୟବାଦୀ' ପତ୍ରିକାର ପ୍ରଥମ ସମ୍ପାଦକୀୟରେ ସେ ଲେଖିଥିଲେ, "ଦେଶାନୁରାଗ ବିଶ୍ୱ ପ୍ରୀତିର ବିରୋଧ ନୁହେଁ—ବରଂ ବିଶ୍ୱ-ପ୍ରୀତିବିହୀନ ପ୍ରାଣରେ ଜାତୀୟତା ଏବଂ ସ୍ୱଦେଶବାତ୍ସଲ୍ୟ ଅସମ୍ଭବ ।" ଭାରତବର୍ଷ

(୭) ସତ୍ୟବାଦୀ ଯୁଗ : ଶ୍ରୀ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ, ପୃ : ୧୨-୨୩ ।

ପୃଥିବୀର କୌଣସି ଏକ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ଅଙ୍ଗ ନୁହଁ ବା ଓଡ଼ିଶା ଭାରତରୁ ଏକ ଅଲଗା ପ୍ରଦେଶ ନୁହେଁ । ଭାରତ ଜନ୍ମଭୂମି ହେଲେ ଓଡ଼ିଶା ତାହାର ଏକ ଅଙ୍ଗବିଶେଷ ଓ ମାତୃଭୂମି । ତେଣୁ ନିଜର ମାତୃଭାଷା ଓଡ଼ିଆ ମାଧ୍ୟମରେ ମାତୃଭୂମି ଓଡ଼ିଶାର ସେବା କରିବା ଅର୍ଥ ଭାରତ ଓ ଭାରତୀୟଙ୍କ ସେବା କରିବା—ବିଶ୍ୱ ଓ ବିଶ୍ୱବାସୀଙ୍କ ସେବା କରିବା—ମହାନ୍ ମାନବ ଜାତିର ସେବା କରିବା । ୧୯୧୯ ମସିହାରେ ଉତ୍କଳ ସମ୍ମିଳନୀର ସଭାପତି ଅଭିଭାଷଣରେ ସେ କହିଥିଲେ, "ଆମ୍ଭେମାନେ ପ୍ରଥମେ ମନୁଷ୍ୟ, ପରେ ଭାରତୀୟ ଏବଂ ସର୍ବଶେଷରେ ଓଡ଼ିଆ । ଏହି ଭାବ ମନରେ ନ ରଖିଲେ ଜାତୀୟ କ୍ରମବିକାଶ ଅସମ୍ଭବ । ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଅଛି । ମାତ୍ର ସାମାଜିକ ଭିତ୍ତି ବିନା ସେ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୁଏ ନାହିଁ । ଏହିପରି ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଫୁଟିବ ପ୍ରଶସ୍ତତର ଭାରତୀୟ ଜାତୀୟତା କ୍ଷେତ୍ରରେ ଏବଂ ଉଦାର ସାର୍ବଜନୀନ ମାନବିକତାରେ ।" ତେଣୁ ସ୍ରଷ୍ଟାଙ୍କ ନିକଟରେ ତାଙ୍କର ପ୍ରାର୍ଥନା ଥିଲା—

"ଜାତୀୟ ମମତା ବିଶ୍ୱଜନପ୍ରୀତି
ଉତ୍କଳବାସୀର ହେଉ ତାହା ନୀତି ।"

ଏ ପ୍ରକାର ଜାତୀୟ ପ୍ରୀତି ମାଧ୍ୟମରେ ଗୋପବନ୍ଧୁଙ୍କ ବିଶ୍ୱ-ପ୍ରୀତିର ପରିପ୍ରକାଶ ଘଟିଥିଲା ।

ଏଥିପାଇଁ ଯଥାର୍ଥରେ ଡ. କୁଞ୍ଜବିହାରୀ ଦାଶ, ଅଧ୍ୟାପକ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ "ସତ୍ୟବାଦୀ ଯୁଗ" ପୁସ୍ତକର ମୁଖବନ୍ଧରେ ବଳିଷ୍ଠ ବ୍ୟକ୍ତିତ୍ୱସମ୍ପନ୍ନ ପଣ୍ଡିତ ଗୋପବନ୍ଧୁଙ୍କ ଦ୍ୱାରା ଅନୁପ୍ରାଣିତ ସତ୍ୟବାଦୀ ଯୁଗ ଲେଖକମାନଙ୍କ ପରିଚୟ ଦେବାକୁ ଯାଇ ଲେଖିଛନ୍ତି "+ + 'ଆପଣା ଭାବେ ଦୃଢ଼ଥିବା'ରେ ବିଶ୍ୱାସୀ ସେମାନେ, ଜାତିର ନିଜତ୍ୱ ରକ୍ଷାରେ ଅଗ୍ରଣୀ, ତ୍ୟାଗୀ, ତପସ୍ୱୀ, ତେଜସ୍ୱୀ ପୌରୁଷ-ସମ୍ପନ୍ନ ନେତା, ଯଥାର୍ଥ ଜାତୀୟ ବୀର । ସେମାନଙ୍କ ସ୍ୱଦେଶପ୍ରୀତି କେବେ ଦେଶପ୍ରୀତି ବା ବିଶ୍ୱପ୍ରୀତିର ଅନ୍ତରାୟ ହୋଇ ନ ଥିଲା ।"

# ବିଶ୍ୱପ୍ରେମୀ ଗୋପବନ୍ଧୁ

ଶ୍ରୀ ଧ୍ରୁବରାଜ ଦାଶ

[ ଶ୍ରୀ ଦାଶ ଜଣେ ସ୍ୱନାମଧନ୍ୟ ଲେଖକ ନୁହନ୍ତି କିମ୍ବା ତାଙ୍କର ବିଶେଷ ଶିକ୍ଷାଗତ ଯୋଗ୍ୟତା ମଧ୍ୟ ନାହିଁ, ତେବେ ତାଙ୍କର ସାହିତ୍ୟସ୍ପୃହା ପ୍ରଶଂସନୀୟ । ସେ ଏକାଧିକ କ୍ଷୁଦ୍ର ଗଳ୍ପ ଓ ପ୍ରବନ୍ଧର ପ୍ରଣେତା ଏବଂ ଦୈନିକ 'ମାତୃଭୂମି'ର ଜଣେ ସମ୍ବାଦଦାତା । ବିଭିନ୍ନ ତଥ୍ୟ ସଂଗ୍ରହ କରିବାରେ ସଂକଳକଙ୍କ ସାହାଯ୍ୟ ନେଇ ସେ ଏହି ପ୍ରବନ୍ଧରେ ଗୋପବନ୍ଧୁଙ୍କ ମହାନ୍ ବିଶ୍ୱପ୍ରେମ ତଥା ଜାତୀୟତାବାଦ ଆଦର୍ଶର ଏକ ସଂକ୍ଷିପ୍ତ ଓ ସରଳ ବ୍ୟାଖ୍ୟାନ କରିଛନ୍ତି ।—ସଂ ]

ଯୁଗ ଯୁଗ ଧରି ପୁଣ୍ୟାତ୍ମାମାନଙ୍କର ଗୁଣ କୀର୍ତ୍ତନ କରି ତହିଁରୁ ସାର ସଂଗ୍ରହ କରିବା ପ୍ରତ୍ୟେକ ଉନ୍ନତକାମୀ ଜାତିର କର୍ତ୍ତବ୍ୟ ରୂପେ ପରିଗଣିତ ହୁଏ । ମହତ୍ ବ୍ୟକ୍ତିମାନଙ୍କର ଜୀବନୀ ପର୍ଯ୍ୟାଲୋଚନା କଲା-ବେଳେ ସେମାନଙ୍କର ବ୍ୟକ୍ତିଗତ ଜୀବନର ଉତ୍ଥାନ-ପତନରୁ ହିଁ ଜାତିର ଭବିଷ୍ୟତ ବଂଶଧରମାନେ ଶିକ୍ଷା ଲାଭ କରିଥାନ୍ତି ଏବଂ ସେହି ପଥ ଅବଲମ୍ବନ କରି ଜାତି ତଥା ଦେଶ ଉନ୍ନତି ମାର୍ଗରେ ଅଗ୍ରସର ହୋଇ-ଥାଏ । ସ୍ୱର୍ଗୀୟ ଗୋପବନ୍ଧୁ ହେଉଛନ୍ତି ସେହି ମହାତ୍ମାମାନଙ୍କ ମଧ୍ୟରୁ ଜଣେ । ସେ ନିଜର ଅନ୍ତରରେ ପ୍ରତ୍ୟେକ ମାନବପ୍ରାଣର ଭାବକୁ ଅନୁଭବ କରିଥିବେ ଏବଂ ନିଜର ଜୀବନକୁ ବିଶ୍ୱଜୀବନ ପୀଠରେ ସମ୍ପୂର୍ଣ୍ଣଭାବେ ସମର୍ପଣ କରିଥିଲେ । ତାଙ୍କର ରାଜନୈତିକ ଜୀବନ ଅପେକ୍ଷା କବି ଜୀବନ ପୂରାପୂରି ଭିନ୍ନ । ରାଜନୈତିକ ଜୀବନରେ ସେ ଛିନ୍ନମସ୍ତା ଉତ୍କଳ ଜନନୀକୁ ପୂର୍ଣ୍ଣାଙ୍ଗ କରିବା ନିମନ୍ତେ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଉଦ୍ୟମ କରିଥିଲେ । ତାପରେ ସେ ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ

ଏବଂ ଆନ୍ତର୍ଜାତିକ ସଦ୍ଭାବସ୍ଥାନ ପ୍ରତି ଉପରେ ବିଶେଷ ଗୁରୁତ୍ୱ ଦେଇଥିଲେ । କିନ୍ତୁ କବି ହିସାବରେ ସେ ପ୍ରଥମରୁ ମହାବିଶ୍ୱଭାବ ପ୍ରଦର୍ଶନ କରିଥିଲେ । ଅର୍ଥାତ୍ ରାଜନୈତିକ ଦିଗରୁ ବିଚାରକଲେ ସେ ପ୍ରଥମେ ଉତ୍କଳୀୟ, ପରେ ଭାରତୀୟ ଏବଂ ସର୍ବଶେଷରେ ବିଶ୍ୱନାଗରିକ ହୋଇ ପାରିଥିଲେ; କିନ୍ତୁ କବି ହିସାବରେ ସେ ପ୍ରଥମେ ବିଶ୍ୱପ୍ରେମୀ, ପରେ ଭାରତୀୟ ଏବଂ ସର୍ବଶେଷରେ ଓଡ଼ିଆ ।

ଗୋପବନ୍ଧୁଙ୍କଠାରେ ସୃଜନଶୀଳ କବିତାର ଓ ରାଜନୈତିକ ଆଦର୍ଶର ଅପୂର୍ବ ମିଳନ ଘଟିଥିବା ହେତୁ ତାଙ୍କ କବିତାଗୁଡ଼ିକରେ ରାଜନୀତି ଓ ରାଜନୀତିରେ କବିପ୍ରାଣତା ବିଶେଷ ଭାବରେ ଫୁଟିଉଠିଥିଲା । ଏଣୁ ସେ ଯେତେବେଳେ କାରାକକ୍ଷରେ ଆବଦ୍ଧ ରହି ଜାତିକୁ ସ୍ୱାଧୀନତା ମାର୍ଗରେ ପରିଚାଳିତ କରିବା ପାଇଁ ଉଦ୍‌ବୋଧନ ଦେଉଥିଲେ, ସେତେବେଳେ ତାଙ୍କଠାରେ ମହା ବିଶ୍ୱାନୁଭବତା ପ୍ରକାଶ ପାଇଥିଲା । 'ବନ୍ଦୀର ଆତ୍ମକଥା'ରେ ସେ ଲେଖିଥିଲେ—

"ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିୟାନ
ଶିଖ ଜୈନ ସର୍ବେ ଭାରତ ସନ୍ତାନ ।
ଯେତେ ଧର୍ମ ଯେତେ ବର୍ଣ୍ଣ ଜାତି କୁଳ
ଭାରତ ଜନନୀ ସମସ୍ତଙ୍କ ମୂଳ ।
ଏକ ଆଶା ଏକ ଲକ୍ଷ୍ୟ ଏକ ଧ୍ୟାନ
ଏକଇ ଅନ୍ତୁଷ୍ଟି ଏକଇ ଶ୍ମଶାନ ।
ଏକ କର୍ମଖେଳ ଏକ ମାତୃପଦେ
କରି ଏକପ୍ରାଣ ସମ୍ପଦେ ବିପଦେ ।
ଏକତା ମନ୍ତ୍ରରେ ରଖି ସଦା ମତି
ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି ।"

ସେହିଭଳି ଆଦ୍ୟଯୌବନରେ 'କାଠଯୋଡ଼ି ତୀରେ ସାୟଂକାଳ' ଉପଭୋଗ କଲାବେଳେ ତାଙ୍କର କବିପ୍ରାଣ ମହାବିଶ୍ୱଭାବରେ ଉଦ୍‌ବେଳିତ ହୋଇଉଠିଥିଲା । ସେ ଗାଇଥିଲେ—

'ପ୍ରେମଭାବ ଯାର ଅନ୍ତରେ ପୂରିତ
ସର୍ବ ପ୍ରାଣୀ ହୃଦେ ତା ହୃଦ ଅଙ୍କିତ ।

ସର୍ବ ଅନୁଭୂତେ ସର୍ବଭୂତେ ଯାର
ତା ଦୃଷ୍ଟିରେ ବିଶ୍ୱ ଏକ ପରିବାର ।
ସେହି ନିଜେ ବିଶ୍ୱ ବିଶ୍ୱମଧ୍ୟେ ସେହି
ଅନ୍ୟ ହୋଇ ତାର ଆଉ କେହି ନାହିଁ ।”

ପୁଣି ‘ବ୍ରାହ୍ମଣ ସମିତି ଗ୍ରନ୍ଥାବାସରେ ସମବେତ ବ୍ରାହ୍ମଣ ଗ୍ରନ୍ଥମାନଙ୍କ ପ୍ରତି’ ଉଦ୍‌ବୋଧନ ଦେବାକୁ ଗଲବେଳେ ସେ ଯେଉଁ ମହାବିଶ୍ୱ ଭାବର ଆବେଗମୟ ଅଭିବ୍ୟକ୍ତି ପ୍ରକାଶ କରିଛନ୍ତି, ତାହା ବାସ୍ତବିକ୍ କଳ୍ପନାତୀତ । ଉକ୍ତ ଶୀର୍ଷକ କବିତାରେ ସେ ଲେଖିଛନ୍ତି—

“ନିଜ ସୁଖ ଲଗି ଜାତି ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତି ଚିନ୍ତାବିନ୍ଦୁ ।
ଦେଖାଅ ଏ ସତ୍ୟ ଆପଣା ପରାଣେ
ଦିଅ ଏହି ମନ୍ତ୍ର ସର୍ବ ବର୍ଣ୍ଣ କାନେ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତ ତେଜ ଅଭିମାନ ।”

ରାଜନୈତିକ ଦିଗରୁ ତାଙ୍କର କବିତାକୁ ବିଚାର କରିବାକୁ ଗଲେ ରାଜନୀତି କ୍ଷେତ୍ରରେ ଉତ୍କଳ ଦେଶ ତଥା ଓଡ଼ିଆ ଜାତିର କର୍ତ୍ତବ୍ୟ ନିରୂପଣ କରିବା ଉଦ୍ଦେଶ୍ୟରେ ଏହି ଜାତିକୁ ଉଦ୍‌ବୋଧନ ଦେବାକୁ ଯାଇ ସେ ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ସ୍ୱୀୟ ସଭାପତି ଅଭିଭାଷଣରେ କହିଥିଲେ—

“ପ୍ରାକୃତିକ ଓଡ଼ିଶା ସମ୍ମିଳନୀର କାର୍ଯ୍ୟକ୍ଷେତ୍ର ବୋଲି ମୂଳରୁ ନିରୂପିତ ହୋଇଅଛି । ମାତ୍ର ଆମ୍ଭମାନଙ୍କର ଆକାଙ୍‌କ୍ଷା ସେହିଠାରେ ସୀମାବଦ୍ଧ ହୋଇ ରହିବା ଉଚିତ ନୁହେଁ । ସଙ୍କୀର୍ଣ୍ଣ ସୀମା ମଧ୍ୟରେ ପ୍ରକୃତ ଜାତୀୟତାର ପୂର୍ଣ୍ଣ ବିକାଶ ଅସମ୍ଭବ । ଯେ ଯେଉଁ ଜାତିର ହୁଅନ୍ତୁ ସେ ସର୍ବପ୍ରଥମେ ମନୁଷ୍ୟ, ଈଶ୍ୱରଙ୍କ ସନ୍ତାନ—ଏହି ସମତା ଏବଂ ଭ୍ରାତୃ-ଭାବ ପ୍ରତ୍ୟେକ ଜାତିର ଧର୍ମଶାସ୍ତ୍ରରେ ପ୍ରତିପାଦିତ ହୋଇ ରହିଛି ଏବଂ ଏହାହିଁ ଜାତୀୟ ଜୀବନର ମୂଳମନ୍ତ୍ର ହେବା ଉଚିତ ।” + + +

“ସାର୍ବଜନୀନ ମାନବସମାଜ ଭଗବାନଙ୍କର ଅଭିବ୍ୟକ୍ତି । ମାନବ ସେବା ହିଁ ଭଗବତ୍ ସେବା । ମାତ୍ର ବ୍ୟକ୍ତିବିଶେଷର ଶକ୍ତି କ୍ଷୀଣ, ବାହୁ

କ୍ଷୁଦ୍ର, ଦୃଷ୍ଟି ସଙ୍କୀର୍ଣ୍ଣ, ଗତି ସୀମାବଦ୍ଧ; ସୁତରାଂ ବିଶ୍ୱଜନୀନ ସମଗ୍ର ମାନବ ଜାତିର ସେବା ତା ପକ୍ଷରେ ଅସମ୍ଭବ । ଯେ ଯେଉଁ ନିର୍ଦ୍ଦିଷ୍ଟ ଦେଶରେ ନିର୍ଦ୍ଦିଷ୍ଟ ଜାତି ମଧ୍ୟରେ ବାସ କରନ୍ତି, ସେହି ଦେଶ ତାଙ୍କର ପୂଜାପୀଠ ଏବଂ ସେହି ଜାତିର ସେବା ହିଁ ତାଙ୍କର ମାନବସେବା ।

"ସର୍ବଦେବ ନମସ୍କାରଃ କେଶବଂ ପ୍ରତିଗଚ୍ଛତି"—ଏହି ଉଦାର ମାନବିକତାକୁ ଲକ୍ଷ୍ୟକରି ଜାତୀୟ ଉନ୍ନତି ପଥରେ ଅଗ୍ରସର ହେବାକୁ ହେବ । ଏଥିରେ କୌଣସି ଭୟ ନାହିଁ କି ଅକଲ୍ୟାଣ ନାହିଁ—"ନହିଁ କଲ୍ୟାଣ କୃତ କଶ୍ଚିତ ଦୁର୍ଗତିଂ ତାତ୍ ଗଚ୍ଛତି ।" ହୃଦୟରେ ଏହି ବିଶ୍ୱାସ ଜାଗ୍ରତ ଥିଲେ ଏବଂ ଏହି ଉଦାର ନୀତିରେ ଜୀବନର ଗତି ନିୟମିତ ହେଲେ କ୍ଷୁଦ୍ର ପଲ୍ଲୀରେ ସୀମାବଦ୍ଧ କାର୍ଯ୍ୟକ୍ଷେତ୍ରରେ ରହି ମନୁଷ୍ୟ ସମଗ୍ର ମାନବ କଲ୍ୟାଣରେ ଆତ୍ମନିୟୋଗ କରିପାରେ । × × ×

"ଓଡ଼ିଆ ଜାତି ଇତିହାସରେ କେବେ ସଙ୍କୀର୍ଣ୍ଣ ସୀମାରେ ଆବଦ୍ଧ ନ ଥିଲେ । ନଦୀ ପର୍ବତଦ୍ୱାରା ଓଡ଼ିଶାର ସୀମା ଆବଦ୍ଧ ହେଲେ ସୁଦ୍ଧା, ଓଡ଼ିଆମାନେ ସର୍ବଦା ସେହି ସୀମା ମଧ୍ୟରେ ଆବଦ୍ଧ ହେଲେ ସୁଦ୍ଧା ସେ ସୀମା ଅତିକ୍ରମ କରି ବିଶାଳତା ଆଡ଼କୁ ଗତି କରିଅଛନ୍ତି । ଜାତୀୟତାର ଲକ୍ଷ୍ୟରେ ଉଦାର ମାନବିକତା । ସମଗ୍ର ଭାରତରେ ତାହା କେବଳ ଓଡ଼ିଆମାନେ ହିଁ ବୁଝିଥିଲେ । ବିଶ୍ୱପ୍ରୀତି ହିଁ ଓଡ଼ିଶାର ଜାତୀୟତାର ପୂର୍ଣ୍ଣ ପ୍ରାଣ । ଓଡ଼ିଆର ମନୁଷ୍ୟତା, ଓଡ଼ିଆର ଏ ଜାତୀୟ ଦେଶ ନୁହେଁ କେବେ ଜଡ଼, ନିର୍ଜୀବ, ନୀରସ ଓ ସ୍ୱାର୍ଥକଳୁଷିତ ନୁହେଁ । ରାଜ୍ୟଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେଁ, ଗଭୀର ଧର୍ମଭାବ ଏବଂ ଦୃଢ଼ ବିଶ୍ୱାସ ଏହାର ଭିତ୍ତି । ସାମ୍ୟ, ମୈତ୍ରୀ, ସ୍ୱାଧୀନତା ଏହାର ବିଗ୍ରହ । ଓଡ଼ିଆର ଏହି ଭାବ ନୀଳାଚଳ ଧାମରେ ପ୍ରକଟିତ । ତେଣୁ ଜଗନ୍ନାଥ ଓଡ଼ିଆର ଜାତୀୟ ଦେବତା । ବଦ୍ରିନାଥ, ରାମନାଥ, ଦ୍ୱାରକା-ନାଥ—ସ୍ଥାନବିଶେଷର ନାଥ ମାତ୍ର; ଜଗତର ନାଥ ନୁହନ୍ତି । ପ୍ରାଚୀନ କାଶୀଧାମରେ ବିଶ୍ୱନାଥ ଅଛନ୍ତି । କିନ୍ତୁ ସମସ୍ତ ବିଶ୍ୱକୁ ଆଲିଙ୍ଗନ କରିବାର ଉଦାରତା ସେଠାରେ ନାହିଁ ।"

କେବଳ ଏତିକି ନୁହେଁ, ସେ 'ସତ୍ୟବାଦୀ' ପତ୍ରିକା ମାଧ୍ୟମରେ ମଧ୍ୟ ବିଶ୍ୱପ୍ରେମରେ ଆଦର୍ଶ ପରିପ୍ରଚାର କରିଥିଲେ । ଥରେ ସେ

'ସତ୍ୟବାଦୀ' ପତ୍ରିକାରେ ଲେଖିଥିଲେ, "ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧ ନୁହେଁ, ବରଂ ବିଶ୍ୱପ୍ରୀତିବିହୀନ ପ୍ରାଣରେ ଜାତୀୟତା ଓ ସ୍ୱଦେଶବାତ୍ସଲ୍ୟ ଅସମ୍ଭବ । ପୂର୍ବପୁରୁଷମାନଙ୍କର ପଥ ଏ କ୍ଷେତ୍ରରେ ଆମ୍ଭମାନଙ୍କର ଅନୁସରଣୀୟ । "ଆବ୍ରହ୍ମ ସ୍ତମ୍ଭ ପର୍ଯ୍ୟନ୍ତ" ଚରାଚର ଜଗତର ତର୍ପଣବିଧାନ ହିନ୍ଦୁ ଆପଣା ନିତ୍ୟ କର୍ତ୍ତବ୍ୟର ଅନ୍ତର୍ଭୁକ୍ତ କରିଥିଲେ ହେଁ 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ଏହି ଦେଶାନୁରାଗ ଗୀତରେ ପ୍ରାଣରେ ପ୍ରଗାଢ଼ ମମତା ପ୍ରକାଶ କରିଛନ୍ତି । "ସର୍ବଦେବ ନମସ୍କାରଃ କେଶବଂ ପ୍ରତି ଗଚ୍ଛତିଃ"—ଏହା ଆମ୍ଭମାନଙ୍କର ବିଶ୍ୱାସ । ତେଣୁ ଆମ୍ଭେମାନେ ଉତ୍କଳ ସେବାରେ ଭାରତ ତଥା ବିଶ୍ୱର ସେବା କରିବୁ, ଉତ୍କଳର ହୃଦୟତନ୍ତ୍ରୀରେ ବିଶ୍ୱମାନବର ହୃଦୟର ଗୀତ ଶୁଣିବୁ ।"

ଏହା ପଣ୍ଡିତ ତାଙ୍କର ସାହିତ୍ୟର ଛନ୍ଦେ ଛନ୍ଦେ ବିଶ୍ୱପ୍ରୀତିର ମନ୍ତ୍ର ଫୁଟି ଉଠୁଥିଲା । ଏଣୁ ତାଙ୍କର 'ଧର୍ମପଦ', 'କାରାକବିତା', 'ବନ୍ଦୀର ଆତ୍ମକଥା', 'ଅବକାଶ ଚିନ୍ତା' 'ନଚିକେତା ଉପାଖ୍ୟାନ', ଗୋମହାତ୍ମ୍ୟ', ଇତ୍ୟାଦି କବିତାପୁଞ୍ଜରେ ବିଶ୍ୱପ୍ରେମଭାବ ପ୍ରକଟିତ ହୋଇଥିଲା । ଧର୍ମପଦ ବିଶ୍ୱର ସ୍ତରେ ସ୍ତରେ ଜଗଦୀଶଙ୍କ ଅନନ୍ତ ମହିମା ଓ ଅତୁଳ ସୁଷମା ଦେଖିଛନ୍ତି ଏବଂ ବିହ୍ୱଳିତ ହୋଇ ଗାଇଛନ୍ତି—

"ହୋଇ ଏକଧ୍ୟାନ ମିଳାଇଣ ତାନ ବିଶ୍ୱ ସଙ୍ଗୀତ ଲହରେ
ଗାଏ ଧର୍ମପଦ ପରମ ଆନନ୍ଦେ ଜୟ ଜଗଦୀଶ ହରେ ॥"

× + ×

'ନଚିକେତା ଉପାଖ୍ୟାନ'ରେ ଯମଦେବତାଙ୍କ ମୁଖରେ ବିଶ୍ୱବସ୍ତୁ ଓ ବିଶ୍ୱେଶ୍ୱରଙ୍କ ମହିମା ବର୍ଣ୍ଣନା କରି ସେ ଗାଇଛନ୍ତି—

"ନିସୃତ ପରମ ବ୍ରହ୍ମ ବିଶ୍ୱ ବସ୍ତୁଗଣ
ସେ ବ୍ରହ୍ମ ପ୍ରେରଣେ ସ୍ପନ୍ଦେ ବିଶ୍ୱ ଅନୁକ୍ଷଣ

ମହାଭପ୍ରଙ୍କର ସେହି ପ୍ରଭୁ ବଂଶୀଶ୍ୱର
ପ୍ରଚଣ୍ଡ ଉଦ୍ଦାଓ ଯଦା ତୀବ୍ର ବଜ୍ରଧର ।
+ + +
ସେ ବନ୍ଧୁ କାରଣ ପ୍ରଭୁ ବିଶ୍ୱମୂଳାଧାରେ
ଜାଣିବାକୁ ସମର୍ଥ ଯେ, ହୁଏ ଏ ସଂସାରେ ।
ସ୍ୱରୂପ ତାଙ୍କର ହୃଦେ କରି ଅନୁଭୂତି
ଦେଖେ ଏ ଅନନ୍ତ ବିଶ୍ୱ ତାଙ୍କର ବିଭୂତି ।"

ସେହିପରି "ପିତୃପକ୍ଷ ତର୍ପଣ" କବିତାରେ ସେ ନିଖିଳ ବିଶ୍ୱ-ବାସୀଙ୍କୁ ଆବାହନ କରି କହିଛନ୍ତି—

"ବିଶ୍ୱବାସୀ ଚରାଚରେ କରି ଆମନ୍ତ୍ରଣ
ମୁଁ ଯେ ଏଥି କରେ ଜଳ ଅଞ୍ଜଳି ତର୍ପଣ ।"

ପୁଣି ତାଙ୍କର "ନିତ୍ୟ ନୀଳାଚଳ ଧାମ" କବିତାରେ ସେ ନୀଳାଚଳ ଧାମରେ ବାସ କରିବା ବ୍ୟକ୍ତି ସମ୍ପର୍କରେ କହିଛନ୍ତି –

"ଯେଉଁ ନାହିଁ ଯାର ନିଜ ପର ଜ୍ଞାନ
ପାଏ ନୀଚ ଯାର ସ୍ନେହ ସନମାନ
ବିଶ୍ୱ ହିତେ ଯାର ଆହାର ବିହାର
କରେ ବିଶ୍ୱହିତେ ଯେ ଜୀବନ ଦାନ ।"

ପୁଣି "ବିଶ୍ୱର ମିଳନ ଚିତ୍ର" ଅଙ୍କନ କରିବାକୁ ଯାଇ କବି ନିଖିଳ ବିଶ୍ୱ ସହିତ ସମ୍ପୂର୍ଣ୍ଣରୂପେ ମିଳିଯାଇ ନିଜର ସତ୍ତା ଲୋପ କରି ଦେବାର ପରିକଳ୍ପନା କରି ଗାଇଛନ୍ତି –

"ମୋ ପ୍ରାଣ ପ୍ରେମାଧାରେ ଭସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା ।"

ଗୋପବନ୍ଧୁଙ୍କର ଜାତୀୟ ମମତା ଓ ବିଶ୍ୱଜନପ୍ରୀତି ମଧ୍ୟରେ ଆଦୌ ବ୍ୟବଧାନ ନ ଥିଲା । ଜାତୀୟ ସେବା ମାଧ୍ୟମରେ ବିଶ୍ୱ ଜନତାର

ସେବା ଓ ବିଶ୍ୱଜନସେବା ମାଧ୍ୟମରେ ଜାତୀୟ ଜୀବନର ବିକାଶ ଉଭୟ ଉଭୟର ପରିପୂରକ । ଏଣୁ ମୀରବ ନିଷ୍ଠୁର ବନ୍ଦୀଘରେ ବସି ପଣ୍ଡିତ ଗୋପବନ୍ଧୁ ପ୍ରଭୁ ଶ୍ରୀପଦ୍ମରେ କ୍ଷମା ମାଗି ଗାଇଛନ୍ତି—

"ଜାତୀୟ ମମତା ବିଶ୍ୱଜନପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।"

'ଗୋ-ମହାତ୍ମ୍ୟ'ରେ ମଧ୍ୟ ଗୋପବନ୍ଧୁ ସମଗ୍ର ଜଗତର ହିତ ଦୃଷ୍ଟିରୁ ଗୋ-ସେବା ବ୍ରତକୁ ଲକ୍ଷ୍ୟ କରି ଗାଇଛନ୍ତି—

"ଗୋ ହିତେ ଜଗତ କଲ୍ୟାଣ
ଗୋ ଜାତି ମାନବର ତ୍ରାଣ ।"

ସର୍ବୋପରି ଗୋପବନ୍ଧୁଙ୍କର ମହାଜାତୀୟତା କେବଳ ଏହି ବିଶ୍ୱ ସ୍ତରରେ ଆବଦ୍ଧ ନ ଥିଲା, ତାହା ଇହଜଗତକୁ ଅତିକ୍ରମ କରି ଅତୀନ୍ଦ୍ରିୟ ରାଜ୍ୟକୁ ମଧ୍ୟ ସ୍ପର୍ଶ କରୁଥିଲା । ତାଙ୍କ ଦୃଷ୍ଟିରେ ପାର୍ଥିବ ଜଗତର ସ୍ନେହ, ବନ୍ଧୁତା ଓ ପ୍ରେମର ବିନାଶ ଶ୍ମଶାନରେ ଘଟେ ନାହିଁ, ତାହା ଅନନ୍ତ ଅମର ଓ ଅବିନାଶୀ ।

"ଚିତାନଳେ ଭସ୍ମ ନୁହେଁ ସେନେହ ବନ୍ଧନ
ଶ୍ମଶାନ ନୁହେ ଏ ଜୀବ ଶେଷ ପରିସୀମା,
କେବେ ନାହିଁ ହେବ ନିଷ୍ଫେ ଶୁଭ ସମ୍ମିଳନ
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ ମାଧୁରିମା ।"

× × ×

ଏହିପରି ଗୋପବନ୍ଧୁଙ୍କ କବିତାପୁଞ୍ଜ ଓ ତାଙ୍କ ଚରିତ୍ର ଆଲୋଚନା କରିବାକୁ ଗଲାବେଳେ ତାଙ୍କ ବ୍ୟକ୍ତିତ୍ୱର ପ୍ରତ୍ୟେକ ସ୍ତରରେ ବିଶ୍ୱପ୍ରୀତି ଝଙ୍କୃତ ହୋଇ ଉଠିଥିବା ସ୍ପଷ୍ଟ ପ୍ରତିଭାତ ହୁଏ । ତାଙ୍କ କବିତାପୁଞ୍ଜ ବିଶ୍ୱପ୍ରେମର ଆଧାର ଉପରେ ପ୍ରତିଷ୍ଠିତ । ସର୍ବୋପରି ସେ

ଏକାଧାରରେ ଥିଲେ ମହମାମୟ ନେତା, ସାମ୍ବାଦିକ, ଲେଖକ, କବି, ରାଜନୀତିଜ୍ଞ, ଧର୍ମପ୍ରଚାରକ ତଥା ନୈତିକ ଆଦର୍ଶର ଏକ ମାନଦଣ୍ଡ । ଅଗ୍ନିରେ ବାରମ୍ବାର ଦଗ୍‌ଧୀଭୂତ ହୋଇ ଶୁଦ୍ଧ ସୁବର୍ଣ୍ଣ ଯେପରି ଅଧିକ ଜାଜ୍ଜ୍ୱଲ୍ୟମାନ ହୋଇଥାଏ, ସେହିପରି ଦାରୁଣ ଦୁଃଖ ଦୁର୍ବିପାକ ମଧ୍ୟଦେଇ ପଣ୍ଡିତ ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱ ପୂର୍ବାପର ନୈତିକ ଆଦର୍ଶର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିଲା ଏବଂ ତାହାସ୍ୱ ମୁଖନିଃସୃତ ବକ୍ତୃତା ତଥା କବିତାବଳୀରେ ମହାନ ବିଶ୍ୱପ୍ରୀତିର ଉତ୍ସ ପ୍ରବାହିତ ହେଉଥିଲା । ତାଙ୍କପରି ଦେଶସେବୀ ତଥା ବିଶ୍ୱପ୍ରେମୀ ବିରଳ । ସ୍ୱରଚିତ 'ଧର୍ମପଦ' କବିତାରେ ସେ ଲେଖିଛନ୍ତି—

> "ଲୁଚି ରହେ ନାହିଁ ସତ୍ୟ ଚିରଦିନ କାଳେ ହୁଏ ତା ବିବୃତ
> ନାହିଁ ଧର୍ମପଦ ଭାଙ୍ଗିଛି ଦେଉଳ ଏବେ ଅଛି ଜନଶ୍ରୁତ ।"

+ + +

ସେହିପରି ସ୍ୱର୍ଗୀୟ ଗୋପବନ୍ଧୁ ବାବୁ ଇହଧାମରୁ ବିଦାୟ ନେଇଛନ୍ତି ସତ୍ୟ, କିନ୍ତୁ ତାଙ୍କର ସ୍ମୃତି ଆଜି ପ୍ରତ୍ୟେକ ଓଡ଼ିଆ-ପ୍ରାଣକୁ ବିଶ୍ୱଭାବରେ ଉଦ୍‌ବୁଦ୍ଧ କରୁଛି, ସ୍ୱଦେଶପ୍ରୀତିରେ ଜାଗ୍ରତ କରୁଛି ଓ କରୁଥିବ ମଧ୍ୟ ।



# ଗୋ-ଜାତିର ଉପାସକ ଗୋପବନ୍ଧୁ

## ଡାକ୍ତର ଈଶାନ୍‌ଚନ୍ଦ୍ର ପଟ୍ଟନାୟକ,

ବି: ଭି: ଏସ୍‌ସି: ଆଣ୍ଡ ଏ: ଏଚ:

[ ବଡ଼ମ୍ବା ମୋହନ ସୁବୁଦ୍ଧି ଉଚ୍ଚ ବିଦ୍ୟାଳୟର ମୁଖପତ୍ରି 'ବୈଜୟନ୍ତୀ'ରେ କେତୋଟି ଲେଖା ପ୍ରକାଶ ପାଇବା ପରେ ଶ୍ରୀ ପଟ୍ଟନାୟକ ସାହିତ୍ୟ-ଜଗତରୁ ଦୂରେଇ ରହି ନିଜର କର୍ତ୍ତବ୍ୟପାଳନରେ ମନୋନିବେଶ କରିଥିଲେ । ଗୋପବନ୍ଧୁ ସଂକଳନ ବିଷୟ ଶୁଣି ତାଙ୍କ ମନରେ ପୁଣି ସାହିତ୍ୟସ୍ପୃହା ଜାଗିଉଠିଲା । ଗୋ-ଚିକିତ୍ସକ ରୂପେ ଦୈନନ୍ଦିନ ଜୀବନରେ ଗୋ-ସେବା କରିବା'ଦ୍ୱାରା ସେ ଗୋ-ଜାତିର ଦାନ ଓ ପ୍ରାଧାନ୍ୟ କଥା ବେଶ୍ ହୃଦୟଙ୍ଗମ କରିପାରିଛନ୍ତି ଏବଂ ଗୋପବନ୍ଧୁଙ୍କର 'ଗୋ-ମାହାତ୍ମ୍ୟ' ସମ୍ପର୍କରେ ଏହି ଯେଉଁ ଆଲୋଚନାମୂଳକ ପ୍ରବନ୍ଧ ସେ ରଚନା କରିଛନ୍ତି, ତାକୁ ତାଙ୍କ ନିଜ ଅନୁଭୂତିର ନିର୍ଯ୍ୟାସ ରୂପେ ଧରାଯାଇପାରେ । —ସଂ ]

ଗହ୍ମା ପୂର୍ଣ୍ଣିମା ବା ରକ୍ଷୀ ପୂର୍ଣ୍ଣିମା ସାରା ଭାରତରେ ଏକ ବଡ଼ ପର୍ବ । ପର୍ବପର୍ବାଣୀ-ବହୁଳ ଓଡ଼ିଶାରେ ଗହ୍ମାପୂର୍ଣ୍ଣିମାକୁ ଗୋ-ଜାତିର ଜନ୍ମଦିବସ ରୂପେ ଧରାଯାଏ । ହିନ୍ଦୁଶାସ୍ତ୍ର ଅନୁସାରେ ମନୁଷ୍ୟର ଜନ୍ମଦିବସରେ ଯେପରି ପିଠା ପଣା କରି ପୂଜା ବା ବନ୍ଦାପନା କରାଯାଏ, ସେହିପରି ଗହ୍ମାପୂର୍ଣ୍ଣିମୀକୁ ଗୋଜାତିର ଜନ୍ମଦିବସ ରୂପେ ଧରାଯାଇ ଗୋଜାତିର ପୂଜା ଓ ଆରାଧନା କରାଯାଏ । ସେଦିନ ହିଁ ଏକମାତ୍ର ଦିନ, ଯେଉଁଦିନ ଗୋଜାତି ତାଙ୍କର କର୍ମବହୁଳ ଜୀବନରୁ ଅବ୍ୟାହତି ପାଏ । ସତେ ଯେପରି ହିନ୍ଦୁମାନେ ଗୋଜାତିର ଅକୁଣ୍ଠିତ ଓ ଅନାବିଳ ସ୍ନେହରେ ମୁଗ୍ଧ ହୋଇ ତାକୁ ମାତା ରୂପରେ ଭକ୍ତିପୂର୍ବକ ସେବା କରିବାକୁ ଅଭିପ୍ରେତ ।

କିନ୍ତୁ ଆମର ପୂଜ୍ୟ ଜନସେବକ ଗୋପବନ୍ଧୁ, ଯେ କି ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ସର୍ବଦା ବ୍ୟାକୁଳ ଥିଲେ, ସେ ତାଙ୍କର 'ଗୋ-ମାହାତ୍ମ୍ୟ'' ଗୀତି ଲେଖାରେ ଓଡ଼ିଶାବାସୀଙ୍କୁ କାତର ନିବେଦନ କରି ସଦାସର୍ବଦା ଗୋଜାତିର ଉନ୍ନତି ପାଇଁ ଅନୁରୋଧ କରିଯାଇଛନ୍ତି ।

ଗୋପବନ୍ଧୁଙ୍କ ମତରେ ଗୋଜାତିର ଉନ୍ନତି ହିଁ ମନୁଷ୍ୟସମାଜର ଉନ୍ନତି । ଭାରତ ଗୋଟିଏ ପଲ୍ଲୀବହୁଳ କୃଷିପ୍ରଧାନ ଦେଶ । ଗୋପବନ୍ଧୁ, ଯେ କି ସଦାସର୍ବଦା ଓଡ଼ିଶାବାସୀଙ୍କର ଆର୍ଥିକ, ମାନସିକ, ସାମାଜିକ ଓ ନୈତିକ ଉନ୍ନତିର ପ୍ରୟାସୀ ଥିଲେ, ସେ ଅର୍ଦ୍ଧବୁଭୁକ୍ଷିତ କଙ୍କାଳସାର ଗୋଜାତିକୁ ଦେଖି ମ୍ରିୟମାଣ ହୋଇପଡ଼ିଲେ । କାରଣ ସେ ଜାଣିଥିଲେ, ଯେ ପର୍ଯ୍ୟନ୍ତ ଗୋଜାତିର ଉନ୍ନତି ହୋଇପାରି ନାହିଁ, ସେତେବେଳଯାଏ ଓଡ଼ିଶାର ଆର୍ଥିକ ଉନ୍ନତି ସମ୍ଭବ ହେବ ନାହିଁ । ତେଣୁ ଏ ବିଷୟରେ ସେ ଅଧିକ ଚିନ୍ତିତ ଥିଲେ ।

ଯେତେବେଳେ ୧୯୨୨ ମସିହାରେ ଗୋପବନ୍ଧୁ ବନ୍ଦୀ ରୂପେ ଜେଲରେ ଜୀବନକାଳ ଅତିବାହିତ କରୁଥିଲେ, ସେତେବେଳେ ତାଙ୍କର "ଗୋ ମାହାତ୍ମ୍ୟ''ର ଲେଖା ଆରମ୍ଭ ହୁଏ । ପ୍ରଥମ ଜୀବନରୁ ଗୋପବନ୍ଧୁ ଓତପ୍ରୋତ ଭାବରେ ଜଗନ୍ନାଥ ଦାଶଙ୍କର ଭାଗବତ ପ୍ରତି ଆକୃଷ୍ଟ ଥିଲେ ଏବଂ ସେ ଅନୁନ୍ନତ ଓ ଅଶିକ୍ଷିତ ଓଡ଼ିଆମାନଙ୍କୁ ଆକୃଷ୍ଟ କରାଇବା ପରି ପୂରଣ ଢାଞ୍ଚାରେ 'ଗୋ-ମାହାତ୍ମ୍ୟ'' ବର୍ଣ୍ଣନା କଲେ ଠିକ୍ ଭାଗବତ ଛନ୍ଦରେ । 'ଗୋ ମାହାତ୍ମ୍ୟ'ର ଲେଖା ଅତି ସରଳ, ପ୍ରାଞ୍ଜଳ ଓ ହୃଦୟସ୍ପର୍ଶୀ । ଯେ କୌଣସି ସ୍ତରର ଲୋକ ପଢିଲେ ସେ ତାର ଛନ୍ଦେ ଛନ୍ଦେ ଅନୁଭବ କରିପାରିବ ଯେ, ଉତ୍କଳମଣି ଗୋପବନ୍ଧୁ ପ୍ରକୃତରେ ଓଡ଼ିଶାର ଉନ୍ନତି ପାଇଁ ତିଳେ ତିଳେ ନିଜର ସମୟ ଓ ଶରୀର ଦାନ କରିଛନ୍ତି । ତାହା ସଙ୍ଗେ ସଙ୍ଗେ ମଧ୍ୟ ଗୋ ଜାତିର ଉନ୍ନତି କଲ୍ପେ ସେ ଦୃଢ଼ ପ୍ରୟାସୀ ଥିଲେ ।

ଗୋ-ଜାତିର ସେବା କଲେ ମନୁଷ୍ୟ କିପରି ଦେବଲୋକର ଊର୍ଦ୍ଧ୍ୱରେ ଥିବା ଗୋଲୋକରେ ବାସ କରେ ତାହା ଦର୍ଶାଇବାକୁ ଯାଇ ସେ କହିଛନ୍ତି—

"ଗୋସେବା ସର୍ବ ଧର୍ମେ ସାର        ଏହା ବୁଝିଲେ ସର୍ବ ନର,
ହୋଇବ ଏ ସଂସାର ସ୍ୱର୍ଗ        ଲଭିବେ ଲୋକେ ଅପବର୍ଗ ।''

'ଗୋ-ମାହାତ୍ମ୍ୟ' ଲେଖାକୁ କେବଳ ଆମେ କବିତା ଦୃଷ୍ଟିରୁ ବିଗ୍ଭର କଲେ ଏହା ଅତି ଉଚ୍ଚକୋଟୀର ନ ହୋଇପାରେ; ମାତ୍ର ସେଥିରେ ଯେପରି ତାଙ୍କର ଅନ୍ତରର ବେଦନା ଗୋ-ଜାତି ପାଇଁ ଫୁଟି-ଉଠିଛି, ତାହା ପ୍ରଣିଧାନଯୋଗ୍ୟ । ଅର୍ଦ୍ଧବୁଭୁକ୍ଷିତ ଅସ୍ଥିକଙ୍କାଳସାର ଗୋ-ଜାତିକୁ ଦେଖି ସେ ଲେଖିଛନ୍ତି—

''ସପ୍ତାହ ଅନ୍ତରେ ବଥିକା,
ବସିଲେ ଲଗେ ଗୋରୁବିକା ।
ବଳଦେ କରୁଛନ୍ତି ହଳ,
ସଚଳେ ସେ ବଳଦ ବଳ ।
ବିକନ୍ତି ବୃଦ୍ଧକାଳେ ହାଟେ,
କଂସାଇ କଣି ନେଇ କାଟେ ।"

ଉପରଲିଖିତ ପଦ୍ୟାଂଶଟିକୁ ଆଲୋଚନା କଲେ ଜଣାଯାଏ, ଗୋପବନ୍ଧୁ ସଦା ଅବହେଳିତ ଗୋ-ଜାତିର କଷ୍ଟରେ ବ୍ୟଥିତ ହୋଇ ହତ୍ୟା ବନ୍ଦସୁ ଓ କଂସେଇ କାରବାରକୁ ନିବାରଣ କରିବାକୁ ତାଙ୍କର ହୃଦୟସ୍ପର୍ଶୀ କବିତାରେ ବିନମ୍ର ଅନୁରୋଧ କରିଛନ୍ତି ।

ଗୋପବନ୍ଧୁ ପ୍ରତ୍ୟେକ ସ୍ତରରେ ଓଡ଼ିଶାର କପରି ସର୍ବାଙ୍ଗୀ ଉନ୍ନତି ହେବ, ତାହା ଚିନ୍ତା କରି ଖୁବ୍ ସରଳ ଗୀତି ଛନ୍ଦରେ ସର୍ବଜନାଦୃତ ହେଲ ପରି ଗୋ ଜାତିର ସେବାଦ୍ୱାରା ନୈତିକତା ବୃଦ୍ଧି କରିବାକୁ ଘାନ ଏବଂ ଅଧମ ଭାବରେ କପରି ବ୍ୟାକୁଳ ଥିଲେ, ତାହା ତାଙ୍କର ପ୍ରଣୀତ 'ଗୋ-ମାହାତ୍ମ୍ୟ'ରୁ ଯଣାପଡେ; ଯଥା—''ଗୀତ ଭଣିଲ ଗୋପ ଦାସ, କହେ ପାମର ଗୋପ ଦାସ, କହଇ ଘାନ ଗୋପ ଦାସ, କହଇ ଗୋପ ଅକିଞ୍ଚନ'' ଇତ୍ୟାଦି ।

ଏହି ଭଣିତିରୁ ଜଣାଯାଏ ଯେ, ଗୋପବନ୍ଧୁ ବାସ୍ତବରେ ଜଣେ ଗୋପ (ଗୋରୁ)ଙ୍କର ବନ୍ଧୁ ଥିଲେ ଏବଂ ଗୋଜାତିର ସର୍ବାଙ୍ଗୀନ ଉନ୍ନତି ଲଗି ଅତି ଘାନ-ହୀନ ଭାବରେ ବିନମ୍ର ନିବେଦନ କରିଥିଲେ ।

ଆଜକାଲର ରକେଟ ଓ ସ୍ପୁଟ୍‌ନିକ୍ ଯୁଗରେ କେତେକଙ୍କୁ ଏହି ବିନମ୍ର ନିବେଦନ ଅତି ତୁଚ୍ଛ ବୋଧ ହୋଇପାରେ; ମାତ୍ର ଏହା ପଛରେ ଯେଉଁ ମହାନ୍ ଆତ୍ମୀୟତା ଅଛି, ତାକୁ ବିଶ୍ଳେଷଣ କଲେ, ସେ ଯେ କେଡ଼େ

ହେଉ ନା କାହିଁକି, ଗୋପବନ୍ଧୁଙ୍କ ବିନମ୍ର ନିବେଦନ ନିକଟରେ ତାର ମସ୍ତକ ସ୍ୱତଃ ଅବନମିତ ହୋଇପଡ଼ିବ । ଆଜକାଲି ଅତ୍ୟାଧୁନିକ ଯୁଗରେ ଆମର ବିଜ୍ଞ ସମାଜ ଗୋ-ଜାତିର ଉନ୍ନତି ପାଇଁ ନାନା ପ୍ରକାର ବିଜ୍ଞାନ-ସମ୍ମତ ତଥ୍ୟ ଉଦ୍ଭାବନ କରିବାରେ ପ୍ରୟାସୀ । ସେହି ଦୃଷ୍ଟିରୁ କେହି ଯଦି ଗାଈଙ୍କୁ ପକ୍କା ଗୃହରେ ରଖି ସୁଷମ ଖାଦ୍ୟ ଦେବାକୁ ଉପଦେଶ ଦିଏ, ତେବେ କ'ଣ ତାହା ଏହି ଅର୍ଦ୍ଧମୃତ ଅବହେଳିତ ଗୋଜାତିର ଉନ୍ନତି ସକାଶେ ସହାୟକ ହେବ ? ମନୁଷ୍ୟ ମନ ପରି ଆଜ ଧର୍ମଛଡ଼ା ହୋଇଯାଇଛି—ସେଥିସକାଶେ ପ୍ରଥମେ କିପରି ଲୋକମାନଙ୍କର ଧର୍ମଭାବ ଜାଗ୍ରତ ହେବ, ତାହାକୁ ଆଖିରେ ରଖି ଗୋପବନ୍ଧୁ ଲେଖିଛନ୍ତି—

"ଗୋ ସେବାବ୍ରତ ପୁଣ୍ୟ ରାଶି, ଭୁଞ୍ଜ ମରଣ ବିଶ୍ୱବାସୀ ।
ଶିଖି ଲଭନ୍ତୁ ସ୍ୱର୍ଗେ ବାସ, ଗୀତେ ଭଣିଲା ଗୋପଦାସ ।"

କାରଣ ସେ ଯାଣିଥିଲେ, ଯେ ପର୍ଯ୍ୟନ୍ତ ଲୋକମାନଙ୍କର ମାନସିକ ଚିନ୍ତାଧାରା ଉନ୍ନତ ସ୍ତରକୁ ନ ଆସିଛି, ସେ ପର୍ଯ୍ୟନ୍ତ ଗୋ-ଜାତିର ଉନ୍ନତି ସମ୍ଭବ ନୁହେଁ । ହିନ୍ଦୁମାନେ ଧର୍ମଭାବାପନ୍ନ, ତାହା ସେ ହୃଦୟଙ୍ଗମ କରି ପାରିଥିଲେ । ତେଣୁ ସେ ଯେତେବେଳେ ଦେଖିଲେ ଗୋ-ଜାତିର ଉନ୍ନତି ହିଁ ମାନବଜାତିର ପ୍ରଥମ ସୋପାନ, ସେତେବେଳେ ଗୋ-ଜାତିର ଉନ୍ନତି କଳ୍ପେ ରଚନା କଲେ "ଗୋ-ମାହାତ୍ମ୍ୟ" ।

ସେଥିରେ ସେ କିପରି ମୁନିଋଷିଙ୍କଠାରୁ ରାଜା ମହାରାଜା ଏବଂ ପୌରାଣିକ ଯୁଗରେ ପ୍ରଭୁ ରାମଚନ୍ଦ୍ର ଏବଂ ଶ୍ରୀକୃଷ୍ଣଙ୍କ ପର୍ଯ୍ୟନ୍ତ କିପରି ଗୋଜାତିର ଉନ୍ନତି ଇଚ୍ଛା କରିଥିଲେ, ତାହା ଛନ୍ଦରେ ଆଜକାଲି ସମାଜକୁ ସେ ଉପଦେଶ ଦେଇଛନ୍ତି—

"ଯନମ ଲଭି କ୍ଷେଦି କୁଳେ,
ରହିଲେ ଗୋପ ଗୋପୀ ମେଳେ ।
ବନରେ ଚରାଇଲେ ଗାଈ,
ବନେ ମୋହିଲେ ବଂଶୀ ବାଇ ।
+ + +
ନିଜେ ଶଙ୍କର ଗୋ ଗୌରବେ
ବାହାନେ ବାଛିଲେ ବୃଷଭେ ।"

ପୂର୍ବବର୍ଣ୍ଣିତ ଆଚରଣବିଧିକୁ ନେଇ ଜନତାଙ୍କର ପାଖରେ ସୁମଧୁର ଭାଷାରେ ପହଞ୍ଚାଇ, ସେମାନଙ୍କର ଆଧ୍ୟାତ୍ମିକ ଉନ୍ନତିସାଧନ କରିବା ଥିଲା ତାଙ୍କର ପ୍ରଧାନ ଲକ୍ଷ୍ୟ ।

ଗୋଜାତିଠାରୁ ଆମେ ଦୁଧ, ଦହି, ଘିଅ ଏବଂ ପ୍ରଚୁର ପରିମାଣରେ କ୍ଷେତ ପାଇଁ ସାର ଆଦାୟ କରୁ ଏବଂ ତା'ର ସନ୍ତାନମାନଙ୍କୁ ଆମର କୃଷି କାର୍ଯ୍ୟରେ ନିୟୋଜିତ କରୁ । ଯେତେବେଳେ ସେମାନଙ୍କଠାରୁ ଆମର ସକଳ ପ୍ରକାର କାର୍ଯ୍ୟ ଆଦାୟ ହୋଇଯାଏ, ସେତେବେଳେ ଆମେ ତାକୁ କଂଶେଇଶାଳାକୁ ପଠାଇ ତା'ର ମାଂସ ଭକ୍ଷି କରଉ । ସେଥିପାଇଁ ଗୋପବନ୍ଧୁ ଅତି ମ୍ରିୟମାଣ ହୋଇ ମାନବିକତାର ଉଦୟ ଉଦ୍ଦେଶ୍ୟରେ ବ୍ୟାକୁଳ ହୋଇ ଲେଖିଛନ୍ତି—

"ବ୍ରାହ୍ମଣ ଆଦି ଯେତେ ଜାତି,<br>ଗୋରୁ ବିକ୍ରୟେ ଛନ୍ତି ମାତି ।<br>ଗୋସେବା ନ କରନ୍ତି ନର,<br>ସରବେ ଚଷନ୍ତି ଗୋଚର ।"

ଉତ୍କଳମଣି ଗୋପବନ୍ଧୁ ଜୀବନସାରା ବନ୍ୟାପ୍ରପୀଡ଼ିତ ଅଞ୍ଚଳର ଲୋକମାନଙ୍କର ଦୁଃଖରେ ମ୍ରିୟମାଣ ହୋଇପଡ଼ୁଥିବା ସଙ୍ଗେ ସଙ୍ଗେ ଗୋଜାତିର ଦାରୁଣ କଷ୍ଟ ଦେଖି ତାର ପ୍ରତିକାର କରିବା ଉଦ୍ଦେଶ୍ୟରେ ଗୋଜାତି ପାଇଁ ପ୍ରଥମେ ଗୋଖାଦ୍ୟ ସଂଗ୍ରହ କରିବା ନିମନ୍ତେ ଉପଦେଶ ଦେଉଥିଲେ ।

ଅଧ୍ୟାପକ ଚିନ୍ତାମଣି ଦାଶ ଛାତ୍ର ଥିଲାବେଳେ ୧୯୧୫ ମସିହାରେ ଗୋଟିଏ ଦିନର ଘଟଣା ବଡ଼ ଭାବ ବିହ୍ୱଳ ଭାବରେ ସେ ମହାଶୟଙ୍କର "କବି ଗୋପବନ୍ଧୁ" ବହିର ଅଷ୍ଟମ ପରିଚ୍ଛେଦରେ ଦର୍ଶାଇଛନ୍ତି । ଗୋଜାତିର ଉନ୍ନତି ପାଇଁ ଗୋପବନ୍ଧୁ ନିଜର ଛାତ୍ରମାନଙ୍କୁ କିପରି ଗୁରୁତ୍ୱପୂର୍ଣ୍ଣ ଉପଦେଶମାନ ଦେଇଥିଲେ ତାହା ଅଧ୍ୟାପକ ଦାଶ ପରିଷ୍କାର ଭାବରେ ହୃଦୟଙ୍ଗମ କରି ମତ ପ୍ରକାଶ କରିଛନ୍ତି ଯେ, ଗୋପବନ୍ଧୁଙ୍କର ଗୋଜାତି ପ୍ରତି ସହାନୁଭୂତି ଏବଂ କରୁଣା ଅପରିସୀମ ଏବଂ ମହାନ୍ ।

ଗୋପବନ୍ଧୁ କେବଳ ମନୁଷ୍ୟ ଜାତିର ଉନ୍ନତି ଚାହୁଁ ନ ଥିଲେ, ତା ସଙ୍ଗେ ସଙ୍ଗେ ଗୋ ଜାତିର ଉନ୍ନତି ମଧ୍ୟ ଚାହୁଁଥିଲେ । ଗୋଜାତି ମନୁଷ୍ୟଠାରୁ କୌଣସି ଉପକାର ପାଇବାର ଆଶା ନ ରଖି ମନୁଷ୍ୟ-ସମାଜର ଉପକାର କରିଯାଉଛି । ସେ ତାର ଜୀବନକୁ ତିଳେତିଳେ ମନୁଷ୍ୟ ଜାତିର ସେବାରେ ନିୟୋଜିତ କରୁଛି । ତେଣୁ ଗୋପବନ୍ଧୁଙ୍କ ଉକ୍ତି ଗୋଜାତି ପାଇଁ ବିଶେଷ ଭାବେ ପ୍ରଯୁଜ୍ୟ—

"ସକଳ ଧର୍ମେ ଶ୍ରେଷ୍ଠ ସାର,
କେବଳ ପର ଉପକାର ।"

ଯେଉଁ ବ୍ୟକ୍ତିବିଶେଷ କେବଳ ପରର ଉପକାର ପାଇଁ ବ୍ୟାକୁଳ, ସେ ଧାର୍ମିକ ଓ ତାର ମାନବିକତା ଅତି ଉଚ୍ଚକୋଟୀର । ବାଲ୍ୟାବସ୍ଥାରୁ ଗୋପବନ୍ଧୁଙ୍କର ଜୀବନ ଶତ ବାଧା ସତ୍ତ୍ୱେ ଏବଂ ପ୍ରକୃତିର ବିଡ଼ମ୍ବନା ସତ୍ତ୍ୱେ ଯେ କେବଳ ପରର ଉପକାର ପାଇଁ ଉଦ୍ଦିଷ୍ଟ, ଏଥିରେ ମତ ଦ୍ୱୈଧର ଆଶଙ୍କା ନାହିଁ । ସୁତରାଂ ଗୋଜାତି ଯେପରି ପରର ଉପକାର ପାଇଁ ତତ୍ପର, ଗୋପବନ୍ଧୁ ମଧ୍ୟ ସେହିପରି ସମାନ୍ତରାଳ ଭାବେ ପର ଉପକାର କରିବାପାଇଁ ବ୍ୟାକୁଳ । ଏଥିରୁ ପ୍ରମାଣିତ ହୋଇପାରେ ଯେ, ପ୍ରକୃତରେ ଗୋପବନ୍ଧୁ ଗୋଜାତିର ଉପାସକ ଥିଲେ ।

ଗୋଜାତି ଆମ ହିନ୍ଦୁମାନଙ୍କର ମାତୃସ୍ଥାନୀୟ । ଏଣୁ ଗୋପବନ୍ଧୁ ତାଙ୍କର 'ଗୋ-ମାହାତ୍ମ୍ୟ' କାବ୍ୟରେ ମାତୃଜାତି ତଥା ନାରୀସମାଜକୁ ଉପଦେଶ ଦେବା ଛଳରେ ପତିବ୍ରତା ଋଷିପତ୍ନୀ କିପରି ଗାଈର ମୃତ୍ୟୁ ସମ୍ବାଦ ଶୁଣି ପ୍ରାଣବାୟୁ ତ୍ୟାଗକଲେ, ତାହା ହୃଦୟସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିଛନ୍ତି ।

ଏଥିରୁ ଜଣାଯାଏ, ଗୋପବନ୍ଧୁ ପ୍ରକୃତରେ ଥିଲେ ଗୋଜାତିର ବନ୍ଧୁ ତଥା ଉପାସକ । ଗୋଜାତିର ଉନ୍ନତିକଳ୍ପେ ପ୍ରତ୍ୟେକ ସ୍ତରରେ କିପରି ଆଦର ଏବଂ ସ୍ନେହରେ ଗାଈମାନଙ୍କୁ ପାଳନ କରାଯିବା ଉଚିତ ତାହା ଦର୍ଶାଇବାକୁ ଯାଇ ସେ ଲେଖିଛନ୍ତି—

"ରଖିବ ଗୋରୁଙ୍କୁ ଯତନେ,
ନିର୍ମଳ ସୁକୋମଳ ସ୍ଥାନେ ।

ଦଉଡ଼ାଇବ ନାହିଁ କେବେ
ଯନ୍ତ୍ରିରେ ଧଇଁ ସଇଁ ହେବେ ।
ଗୋରୁଙ୍କୁ ନ ରଖିବ ଶୋଷେ
କିବା କଠିନ ରୁଦ୍ଧ ଦେଶେ ।"

ଆଜକାଲି ଯୁଗରେ ବିଜ୍ଞ ସୁଧୀସମାଜ ଗୋଜାତିର ଉନ୍ନତିକଳ୍ପେ ନାନା ପ୍ରକାର ବିଜ୍ଞାନସମ୍ମତ ଉପାୟ ଓ ଚିନ୍ତାଧାରା ପରିବେଷଣ କରୁଛନ୍ତି । ଗୋଚର ଭୂମିର ଉନ୍ନତି ସକାଶେ ସରକାର ନାନା ପ୍ରକାର ଯୋଜନା ପ୍ରଣୟନ କରୁଛନ୍ତି । ଗୋଜାତିକୁ ଉନ୍ନତ ସ୍ତରକୁ ଆଣିବାକୁ 'ପଶୁପାଳନ ବିଭାଗ' ଜରିଆରେ କୃତ୍ରିମ ପ୍ରଜନନ, ପ୍ରାକୃତିକ ପ୍ରଜନନ ଏବଂ ଚିକିତ୍ସା କେନ୍ଦ୍ରମାନ ପ୍ରତିଷ୍ଠା କରାଯାଉଛି । ମାତ୍ର ଏହାର ବହୁପୂର୍ବରୁ ଗୋପବନ୍ଧୁ ଏହାର ବହୁଳ ପ୍ରସାର ପାଇଁ ଏ ପ୍ରସଙ୍ଗରେ ମାନବ ଜାତିକୁ ସଚେତନ କରାଇଦେଇ ଯାଇଛନ୍ତି । ସେତେବେଳେ ସେ ସୁସ୍ଥ ଏବଂ ସୁନ୍ଦର ଗାଈମାନଙ୍କୁ କିପରି ପରିପାଳନ କରାଯିବା ଉଚିତ, ତାହା ସ୍ପଷ୍ଟ ଭାବେ ସୂଚାଇ ଦେଇଛନ୍ତି । ଗୋଦାନ ପାଇଁ ଯେ କେବଳ ସୁସ୍ଥ ସବଳ ଗାଈ ଦରକାର ଏବଂ ରୁଗ୍‌ଣ ଗୋରୁ ଦାନ ଦେଲେ କିଛି ପୁଣ୍ୟ ନାହିଁ, ତାହାର ମାଧ୍ୟମରେ ସେ ବୁଝାଇ ପାରିଛନ୍ତି ଯେ ଗୋଜାତିର ଉତ୍ତମ ପରିପାଳନ ହିଁ ହିନ୍ଦୁଜାତିର ସୁସ୍ଥ ପରମ୍ପରା ଏବଂ ଉନ୍ନତ ଆଭିଜାତ୍ୟର ପରିକାଷ୍ଠା ।

କେବଳ ନାନା ପ୍ରକାର ଯୋଜନା ସାହାଯ୍ୟରେ ବା ଚିତ୍ର ପ୍ରଦର୍ଶନୀ ଜରିଆରେ ଗୋଜାତିକୁ ଉନ୍ନତ ସ୍ତରକୁ ଅଣାଯାଇ ନ ପାରେ । ମନୁଷ୍ୟମାନଙ୍କର ଚିନ୍ତାଧାରା ଉନ୍ନତ ସ୍ତରକୁ ଆସିବା ଦରକାର । ଏଣୁ ଗୋପବନ୍ଧୁଙ୍କର ଭାବଧାରାରୁ ଅନୁସୃତ 'ଗୋ-ମାହାତ୍ମ୍ୟ' ପରି ସରଳ ନିରାଡ଼ମ୍ବର ଲେଖାର ଆହୁରି ପ୍ରୟୋଜନ ଅଛି ।

ଗୋପବନ୍ଧୁ ଆଜି ଚାଲିଯାଇଛନ୍ତି ସତ, ମାତ୍ର ପ୍ରତ୍ୟେକ ଓଡ଼ିଶାବାସୀଙ୍କର ଉନ୍ନତି ତାଙ୍କର ନିତ୍ୟନୈମିତ୍ତିକ ଚିନ୍ତା ଥିଲା । ସେ ଯେ କେବଳ ଜନନେତା, ଜନ ସେବକ ଥିଲେ ତାହା ନୁହେଁ, ସେ ମଧ୍ୟ ଓଡ଼ିଶାର ଆଧ୍ୟାତ୍ମିକ ପଥପ୍ରଦର୍ଶକ ଥିଲେ । ଆଧ୍ୟାତ୍ମିକତା ବୃଦ୍ଧି କରି ଆତ୍ମଘାତକତାକୁ ବିନଷ୍ଟ କରିବା ତାଙ୍କର ମୂଳମନ୍ତ୍ର ଥିଲା ।

ଆମ୍ଭେମାନେ ଆଜିକାଲିର ବିଜ୍ଞାନ ଯୁଗରେ କୃଷି ପାଇଁ କେବଳ କଳକବ୍‌ଜା ଏବଂ କଳ ଲଙ୍ଗଳ ଉପରେ ନିର୍ଭର କଲେ ଚଳିବ ନାହିଁ; କାରଣ ଆମ୍ଭର ଦେଶ ଗୋ ମାତୃକାର ଦେଶ । ତାର ଉନ୍ନତିସାଧନ ନ ହେଲେ ଆମେ ନିଶ୍ଚୟ ପଛରେ ପଡ଼ିଯିବା । ଆମର ଜଳବାୟୁ, ଆମର ଚିନ୍ତାଧାରା, ଆମର ଶିକ୍ଷାଗୁରୁ, ଆମର ସଭ୍ୟତା ଏବଂ ଆମର ସଂସ୍କୃତି ଓ ତଦୁପରି ଆମର ମୌଳିକତା ପାଶ୍ଚାତ୍ୟ ଜଗତଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପୁରପଲ୍ଲୀର ଉନ୍ନତିରେ ଆମର ଉନ୍ନତି ପର୍ଯ୍ୟବସିତ । ଯେଉଁ ଗୋପବନ୍ଧୁ ଗୋଜାତିର ଉନ୍ନତି ପାଇଁ ସର୍ବଦା ବ୍ୟାକୁଳ ଥିଲେ, ସେହି ଗୋପବନ୍ଧୁଙ୍କର ଲୋକାନ୍ତରିତ ଅମର ଆତ୍ମା ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ହେଲେ ଆମର ସର୍ବପ୍ରଥମ କର୍ତ୍ତବ୍ୟ ଗୋଜାତିର ସସ୍ନେହ ସେବା ଓ ଭକ୍ତି । ସେମାନେ ଉନ୍ନତ ସ୍ତରକୁ ଆସି ନିରୋଗ ହୋଇ ସୁଖସମୃଦ୍ଧିରେ କାଳଯାପନ କଲେ ତାହା ହିଁ ହେବ ଗୋପବନ୍ଧୁଙ୍କ ପ୍ରତି ଶ୍ରେଷ୍ଠ ସମ୍ମାନ ପ୍ରଦର୍ଶନ, କାରଣ ତାଙ୍କର ସର୍ବଦା କାମ୍ୟ ଥିଲା—

"ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ।"



# ଆଦର୍ଶ ସଂସ୍କାରକ ଗୋପବନ୍ଧୁ

ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ, ପି. ଏଚ୍. ଏସ୍.

[ କବି ସ୍ଥାନ ଓ କାଳର ପ୍ରତିନିଧି । ଗୋପବନ୍ଧୁଙ୍କ ପ୍ରତି ମଧ୍ୟ ଏହି ନୀତି ପ୍ରଯୁଜ୍ୟ । ସେ ତାଙ୍କ ରଚନା ମାଧ୍ୟମରେ ତଦାନୀନ୍ତନ ଉତ୍କଳ ତଥା ଭାରତର ସାମାଜିକ ଜୀବନର ନାନା ଅଭାବ, ଅସୁବିଧା ଓ କୁସଂସ୍କାରର ଚିତ୍ର ଅଙ୍କନ କରି ତାର ଦୂରୀକରଣ ନିମନ୍ତେ ଆହ୍ୱାନ ଦେଇଛନ୍ତି । ଏଣୁ ତାଙ୍କ ସାହିତ୍ୟର ଛନ୍ଦେ ଛନ୍ଦେ ସଂସ୍କାର ବାଣୀ ପ୍ରତିଫଳିତ ହୋଇଛି ଏବଂ ଏହି ଦୃଷ୍ଟିରୁ ତାଙ୍କୁ ଏକାଧାରରେ ଜଣେ ସମାଜ, ଧର୍ମ, ଶାସନ, ରାଜନୀତି, ଅର୍ଥନୀତି ଓ ନୀତିବାଦୀ ସଂସ୍କାରକ ରୂପେ ଗ୍ରହଣ କରାଯାଇଛି । —ସଂ ]

ମାନବ ଜାତିର ସନ୍ଧିକ୍ଷଣ ବେଳେ ଏପରି ଜଣେ ଜଣେ ମହାପୁରୁଷ ଆବିର୍ଭାବ ହୁଅନ୍ତି, ଯେ କି ଆଦର୍ଶର ମହାମନ୍ତ୍ର ପ୍ରଚାର କରି ପତନୋନ୍ମୁଖି ଜାତିକୁ ଟେକି ଧରିଥାନ୍ତି । ଭାରତର ଇତିହାସରେ ବୁଦ୍ଧ, ଗାନ୍ଧୀ ଓ ଗୋପବନ୍ଧୁ ଏଭଳି ଜଣେ ଜଣେ ମହାପୁରୁଷ । ଓଡ଼ିଶା ଯେତେବେଳେ ସ୍ୱତନ୍ତ୍ର ପ୍ରଦେଶ ହୋଇ ନ ଥିଲା, ଓଡ଼ିଶାର ଯୁବ ସମାଜ ପାଶ୍ଚାତ୍ୟ ଶିକ୍ଷା ଅନୁସରଣ କରି ତାର ପାରମ୍ପରିକ ସଂସ୍କୃତି ଓ ଆଦର୍ଶକୁ ଭୁଲି ଯାଇଥିଲା ଏବଂ ଉତ୍କଳର ନିରୀହ ଜନତା ବ୍ରିଟିଶ ଶାସକଙ୍କର ଉତ୍ପୀଡ଼ନରେ ନିଷ୍ପେଷିତ ହେଉଥିଲା, ସେତେବେଳେ ଆଦର୍ଶପ୍ରାଣ ଗୋପବନ୍ଧୁଙ୍କର ସଂସ୍କାରାଭିମୁଖୀ ଲେଖନୀ ପ୍ରଖର ହୋଇ ଉଠିଥିଲା । ନିଜ ଆତ୍ମାନୁଭୂତିକୁ କେନ୍ଦ୍ର କରି ସେ ରଚନା କରିଗଲେ 'ଅବକାଶ ଚିନ୍ତା', 'ଧର୍ମପଦ', 'କାରା କବିତା', 'ବନ୍ଦୀର ଆତ୍ମକଥା' ଓ 'ନଚିକେତା ଉପାଖ୍ୟାନ' ଏବଂ ତାହା ମାଧ୍ୟମରେ ପ୍ରଚାର କଲେ ଆଦର୍ଶର ଅମର ବାଣୀ, ସଂସ୍କାରର ମହାମନ୍ତ୍ର ।

ଗୋପବନ୍ଧୁ ବ୍ୟକ୍ତିର ଚରିତ୍ର, ଗ୍ରାମ୍ୟ ଜୀବନ, ସାମାଜିକ ଧାରା, ଶିକ୍ଷା ପଦ୍ଧତି, ରାଜନୈତିକ ଧର୍ମ ଓ ଶାସନନୀତି ସବୁର କଳଙ୍କର କାଳିମା ପ୍ରଦର୍ଶନ କରିଥିଲେ ଏବଂ ପ୍ରତ୍ୟେକ କ୍ଷେତ୍ରରେ ସଂସ୍କାର ପ୍ରବର୍ତ୍ତନ ଉଦ୍ଦେଶ୍ୟରେ ଲେଖନୀ ଚାଳନ ପୂର୍ବକ ଆହ୍ୱାନ ଦେଇଥିଲେ । ଅସତ୍ୟ, ଅନ୍ୟାୟ ଓ ଅନାଚାର ବିରୁଦ୍ଧରେ ଜନମତ ଜାଗ୍ରତ କରିବା ତଥା ବ୍ୟକ୍ତିଚରିତ୍ରକୁ ସଂଶୋଧିତ କରିବା ଉଦ୍ଦେଶ୍ୟରେ ସେ ପୁରାଣ ଓ ଇତିହାସର ଦୃଷ୍ଟାନ୍ତ ଦେଇ ତ୍ୟାଗମୟ ଓ ତତ୍ତ୍ୱମୟ ଜୀବନର ଗୁଣଗାନ କରିଛନ୍ତି ।

"କପୋତର ହିତେ ଶିବି ଶୁଦ୍ଧ ଚିତ୍ତେ
କରି ଏ ଆତ୍ମ ଉତ୍ସର୍ଗ,
ଇହପର ଲୋକେ ଲଭିଲେ ଅକ୍ଷୟ
ଧର୍ମ ଆଦି ଚାରି ବର୍ଗ ।

\+ \+ \+

ଏ ଜଗତ ବାପା ମହା ମୁଖଶାଳା
ନର ନାରୀ ଯଜମାନ,
ସେହି କୃତୀ, ସେହୁ ପର ହିତେ କରେ
ଜୀବନ ଆହୁତି ଦାନ ।"

କିମ୍ବା

"ମାନବ ଜୀବନ ନୁହେ ମିଥ୍ୟାଭ୍ରମ
କିମ୍ବା କୂଟନୀତି କୌଶଳ ପ୍ରଧାନ ।
ଏ ଜୀବନ ସତ୍ୟ ଶୁଦ୍ଧ ସାର ତତ୍ତ୍ୱ,
ତତ୍ତ୍ୱ ଅନୁବନ୍ଧ ମାନବର ସତ୍ତ୍ୱ ।
ଯା ଜୀବନ ଗତି ତତ୍ତ୍ୱ ଅଭିମୁଖୀ,
ସେହି ଏକା କୃତୀ, ସେହି ଏକା ସୁଖୀ ।"

ପରାଧୀନ ଭାରତ ତଥା ଉତ୍କଳର ଗ୍ରାମ୍ୟ ଜୀବନ ଅତି ଦୂଷିତ ଓ କଳୁଷିତ ହୋଇ ପଡ଼ିଥିଲା । କଳହ, ପ୍ରବଞ୍ଚନା, ମାମଲା, ମକଦ୍ଦମା ନେଇ ନିରୀହ ପ୍ରଜା ଓ ଗାଁ ମୁଖିଆଙ୍କ ମଧ୍ୟରେ ବରାବର ଉଡ଼ାଓଟରା ହେଉଥିଲା । ଧନୀ ମହାଜନ ଚକ୍ରବୃଦ୍ଧି ହାରରେ ଧନ ବୃଦ୍ଧି କରୁଥିଲା

ବେଳେ ନିଃସ୍ୱ ପ୍ରଜା ସର୍ବସ୍ୱାନ୍ତ ହେଉଥିଲେ । ସେଠାରେ ପାରମ୍ପରିକ ଗ୍ରାମ୍ୟଜୀବନର ଧର୍ମାଦର୍ଶ ଲୋପ ପାଇଥିଲା । ବେଦ, ଭାଗବତ ପାଠର ପ୍ରଶ୍ନ ନଥିଲା । କବିଙ୍କ ଭାଷାରେ ଏଭଳି ଗ୍ରାମ୍ୟଜୀବନର ନୈତିକ ଓ ଅର୍ଥ-ନୈତିକ ଅଧଃପତନର କରୁଣ ଦୃଶ୍ୟ ପରିବେଷଣ କରିବାକୁ ଗଲେ—

"ପଶିଗଲେ ଗ୍ରାମେ ନ ଶୁଭେ ଶବଦ,
ବେଦମନ୍ତ୍ର କିବା ଭାଗବତ ପଦ ।
ଗ୍ରାମବାସୀଗଣେ ନାହିଁ ପୂର୍ବ ମେଳ,
ଶିଶୁଖେଳେ ଦାଣ୍ଡ ନ ହୁଏ ଉଦ୍‌ବେଳ ।
ଶୋଇଅଛୁ ଭାଙ୍ଗି ଗ୍ରାମ ଦେବାଳୟ
ପୂରିଲାଣି ପଙ୍କବନ୍ଧେ ଜଳାଶୟ ।
ଗ୍ରାମର ଗୋକୁଳ କ୍ରମେ ଅତି କ୍ଷୀଣ,
ଯେଣେ ଅନାଇବ ସବୁ ଶିରୀହୀନ ।
ନାହିଁ ଜନମୁଖେ ସତ୍ୟ-ଧର୍ମ-କାନ୍ତି,
ନାହିଁ ହୃଦେ ଶୌଚ, ପ୍ରାଣେ ସ୍ନେହ-ଶାନ୍ତି ।
ପର ପ୍ରବଞ୍ଚନା କରେଚି-ବଗୁର,
ଗ୍ରାମ ମୁଖିଆଙ୍କ ନିତ୍ୟ କାରବାର ।"

ଏଭଳି ଗ୍ରାମ୍ୟ ଜୀବନରେ ସଂସ୍କାର ଆଣିବା ଉଦ୍ଦେଶ୍ୟରେ ଆଶାବାଦୀ କବି ଗୋପବନ୍ଧୁ ଭୌତିକ ଓ ପରମାର୍ଥିକ ଉଭୟ ପନ୍ଥାର ନିର୍ଦ୍ଦେଶ ପ୍ରଦାନ କରିବାକୁ ଯାଇ ଲେଖି ଅଛନ୍ତି—

"ପିନ୍ଧ ଦେଶୀ ଲୁଗା ହେଉ ଅଙ୍ଗ ଶୁଦ୍ଧି,
ମାମଲାରେ ଆଉ ନ ଖେଳାଅ ବୁଦ୍ଧି ।
ଗ୍ରାମେ ପଞ୍ଚ ପରି ପରମ ଈଶ୍ୱର,
କର ପୁଣି ଗ୍ରାମେ ସ୍ଥାପନା ତାଙ୍କର ।
ସର୍ବେ ବାନ୍ଧି ମେଳ ତାଙ୍କୁ ମାନି ଚଳ,
ପ୍ରକାଶିବ ଗ୍ରାମେ ପୁଣି ନବ ବଳ ।
ନ ଲଗିବ ମିଥ୍ୟା ଜାଲ ପ୍ରବଞ୍ଚନ,
ନ ଖାଇବେ ଭୂତ ଭୁମ ଗ୍ରାମଧନ ।

\+ \+ \+

ହେଲେ ଆତ୍ମଶୁଦ୍ଧି ସୁନିର୍ମଳ ମତି
ପ୍ରକାଶିବ ତେଜ ଅମୋଘ ଶକତି ।
ଏ ବିଶ୍ୱାସ ସଦା ହୃଦେ ଦୃଢ଼େ ଧର,
+ + +
ଦ୍ୱେଷ ନାଶ ନିଶା ଆଦି ଦୁରାଚାର,
ନକରୁ ଦୂଷିତ ଗ୍ରାମ ପରିବାର ।
ଏ ଆଗ୍ରହରେ ହେବ ଜଗତ ମଙ୍ଗଳ ।''

କେବଳ ଗ୍ରାମ୍ୟ ଜୀବନ କାହିଁକି, ନଗର, ସହର, ତାଲୁକା, ଜିଲ୍ଲା ସର୍ବତ୍ର ଏପରି କି ସମଗ୍ର ଭାରତର ସାମାଜିକ ଜୀବନ କଳୁଷିତ ହୋଇ ଯାଇଥିଲା । ଭାରତୀୟ ସନ୍ତାନ ବ୍ରିଟିଶ ଶାସକଙ୍କର ଗୋଲାମ ସାଜି ଅତି ଘୃଣିତ ଭାବରେ ଜୀବନ ଯାପନ କରୁଥିଲେ । ଏଣୁ କବି ମର୍ମାହତ ହୋଇ ଗାଇଥିଲେ—

''ଅଜ୍ଞାନ ତିମିରେ ଅନ୍ଧ ଭାରତ ସନ୍ତାନ
ହରାଇଛନ୍ତି ଜାତୀୟ ମାନ ଅଭିମାନ ।''

ଉତ୍କଳ ତଥା ଭାରତୀୟ ଜନତାର ଶୈଥିଲ୍ୟ ପ୍ରତି ଲକ୍ଷ୍ୟ କରି ସୁପ୍ତ ଜନସମାଜକୁ ଜାତୀୟତା ମନ୍ତ୍ରରେ ଉଦ୍‌ବୁଦ୍ଧ କରିବା ପାଇଁ ସେ ସ୍ୱାଧୀନତାର ଗୁଣ କୀର୍ତ୍ତନ କରିଥିଲେ ଏବଂ ବଜ୍ରଗମ୍ଭୀର ସ୍ୱରରେ ଆହ୍ୱାନ ଦେବାକୁ ଯାଇ ଗାଇଥିଲେ—

''ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର,
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି
ଗୁରୁ ସ୍ତମ୍ଭ ମାନବର ସମାଜ-ସଂସ୍ଥିତି ।
+ + +
ବନେ କରେ ପଶୁ ସ୍ୱଚ୍ଛନ୍ଦେ ବିହାର,
ନାହିଁ କ ସେ, ନୁହେ ଅଧୀନ କାହାର ।
ତିମି ତିମିଙ୍ଗଳ ମତ୍ସ୍ୟ ଜଳଚର,
ଖେଳନ୍ତି ସଲିଳେ ନ ଜାଣନ୍ତି ଡର ।

ଭାରତେ କେବଳ ନର ତହୁଁ ହୀନ
ନୁହେ ସେ ସ୍ୱଚ୍ଛନ୍ଦ, ନୁହେଁ ସେ ସ୍ୱାଧୀନ ।"

ଏଥିଯୋଗୁଁ ଦେଶକୁ ବିଦେଶୀ ଶାସକଙ୍କ କବଳରୁ ଉଦ୍ଧାର କରିବା ପାଇଁ ସେ ସମଗ୍ର ଉତ୍କଳବାସୀ ତଥା ଯୁବସମାଜକୁ ଉଦ୍‌ବୋଧନ ଦେଇ କହିଥିଲେ—

"ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ
ମାନବ ଜନମ ହୁଅଇ ସଫଳ
ଏ ମହା ଶିକ୍ଷା କି ବୁଝିବ ଉତ୍କଳ ?"

ଏବଂ

"ହେ ଯୁବମଣ୍ଡଳ କର କେତେ ବାହାଦୂରୀ
ଦେଶର ଉଦ୍ଧାର ପାଇଁ ପକାଅ ତ ହୁରି
ହିସାବ କିତାବ ବେଳେ ଗଲା ଏବେ ଜଣା
ତୁମ୍ଭ ଦେଶ ଅନୁରାଗ ଜଘନ୍ୟ ଛଳନା ।"

ତେବେ ଗୋପବନ୍ଧୁ ସ୍ପଷ୍ଟ ହୃଦୟଙ୍ଗମ କରିଥିଲେ ଯେ କେବଳ ସ୍ୱାଧୀନତା ହାସଲଦ୍ୱାରା ସାମାଜିକ ଜୀବନର ପୂର୍ଣ୍ଣ ବିକାଶ ସାଧନ ହୋଇପାରିବ ନାହିଁ । ପୂର୍ଣ୍ଣାଙ୍ଗ ସାମାଜିକ ଜୀବନର ବିକାଶ ନିମନ୍ତେ ସମାଜର ପ୍ରତ୍ୟେକ କ୍ଷେତ୍ର ଉନ୍ନତ ହେବା ଆବଶ୍ୟକ । ଧାର୍ମିକ, ନୈତିକ, ରାଜନୈତିକ ଓ ଅର୍ଥନୈତିକ—ଏ ସମସ୍ତ ଦିଗରୁ ଉନ୍ନତ ବାତାବରଣ ସୃଷ୍ଟି ହେଲେ ହିଁ ଉନ୍ନତ, ସୁସ୍ଥ ଓ ସ୍ୱଚ୍ଛନ୍ଦ ସାମାଜିକ ଜୀବନର ବିକାଶ ସମ୍ଭବ ହୋଇପାରିବ । ଏଣୁ ସମାଜର ପ୍ରତ୍ୟେକ ସ୍ତରରେ ସଂସ୍କାର ପ୍ରବର୍ତ୍ତନ କରିବା ପାଇଁ ସେ ପ୍ରୟାସୀ ହୋଇ ଉଠିଥିଲେ । ତତ୍‌କାଳୀନ ଅମଲାତାନ୍ତ୍ରିକ ଶାସନକଳର ଦୋଷ, ଦୁର୍ବଳତା ଓ ଅତ୍ୟାଚାର ପ୍ରତି ଆକ୍ଷେପ କରିବା ସଙ୍ଗେ ସଙ୍ଗେ ସେ ଗଣତନ୍ତ୍ର ତଥା ପ୍ରଜାତନ୍ତ୍ର ଶାସନର ପକ୍ଷ ସମର୍ଥନ କରିଥିଲେ ଏବଂ ପାରମ୍ପରିକ ଶାସନଗତ ଆଦର୍ଶର ପରିପ୍ରେକ୍ଷୀରେ ଉଦ୍ଦେଶ୍ୟରେ ଗାଇଥିଲେ—

"ପ୍ରଜା ଲାଗି ରାଜା ପ୍ରଜାହିତେ ରାଜନୀତି,
ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳ ଭିତ୍ତି ।

ସାର୍ବଭୌମ ସନାତନ ଏ ଶାସନ ବିଧି,
ଲଭିଛି ସର୍ବତ୍ର ଆଜ ବିଶେଷ ପ୍ରସିଦ୍ଧି ।
ଭାରତ ଶାସନେ କିନ୍ତୁ ବ୍ୟବସ୍ଥା ସ୍ୱତନ୍ତ୍ର
ଏ ରାଜ୍ୟେ ଅମାତ୍ୟ ସଂସ୍ଥା ରାଜନୀତି ଯନ୍ତ୍ର ।"

+ + +

"କେତେ ନାମେ କେତେ ପ୍ରକାରରେ କର,
ଦେଇ ପ୍ରଜାଙ୍କର ଭାଙ୍ଗିଲଣି ଘର ।
ଖାଇବା ବାସନ ହେଉଛି ନିଲାମ,
ତେବେ ହେଲେ ନାହିଁ କରର ବିରାମ ।
ସହି ନାନା ଦୁଃଖ ଯାତନା ସତତ,
ନାହିଁ ଆଉ ତୁମ୍ଭ ଶରୀର ରକତ ।
ଜାଣେ ମୁଁ କରୁଛ ନାନା ଆଉଁ ଖିତ,
ତରାଇ ଶାସିବା ହୀନ ରାଜନୀତି ।
ରହିବ ନାହିଁ ଏ ନୀତି କାଳେ କାଳେ
ନାଶ ଯିବ ସତ୍ୟ-ନ୍ୟାୟୁ କରିବାଳେ ।"

କେବଳ ରାଜନୈତିକ ସ୍ୱାଧୀନତା ଓ ଶାସନତାନ୍ତ୍ରିକ କ୍ଷମତା ବିକେନ୍ଦ୍ରୀକରଣ ଏକ ଦେଶର ସାମାଜିକ ଜୀବନର ମାନବୃଦ୍ଧି ନିମନ୍ତେ ଯଥେଷ୍ଟ ନୁହେଁ । ଏହା ପଣ୍ଡିତ ଗୋପବନ୍ଧୁ ପୂର୍ଣ୍ଣମାତ୍ରାରେ ଉପଲବ୍ଧି କରିଥିଲେ ଏବଂ ସେଥିପାଇଁ ଆମ ସମାଜର ଶିକ୍ଷାପଦ୍ଧତି, ଚଳଣି, ରୀତି, ନୀତି ଓ ଆଚରଣକୁ ମଧ୍ୟ ସଂଶୋଧନ କରିବା ଲାଗି ନିର୍ଦ୍ଦେଶନା ଦେଇଥିଲେ । ଶିକ୍ଷା କ୍ଷେତ୍ରରେ ସଂସ୍କାର ପ୍ରବର୍ତ୍ତନ ଆଶାରେ ୧୯୧୫ ମସିହାର 'ସତ୍ୟବାଦୀ' ପତ୍ରିକାରେ 'ଗୁରୁକୁଳ' ଶୀର୍ଷକ ଏକ ଧାରାବାହିକ ଆଲୋଚନାରେ ସେ ଲେଖିଥିଲେ—

"ବର୍ତ୍ତମାନ ଅବସ୍ଥାରେ ଆମ୍ଭମାନଙ୍କ ଦେଶରେ ଯାହା ଯାହା ବଡ଼ ଦରକାରୀ, ଶିକ୍ଷା ତହିଁ ମଧ୍ୟରେ ସର୍ବପ୍ରଧାନ ଅଟେ । କିନ୍ତୁ ଭାରତର

ଶିକ୍ଷା ଅନ୍ୟାନ୍ୟ ଦେଶର ଶିକ୍ଷାଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଭାରତର ପ୍ରାଚୀନ ଯୁଗରେ ଛାତ୍ରମାନେ ଶିକ୍ଷା କରୁଥିଲେ କେବଳ ଶିକ୍ଷା ଲାଭ ନିମନ୍ତେ । ପାଣ୍ଡିତ୍ୟ, ଜ୍ଞାନ ବ୍ୟତୀତ ଅଧ୍ୟୟନର ଆଉ କିଛି ସ୍ୱାର୍ଥସୁଲଭ ଲକ୍ଷ୍ୟ ନ ଥିଲା । ବହୁ ଶ୍ରମରେ ଉପାର୍ଜିତ ବିଦ୍ୟାକୁ ଲୋକେ ଅର୍ଥ ସଙ୍ଗରେ ବିନିମୟ ବା ବିକ୍ରୟ କରୁ ନ ଥିଲେ । ସକଳ ଶ୍ରେଣୀର ଶିକ୍ଷାର ଆଦର୍ଶ ଥିଲା 'ସରଳ ଜୀବନ ସଙ୍ଗେ ଉଚ୍ଚ ଚିନ୍ତା ।' + + + + ଗୁରୁ ଯେ ଛାତ୍ରମାନଙ୍କର କେବଳ ଅଧ୍ୟୟନ ନିୟନ୍ତ୍ରିତ କରୁଥିଲେ ତାହା ନୁହେଁ, ଚରିତ୍ରଗଠନରେ ଗୁରୁ ପ୍ରଧାନ ସହାୟ । ପିତୃମାତୃସୁଲଭ ସ୍ନେହ ଓ ଆଦର ଦେଖାଇବାରେ ଗୁରୁ ଓ ଗୁରୁପତ୍ନୀ ସର୍ବଦା ଅତି ନିପୁଣ । ଏପରି ଭାବରେ ଲାଳିତପାଳିତ ଓ ନିୟନ୍ତ୍ରିତ ହୋଇଗଲା ଉତ୍ତାରେ ବାଳକମାନେ ସଂସାରରେ ପ୍ରବେଶ କରୁଥିଲେ । ସେତେବେଳେ ପ୍ରତ୍ୟେକ ବ୍ୟକ୍ତିର ଚତୁର୍ଦ୍ଦିଗରେ ନିଷ୍ଠାର, ସତ୍ୟର, ଧର୍ମର, ଜ୍ଞାନର ଗୋଟିଏ କ୍ଷୁଦ୍ର ମଣ୍ଡଳୀ ଆହୁରି ପୁଣି ଅଧ୍ୟାପନାରେ ଅର୍ଥ ଗ୍ରହଣ ନ ଥିଲା । ଅଧ୍ୟୟନରେ ଅର୍ଥ ବ୍ୟୟ ହେଉ ନ ଥିଲା । ସୁତରାଂ ପ୍ରତ୍ୟେକ 'ବାଳକ ନିଜର ଇଚ୍ଛା ଓ ଅଭିରୁଚି ଅନୁସାରେ ଶିକ୍ଷା ପାଇ ପାରୁଥିଲା ।"

"ବର୍ତ୍ତମାନ କିନ୍ତୁ ଏସବୁ ବଦଳି ଯାଇଅଛି । ଭାରତରେ ଶିକ୍ଷାର ସେ ପୁଣ୍ୟ ଆଦର୍ଶ ଆଉ ନାହିଁ । ଅଧ୍ୟାପନାରେ ସେ ସ୍ନେହ, ପ୍ରୀତି, ଆଦର, ନାହିଁ କି ଅଧ୍ୟୟନରେ ସେ ନିଷ୍ଠା, ସେ ସରଳତା ଆଉ ନାହିଁ । ପାଶ୍ଚାତ୍ୟର ସଙ୍ଘର୍ଷଣରେ ପ୍ରାଚ୍ୟ ଆଦର୍ଶର ଯେ ଘୋର ପରିବର୍ତ୍ତନ ଘଟିଅଛି, ଶିକ୍ଷାପ୍ରଣାଳୀର ପରିବର୍ତ୍ତନ ହିଁ ତହିଁ ମଧ୍ୟରେ ପ୍ରଥମ । + + + ନାନା ଆପଦ ବିପଦରେ, ବାରମ୍ବାର ବିଜାତୀୟ ମାନଙ୍କର ଆକ୍ରମଣ ମଧ୍ୟରେ ଭାରତ ଏତେ କାଳ ନିଜର ଯେଉଁ ଆଦର୍ଶ ଓ ଜଗତର ଶିକ୍ଷଣୀୟ ବ୍ୟକ୍ତିତ୍ୱ ଅକ୍ଷୁଣ୍ଣ ରଖିଅଛି, ତାହା ଲୋପ ପାଇଯିବ । ଏଥିପାଇଁ ବର୍ତ୍ତମାନ ଭାରତବାସୀର କର୍ତ୍ତବ୍ୟ ସେହି ପ୍ରାଚୀନ ଶିକ୍ଷାପ୍ରଣାଳୀ ପୁଣି ଯେପରି ଦେଶରେ ଚଳେ ସେ ବିଷୟରେ ଯତ୍ନବାନ୍ ହେବା ।"

ଏହି ଦୀର୍ଘ ଉଦ୍ଧୃତାଂଶଟିରୁ ଆଦର୍ଶ ଶିକ୍ଷାପ୍ରେମୀ ପଣ୍ଡିତ ଗୋପବନ୍ଧୁଙ୍କର ସଂସ୍କାର ମନୋଭାବ ସୁସ୍ପଷ୍ଟ ।

କେବଳ ଏତିକି ନୁହେଁ, ସମାଜରେ ପ୍ରଚଳିତ ବିଭିନ୍ନ ଧର୍ମ, କର୍ମ, ମତ, ନିୟମ ଓ ଆଚରଣ ଅନୁଧ୍ୟାନ କରି ତନ୍ନିହିତ ଦୋଷ, ତ୍ରୁଟି ଓ କୁସଂସ୍କାରର ନିରାକରଣ ନିମନ୍ତେ ମଧ୍ୟ ସେ ପ୍ରୟାସୀ ଥିଲେ । ସମାଜର ଦୁର୍ନୀତି ଓ ଦୁରାଗ୍ରହ ବିରୁଦ୍ଧରେ ସେ ଖୁବ୍ କଠୋର, ତିକ୍ତ ଓ ରୁକ୍ଷ ଭାଷାରେ ଆକ୍ଷେପ କରି ତାର ପ୍ରତିକାର ପାଇଁ ପ୍ରବର୍ତ୍ତନା ଦେଇଥିଲେ । ବିଭିନ୍ନ ୟୁନିୟନ୍ ପ୍ରେସିଡେଣ୍ଟଙ୍କ ଦୁର୍ନୀତିର ରୂପରେଖ ଅଙ୍କନ କରିବାକୁ ଯାଇ ସେ ଲେଖିଛନ୍ତି—

"ରେସିଡେଣ୍ଟ ପ୍ରେସିଡେଣ୍ଟ ସୁପ୍ରିଣ୍ଟେଣ୍ଡେଣ୍ଟ ତଥୈବଚ
ନିଯୁକ୍ତେଣ୍ଟାଃ ସମାଯୁକ୍ତା ରାଜ୍ୟନାଶାୟ ହେତବଃ ।"

ସେହିଭଳି କ୍ଷମତାସୀନ ବ୍ୟକ୍ତିଙ୍କ ଅନୁଚରବର୍ଗ, ଯେଉଁମାନେ କି ହାକିମ ଛେଳିକୁ କୁକୁର କହିଲେ ମଧ୍ୟ କୁକୁର ବୋଲି ମାନିନେବାକୁ ଦ୍ୱିଧା ପ୍ରକାଶ କରନ୍ତି ନାହିଁ, ସେମାନଙ୍କୁ ବିଦ୍ରୂପ କରି ସେ କହିଛନ୍ତି—

"ଗର୍ଦ୍ଦଭାଣାଂ ବିବାହେ ତୁ ବାନରାଃ ସ୍ତୁତିପାଠକାଃ
ଅନ୍ୟୋନ୍ୟଂ ତେ ପ୍ରଶଂସନ୍ତେ ଅହୋରୂପ ମହୋଧ୍ୱନିଃ ।"

ଏହା ବ୍ୟତୀତ ତାତ୍କାଳିକ ସମାଜରେ ପ୍ରଚଳିତ ବାଲ୍ୟ ବିବାହ, ବାଲ୍ୟ ବୈଧବ୍ୟ, ନାରୀ ଉନ୍ନୟନ କାର୍ଯ୍ୟକ୍ରମାଦି କେତେକ ଆଚରଣ ସ୍ୱାନୁଭୂତି ବଳରେ ଅନୁଧ୍ୟାନ କରି ସେ ସେଥିପ୍ରତି ବିମୁଖତା ପ୍ରକାଶ କରିଥିଲେ । ଏ ପ୍ରସଙ୍ଗରେ ସେ ତାଙ୍କର 'ଅନାଥା କଳିକା', 'ମୋ ନାରୀ' ଓ 'କାଠପୋଡ଼ି ଘାଟରେ ସାୟଂକାଳ' କବିତାରେ ନିଜର ପ୍ରତିକ୍ରିୟାଶୀଳ ସଂସ୍କାର ମନୋଭାବ ପ୍ରକାଶ କରିବାକୁ ଯାଇ ଉଲ୍ଲେଖ କରିଥିଲେ—

"ଶୈଶବ ସମୟ ତାର ଅଜ୍ଞାନ ସମୟ
ଏକାଳେ ଭ୍ରମର ସଙ୍ଗେ ହେଲା ପରିଣୟ
ପର ପୁଚ୍ଛେ ପର କନ୍ୟା ହୁଏ କଣ୍ଠା ବନ୍ଧୀ
ସାମାନ୍ୟ କଳିକା କାହୁଁ ଜାଣିବ ସେ ସନ୍ଧି ?"

× × ×

"ଆବାଲ୍ୟ ବର୍ଦ୍ଧିବା ଆହା ! କେବେ ମାତ୍ର ବାଳେ
ଭୋଗି ନାହିଁ ଦ୍ରବ୍ୟ ଶୁଦ୍ଧ ଦାମ୍ପତ୍ୟ ପ୍ରଣୟ,
ପରସେବା ବ୍ରତେ ନିଜ ଜୀବନ-ସଞ୍ଚୟ
ବ୍ୟୟ କରିବାକୁ ତବ ଜନ୍ମ ଏ ସଂସାରେ ।"

+ + +

"ସୁଦୃଢ଼ ଗମ୍ଭୀର କୁହାଇ ଯେଣୁ ନାରୀ-ହୃଦୟ,
ତେଣୁ ସିନା ନରେ ଅନ୍ତେ ନାରୀଜାତି ଆଶ୍ରୟ ।
ସୁକୋମଳ କ୍ଷୀଣ ବଲ୍ଲରୀ ଲଭି ପାଦପ ସଙ୍ଗ,
ଆହା କି ପରମ ମଞ୍ଜୁଳ ଦିଶେ ଉଭୟ ଅଙ୍ଗ !
ତେବେ କିମ୍ପା ଏତେ ଯୁଝନ୍ତି ସଭ୍ୟ ନାରୀ-ସମାଜ,
ପତିଗଣ ସଙ୍ଗେ ସର୍ବାଂଶେ ସମ ହେବାକୁ ଆଜ ?
ରହିବ ଦୋହିଙ୍କ ପ୍ରକୃତି ମଧ୍ୟେ ନିଶ୍ଚେ ଭିନ୍ନତା,
କିଏ ସେ କରିବ ଅନ୍ୟଥା ଯାହା କଲେଣି ଧାତା ।"

ସର୍ବୋପରି ମାନବ-ସମାଜରେ ଭୋଗ, ବିଳାସ ଓ ଭୌତିକ ସୁଖ-ଆହରଣ-ସ୍ପୃହା ବୃଦ୍ଧି ପାଉଥିବା ତଥା ଭକ୍ତିଭାବ ଓ ଧର୍ମଭାବ ବିଲୁପ୍ତ ହେଉଥିବା ଦେଖି ଗୋପବନ୍ଧୁ ବ୍ୟଥିତ ପ୍ରାଣରେ 'ଗ୍ରୀଷ୍ମେ ଖ ଶ୍ଯୋଗଛ' କବିତାରେ ଗାଇଥିଲେ—

"ପଡ଼ଇ ସ୍ମୃତି-ପଥେ ଅତୀତ କଥା,
ଭାରତ ଗୌରବ ଆଶ୍ରମ ପ୍ରଥା ।
ସମାଜ ସୁରକ୍ଷଣେ ଅପୂର୍ବ ବିଧି,
କାହିଁ ଗଲା ଏବେ ସେ ଅମୂଲ୍ୟ ନିଧି ।
ମୁକତିଳାଭେ ସେହି ଧର୍ମ-ନିଶ୍ରେଣୀ,
ସତେ କି କେବେ ଫେରି ଆସିବ ପୁଣି ?"

ପ୍ରାଚୀନ କାଳରେ ପୁଣ୍ୟଭୂମି ଉତ୍କଳ ତଥା ଭାରତରେ ପ୍ରଚଳିତ ଥିବା ଆଶ୍ରମମାନଙ୍କ ମଧ୍ୟରୁ ବ୍ରହ୍ମଚର୍ଯ୍ୟ, ବାନପ୍ରସ୍ଥ ଓ ଯତିବ୍ରତ ପ୍ରଥା

ବର୍ତ୍ତମାନ ଲୋପ ପାଇଲାଣି ଏବଂ ଗାର୍ହସ୍ଥ୍ୟ ଧର୍ମରେ ମଧ୍ୟ ଆନ୍ତରିକତାର ଅଭାବ ଘଟିଲାଣି । ଏ ସମସ୍ତ ପ୍ରକାର ସାମାଜିକ ଜୀବନର ଅଧୋଗତି ଅବଲୋକନ କରି ଗୋପବନ୍ଧୁଙ୍କ ହୃଦୟରୁ ବିଗଳିତ ହୋଇଥିଲା—

ଗୃହସ୍ଥାଶ୍ରମ ଏକା ଏ ଯୁଗେ ସାର
ନ ଭୁଟେ ମଲା ଯାଏ ମାୟା-ସଂସାର ।
ଗୃହସ୍ଥାଶ୍ରମେ ପୁଣି ନାହିଁ ସେ ନୀତି
ଧର୍ମ-କର୍ମ-ସାଧନେ ସରଳ ପ୍ରୀତି ।
ସ୍ୱାର୍ଥସାଧନେ ରତ ସର୍ବେ ନିରତେ,
କେତେ କାଳ ଏପରି ହେବ ଭାରତେ ?"

ଅବଶ୍ୟ ଏବେ ମଧ୍ୟ ଦେଶରେ ନାନା ପୂଜା, ବ୍ରତ, ଉପାସନା ଓ ପର୍ବପର୍ବାଣି ପାଳିତ ହେଉଅଛି । କିନ୍ତୁ ଏସବୁ ଲୋକଦେଖାଣିଆ ମାତ୍ର । ଏଥିରେ ଆନ୍ତରିକ ଶୁଦ୍ଧପୂତ ଭକ୍ତିଭାବର ସତ୍ତା ସୁଦ୍ଧା ନାହିଁ । ଏଥିଯୋଗୁଁ ପବିତ୍ରପ୍ରାଣ ଗୋପବନ୍ଧୁ ଆକୁଳ କଣ୍ଠରେ ଗାଇଛନ୍ତି—

"ବାଜେ ଶଙ୍ଖ, ବାଜେ ଘଣ୍ଟ, ପଡ଼େ କରତାଳି,
ମୃଦଙ୍ଗ ମର୍ଦ୍ଦଳ ବାଜେ, ଶୁଭଇ କାହାଳୀ ।
ଧର୍ମ ନୃତ୍ୟ ହୋଇଛନ୍ତି ମତ୍ତ ବହୁ ଜନ,
ଏ ନୃତ୍ୟରେ କିନ୍ତୁ ଆହା ନାହିଁ ତ ଜୀବନ !
ଶୁଣି ଏହି ସଂକୀର୍ତ୍ତନ ନାଚେ ନାହିଁ ପ୍ରାଣ,
ବିଗଳିତ ନୁହେ ହୃଦ ଶୁଣି ଏହି ଗାନ ।
ଅନ୍ତରେ ସଞ୍ଚରେ ନାହିଁ ଲବେ ଧର୍ମଭାବ,
କେ କହିବ ଏ ସଙ୍ଗୀତେ ଅଛି କି ଅଭାବ ?"

ଏହି ଅଭାବର ଦୂରୀକରଣ ଲାଗି ଧର୍ମପ୍ରାଣ ଗୋପବନ୍ଧୁ ଜନସମାଜକୁ 'ଶ୍ରୁତିମନ୍ତ ହୋଇ ନିତ୍ୟ ଜ୍ଞାନଦୀପ ଜାଳି, ଶୁଦ୍ଧ ଭକ୍ତିରସ ଶ୍ରୀପଦରେ ଢାଳି, ଅନ୍ଧାରେ ପଥ ନ ହୁଡ଼ି, ସମସ୍ତ ଜୀବନ ଏକ ଶିବରାତ୍ରି' କରିବାକୁ ଆହ୍ୱାନ ଦେଇଥିଲେ ଏବଂ ପୁଣ୍ୟଭୂମି ଉତ୍କଳରେ

କର୍ମବୀର, ଓ 'ଧର୍ମବୀର'ଙ୍କର ଆବିର୍ଭାବ କାମନା କରି, ବିଂଶ ଶତାବ୍ଦୀର ପ୍ରଥମ ଦିନ ମହାକାଳ ନିକଟରେ ଆକୁଳ ନିବେଦନ କରି କହିଥିଲେ—

"ମହାବଳୀ ଧନ୍ୟ ଧନ୍ୟ ତୁମ୍ଭେ କାଳ !
କେ ଲଙ୍ଘିବ ତୁମ୍ଭ ଶାସନ କରବାଳ ?
ଥିଲା ଯେବେ କିଛି ଉତ୍କଳର ଦୋଷ,
ଦେଷ ଅନୁମତେ କରିଅଛ ଶେଷ ।
ହୋଇଅଛି ଶାସ୍ତି କଷଣ ଅପାର,
ନ କର ଅଧିକ ଆଉ ଗୁରୁଭାର ।
ଏଣିକି କରୁଣା ଅଟଇ ବିହିତ,
ସାଧ ନବ ଯୁଗେ ଉତ୍କଳର ହିତ ।
ଉତ୍କଳ-ତନୟେ ଦିଅ ନବ ବଳ,
ଉତ୍କଳ-ପାଦପେ ରସମୟ ଫଳ,
ଉତ୍କଳ-ସରିତେ ପବିତ୍ର ଜୀବନ,
ଉତ୍କଳ-କାନନେ ସ୍ୱର୍ଗୀୟ ସୁମନ,
ଉତ୍କଳ-ଆକାଶେ ନବ ଯଶଃ ରବି,
ଉତ୍କଳ-ପ୍ରକୃତି ଧରୁ ନବ ଛବି ।"

ଇତି ମଧ୍ୟରେ ଗୋପବନ୍ଧୁଙ୍କ ତିରୋଭାବ ଘଟିବାର ବହୁ ବର୍ଷ ଅତିବାହିତ ହୋଇ ଯାଇଥିଲେ ମଧ୍ୟ ବର୍ତ୍ତମାନ ଉତ୍କଳର ଅବସ୍ଥା ପୂର୍ବାପେକ୍ଷା ଅଧିକ ଶୋଚନୀୟ ହୋଇପଡ଼ିଛି । ଏ ଯାବତ୍ ଏଠାରେ ତାଙ୍କଭଳି ଅନ୍ୟ ଜଣେ କର୍ମବୀର ଓ ଧର୍ମବୀର ତ୍ୟାଗୀ ପୁରୁଷଙ୍କର ଆବିର୍ଭାବ ଘଟି ନାହିଁ । ସୁତରାଂ ପରିସ୍ଥିତିର ପ୍ରତିକାର ପାଇଁ ବର୍ତ୍ତମାନ ମଧ୍ୟ ତାଙ୍କର ସେହି ସଂସ୍କାର ମାର୍ଗ ଆମ୍ଭମାନଙ୍କର ଅବଲମ୍ବନୀୟ । ଓଡ଼ିଶାରେ ସାମାଜିକ, ନୈତିକ, ରାଜନୈତିକ, ଅର୍ଥନୈତିକ ଓ ଶାସନତାନ୍ତ୍ରିକ ସଂସ୍କାର ଲାଗି ସେ ଯେଉଁ ଦିଗ୍‌ନିର୍ଦ୍ଦେଶ କରିଯାଇଛନ୍ତି, ବର୍ତ୍ତମାନ ପରିସ୍ଥିତିରେ ତାର ଅନୁସରଣ ଏ ଜାତିର ଏକାନ୍ତ କର୍ତ୍ତବ୍ୟ ନୁହେଁ କି ?

●

# ଗୋପବନ୍ଧୁ ଦରକାର

ଶ୍ରୀ ଚିତ୍ତରଞ୍ଜନ ଦାସ

[ ସୁପରିଚିତ ସାହିତ୍ୟିକ ଶ୍ରୀ ଚିତ୍ତରଞ୍ଜନ ଦାସ ଆଲୋଚ୍ୟ ପ୍ରବନ୍ଧରେ 'ଜାତୀୟତାବାଦ'ର ଏକ ସମୀକ୍ଷାତ୍ମକ ବିଶ୍ଳେଷଣ କରି ଗୋପବନ୍ଧୁଙ୍କର ଶ୍ରଦ୍ଧା-ସମ୍ମାନ ସଂଶ୍ଳିଷ୍ଟ ଜାତିପ୍ରେମ ତଥା ମାନବପ୍ରେମର ଉତ୍କର୍ଷ ପ୍ରତିପାଦନ କରିଛନ୍ତି ଏବଂ ଆଧୁନିକ ଓଡ଼ିଶାର ରାଜନୈତିକ ପରିସ୍ଥିତି ଦୃଷ୍ଟିରୁ ଏଠାରେ ଗୋପବନ୍ଧୁଙ୍କ ଭଳି ମହାପୁରୁଷଙ୍କର ଆବିର୍ଭାବ ଏକାନ୍ତ ଆବଶ୍ୟକ ବୋଲି ମତ ବ୍ୟକ୍ତ କରିଛନ୍ତି । ପ୍ରବନ୍ଧଟି ୧୯୬୭ ମସିହାରେ 'ସମାଜ'ର ଗୋପବନ୍ଧୁ ବିଶେଷାଙ୍କରେ ମଧ୍ୟ ପ୍ରକାଶିତ—ସଂ ]

ଓଡ଼ିଶାର ସାଧାରଣ କ୍ଷେତ୍ରରେ ଆତଯାତ ହେଉଥିବା ଗୁରୁଜନମାନେ ମୋ ସହିତ ଏକମତ ହୋଇ ନିଶ୍ଚୟ କହିବେ ଯେ ଉତ୍କଳମଣି ଗୋପବନ୍ଧୁ ହିଁ ଓଡ଼ିଶାରେ ଜାତୀୟ କଂଗ୍ରେସର ସ୍ଥାପନା କରିଥିଲେ । ଜାତୀୟ କଂଗ୍ରେସର ନେତୃତ୍ୱରେ ସମଗ୍ର ଭାରତବର୍ଷରେ ସ୍ୱାଧୀନତାର ଯେଉଁ ଆକାଙ୍‌କ୍ଷା ଏକ ଜାତୀୟ ଆନ୍ଦୋଳନ ରୂପେ ଜନ୍ମଲାଭ କରିଥିଲା, ସେହି ଆକାଙ୍‌କ୍ଷାର ପ୍ରବାହକୁ ପଣ୍ଡିତ ଗୋପବନ୍ଧୁ ଓଡ଼ିଶାଖଣ୍ଡକୁ ଆଣିବାରେ ପୁରୋଧା ରୂପେ କାର୍ଯ୍ୟ କରିଥିଲେ । ଓଡ଼ିଶା ସ୍ତରରେ ଗୋପବନ୍ଧୁ ଯାହା, ସର୍ବଭାରତୀୟ ସ୍ତରରେ ମହାତ୍ମାଗାନ୍ଧି ମଧ୍ୟ ସେଇଆ । ଗାନ୍ଧୀ ହେଉଛନ୍ତି ଜାତୀୟ ସ୍ୱାଧୀନତାର ଜନକ । ଜାତି ଓ ଜାତୀୟତା କହିଲେ ଆଧୁନିକ ଭାରତବର୍ଷରେ ସାଧାରଣତଃ ଯାହାସବୁ ବୁଝାଇବା ଉଚିତ୍, ତାହାସବୁ ପ୍ରଧାନତଃ ଗାନ୍ଧୀଙ୍କ ହାତରେ ଓ ଗାନ୍ଧୀଙ୍କ ବିଚାରଦ୍ୱାରା ଜନ୍ମ ହୋଇଛି । ୧୯୪୭ ମସିହାରେ ଭାରତବର୍ଷ ସ୍ୱାଧୀନତା ଲାଭ କଲା, ଭାରତୀୟ ଜାତୀୟ କଂଗ୍ରେସର ବିଜୟବାନା ଉଡ଼ିଲା । ୧୯୪୮

ମସିହା ଆରମ୍ଭରେ ହିଁ ଗାନ୍ଧୀଙ୍କର ଦେହାବସାନ ଘଟିଲା । ଏହି ଦୁଇଟି ଘଟଣାର ପ୍ରାୟ କୋଡ଼ିଏ ବର୍ଷ ପରେ ଓଡ଼ିଶାରେ ଏବେ (୧୯୬୭ରେ) ଯାହା ଘଟିଲା, ତାହାକୁ ଜାତୀୟ କଂଗ୍ରେସ ପକ୍ଷରେ ଗୋଟିଏ ବିପର୍ଯ୍ୟୟ ବୋଲି କୁହାଯାଇପାରିବ । ଏପର୍ଯ୍ୟନ୍ତ ଓଡ଼ିଶାର ଲୋକେ କଂଗ୍ରେସକୁ ହିଁ ଶାସନଗାଦିରେ ବସାଇ ଆସୁଥିଲେ । ଏଥର ସେହି ଲୋକମାନେ କଂଗ୍ରେସକୁ ଗାଦିରୁ ହଟାଇବାର ମାନସରେ ଅନ୍ୟମାନଙ୍କୁ ଆଣି ଗାଦିରେ ବସାଇଲେ । ଏପରି ହେଲା କାହିଁକି ? ଏହାଦ୍ୱାରା ଏକ ପୁରାତନ ଯୁଗର ଅନ୍ତ ହେଲା ନା ଏକ ନୂତନ ଯୁଗର ଆରମ୍ଭ ହେଲା ? ଉତ୍କଳମଣି ଗୋପବନ୍ଧୁ ଦେହ ଛାଡ଼ିଯିବା ବର୍ତ୍ତମାନକୁ ପ୍ରାୟ ପୁରୁଷେ ହେବାକୁ ବସିଲାଣି । ତଥାପି ତାଙ୍କର ହାତରେ ଯେତେବେଳେ ଓଡ଼ିଶାର ଜାତୀୟ ସ୍ୱାଧୀନତା ଓ ଜାତୀୟ କଂଗ୍ରେସର ପ୍ରଥମ ମହୁରତ ମରା ହୋଇଥିଲା, ସେତେବେଳେ ଆଜି ଜାତୀୟକ୍ଷେତ୍ରରେ ନାନା ପ୍ରକାର ଗାଦି ବଦଳା ହେଉଥିବା ଦେଖି ଗୋପବନ୍ଧୁ ମନେପଡ଼ିବା ହିଁ ବଡ଼ ସ୍ୱାଭାବିକ । ଗୋପବନ୍ଧୁ ଯାହା ଚାହିଁଥିଲେ ବା ଯାହା କରିଥିଲେ, ଓଡ଼ିଶାର ଜୀବନ ଧାରାରେ ବାଟ ଚାଲିବା ବେଳେ ଜାତୀୟତା ବିଷୟରେ ସେ ଯେଉଁ ସ୍ୱପ୍ନ ଦେଖିଥିଲେ, ସେସବୁର ମିଆଦ କ'ଣ କେବଳ କୋଡ଼ିଏ ବର୍ଷ ହିଁ ଥିଲା ?

କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷରେ ଆମେ ବର୍ତ୍ତମାନ ଏପରି ଏକ ପର୍ଯ୍ୟାୟରେ ଆସି ପହଞ୍ଚିଛୁ, ଯେତେବେଳେ କି ଆମକୁ ଜାତୀୟତା ଓ ଜାତୀୟତାବାଦର ସଦର ମଫସଲ ବିଷୟରେ ଗଭୀର ଭାବରେ ବିଚାର କରିବାକୁ ପଡ଼ିବ । ଜାତୀୟତାବାଦ ଭାରତବର୍ଷର ନିଜସ୍ୱ ସମ୍ପତ୍ତି ନୁହେଁ, ଏହା ଇଉରୋପର, ପାଶ୍ଚାତ୍ୟ ସଭ୍ୟତାର । ଇଉରୋପର ପରମ୍ପରାରେ ହିଁ ପୃଥିବୀରେ ସର୍ବପ୍ରଥମେ ଆପଣା ଦେଶକୁ ଆପଣାର ମାଆ ବୋଲି କୁହାଯାଇଛି । ଆମ ଭାରତବର୍ଷର ସଂସ୍କୃତିରେ ତ ମାଟିକୁ ମାଆ ବୋଲି କୁହାଯାଇଛି । ଆମ ଦେଶରେ କୌଣସି ଏକ ନିର୍ଦ୍ଦିଷ୍ଟ କୁଳରେ ଜନ୍ମ ହେବାକୁ ଯେତିକି ମହତ୍ତ୍ୱପୂର୍ଣ୍ଣ ଓ ଯେତିକି ନିର୍ଣ୍ଣାୟକ ବୋଲି ଗ୍ରହଣ କରାଯାଇଛି, ଇଉରୋପରେ ଅନେକ ଦିନରୁ କୌଣସି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ବା ଜନପଦରେ ଜନ୍ମିବାକୁ ସେତିକି ମହତ୍ତ୍ୱପୂର୍ଣ୍ଣ ବୋଲି କୁହାଯାଇଛି । ନିର୍ଦ୍ଦିଷ୍ଟ ଅଞ୍ଚଳ ବା ଜନପଦର ପ୍ରାନ୍ତିକ ରୂପେ

ସେଠ ଠାକୁର ଓ ଠାକୁରାଣୀମାନଙ୍କର କଳ୍ପନା କରଯାଇଛି । ଆମଦେଶର ସଂସ୍କୃତିରେ କୌଳିକ କର୍ତ୍ତବ୍ୟ ଓ ଅନୁରକ୍ତିଗୁଡ଼ିକୁ ଯେତିକି ପ୍ରଧାନ ବୋଲି ବୁଝାଯାଇଛି, ଇଉରୋପରେ ଆପଣା ଦେଶ ବା ଆପଣାର ରାଷ୍ଟ୍ରୀୟ ସମୂହ ପ୍ରତି ରହିଥିବା କର୍ତ୍ତବ୍ୟ ଓ ଅନୁରକ୍ତିଗୁଡ଼ିକୁ ସେତିକି ପ୍ରଧାନ ବୋଲି ଘୋଷଣା କରଯାଇଛି । ଆମ ଦେଶର ପରମ୍ପରାରେ କୁଳକୁ ନେଇ ମଣିଷ ଯେତିକି ଗୌରବ ଓ ଗର୍ବ ଅନୁଭବ କରି ଶିଖିଛି, ଇଉରୋପୀୟ ପରମ୍ପରାରେ ନିଜ ଦେଶ ବା ଜାତିକୁ ନେଇ ମଣିଷ ସେତିକି ଗର୍ବ ଓ ଗୌରବ ଅନୁଭବ କରିବାର ଶିକ୍ଷା ପାଇଛି । ଆଧୁନିକ ଜଗତରେ ଆଜି ଇଉରୋପ ଓ ପୁରାତନ ଗ୍ରୀସ୍‌ର ପ୍ରତିନିଧିରୂପେ କହୁଥିବା ଦାର୍ଶନିକ ସକ୍ରେଟିସ୍ ଓ ପ୍ଳେଟୋଙ୍କ ବିଷୟରେ ଅପବାଦ ରହିଛି ଯେ ସେମାନେ ତିନୋଟି କାରଣରୁ ଆପଣାର ଭାଗ୍ୟଦେବତା ପାଖରେ କୃତଜ୍ଞତା ଜ୍ଞାପନ କରୁଥିଲେ । ଭାଗ୍ୟ ସେମାନଙ୍କୁ ମଣିଷର ଶରୀର ଦେଇଛି, ପଶୁର ଶରୀର ଦେଇ ନାହିଁ; ପୁରୁଷ ଜନ୍ମ ଦେଇଛି, ସ୍ତ୍ରୀ ଜନ୍ମ ଦେଇ ନାହିଁ; ଗ୍ରୀସ୍ ଦେଶରେ ଜଣେ ନାଗରିକ ଭାବରେ ଜନ୍ମ ଦେଇଛି, ଅନ୍ୟ କୌଣସି ଦେଶରେ ମ୍ଳେଚ୍ଛ ହିସାବରେ ଜନ୍ମ ଦେଇ ନାହିଁ । ଏଥିଲାଗି ସେମାନେ ଭାଗ୍ୟ ପାଖରେ ବାରମ୍ବାର ଆପଣାର କୃତଜ୍ଞତା ପ୍ରକାଶ କରୁଥିଲେ । କହିବା ବାହୁଲ୍ୟ, ସବୁ ଦେଶ ପରି ଗ୍ରୀସ୍‌ରେ ମଧ୍ୟ ସେମାନେ ଏହିପରି ମୋହୋତ୍ପନ୍ନର କ୍ଷେତ୍ରରେ ସାଧାରଣ ମଣିଷର ଆଖିରେ ଆଦର୍ଶ ଦୃଷ୍ଟାନ୍ତ ହୋଇ ରହିଥିଲେ । ଅର୍ଥାତ୍ ଗ୍ରୀସ୍‌ର ସାଧାରଣ ନାଗରିକ ମଧ୍ୟ ସେହି ପ୍ରାଚୀନ କାଳରେ ଆପଣାକୁ ଗ୍ରୀସ୍‌ରାଜ୍ୟର ଭାଗ୍ୟବନ୍ତ ନାଗରିକ ବୋଲି ଭାବି ଗର୍ବ ଅନୁଭବ କରିବା ଆଦୌ ବିଚିତ୍ର କଥା ନ ଥିଲା ।

ମାତ୍ର ଏହିପରି ଭାବବାର ମଞ୍ଜି ଇଉରୋପ ମାଟିରେ ଅନେକ ଦିନରୁ ପଡ଼ିଥିଲେ ମଧ୍ୟ ଆଧୁନିକ ଅର୍ଥରେ ଦେଶ ଓ ଜାତୀୟତାର ବିଗ୍ରହଗୁଡ଼ିକର ବ୍ୟବହାର ଇଉରୋପରେ ଆଦୌ ବେଶୀ ଦିନର କଥା ନୁହେଁ । ଏହାର ଇତିହାସ ପ୍ରାୟ ମୋଟେ ଦୁଇ ଶହ ବର୍ଷର ଇତିହାସ । ତା' ପୂର୍ବରୁ ଏହିସବୁ ଶବ୍ଦର ବ୍ୟବହାର ହେଉଥିଲା ଓ ଏଥିରୁ ପ୍ରେରଣା

ଯାଇବାର ମଣିଷ ପୂର୍ବେ ମଧ୍ୟ ରହିଥିଲେ । କିନ୍ତୁ କେବଳ ବ୍ୟକ୍ତିବିଶେଷ ହିଁ ଏହି ଶବ୍ଦଗୁଡ଼ିକର ବ୍ୟବହାର କରୁଥିଲେ ଓ ସେଥିରୁ ପ୍ରେରଣା ପାଉଥିଲେ । ଜାତି କହିଲେ ଭାବୁକତାର ବେଢ଼ ଭିତରେ ହିଁ ଏକ ସମଗ୍ର ଦେଶଟାକୁ ଅନ୍ତର୍ଗତ କରିଦିଆଯାଉଥିଲା, ମାତ୍ର ଦେଶର ସବୁ ମଣିଷଙ୍କୁ ସେତେବେଳେ ଜାତିର ସଂଜ୍ଞା ଭିତରେ ଆଦୌ ଗଣାଯାଉ ନ ଥିଲା । ଆଜକୁ ଚାରି ଶହ ବର୍ଷ ତଳର ଜର୍ମାନୀ ଦେଶରେ ତତ୍‌କାଳୀନ ଧର୍ମ-କଳହର ନେତା ମାର୍ଟିନ ଲୁଥର ଜର୍ମାନ୍ ଜାତି କହିଲେ କେବଳ ବିଶପ୍ ବା ଧର୍ମଯାଜକ ଓ ରାଜ୍ୟର ଶାସକମାନଙ୍କୁ ବୁଝୁଥିଲେ । ପୃଥିବୀପୃଷ୍ଠରେ ଦଣ୍ଡଧାରୀ ଶାସକ ହିସାବରେ ରାଜାମାନଙ୍କୁ ତ ଆଗ ଜାତିତ୍ୱବାଚୀ ଗଣ୍ଡି ଭିତରେ ଅନ୍ତର୍ଭୁକ୍ତ କରି ରଖାଯିବାର କଥା । ଇହଲୋକ ପରି ପରଲୋକର ମଧ୍ୟ ଶାସକ ହିସାବରେ ଯେଉଁ ଭଗବାନ ଅଛନ୍ତି, ଏଠି ଧର୍ମ-ଯାଜକମାନେ କେବଳ ତାଙ୍କର ସନ୍ତକ ହିସାବରେ ରହିଛନ୍ତି । ତେଣୁ ସେମାନଙ୍କୁ ମଧ୍ୟ ଜାତି ଭିତରେ ଅନ୍ତର୍ଗତ କରି ରଖିବାରେ ଲୁଥରଙ୍କର କୌଣସି ଆପତ୍ତି ହେବାର ପ୍ରଶ୍ନ ନ ଥିଲା । ମାତ୍ର ସେମାନଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟ ମଣିଷ ଜୀବଶାସ୍ତ୍ର ଦୃଷ୍ଟିରୁ ମଣିଷ ପରି ଦେଖାଯାଉଥିଲେ ମଧ୍ୟ ସେମାନଙ୍କୁ ଜାତିର ବୃହତ୍ତା ଭିତରେ ପୂରାଇବାଟା ଆଦୌ ସଙ୍ଗତ ବୋଲି ବିଚାର କରାଯାଉ ନ ଥିଲା । ସେମାନେ ଦେଶ ଭିତରେ ଅବଶ୍ୟ ରହୁଥିଲେ; ମାତ୍ର ଜାତିର ବିଶେଷ ସୂଚନରେ ସେମାନେ ଭାଗ୍ୟବନ୍ତ-ମାନଙ୍କର ପ୍ରଧାନତଃ ପରିକର ହିସାବରେ ହିଁ ରହୁଥିଲେ । ଠିକ୍ ଏହି ଯୁକ୍ତିଦ୍ୱାରା ପରିଚାଳିତ ହୋଇ ପ୍ରାୟ ଦୁଇ ଶହ ବର୍ଷ ତଳେ ଫ୍ରାନ୍ସର ଜଣେ ସମ୍ରାଟ କଥାଟାକୁ ଅଧିକ ସ୍ପଷ୍ଟ କରିଦେଇ କହିଥିଲେ ଯେ କେବଳ ସମ୍ରାଟଙ୍କର ବ୍ୟକ୍ତିଗତ ଜୀବନପରିଧି ଭିତରେ ହିଁ ଫରାସୀଜାତି ନିହିତ ହୋଇ ରହିଛି । ଆପଣା ସମ୍ରାଟଙ୍କର ପଦାଙ୍କ ଅନୁସରଣ କରି ସେହି ଦେଶର ଆଉ ଜଣେ ଭାଷ୍ୟକାର ମାତ୍ର ଗତ ଶତାବ୍ଦୀରେ କହୁଥିଲେ ଯେ ଜାତି କହିଲେ କଦାପି ସବୁ ମଣିଷଙ୍କୁ ବୁଝାଏ ନାହିଁ, କେବଳ ଶାସକ ଓ ସାମନ୍ତବର୍ଗଙ୍କୁ ବୁଝାଏ ।

ଆଗରୁ କୁହାଯାଇଛି, ଏହି ବିଚାରଟି ଇଉରୋପରେ ନଗର ଓ ନାଗରିକତାର ଆଦ୍ୟଯୁଗରୁ ରହିଛି । ଗ୍ରୀସ୍ ଦେଶର ଆରିଷ୍ଟଟଲ୍

ଆପଣାର "ମାନବଶାସ୍ତ୍ର" ଗ୍ରନ୍ଥଟିରେ ଏତେ ବଡ଼ ସଂସାର ଭିତରେ କେବଳ ଗ୍ରୀସର ନାଗରିକମାନଙ୍କୁ ହିଁ ପ୍ରକୃତ ମଣିଷ ବୋଲି ସ୍ୱୀକାର କରିଛନ୍ତି । ସଭ୍ୟ ଗ୍ରୀସ୍‌ଦେଶର ଖୁବ୍ ସୀମା ବାହାରେ ତାଙ୍କ ମତରେ ଯେଉଁ ମ୍ଲେଚ୍ଛ ଓ ବର୍ବରମାନେ ମଣିଷର ଶରୀର ଧରି ବାସ କରୁଥିଲେ, ସେମାନଙ୍କୁ ସେ ପଶୁ ବୋଲି ଅଭିହିତ କରିଛନ୍ତି । ସେକାଳର ଗ୍ରୀକ୍ ସାହିତ୍ୟରେ ମନୁଷ୍ୟ ଓ ମନୁଷ୍ୟେତରର ସଜ୍ଞା ବିଷୟରେ ଏହି ନିର୍ଣ୍ଣୟଟି ଭରପୂର ହୋଇ ରହିଛି ।

ଆଧୁନିକ ଅର୍ଥରେ 'ଜାତୀୟବାଦ' ଶବ୍ଦଟିର ବ୍ୟବହାର ଦୁଇ ତିନିଶହ ବର୍ଷ ପୁରୁଣା ବି ହୋଇ ନାହିଁ ଏବଂ ଏହି ବ୍ୟବହାର ବି ସେହି ଇଉରୋପରୁ ଆରମ୍ଭ ହୋଇଛି । ଆଧୁନିକ ବିଜ୍ଞାନ ବଳରେ ଇଉରୋପରେ ଆଧୁନିକ ଯନ୍ତ୍ରୋଦ୍ୟୋଗମାନ ବସିଲା । ପ୍ରତିଯୋଗିତାର ବଜାରରେ ଯନ୍ତ୍ରୋଦ୍ୟୋଗୀ ଶକ୍ତିମାନେ ପରସ୍ପର ପ୍ରତିଯୋଗିତା କରିବାକୁ ବାହାରିଲେ । ସଫଳ ଭାବରେ ଏହି ପ୍ରତିଯୋଗିତା କରିପାରିବା ଲାଗି ଅର୍ଥଗତ ରାଜନୀତିକ ଯନ୍ତ୍ରମାନ ଆବଶ୍ୟକ ହେଲା । ଏହି ଉଦ୍ଦେଶ୍ୟରେ ଯନ୍ତ୍ରୋଦ୍ୟୋଗର ସ୍ୱାର୍ଥକୁ ରାଜ୍ୟର ସ୍ୱାର୍ଥ, ଦେଶର ବା ଜାତିର ସ୍ୱାର୍ଥ ବୋଲି କୁହାଗଲା । ରାଜାକୁ ସଂସାରରେ ଭଗବାନଙ୍କ ପ୍ରତିନିଧି ବୋଲି ନମାନି ଜାତୀୟ ପ୍ରତୀକ ବୋଲି ବିଶ୍ୱାସ କରାଗଲା । ଆପଣା ଦେଶର ସରକାରକୁ ଜାତୀୟ ସରକାର ବୋଲି କୁହାଗଲା । ଆପଣା ଭାଷାକୁ ଜାତୀୟ ଭାଷା ଓ ଆପଣାର ସଂସ୍କୃତିକୁ ଜାତୀୟ ସଂସ୍କୃତି ବୋଲି କୁହାଗଲା । ଇଉରୋପର ଧର୍ମ ଖ୍ରୀଷ୍ଟିୟାନ୍ ଧର୍ମ, ଜାତି ଓ ଦେଶ ଅନୁସାରେ ଜାତୀୟ ଧର୍ମରୂପୀ ଖଣ୍ଡମାନଙ୍କରେ ବିଭକ୍ତ ହୋଇଗଲା । ଆପଣା ଦେଶର ଗିର୍ଜାକୁ ଜାତୀୟ ଗିର୍ଜା ବୋଲି କୁହାଗଲା । ମୋଟ ଉପରେ ଆପଣା ଦେଶକୁ ମାତୃଭୂମି ବା ପିତୃଭୂମି ହିସାବରେ ପରିଗଣିତ କରାଗଲା । ବର୍ଗସ୍ୱାର୍ଥର ଜାତୀୟକରଣ ହେଲା, ମଣିଷକୁ ମୂଳତଃ ମଣିଷ ଭାବରେ ନ ଦେଖି କୌଣସି ନିର୍ଦ୍ଦିଷ୍ଟ ଜାତି ବା ଜାତୀୟତାର ପ୍ରତିନିଧି ପରି ଦେଖାଗଲା । ଅର୍ଥାତ୍ ଜାତୀୟତାବାଦର ସର୍ବସ୍ୱାମୀତ୍ୱ ପ୍ରତିଷ୍ଠା କରିବାର ଏହି ଉଦ୍ୟମରେ ମଣିଷ ବଳି ପଡ଼ିଲା; ଭଗବାନ୍ ଓ ଧର୍ମ ବଳି

ପଡ଼ିଲେ; ସାହିତ୍ୟ, କଳା ଓ ବିଜ୍ଞାନ ବଳି ପଡିଲେ; ତତ୍କାଳୀନ ଇଉରୋପର ସକଳ ପ୍ରକାର ବିଚାର ତଥା ଆଦର୍ଶବାଦ ମଧ୍ୟ ବଳି ପଡିଲା ।

ଜାତୀୟତାର ଦର୍ପଣ ଉପରେ ହିଁ ଆପଣା ଜୀବନର ଯାବତୀୟ ବାସନା ଓ ଆକାଙ୍କ୍ଷାକୁ ନିକ୍ଷିପ୍ତ କରି ଇଉରୋପର ଏହି ନୂଆ ମାର୍କା ମଣିଷ ଆପଣାର ବ୍ୟକ୍ତିଗତ ଜୀବନରେ ବେଶ୍ ଏକ ପ୍ରକାର ଅନୁଭବ କରିପାରିଲା ସତ, ମାତ୍ର ଜାତୀୟତାର ଗୃହବାଡ଼ ତାର ଜୀବନଗତ ସ୍ୱଚ୍ଛନ୍ଦେଚ୍ଛାକୁ ନାନା ଭାବେ ଅବରୁଦ୍ଧ କରି ରଖିଲା । ଜାତିର ବଡ଼ତି ହେଲା, ଜାତିର ଧନ ବଢ଼ିଲା, ଜାତିର ବାନା ଉଡ଼ିଲା ଏବଂ ଜାତୀୟତାର କୁଣ୍ଡରେ ଝାସ ଦେଇ ନୂତନ ବର୍ଣ୍ଣ ଧାରଣ କରିଥିବା ମଣିଷ ତାହାକୁ ହିଁ ଜୀବନର ଚରମ ପରିପୂର୍ଣ୍ଣତା ବୋଲି ଗ୍ରହଣ କରିନେଲା । ଜାତି ଓ ଦେଶ ଏଣିକି ତା ଜୀବନର ସକଳ ଅନୁଧାବନରେ ସାଧ୍ୟ ହୋଇ ରହିଲେ ଏବଂ ସେ ନିଜେ ସେହି ସାଧ୍ୟର ପ୍ରାପ୍ତି ଲାଗି ଏକ ସାଧନ ବା ନିମିତ୍ତ ରୂପେ ବ୍ୟବହୃତ ହେଲା । ଶିକ୍ଷାକୁ ଜୀବନର ଶିକ୍ଷା ବୋଲି ନ ଧରି ଜାତୀୟ ନିର୍ମାଣ ଲାଗି ଶିକ୍ଷା ବୋଲି କୁହାଗଲା । ଗୁଣ ଓ ଅବଗୁଣର ବି ଜାତୀୟ-କରଣ ହୋଇଗଲା । ଯୁଦ୍ଧପଡ଼ିଆରେ ସରକାରୀ ବାନା ତଳେ ଆପଣା ଦେଶ ସକାଶେ ଲଢ଼ିବାକୁ ମଧ୍ୟ ମଣିଷ ଆପଣା ଲାଗି ଏକ ଚରମ ଶ୍ରେୟଃ ଓ ପରମ ମୁକ୍ତି ପଦ ଗ୍ରହଣ କରି ଶିଖିଲା । ଯନ୍ତ୍ର ଓ ଯନ୍ତ୍ରକୌଶଳର କରାମତି ଯେତିକି ବଢିଲା, ଜାତୀୟତାବାଦର କରାମତି ବି ସେତିକି ବଢ଼ିଲା । ଯନ୍ତ୍ରବାଦର ବିକ୍ରମ ବଢ଼ିବା ସଙ୍ଗେ ସଙ୍ଗେ ଜାତୀୟତାବାଦ ବି ଅଧିକରୁ ଅଧିକ ଉଗ୍ର ହେଲା ଓ ଶାସକବର୍ଗର ପ୍ରରୋଚନାରେ ସାଧାରଣ ମଣିଷମାନେ ବି ସେହି ଉଗ୍ରତାର ବସ୍ତୁବିସ୍ତାର କାର୍ଯ୍ୟକ୍ରମରେ ଆପଣାର ସବୁ କିଛି ଉତ୍ସର୍ଗ କରିଦେବାକୁ ତିଆରି ହୋଇ ବାହାରିଲେ ।

ଆମେ ଭାରତବର୍ଷରେ ଜାତୀୟତାବାଦର ଏହି ତତ୍ତ୍ୱଟିକୁ ଇଉରୋପରୁ ହିଁ ମାଗି ଆଣିଛୁ । କଣ୍ଟାରେ କଣ୍ଟା ବାହାର କରିବାର ନ୍ୟାୟ ଅନୁସରଣ କରି ଆମେ ପାଶ୍ଚାତ୍ୟ ଜାତୀୟତାବାଦର ଅସ୍ତ୍ରଦ୍ୱାରା

ଯୀଣ୍ଟାର୍ଘ୍ୟ ଆଧିପତ୍ୟକୁ ଦୂର କରିବା ଉଦ୍ଦେଶ୍ୟରେ ହିଁ ଏପରି କରିଛୁ । କେବଳ ଭାରତବର୍ଷରେ ଯେ ଏ କଥା ହୋଇଛି ତା’ ନୁହେଁ, ଏସିଆ ଓ ଆଫ୍ରିକାର ପ୍ରତ୍ୟେକ ଦେଶରେ ରାଜନୀତିକ ସ୍ୱାଧୀନତା ଲାଭ କରିବାର ସଂଗ୍ରାମପର୍ଯ୍ୟାୟରେ ଏହିପରି ହିଁ ହୋଇଛି । ଏହାଦ୍ୱାରା ଆମର ଅନେକ କାମ ହାସଲ ହୋଇଛି । ଭାରତର ଧର୍ମ, ଭାଷା, ଭୂଗୋଳ ଓ ସଂସ୍କାର ପରମ୍ପରାର ନାନା ବୈଚିତ୍ର୍ୟ ସତ୍ତ୍ୱେ ଆମେ କ୍ରମେ ଆପଣାକୁ ଗୋଟିଏ ସାମୂହିକ ଏକକ ବୋଲି ଭାବି ସେଇଥିରୁ ପ୍ରେରଣା ଗ୍ରହଣ କରି ଶିଖିଛୁ । ଆପଣା ଦେଶକୁ ସ୍ୱାଧୀନ କରିବାର ବାସନାଦ୍ୱାରା ପ୍ରେରିତ ହୋଇ ଆମେ ସମଗ୍ର ଭାରତବର୍ଷକୁ ହିଁ ଆପଣା ଘର ବୋଲି ଗ୍ରହଣ କରିନେଇ ଶିଖିଛୁ । ଏହାଦ୍ୱାରା ଦୃଷ୍ଟିଗତ ଅନେକ ଆଞ୍ଚଳିକ ଭାବ ଓ ସଙ୍କୀର୍ଣ୍ଣତା ଦୂର ହୋଇ-ପାରିଛି । ଆମ ପ୍ରତ୍ୟେକର ଜୀବନରେ ଚଳନଶୀଳତା ବଢ଼ିଛି । ଭାରତୀୟ ଭାଷା ଓ ସାହିତ୍ୟଗୁଡ଼ିକର ବିକାଶ ହୋଇଛି । ରାଜନୀତିକ ଓ ସାମାଜିକ ନାନା ନୂତନ ଆଦର୍ଶ ଲାଗି ଆମ ଦେଶରେ ଅନୁକୂଳ କ୍ଷେତ୍ର ପ୍ରସ୍ତୁତ ହୋଇପାରିଛି ଏବଂ ସର୍ବୋପରି ଆମେ ବିଭବଶାଳୀ କୌଣସି ବିଦେଶର ଅନ୍ଧ ଅନୁକରଣ ନ କରି ଆପଣା ସ୍ୱତ୍ତ୍ୱରେ ହିଁ ଆପଣାର ଘରଟିକୁ ମନୋମତ ଗଢ଼ିବା ଲାଗି ଆବଶ୍ୟକ ଶ୍ରଦ୍ଧା ମଧ୍ୟ ଅର୍ଜନ କରି ଶିଖିଛୁ । ଜାତୀୟତାବାଦ ଆମକୁ ଆପଣା ଘରକୁ ଫେରାଇ ଆଣିଛି । ଆମ ସାମୂହିକ ଜୀବନରେ ଆମକୁ ଆତ୍ମସ୍ଥ ହେବାରେ ଅନେକ ସାହାଯ୍ୟ କରିଛି । ଆଧୁନିକ ଭାରତବର୍ଷ କହିଲେ ଆମେ ଆଜି ନାନା ସ୍ୱପ୍ନ-ସମ୍ଭାବନାମୟ ଯେଉଁ ରାଜନୀତିକ ଓ ସାମାଜିକ ଭୂମିଟିକୁ ଆପଣାର ବୋଲି ଅନୁଭବ କରି ଶିଖିଲୁଣି, ସେଥି ସକାଶେ ଆମକୁ ଗତ ପ୍ରାୟ ଶହେ ବର୍ଷର ଜାତୀୟତାର ଇତିହାସକୁ ହିଁ ପ୍ରଥମ ଶ୍ରେୟଃ ଦେବାକୁ ହେବ । ସମଗ୍ର ଭାରତବର୍ଷ ଲାଗି ଗୋଟିଏ ପତାକା, ସମଗ୍ର ଭାରତବର୍ଷକୁ ଏକ ଉଜ୍ଜ୍ୱଳରୂପ ଓ ଶ୍ରଦ୍ଧାମୟ ଏକକରୂପେ ଦେଖାଇ ଦେଉଥିବା ଏକ ଜାତୀୟ ସଙ୍ଗୀତ ଓ ସମଗ୍ର ଭାରତବର୍ଷ ଲାଗି ଗୋଟିଏ ସଂକଳ୍ପ – ଏହିସବୁର ବାସ୍ତୁର ଆମେ ଇଉରୋପର ଜାତୀୟତାବାଦରୁ ପାଇଛୁ । ଆମର ଆଧୁନିକ ଜୀବନ ଅନେକାଂଶରେ ଏହାଦ୍ୱାରା ଋଣୀ ହୋଇଛି । ତାହାକୁ ନିଜସ୍ୱ

ପ୍ରେରଣାରେ ପରିଣତ କରି ଆମେ ନାନା ଭାବେ ଉପକୃତ ହୋଇପାରିଛୁ ଓ ବର୍ତ୍ତମାନ ବି ଉପକୃତ ହେଉଛୁ ।

ମାତ୍ର ଜାତୀୟତାବାଦ ମୂଳତଃ ଏକ ପ୍ରେରଣା ହୋଇଥିଲେ ହେଁ ଯେ କୌଣସି ସୁସ୍ଥ ଜାତୀୟତାବାଦକୁ ଆମେ କଦାପି ତୁଚ୍ଛା ଏକ ଭାବ ପ୍ରବଣତାର ଭୂମି ଉପରେ ସୀମାବଦ୍ଧ କରି ରଖିପାରିବା ନାହିଁ । କାରଣ ଏଥିରେ ଗୋଟିଏ ଜାତି ବା ମଣିଷସମୂହକୁ ନିର୍ମାଣ କରିବାର ନାନାବିଧ କର୍ତ୍ତବ୍ୟ ମଧ୍ୟ ନିହିତ ରହିଛି । ଜାତୀୟତାବାଦ କହିଲେ ଜାତି ସ୍ତରରେ ଏକ ସୁନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମକୁ ମଧ୍ୟ ବୁଝାଇଥାଏ । ଜାତୀୟତାବାଦ ଇତିହାସର ପ୍ରାୟ ପ୍ରତ୍ୟେକ ଦେଶକୁ ସ୍ପର୍ଶ କରିଛି । ମାତ୍ର ଯେଉଁସବୁ ଦେଶ ଏହି ବିଚାର ମଧ୍ୟରେ ଅନ୍ତର୍ନିହିତ ରହିଥିବା କର୍ତ୍ତବ୍ୟ ଓ କାର୍ଯ୍ୟକ୍ରମ ଗୁଡ଼ିକୁ ବୁଝିଛନ୍ତି ଓ ସେହି ଅନୁସାରେ କାର୍ଯ୍ୟ କରିଛନ୍ତି, ସେହିସବୁ ଦେଶ ହିଁ ଜାତୀୟତାବାଦଦ୍ୱାରା ଅଧିକ ଉପକୃତ ହୋଇଛନ୍ତି ଓ ପରିମାଣତଃ ସେହିସବୁ ଦେଶରେ ସୁସ୍ଥ ଜାତୀୟତାବାଦ ମଧ୍ୟ ଅଧିକ ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇପାରିଛି । ଜାତି ବା ଦେଶ କହିଲେ ପୃଥିବୀପୃଷ୍ଠରେ ରହିଥିବା ଗୋଟିଏ ଭୌଗୋଳିକ ଭୂଖଣ୍ଡକୁ ବୁଝାଏ ସତ, ମାତ୍ର ସେହି ଭୂଖଣ୍ଡରେ ବାସ କରୁଥିବା ମଣିଷମାନଙ୍କୁ ଅଧିକ ବୁଝାଏ । ମଣିଷ କହିଲେ ବଛା ବଛା କେତେ ଜଣ ସାଆନ୍ତ କେତେଟା ବର୍ଗକୁ ନ ବୁଝାଇ ମଣିଷ ମାନେ ପ୍ରତ୍ୟେକକୁ ବୁଝାଇବା ଉଚିତ । ଗୋଟାଏ ଦେଶରେ ଯେତେ ମଣିଷ ବାସ କରୁଥାଆନ୍ତି, ସେ ସମସ୍ତଙ୍କର ଜୀବନକ୍ଷେତ୍ରରେ ରହିଥିବା ନାନା ସ୍ତରର ଭୋକ ବୁଝି ନାନା ସ୍ତରର ଭୋକକୁ ପୂର୍ଣ୍ଣ କରିପାରିଲେ ଯାଇ ଜାତୀୟତାରୁ ସୁଫଳ ବା ସୁସ୍ଥ ଫଳ ମିଳିଥାଏ । ତଦ୍ଦ୍ୱାରା ବ୍ୟକ୍ତିର ସମୃଦ୍ଧି ହୁଏ ଏବଂ ତାହାର ଜରିଆରେ ଜାତି ଓ ଜାତୀୟତାର ମଧ୍ୟ ଅଭିବୃଦ୍ଧି ହୁଏ । ଯେଉଁଠି ତାହା ନ ହୋଇପାରେ, ଯେଉଁଠି ଜାତି ନାମରେ କେତେ ଜଣଙ୍କର ବା ମାତ୍ର କେତେଟା ବର୍ଗଙ୍କର ଚତୁର ନିୟମ ହିଁ ଚାଲେ, ସେଠି ଜାତୀୟତା ବି ଖଡବ ହୋଇଯାଏ । ସବୁ ପ୍ରକାରର ଆଦର୍ଶ ସେଠି କେବଳ ଶବ୍ଦମୌଳିନରେ ହିଁ ପରିଣତ ହୁଏ ।

ଗୋପବନ୍ଧୁଙ୍କୁ ଭଗ୍ନ ଦେଇ ଠିଆହୋଇଥିବା ଆଧୁନିକ ଓଡ଼ିଶାରେ ଏକଥା ବୁଝାଇ କହିଦେବାକୁ ଦରକାର ପଡ଼ିବ ନାହିଁ । ଗୋପବନ୍ଧୁ ଓଡ଼ିଶାର ମାଟିକୁ ଭଲ ପାଉଥିଲେ । ଓଡ଼ିଶାର ନଈ, ନାଳ, ତୋଟା ଓ ପାଟକୁ ଭଲ ପାଉଥିଲେ; କିନ୍ତୁ ମୂଳତଃ ସେ ଓଡ଼ିଶାର ମଣିଷକୁ ଭଲ ପାଉଥିଲେ । ଓଡ଼ିଆ ହିସାବରେ ନୁହେଁ, ମଣିଷ ହିସାବରେ ହିଁ ମଣିଷକୁ ଭଲ ପାଉଥିଲେ । ମଣିଷର ଜୀବନକୁ ସୁନ୍ଦରତର କରି ଗଢ଼ିବା ଲାଗି ଆପଣାର ଜନ୍ମଭୂମି ଓଡ଼ିଶାରେ ଯେ ଏକ କ୍ଷେତ୍ର ପାଇଥିଲେ ବୋଲି ଓଡ଼ିଶାକୁ ଭଲ ପାଉଥିଲେ । ଓଡ଼ିଆର ଦୁଃଖ ନୁହେଁ ଓଡ଼ିଶାରେ ବାସ କରୁଥିବା ମଣିଷର ଦୁଃଖରେ ସେ ଅଭିଭୂତ ହୋଇ ପଡ଼ୁଥିଲେ । ତାଙ୍କ ଭିତରେ ରହିଥିବା ତାଙ୍କର ପରମପ୍ରିୟ ମଣିଷ ଏଥିଲାଗି ଅତି ସ୍ୱାଭାବିକ ଭାବରେ ଆପଣାର ସକଳ ଉତ୍ସର୍ଗ କରିଦେବାକୁ ପ୍ରସ୍ତୁତ ହୋଇ ଯାଉଥିଲା । ଓଡ଼ିଶାରେ ଗୋପବନ୍ଧୁ ଓ ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କୁ ଜାତୀୟ ନେତା ବୋଲି କହିବା ସମୟରେ ଏହି କଥାଟି ଅବଶ୍ୟ ସ୍ମରଣ ରଖିବାକୁ ପଡ଼ିବ । ଆପଣା ମଣିଷ-ହୃଦୟକୁ ଦ୍ୱାର କରି ସେମାନେ ଜାତିକୁ ଚିହ୍ନିଥିଲେ, ଦେଶର ଆବିଷ୍କାର କରିଥିଲେ ଓ ଦେଶ ଏବଂ ଜାତି ଲାଗି ଆପଣା କର୍ତ୍ତବ୍ୟର ନିର୍ଣ୍ଣୟ କରିଥିଲେ । ସେଥିଲାଗି ଗାନ୍ଧୀ ଓ ଗୋପବନ୍ଧୁଙ୍କର ଜାତୀୟତା ଭିତରେ ଏତେ ଦୂର ପ୍ରାଣଶକ୍ତି ଭରି ରହିଥିଲା । କାରଣ ତା' ଭିତରେ ମାନବହୃଦୟର ସର୍ବଶ୍ରେଷ୍ଠ ନିଷ୍ଠା ଓ ପ୍ରେରଣାମାନ ଭରି ରହିଥିଲା । ସେମାନେ ରାଜନୀତି କରୁଥିଲେ ସତ, ମାତ୍ର ସେହି ରାଜନୀତି ଉପରେ ସେମାନଙ୍କର ହୃଦୟନୀତି ହିଁ ସର୍ବପ୍ରଧାନ ନିର୍ଣ୍ଣାୟକ ହୋଇରହିଥିଲା । ଜାତିର କାମ କରିବାକୁ ସେମାନେ ଭଗବାନଙ୍କ କାମ ବୋଲି ମନେ କରୁଥିଲେ କାରଣ ମଣିଷ ହିସାବରେ ମଣିଷସମାଜର ସମୃଦ୍ଧି ଲାଗି ଆପଣାକୁ ନିୟୋଜିତ କରି ରଖିବାକୁ ମଧ୍ୟ ସେମାନେ ଭଗବାନଙ୍କ କାମ ବୋଲି ମନେ କରୁଥିଲେ । ପ୍ରଧାନତଃ ଏହି କାରଣରୁ ହିଁ ଭାରତବର୍ଷ ଲାଗି ଗାନ୍ଧୀ ସଫଳ ନେତା-ରୂପେ ସାବ୍ୟସ୍ତ ହୋଇ ପାରିଲେ ଓ ଓଡ଼ିଶା ଲାଗି ଗୋପବନ୍ଧୁ ମଧ୍ୟ ସଫଳ ନେତା ରୂପେ ସାବ୍ୟସ୍ତ ହୋଇପାରିଲେ ।

ଗାନ୍ଧୀ ଓ ଗୋପବନ୍ଧୁଙ୍କ ନେତୃତ୍ୱରେ ଜାତୀୟ ସ୍ୱାଧୀନତା କହିଲେ ବିଦେଶୀ ଶାସନପାଶରୁ ମୁକ୍ତ ହୋଇ ଭାରତବର୍ଷର ମଣିଷସମାଜ ଲାଗି ଏକ ସୁନ୍ଦର ଜୀବନର ପର୍ଯ୍ୟାପ୍ତ ଅବସର ଓ ସୁଯୋଗର ସୃଷ୍ଟି କରିବାକୁ ହିଁ ବୁଝାଉଥିଲା । ସେତେବେଳର ଜାତୀୟ ମହାସଭା ପ୍ରଧାନତଃ ଗାନ୍ଧୀ ଓ ଗୋପବନ୍ଧୁଙ୍କର ଅନ୍ତରବାସନା ମଧ୍ୟଦେଇ କଥା କହୁଥିଲା ଓ ଜନମନରେ ଆପଣାର ଆବେଦନ ଜଣାଇ ପାରୁଥିଲା । ସ୍ୱାଧୀନତା ସଂଗ୍ରାମରେ ଭାରତର ଜନସାଧାରଣ ଯେଉଁ ସମର୍ଥନ ଦେଇଥିଲେ, ଏକ ସୁନ୍ଦରତର ଭାରତବର୍ଷ ଗଢ଼ିବା ଲାଗି ହିଁ ତାହା ଦେଇଥିଲେ । ଜାତୀୟତାର ପ୍ରବାହକୁ ସେହି ସମର୍ଥନ ମିଳିଥିଲା ଓ ତାହାର ଫଳରେ ହିଁ ଦେଶ ସ୍ୱାଧୀନ ହେଲା । ଦେଶକୁ ମନୋମତ ମଣିଷଯୋଗ୍ୟ କରି ଗଢ଼ିବାର ଅବସର ଆମ ଆପଣା ହାତରେ ଆସି ପହଞ୍ଚିଲା ।

ଜାତୀୟତାବାଦର ଜୟଯାତ୍ରାପଥରେ ଇଉରୋପର ସବୁ ଦେଶ ସମାନ ଭାବରେ ଉପକୃତ ହୋଇ ନାହାନ୍ତି । ଇଉରୋପରେ ଏବେ ବି ଏପରି କେତୋଟି ଦେଶ ରହିଛନ୍ତି, ଯେଉଁଠାରେ କି ଆଜି ମଧ୍ୟ ଜାତୀୟତାର ମହାକାଳ ଫଳଗୁଡ଼ାକ ପାଚି ଟହଟହ ହୋଇ ଲଟକି ରହିଛନ୍ତି, ମାତ୍ର ସେଠି ଜାତି ନାମରେ ଓ ଦେଶ ନାମରେ କେତୋଟି ଶ୍ରେଣୀ ବା କେତୋଟି ଗୋଷ୍ଠୀ ସକାଶେ ହିଁ ପୁଷମାସ ପଡ଼ିରହିଛି ଓ ଅବଶିଷ୍ଟ ଦେଶବାସୀ ଅଫିମ ଖାଇ ରହିଛନ୍ତି । ପାଟିରେ ଅଫିମଟେଲା ପଡ଼ିଗଲେ ଅଫିମଖୋରୀ-ମଣିଷ ଇହ ଓ ପରଜୀବନର ଚତୁର୍ବର୍ଗ ଫଳ ପାଇଗଲା ବୋଲି ଅନୁଭବ କରେ । ତା' ଜୀବନରେ ଆଉ କିଛି ପ୍ରାପ୍ୟ ରହିଲା ବୋଲି ସେ ଭାବି ମଧ୍ୟ ପାରେ ନାହିଁ । ସେ ଆପଣାର ଛତି ଭୁଲିଯାଏ, ଭୋକ ଭୁଲିଯାଏ, ଚୁପ୍ ହୋଇ ରହେ । ଜାତୀୟତା ଅଫିମ ପରି କାର୍ଯ୍ୟ କଲାବେଳେ ମଣିଷର ମଣିଷ ହେବା ଆକାଙ୍କ୍ଷା ମରିଯାଏ, ଜୀବନକୁ ସୁନ୍ଦର କରି ଗଢ଼ିବାର ସ୍ୱାଭାବିକ ନିଆଁ ଶୀତଳ ହୋଇଯାଏ, ଜାତୀୟତାର ଭୋକଲଡ଼ୁ ଓ ଶୋଷଲଡ଼ୁ ଖାଇ ତାର ସକଳ ଭୋକଶୋଷ ମରିଯାଏ । ସେ ପୂଜା କରେ, କୀର୍ତ୍ତନ କରେ, ପତାକା ଧରି ବାହାରେ; ଜାତୀୟ ସାହିତ୍ୟ, ଜାତୀୟ କଳା, ଜାତୀୟ ସଂସ୍କୃତି ଓ ମୋଟ ଉପରେ ଜାତୀୟ ଅତୀତ ଓ ଜାତୀୟ ଭବିଷ୍ୟତର ଟଙ୍କପାଣି ପିଇ ସେ ବଡ଼

ପ୍ରେରଣାସ୍ଥାନ ଓ ତେଣୁ ବନ୍ତ ଦମ୍ଭୀଷ୍ଟ ଭାବରେ ସମ୍ପ୍ରଧୀଶ ବର୍ଗଗୁଡ଼ିକର ଶୋଷଣ ଲାଗି ସହଜ ଶିକାର ରୂପେ ପ୍ରସ୍ତୁତ ହୋଇ ରହେ । ଇଉରୋପରେ ଗ୍ରୀସ୍, ଇଟାଲୀ, ସ୍ପେନ ଓ ପର୍ତ୍ତୁଗାଲରେ ଆମେ ଅନେକତଃ ଏହା ହିଁ ଦେଖିବାକୁ ପାଇବା । ସେଠାରେ ଧର୍ମକୁ ମଧ୍ୟ ଭଗବାନଙ୍କର ଅଧିକାର ଭିତରୁ କାଢ଼ି ନିଆଯାଏ ଓ ଉଚ୍ଚତର ବର୍ଗଗୁଡ଼ିକର ଅଧିକାର-ବୃତ୍ତ ଭିତରେ ଆଣି ଖଞ୍ଜି ଦିଆଯାଏ । ଧର୍ମମାନ୍ଧ ଧର୍ମଗତ ମାତ୍ର ନ ହୋଇ ଭାଗ୍ୟବାନ୍ ବଡ଼ଲୋକର ଶାସନମାନ୍ଧରେ ପର୍ଯ୍ୟବସିତ ହୋଇ ରହେ । ମଣିଷ ଅସ୍ୱୀକୃତ ହୁଏ, ଭଗବାନ ଅସ୍ୱୀକୃତ ହୁଅନ୍ତି । ଜାତୀୟତା ବାଦର ପରାକ୍ରମ ହିଁ ବଢ଼ିବାରେ ଲାଗିଥାଏ ।

ଇଉରୋପୀୟ ସମାଜର ଏକ ସମୀକ୍ଷାତ୍ମକ ବିଶ୍ଳେଷଣ କରିବାକୁ ଯାଇ ଇଂଲଣ୍ଡର ଜଣେ ଅର୍ଥମାନ୍ଧବିଶାରଦ (G. D. H. Cole : Essays in Social Theory, Oldbourne, London 1962 ) ଆମକୁ ଜାତୀୟତାବାଦର ଏହି ଦିଗଟି ବିଷୟରେ ଅନେକ ଅନ୍ତର୍ଦୃଷ୍ଟି ଯୋଗାଇ ଦେଇଛନ୍ତି । ସେ କହନ୍ତି ଯେ ଇଉରୋପରେ ଜାତୀୟତାବାଦର ପୂର୍ବକାଳ ଯୁଗରେ ଏହା ପ୍ରଧାନତଃ ସମ୍ଭ୍ରାନ୍ତ ଉଚ୍ଚବର୍ଗଙ୍କ ଭିତରେ ଏକ ବ୍ୟସନ ବା ଫେସନ ହୋଇ ରହିଥିଲା । ଇଉରୋପର ଜନସାଧାରଣ ଏହାର ଧାର ଧାରୁ ନ ଥିଲେ ବା ଜାତୀୟତାବାଦ ସେମାନଙ୍କ ଜୀବନର କୌଣସି ପରିଧିକୁ ମଧ୍ୟ ସ୍ପର୍ଶ କରିବାର କୌଣସି ସ୍ପର୍ଦ୍ଧା ରଖି ନ ଥିଲା । ତାପରେ ପ୍ରଜାତନ୍ତ୍ରର ଯୁଗ ଆସିଲା । ପ୍ରଜାତନ୍ତ୍ରର ବିଚାର ପ୍ରଚାରିତ ହେଲା । ସରକାର କହିଲେ ରାଜାଙ୍କର ବା ଶାସନାରୂଢ଼ ଉଚ୍ଚବର୍ଗଙ୍କର ଏକାଧିକାରକୁ ନ ବୁଝାଇ ଜନାଧାରିତ ଶାସନକୁ ବୁଝାଇଲା । ସରକାର ଲୋକଙ୍କର ସମ୍ପତ୍ତି ହେବା ଉଚିତ ବୋଲି ଘୋଷଣା କରୁଥିବା ଏକ ନୂତନ ଆଗ୍ରହର ଉଦ୍ରେକ ହେଲା । ଶାସନ ଓ ସମାଜ-ବିଧାନର କର୍ତ୍ତବ୍ୟମାନ ଲୋକସ୍ତରକୁ ଓହ୍ଲାଇବାକୁ ଆରମ୍ଭ କଲା । ଏହିପରି ଭାବରେ ହିଁ ଅର୍ଥାତ୍ ପ୍ରଜାତନ୍ତ୍ର ଶାସନର ପ୍ରତିଷ୍ଠାଦ୍ୱାରା ହିଁ ଜାତୀୟତା ଜୀବନ୍ୟାସ ପାଇଲା । ପ୍ରଜାତନ୍ତ୍ରର ଅନୁଶୀଳନଦ୍ୱାରା ହିଁ ଦେଶର ଜନସାଧାରଣ ଜାତୀୟ ପ୍ରେରଣାକୁ ବୁଝିପାରିଲେ । ଆପଣା ଜୀବନରେ ସେଗୁଡ଼ିକ ଲାଗି ସ୍ଥାନ ରଖିପାରିଲେ । ଲୋକଭୂମିକୁ ସ୍ପର୍ଶ କରି ଅର୍ଥାତ୍ ଲୋକସାଧାରଣଙ୍କ

ଜୀବନକୁ ସୁନ୍ଦରତର ଗଢ଼ିବାର ନିଷ୍ଠାପର ବ୍ରତ ନେଇ ହିଁ ଜାତୀୟତାର ପ୍ରେରଣା ଏକ ଲୋକପ୍ରେରଣା ରୂପେ ପ୍ରତିଷ୍ଠିତ ହୋଇପାରେ ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଫରାସୀ ବିପ୍ଳବର ତିନୋଟି ସ୍ଲୋଗାନ—ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱ ସମସ୍ତ ଇଉରୋପକୁ ଆଲୋଡ଼ିତ କରି ଦେଇଥିଲା । କିନ୍ତୁ ଏହିସବୁ ଆଦର୍ଶକୁ ପ୍ରତ୍ୟେକ ଦେଶରେ ଜାତୀୟ ଆଦର୍ଶ ରୂପେ ପରିଣତ କରି ଏଗୁଡ଼ିକର ଉପଯୋଗ କରିବାକୁ ଇଉରୋପରେ ଆଦୌ ବେଶୀ ଦିନ ଲାଗିଲା ନାହିଁ । ଗୋଟିଏ ଜାତି ବା ଗୋଟିଏ ଦେଶ କହିଲେ ସାଧାରଣତଃ ଯେଉଁ ଲୋକସମୂହକୁ ବୁଝାଏ, ସେହିମାନଙ୍କର ସମ୍ବନ୍ଧ ଓ ଶାସନକ୍ଷେତ୍ରରେ ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱର ଅନୁଶୀଳନ ନ ହେଲେ ଯେ ଏହିସବୁ ଆଦର୍ଶ କେବଳ ଅର୍ଥହୀନ ପୋଥିସମ୍ପଦ ହୋଇ ରହିବ, ଇଉରୋପର ଲୋକ-ନେତୃତ୍ୱ କ୍ରମେ ଏହି କଥା ବୁଝି ପାରିଥିଲା । ତେଣୁ ଏହି ଆଦର୍ଶଗୁଡ଼ିକ ଉପରେ ହିଁ ସେଠି ଏକାଧିକ ଦେଶରେ ଜାତୀୟତାର ମୂଳଦୁଆ ପଡ଼ିଥିଲା । (ପୃଷ୍ଠା-୨୦୪) ଶ୍ରୀଯୁକ୍ତ କୋଲ୍‌ଙ୍କ ଭାଷାରେ କହିବାକୁ ଗଲେ, "କୌଣସି ଦେଶର ସରକାର ହିଁ ସେହି ଦେଶର ଲୋକସାଧାରଣଙ୍କର ସମ୍ପତ୍ତି ହୋଇ ରହିବା ଉଚିତ । ଲୋକସାଧାରଣ ସରକାରଙ୍କ ସମ୍ପତ୍ତି ହୋଇ ରହିବା ଉଚିତ ନୁହେଁ । ସରକାର ଉପରେ ଲୋକେ ମାଲିକ ହୋଇ ରହିବେ, ଲୋକମାନଙ୍କ ଉପରେ ସରକାର ମାଲିକ ହୋଇ ରହିବ ନାହିଁ ।"

ଏହି ଦୃଷ୍ଟିରୁ ବିଚାର କଲେ ପ୍ରଜାତନ୍ତ୍ର ହିଁ ଜାତୀୟତାର ସହାୟକ ହୋଇ ରହିବ । ଲୋକମାନଙ୍କର ବ୍ୟକ୍ତିଗତ ଜୀବନରେ ଅଧିକ ସ୍ୱାଧୀନତା ଓ ଅଧିକ ସାର୍ଥକତା ସମ୍ଭବ କରାଇବା ଲାଗି ଦେଶରେ ଯେଉଁ ଅନୁକୂଳ ଅବସର ଓ ବାତାବରଣ ରହିବା ଉଚିତ, ଦେଶର ସରକାର ସେହି ଅବସର ଓ ବାତାବରଣର ନିର୍ମାଣ କାର୍ଯ୍ୟରେ ଏକ ନିମିତ୍ତ ହୋଇ ରହିବ । ଦେଶବାସୀ ଏହି କାର୍ଯ୍ୟ ଲାଗି ସରକାର ହାତରେ ଯେଉଁ କ୍ଷମତା ଦେଇଛନ୍ତି, ଦେଶର ସରକାର ତାହାକୁ ସେହି କାର୍ଯ୍ୟରେ ହିଁ ବ୍ୟବହାର କରିବ । ଏହାକୁ ହିଁ ଆମେ ପ୍ରଜାତନ୍ତ୍ରର

ପ୍ରଧାନତମ ଉଦ୍ଦେଶ୍ୟ ହୋଇ ନ ପାରିବ । ପ୍ରଜାତନ୍ତ୍ର ଶାସନରେ ଦେଶର ସରକାର ବ୍ୟକ୍ତିକୁ ଗୋଡ଼ପଥର ପରି ବ୍ୟବହାର କରିବ ନାହିଁ । ସରକାର ଚଳାଉଥିବା ସମ୍ମିଳିତ ବ୍ୟକ୍ତିମାନେ ଶୂଦ୍ରମାନଙ୍କ ଦେଶରେ ଆପଣାକୁ ଏକମାତ୍ର ବ୍ରାହ୍ମଣଗୋଷ୍ଠୀ ବୋଲି ବିଚାର କରି ବସିବେ ନାହିଁ ! ଅଧମ ମଣିଷଗୋଷ୍ଠୀ ଉପରେ ଆପଣାକୁ ଏକଗୁଟିଆ ଶ୍ରେଣୀ ଦୁର୍ଦ୍ଦମ ଅତିମାନବ ପରି ବିଚାର କରିବାର ଦମ୍ଭ ମଧ୍ୟ କରିବେ ନାହିଁ ।

ଲୋକଜୀବନ ବା ଲୋକଭାଗ୍ୟକୁ ଯଦି ଗୋଟିଏ ମୁଦ୍ରା ପରି ଧରିଯାଏ ତେବେ ପ୍ରଜାତନ୍ତ୍ର ହେଉଛି ସେହି ମୁଦ୍ରାର ଗୋଟିଏ ପାଖ । ସମାନତା ହେଉଛି ଆଉ ଗୋଟିଏ ପାଖ । ପ୍ରଜାତନ୍ତ୍ରକୁ ଅନେକେ କେବଳ ଗୋଟିଏ ରାଜନୀତିକ ବ୍ୟବସ୍ଥା ବୋଲି ମାନିଥାନ୍ତି । ଏହି ବ୍ୟବସ୍ଥା ଅନୁସାରେ ଦେଶରେ ପ୍ରତ୍ୟେକ ପାଞ୍ଚ ବର୍ଷରେ ଥରେ ଭୋଟ ନିଆଯାଏ । ପଇସା ଖରଚ କରି ମକଦ୍ଦମା ଜିତିଲା ପରି ଭୋଟରେ ଜିତି ପ୍ରତିନିଧିମାନେ ରାଜଧାନୀ ମଣ୍ଡାଇବାକୁ ଯାଆନ୍ତି । ପାଞ୍ଚ ବର୍ଷ ସକାଶେ ସେମାନେ ଆତ୍ମବୃଦ୍ଧିର ଅଣସରଘରେ ରହି ଭୋଗ ଖାଆନ୍ତି, ପୁଣି ପରବର୍ତ୍ତୀ ନିର୍ବାଚନ ବେଳକୁ ରଥରେ ବସି ଚଦାକୁ ବାହାରନ୍ତି । ପ୍ରଜାତନ୍ତ୍ରକୁ ପ୍ରାଣ ଦେବାକୁ ହେଲେ ତନ୍ତ୍ର ପ୍ରଜାର ହେବା ଉଚିତ୍, ଅର୍ଥାତ୍ ପ୍ରଜା ମାନଙ୍କେ ସମସ୍ତଙ୍କ ଲାଗି ବିକାଶର ସମ୍ଭାବନାମାନ ସମାନ ଭାବରେ ଉନ୍ମୁକ୍ତ ହୋଇ ରହିବା ଉଚିତ । ଏହି ସମ୍ଭାବନାଗୁଡ଼ିକରୁ ସମସ୍ତେ ଲାଭବାନ୍ ହୋଇପାରିବା ଭଳି ଜୀବନ ସ୍ତରରେ ଏକ ସହଯୋଗକ୍ଷେତ୍ର ପ୍ରସ୍ତୁତ କରି ରଖିବା ହିଁ ସରକାର ଚଳାଉଥିବା ପ୍ରତିନିଧିମାନଙ୍କର କାର୍ଯ୍ୟ ହେବା ଉଚିତ ।

ପ୍ରଜାତନ୍ତ୍ର ଓ ପ୍ରଜା ମାନଙ୍କେ ସଭିଁର ଲାଗି ସମାନ ଅବସର ଯୋଗାଇଦେବା ମଧ୍ୟରେ କିପରି ସମ୍ବନ୍ଧ ରହିବା ଉଚିତ, ତାହାର ଚର୍ଚ୍ଚା କରି ଇଂଲଣ୍ଡର ଆଉ ଜଣେ ବିଚାରକ କହିଛନ୍ତି, "କେବଳ ଏକ ରାଜନୀତିକ ବ୍ୟବସ୍ଥା ମାତ୍ର ହୋଇ ରହିଲେ ପ୍ରଜାତନ୍ତ୍ର କଦାପି ଦୃଢ଼ ହୋଇପାରିବ ନାହିଁ । ଏକ ନିର୍ଦ୍ଦିଷ୍ଟ ସମାଜ ବ୍ୟବସ୍ଥାକୁ ଓ ତଦନୁରୂପ ଏକ ଜୀବନଶୈଳୀକୁ ହିଁ ପ୍ରଜାତନ୍ତ୍ର ଆପଣାର ଧ୍ୟେୟ ବୋଲି ମାନିବ ।

ଏଥିଲାଗି ଆମକୁ ଦୁଇଟି ବିଷୟ ଉପରେ ଦୃଷ୍ଟି ରଖିବାକୁ ପଡ଼ିବ । ସମାଜର କେବଳ କେତୋଟି ବର୍ଗ ଲାଗି ଯେଉଁ ବିଶେଷ ସୁବିଧା ଓ ଅଧିକାରମାନ ଉପଲବ୍ଧ ହୋଇ ରହିଛି, ସେଗୁଡ଼ିକର ବିଲୋପ ସାଧନ କରିବାକୁ ପଡ଼ିବ ଏବଂ ଜାତିସ୍ୱ ଅର୍ଥଶକ୍ତିକୁ ମାତ୍ର କେତେ ଜଣଙ୍କ ହାତରେ ଏକ ଦାୟିତ୍ୱହୀନ ଉତ୍ପୀଡ଼କ ଭାବରେ ନ ରଖି ତାହାକୁ ସମଗ୍ର ସମାଜର ସେବାରେ ଅର୍ଥାତ୍ ସମସ୍ତଙ୍କର ଶିକ୍ଷା ଓ ସମୃଦ୍ଧି ବଢ଼ାଇବା ଦିଗରେ ବ୍ୟବହାର କରିବାକୁ ପଡ଼ିବ ।" [ R. H. Tawney : Equality—Allen and Unwin, London 1952 ]

ତାଙ୍କ (R. H. Tawney) ଭାଷାରେ ମୁଷ୍ଟିମେୟ କେତେଜଣ ମଣିଷ ବୃହତ୍ତର ଜନସାଧାରଣଙ୍କୁ ନାନା ପ୍ରକାରରେ ବଞ୍ଚିତ ଓ ପ୍ରବଞ୍ଚିତ କରି ଯେ କୌଣସି ଉପାୟରେ ଆପଣା ଲାଗି ଅର୍ଥ ଓ ଅବସରର ପାଳଗଦାମାନ ମାଡ଼ିବାରେ ଲାଗିଥିଲେ ଆମେ କୌଣସି ଜାତିକୁ ସଭ୍ୟ ବୋଲି କହିପାରିବା ନାହିଁ । ଦେଶରେ ଯେତେ ସମ୍ପତ୍ତି ଗଚ୍ଛିତ ହୋଇ ରହିଛି, ସେଥିରୁ ହିଁ କୌଣସି ଦେଶ ବା ସମାଜ ବଡ଼ ହୋଇଯାଏ ନାହିଁ । ଜାତିର ଜୀବନଗତ ସ୍ତର ପ୍ରକୃତରେ କେତେ ଉପରକୁ ଯାଉଛି ବା ତଳକୁ ଖସିପଡ଼ୁଛି ଏବଂ ଜାତି ଆପଣାର ଅର୍ଥକୁ କପରି ଭାବରେ ବ୍ୟବହାର କରୁଛି, ସେଇଥିରୁ ହିଁ ତାର ପ୍ରକୃତ ବଡ଼ପଣିଆ ଜଣାପଡ଼େ । ଜାତି ଆଗରେ କୌଣସି ଆଧ୍ୟାତ୍ମିକ ବା ଗୁଣାତ୍ମକ ଧ୍ୟେୟ ରହିଛି ଓ ଜାତି ତାହାଦ୍ୱାରା ହିଁ ପରିଚାଳିତ ହେଉଛି, ଜାତି ଭିତରେ ବାସ କରୁଥିବା ସବୁ ମଣିଷଙ୍କର ଜୀବନକୁ ଅଧିକ ସାର୍ଥକ ଓ ସମ୍ମାନାସ୍ପଦ କରି ଗଢ଼ିବାରେ ହିଁ ଜାତିସ୍ୱ ଅର୍ଥରାଶି ବ୍ୟୟିତ ହେଉଛି, ସେଥିରୁ ହିଁ କୌଣସି ଜାତିର ସଭ୍ୟତାକୁ କଳନା କରାଯିବା ଉଚିତ । ମଣିଷ ମଣିଷ ଭିତରେ ଅର୍ଥ ଓ କ୍ଷମତାର ବିରାଟ ଖାଇଗୁଡ଼ାକ ରହିଥିବା ପର୍ଯ୍ୟନ୍ତ ଏବଂ ସେହି ଖାଇଗୁଡ଼ାକୁ ଚିରସ୍ଥାୟୀ କରି ରଖିବା ଲାଗି ଜନଜୀବନର ନିୟମମାନ ହେଉଥିବା ପର୍ଯ୍ୟନ୍ତ କୌଣସି ଜାତିକୁ ଆମେ ସଭ୍ୟ ନ କହି କେବଳ ବର୍ବର ବୋଲି ହିଁ କହିପାରିବା । ବିଜ୍ଞାନର ସାହାଯ୍ୟ ନେଇ ଗଢ଼ାଯାଇଥିବା ଏକ ସୁସ୍ଥ ପରିବେଶରେ ସମସ୍ତେ ଜୀବନ ଗଢ଼ିବାର ସୁଯୋଗ ପାଇବେ, ସମସ୍ତଙ୍କ ଲାଗି ଏକ ପରିପୂର୍ଣ୍ଣ ଓ ପ୍ରେରଣାଦାୟକ

ଶିକ୍ଷା କ୍ଷମ ଉପଲବ୍‌ଧ ହୋଇ ରହିବ ଓ ଆପଣା ଯୋଗ୍ୟତା ଏବଂ ନିଷ୍ଠା ବଦଳରେ ସମସ୍ତେ ଆପଣାର ଓ ଆପଣା ପରିବାର ପରିପୋଷଣ କରିପାରିବାର ଅଧିକାର ପାଇବେ । ଜୀବନର ନିଷ୍ଠୁର ତାଡ଼ନାରେ କେହି ଦଳିହୋଇ ଯିବେ ନାହିଁ । ଯେ କୌଣସି ଜାତି ବା ଦେଶରେ ଏତିକି ସମ୍ଭବ ହୋଇପାରିଲେ ଏ ଯୁଗର ଅନେକ ଅସମାନତା ଦୂର ହୋଇଯିବ, ପ୍ରଜାତନ୍ତ୍ର ଦୃଢ଼ ହେବ, ମଣିଷଜୀବନ ସୁନ୍ଦର ହେବ ଓ ତାହାରି ଜରିଆରେ ଜାତି ଓ ଦେଶ ମଧ୍ୟ ସୁନ୍ଦର ହେବ ।

ଉଇରୋପରେ ଡେନ୍‌ମାର୍କ ଏପରି ଗୋଟିଏ ଦେଶ, ଯେଉଁଠି କି ଗତ ଶହେ ବର୍ଷ ଭିତରେ ଜାତୀୟତା, ପ୍ରଜାତନ୍ତ୍ର ଓ ସମାନତା ତିନୋଟି ଯାକର ସନ୍ତୁଳିତ ଅଭିବୃଦ୍ଧି ହୋଇପାରିଛି । ଜାତିକୁ ବଡ଼ କରିବା ଲାଗି ସେଠାରେ ଜାତୀୟତା ବାଦର ଅଫିମ ଖାଇବାକୁ ପଡ଼ିନାହିଁ । ପ୍ରଜାତନ୍ତ୍ର ବସାଇବା ଲାଗି ରାଜାର ମୁଣ୍ଡକାଟି କରିବାକୁ ପଡ଼ି ନାହିଁ ବା ସମାନତା ଆଣିବାକୁ ଯାଇ ଖଣ୍ଡା ଓ ବନ୍ଧୁକର ଆଶ୍ରୟ ନେବାକୁ ପଡ଼ି ନାହିଁ । ଏହି ସଫଳତା ଲାଗି ଆମକୁ ସେଠାରେ ପ୍ରଥମେ ଜଣେ କବିକୁ ହିଁ ଶ୍ରେୟଃ ଦେବାକୁ ପଡ଼ିବ । କବିତା ବାହୁଲ୍ୟ, ଗୁଡ଼ାଏ ବହି ଲେଖିଥିବା ବା ଗୁଡ଼ାଏ କଥା କହି ବୁଦ୍ଧିଜୀବୀମାନଙ୍କର ସଭାକୁ ପ୍ରସନ୍ନ କରି ରଖିଥିବା କୌଣସି କବିଦ୍ୱାରା ଏକଥା ହୋଇ ନାହିଁ । ଜଣେ ଦୃଷ୍ଟି ସମ୍ପନ୍ନ କବିଦ୍ୱାରା ଏହା ହୋଇଛି । ଓଡ଼ିଶାର ସାହିତ୍ୟଦାଣ୍ଡି ବୁଲିଆସିଲେ କେବଳ ଗୋପବନ୍ଧୁଙ୍କ-ଠାରେ ହିଁ ହୁଏତ ଆମେ ସେହିପରି ଏକ ଦୃଷ୍ଟିର ପ୍ରେରଣାବଳିଷ୍ଠ ସଙ୍କେତ ପାଇପାରିବା ।

ଡେନମାର୍କର କବି ଗ୍ରୁଣ୍ଡ୍‌ଭି (Nikolai Fredrik Severin Grundtvig, 1783-1872)ଙ୍କ ଗୋଟିଏ କବିତା ହିଁ ଜାତିନିର୍ମାଣର ଯୁଗରେ ଡେନମାର୍କକୁ ଏକ ସୁସ୍ଥମାର୍ଗର ସନ୍ଧାନ ଦେଇଥିଲା । ସେହି କବିତାଟିରେ ସେ କହିଥିଲେ ଯେ ଅନ୍ୟ ଦେଶ ପରି ସାନ ଦେଶ ଡେନମାର୍କରେ ବଡ଼ ଓ ଉଚ୍ଚ ପର୍ବତ ନାହିଁ, ନଦୀ ନାହିଁ ବା ହ୍ରଦ ନାହିଁ । ବଡ ବୋଲି କହି ଗୌରବ ନେବାକୁ ଡେନମାର୍କରେ କିଛି ନାହିଁ । କିନ୍ତୁ ଏହି ଦେଶରେ ଏକ କୃଷିକୁଳ ରହିଛି, ଯିଏ କି ଯୁଗ ଯୁଗ ଧରି

ଆପଣାର ଶ୍ରଦ୍ଧା ଓ ଶ୍ରମ ଦେଇ ଏହି ମାଟିକୁ କୃଷ କରୁଛି, ମାଟିରୁ ସୁନା ଫଳାଉଛି । ଦେଶକୁ ସୁନ୍ଦର କରିବାକୁ ହେଲେ ସେହି କୃଷୀର ଜୀବନକୁ ସୁନ୍ଦର କରିବାକୁ ହେବ, କୃଷୀସମାଜକୁ ହିଁ ସୁନ୍ଦର କରିବାକୁ ହେବ; ଅର୍ଥାତ୍ ଦେଶର ସମାଜରୁ ଏପରି ମାର୍ଗରେ ଗଢ଼ିବାକୁ ହେବ, ଯେପରି ଦେଶରେ ଅତି କମ୍ ସମ୍ବଳ ଥିବା ମଣିଷ କମ୍ ରହିବେ ଓ ଅତି ବେଶୀ ସମ୍ବଳ ରହିଥିବା ଲୋକଙ୍କର ସଂଖ୍ୟା ତାଠାରୁ ଆହୁରି କମ୍ ହୋଇ-ପାରିବ । କବିଙ୍କର ଏହି ଦୃଷ୍ଟିକୁ ସମାଜ ବଦଳାଇବାର ମୂଳ ପ୍ରେରଣା ରୂପେ ଗ୍ରହଣ କରି ଡେନମାର୍କରେ ଗତ ଶହେ ବର୍ଷ ଧରି ଶିକ୍ଷା ଓ ଅର୍ଥଗତ ଜୀବନର ନିୟମନ ହୋଇଆସିଛି ଏବଂ ସାନ ଦେଶ ହେଲେ ମଧ୍ୟ ଡେନମାର୍କ ଅନେକ ଦୃଷ୍ଟିରୁ ଜାତୀୟତା, ପ୍ରଜାତନ୍ତ୍ର ଓ ସମାନତା ତିନୋଟିଯାକ ପରିମାପକରେ ଆମ ଅନେକଙ୍କର ଆଦର୍ଶସ୍ଥାନୀୟ ହୋଇ ରହିଛି । ଆପଣାର ଏକ ଲେଖାରେ କବି ଗ୍ରୁଣ୍ଡ୍‌ଭି ଲେଖିଛନ୍ତି, "ଆମ ଏ ଯୁଗରେ ଲୋକମାନେ ସ୍ୱାଧୀନତା ଓ ସଂସ୍କୃତି ବିଷୟରେ ବଡ଼ କର୍କଶ ଭାବରେ ଗର୍ଜନ କରିବାରେ ଲାଗିଛନ୍ତି । ଆମ ସମସ୍ତଙ୍କ ଲାଗି ଯେ ସ୍ୱାଧୀନତା ଓ ସଂସ୍କୃତିର ଆବଶ୍ୟକତା ରହିଛି, ସେ କଥା କେହି ଅସ୍ୱୀକାର କରିବ ନାହିଁ । ମାତ୍ର ସେଗୁଡ଼ିକ ହାସଲ କରିବା ପାଇଁ ଆମ ଆଗରେ ଯେଉଁସବୁ ପ୍ରସ୍ତାବ ଓ ପରାମର୍ଶମାନ ଦିଆଯାଉଛି, ସେଗୁଡ଼ିକ ପ୍ଲେଟୋଙ୍କର ଆଦର୍ଶ ରାଜ୍ୟବ୍ୟବସ୍ଥା ପରି ହିଁ ମୂଳତଃ ଦୋଷଯୁକ୍ତ ହୋଇ ରହିଛି । ଫଳରେ ସ୍ୱାଧୀନତା ଓ ସଂସ୍କୃତିର ତଥାକଥିତ ଅଭିଭାବକ ଓ ତତ୍ତ୍ୱାବଧାରକମାନେ ଆପେ ସେଗୁଡ଼ିକୁ ଆତ୍ମସାତ୍ କରି ପକାଉଛନ୍ତି । ଏଣେ ସେମାନଙ୍କର ଆଜ୍ଞା ପାଳନ କରୁଥିବା ଓ ସବୁ ପ୍ରକାର କଷ୍ଟ ସହୁଥିବା ଲୋକସାଧାରଣଙ୍କ ଭାଗ୍ୟରେ ଦାମ୍ଭିକ ଉତ୍ପୀଡ଼କମାନଙ୍କର ଶାସନଦ୍ୱାରା ବାଧ୍ୟ ହୋଇ ରହିବା ବ୍ୟତୀତ ଆଉ ଅନ୍ୟ କୌଣସି ସୁଯୋଗ ହିଁ ଜୁଟୁ ନାହିଁ । ଲୋକସାଧାରଣ ଉତ୍ପୀଡ଼କମାନଙ୍କୁ ଆଦର କରିବାକୁ ବାଧ୍ୟ ହେଉଛନ୍ତି; ସେହିମାନଙ୍କର ଗୁଣଗାନ କରୁଛନ୍ତି ଓ ସେହିମାନଙ୍କୁ ହିଁ ଭଗବାନ ବୋଲି ମାନିନେଉଛନ୍ତି ।

ଗତ କୋଡ଼ିଏ ବର୍ଷ ତଳେ ଆମ ଦେଶକୁ ରାଜନୈତିକ ସ୍ୱାଧୀନତା ଆସିଥିଲା । ଜାତୀୟତା-ଯୁଗର ସକଳ ଆକାଙ୍କ୍ଷା ଓ ଅନୁଧାବନକୁ ଏକ

ଭୂମି ଯୋଗାଇଦେଇ ଏହି ସ୍ୱାଧୀନତା ଆସିଥିଲା । ଗତ କୋଡ଼ିଏ ବର୍ଷ କାଳ ଯେଉଁମାନଙ୍କ ହାତରେ କ୍ଷମତାର ରଜ୍ଜୁ ରହିଥିଲା, ସେହି ରଜ୍ଜୁର ମୋହପାଶଦ୍ୱାରା ସେମାନେ କ୍ରମେ ନିଜେ ବାନ୍ଧିହୋଇ ପଡ଼ିଲେ । ଜାତୀୟତାକୁ ପରିପୂର୍ଣ୍ଣ ଓ ପୂର୍ଣ୍ଣାଙ୍ଗ ରୂପ ଦେବାଲାଗି ଏ ଦେଶରେ ପ୍ରଜାତନ୍ତ୍ରର ଦୃଢ଼ ହେବା ଉଚିତ ଥିଲା, ସମାନତା ଅର୍ଥାତ୍ ସମାନ ସୁଯୋଗକୁ କର୍ମଗତ ସରଣୀ ବୋଲି ମାନିନେବା ଉଚିତ ଥିଲା । ମାତ୍ର ତାହା ହୋଇପାରିଲା ନାହିଁ । ବର୍ଗତନ୍ତ୍ର ମୋଟା ହେଲା, ଅସମାନତା ଗୁଡ଼ାକୁ ଅତି ନିର୍ଲଜ୍ଜ ଭାବରେ ପ୍ରଶ୍ରୟ ଦିଆଗଲା ଏବଂ ପ୍ରଧାନତଃ ସେହି କାରଣରୁ ହିଁ ଜାତୀୟତାର ପ୍ରତିନିଧିତ୍ୱ କରୁଥିବା ଜାତୀୟ କଂଗ୍ରେସର ଭାଗ୍ୟରେ ଏବେ ଏପରି ଏକ ବିପର୍ଯ୍ୟୟ ମଧ୍ୟ ଘଟିଲା । *

ଆଫ୍ରିକାର ଆଧୁନିକ ସାମାଜିକ ସ୍ଥିତିର ଅଧ୍ୟୟନ କରିବାକୁ ଯାଇ ଜଣେ ନୃତତ୍ତ୍ୱବିତ୍ । U. R. Ehrenfels: The Light Continent, Asia, Bombay, 1969 ଜାତୀୟତାର ବିକୃତ ପରିଣତି ବିଷୟରେ ଯେଉଁ ଶଙ୍କା ପ୍ରକାଶ କରିଛନ୍ତି, ଭାରତର ଆଧୁନିକ ଜାତୀୟ ପୃଷ୍ଠଭୂମି ଉପରେ ମଧ୍ୟ ଆମେ ତାହାର ବିଚାର କରିପାରିବା । ସେ କହିଛନ୍ତି, ଉପନିବେଶବାଦର କୁମ୍ଭୀରକୁ ସିନା ଜାତି ଓ ଦେଶର ପୋଖରୀ ଭିତରୁ ବାହାର କରି ଦିଆଯାଉଛି, ମାତ୍ର ତାପରେ ଉଗ୍ର ଦୁର୍ଦ୍ଦାନ୍ତ ଜାତୀୟତାବାଦରୂପୀ ସଂସ୍କୃତି-ସଂହାରକାରୀ ବଡ଼ ମାଛର ଧର୍ଷଣ ଓ ଲୁଣ୍ଠନ ସହିବା ହିଁ ସାର ହେଉଛି ଏବଂ ଏହି ଦୁର୍ବିପାକ ଫଳରେ ସୃଜନ-ଶୀଳ ସାନ ମାଛଗୁଡ଼ିକୁ ହିଁ ବିଲୁପ୍ତ ହୋଇଯିବାର ବିପତ୍ତିର ସମ୍ମୁଖୀନ ହେବାକୁ ପଡ଼ୁଛି । ପ୍ରାୟ ସବୁଠାରେ ଏହି ପୁରୁଣା କାହାଣୀଟିର ଅଭିନୟ ହୋଇ ଚାଲିଛି । ଜାତୀୟତାର ଏହି ଅପଭ୍ରଂଶ ଯୁଗରେ ଚାଲିଥିବା

---

* । ଅବଶ୍ୟ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ପ୍ରଭାବଶାଳୀ ନେତୃତ୍ୱ ବଳରେ ବିଶେଷତଃ ଜରୁରୀ ପରିସ୍ଥିତି ଘୋଷଣା ପରେ ଜାତୀୟ କଂଗ୍ରେସର ଭାଗ୍ୟ ବର୍ତ୍ତମାନ ସମ୍ପୂର୍ଣ୍ଣ ଭାବେ ବଦଳିଯାଇଛି ଓ ତାର ମୂଳଦୂଆ ଆଜି (୧୯୭୬) ଦୃଢ଼ ଜଣାଯାଉଛି । ।—ସଂ ]

ମତ୍ସ୍ୟନ୍ୟାୟ ଅନୁସାରେ ବଡ଼ ମାଛ ସାନ ମାଛକୁ ଖାଇଯାଉଛି । ବିଗତ କୋଡ଼ିଏ ବର୍ଷ ଭିତରେ ଆମ ଭାରତବର୍ଷ ଓ ଓଡ଼ିଶାରେ ମଧ୍ୟ ପ୍ରଧାନତଃ ବଡ଼ ମାଛଙ୍କ ସକାଶେ ହିଁ ସବୁ ଚାଲିଛି । ବିଧାନସଭା-ଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସବୁଠି ଏହି ବଡ଼ ମାଛ ହିଁ ଉଧୋଉ-ଛନ୍ତି, ସାନ ମାଛ ମରିଯାଉଛନ୍ତି । ନୂଆଦିଲ୍ଲୀଠାରୁ ନୂଆ ରାଜଧାନୀ ପର୍ଯ୍ୟନ୍ତ ତ୍ରୁଏତ ଏହି ବଡ଼ ମାଛମାନେ ହିଁ ସବୁ ମାଡ଼ି ବସିଛନ୍ତି ଓ ଆହୁରି ଅଧିକ ମାଡ଼ିବସିବାଲାଗି ଜାତୀୟ ଅଭିଳମଗୁଡ଼ିକର ଧୂମ୍ରମଣ୍ଡଳ ସୃଷ୍ଟି କରି ରଖିଛନ୍ତି । ଏହି ବଡ଼ ମାଛମାନଙ୍କ ପାଇଁ ନଗରପଦ ବିନୋଦନର ନିମିତ୍ତ ବନବା ସକାଶେ ଆମ ସାତ୍ୱିତ୍ୱିକୁ ଫଲମାସ ଢଆଯାଇଛି, ସଙ୍ଗୀତ ଓ ନୃତ୍ୟର ପୁରାତନ ପୋଖରୀମାନ ଉର୍ଣ୍ଣଳା ହେବାରେ ଲାଗିଛି, ବିଶେଷ ମୁଣ୍ଡ ଓ ବିଶେଷ ଅଟକଳଦ୍ୱାରା ତିଆରି ହୋଇଥିବା ବିଶେଷ ସ୍କୁଲ-ମାନଙ୍କରେ ବସ୍ତ୍ର ଜାଆଁଳ ଛଡ଼ାହୋଇ ଭବିଷ୍ୟତ ଲାଗି ବଡ଼ ମାଛ ତିଆରି ହେଉଛନ୍ତି । ଜାତୀୟତାର ଏହି ଶୂନ୍ୟ ପ୍ରହେଳନପଙ୍କରେ ପ୍ରଜାତନ୍ତ୍ର ଉଧେଇବ ବା କିପରି, ସମାନ ସୁଯୋଗ ମିଳିବ ବା କିପରି, ମଣିଷ ହିସାବରେ ପ୍ରତ୍ୟେକ ମଣିଷ ଲାଗି ବାଟ ଫିଟିବ ବା କିପରି ?

ଚୀନ ଦେଶର ଜଣେ ପ୍ରାଚୀନ ଦାର୍ଶନିକ ଥରେ ମନ୍ତବ୍ୟ ଦେଇ କହିଥିଲେ ଯେ, କୌଣସି ଜାତିର ତୁଳାଦଣ୍ଡରେ ଜନସାଧାରଣଙ୍କୁ ହିଁ ସର୍ବାଗ୍ର ସ୍ଥାନ ଦିଆଯିବା ଉଚିତ । ତା’ପରେ ରାଷ୍ଟ୍ରର ସ୍ଥାନ ରହିବା ଉଚିତ ଓ ତା’ପରେ ଯାଇ ଶାସକ ବା ପ୍ରଶାସକମାନଙ୍କର ସ୍ଥାନ ରହିବା ଉଚିତ । ଆମ ଦେଶରେ ଗତ କୋଡ଼ିଏ ବର୍ଷର ବିବିଧ ଉଦ୍ୟମର ମଧ୍ୟଦେଇ ତାହାର ଓଲଟାଟା ହିଁ ହୋଇଛି । ସବୁଠାରେ ଶାସକର ହିଁ ଅଗ୍ରାଧିକାର ଚାଲିଛି । ରାଷ୍ଟ୍ର ଶାସକ ଲାଗି ମୂଳତଃ ଏକ ଡାକବଙ୍ଗଳାର କାର୍ଯ୍ୟ କରୁଛି ଓ ଜନସାଧାରଣ ଅନୁସରଣିଆ ହୋଇ ରହିଛନ୍ତି । ଏହା ଫଳରେ ଜାତୀୟତାର ଉତ୍ସାହସଭା ପ୍ରଧାନତଃ ଏକ ବ୍ୟଙ୍ଗସଭାରେ ପରିଣତ ହୋଇଛି । ଜାତିର ଶାସନ ଏଣିକି ଯାହା ହାତରେ ରହୁନା କାହିଁକି, ତାକୁ ଏହି ସବୁ କଥା ଅବଶ୍ୟ ମନେ ରଖିବାକୁ ହେବ । ଏତିକିବେଳେ ମନ କହୁଛି, ଏ ଦେଶ ଲାଗି ବର୍ତ୍ତମାନ ଗୋପବନ୍ଧୁ ପରି ଜାତୀୟ ସ୍ୱର ଦରକାର । ଗୋପବନ୍ଧୁଙ୍କ ବିଷୟରେ ସରସ ଓ

ଷୋଳମାନ-ସମ୍ବଳିତ ବକ୍ତୃତା ଦେଉଥିବା ପଣ୍ଡିତ, ଅଧ୍ୟାପକ ବା ଭୁଇଁ-ନେତା ଦରକାର ନାହାନ୍ତି । ଆଜକୁ ପ୍ରାୟ ଷାଠିଏ ବର୍ଷ ତଳେ ରୁଷିଆ ଦେଶର ଟଲଷ୍ଟୟ ଶୂନ୍ୟଗର୍ଭ ଜାତୀୟତାବାଦର ପ୍ରମାଦ ବିଷୟରେ ଆମକୁ ସତର୍କ କରିଦେଇ ଯାଇଛନ୍ତି । ତାଙ୍କ ମତରେ ଏହି ପ୍ରମାଦ ଘଟିଲେ ରାଷ୍ଟ୍ରୀୟତନ୍ତ୍ର ଓ ରାଷ୍ଟ୍ରୀୟତ୍ତ୍ୱ ଶାସନର ବାହାରେ ମଣିଷର ଆଉ କୌଣସି ଅର୍ଥ ହିଁ ରହେ ନାହିଁ । ମଣିଷ ହେବା ଆଗରୁ ତାକୁ ଜାତିର ଖୁଆଡ଼ ଭିତରେ ଭର୍ତ୍ତି କରି ଦିଆଯାଏ । ମଣିଷ ଯେ ମୂଳତଃ ଋରତୀୟ, ବଙ୍ଗାଳୀ ବା ଓଡ଼ିଆ ନୁହେଁ, ମଣିଷ ଯେ ମୂଳତଃ ଜଣେ ମଣିଷ, ଅର୍ଥାତ୍ ତା'ର ଯେ ବିବେକ ରହିଛି, ବିଚାର ରହିଛି, ଭଲ ପାଇବାର ଶକ୍ତି ରହିଛି, ଆପଣାର ମଣିଷ ଜୀବନକୁ କୌଣସି ଏକ ସାର୍ଥକ ଉଦ୍ଦେଶ୍ୟ ଦିଗରେ ଅନୁଧାବିତ କରାଇବା ଲାଗି ତା'ର ଯେ ଏକ ସର୍ବମୂଳ ଅଧିକାର ରହିଛି, ସେତେବେଳେ ଜାତୀୟ ବିଧାୟକମାନେ ତାହା ପାସୋରି ପକାନ୍ତି । ମଣିଷର ପେଟ ପୂରେ ନାହିଁ । ମନ ବା ହୃଦୟ କିଛି ପୂରେ ନାହିଁ, ମାତ୍ର ଜାତୀୟତା ନାମରେ ଅମଣିଷ ଶାସକର ଅମାର ଭର୍ତ୍ତି ହୁଏ । ଏହି ପ୍ରମାଦର ପ୍ରତିବିଧାନ ସ୍ୱରୂପ ଟଲ୍‌ଷ୍ଟୟ ପ୍ରତ୍ୟେକ ମଣିଷକୁ ରାଷ୍ଟ୍ର ଓ ଜାତୀୟତାସମ୍ବନ୍ଧୀ ସକଳ ପ୍ରକାର ଅନ୍ଧବିଶ୍ୱାସରୁ ମୁକ୍ତ ହେବାର ଉଦ୍‌ବୋଧନ ଦେଇଥିଲେ । ପ୍ରତ୍ୟେକ ମଣିଷକୁ ମଣିଷ ବୋଲି ସ୍ୱୀକାର କରି ଶିଖିବା ଲାଗି ସେ କହିଥିଲେ । ସକଳ ପ୍ରକାର କର୍ତ୍ତୃତ୍ୱ ଓ ଦାସତ୍ୱ ସହିତ ଅସହଯୋଗ କରିବାର ବାଟ ବତାଇଥିଲେ ।

ଆମ ଓଡ଼ିଶାରେ ଶ୍ରୀଯୁକ୍ତ ଗୋପବନ୍ଧୁ ମଧ୍ୟ ଏହି ଅନ୍ଧବିଶ୍ୱାସ ସହିତ ଅସହଯୋଗ କରିଥିଲେ । ତାଙ୍କର ରାଜନୀତି, ସାହିତ୍ୟ, ଶିକ୍ଷାପ୍ରୟୋଗ ଓ ଧର୍ମାଦର୍ଶ ପଛରେ ଆମେ ବଡ଼ ସ୍ପଷ୍ଟ ଭାବରେ ଏହି ଅସହଯୋଗର ବ୍ୟଞ୍ଜନାଟିକୁ ଠଉରାଇ ନେଇପାରିବା ଏବଂ ଏହି ଅସହଯୋଗର ପଛରେ ମଣିଷ ହିସାବରେ ମଣିଷ ପ୍ରତି ରହିଥିବା ତାଙ୍କର ଅଜସ୍ର ଶ୍ରଦ୍ଧା ଓ ସମ୍ମାନକୁ ବି ଠଉରାଇ ନେଇପାରିବା । ଓଡ଼ିଶାରେ ଆଜି ଏହି ଶ୍ରଦ୍ଧା ଓ ସମ୍ମାନର ପୁନର୍ପ୍ଲାବନ ଦରକାର ଏବଂ ଏହି ପ୍ଲାବନରେ ଭଗୀରଥ ହେବା ଲାଗି ଓଡ଼ିଶାରେ ଗୋପବଂଧୁ ବି ଦରକାର ।

●

# ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର କେତୋଟି ଦିଗ

ଡାକ୍ତର ରାଧାମୋହନ ନନ୍ଦ

[ ବ୍ରହ୍ମପୁର ମେଡ଼ିକାଲ କଲେଜର ଛାତ୍ର ଥିଲାବେଳୁ ଶ୍ରୀ ନନ୍ଦ ଲେଖକ ହିସାବରେ ପ୍ରତିଷ୍ଠିତ ନ ହେଲେ ମଧ୍ୟ ଅପରିଚିତ ନୁହନ୍ତି । କଳିଙ୍ଗର 'ଜନ୍ମଭୂମି' ଓ ପ୍ରଜାତନ୍ତ୍ରର 'ମୀନାବଜାର' ବିଭାଗରେ ତାଙ୍କର ଅନେକ ଲେଖା ପ୍ରକାଶ ପାଇଛି । ଆଶା କରାଯାଏ, ସମୟ, ସୁଯୋଗ ଓ ସୁବିଧା କ୍ରମେ ଭବିଷ୍ୟତରେ ସେ ସାହିତ୍ୟ କ୍ଷେତ୍ରରେ ସୁନାମ ଅର୍ଜନ କରିପାରିବେ । ଏହି ପ୍ରବନ୍ଧରେ ସେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର କେତୋଟି ଦିଗ ତଥା ତାଙ୍କର ତ୍ୟାଗ, ସେବା, ଧର୍ମ, ଦର୍ଶନ, ଜାତୀୟତା ଓ ମହାମାନ୍ୟତା ସମ୍ପର୍କରେ ସମ୍ୟକ୍ ସୂଚନା ଦେଇଛନ୍ତି ।
ସଂ ]

ଉତ୍କଳ ମାତାର ଯେଉଁ କେତେଜଣ ଯୋଗ୍ୟତମ ସନ୍ତାନ ଆଜୀବନ ଦେଶ ଓ ଦଶ ପାଇଁ ନିସ୍ବାର୍ଥ ସହିତ ଆତ୍ମୋତ୍ସର୍ଗ କରି ଆଜି ଅମର ହୋଇ ରହିଅଛନ୍ତି, ସେମାନଙ୍କ ମଧ୍ୟରୁ 'ଉତ୍କଳମଣି ଗୋପବନ୍ଧୁ' ଅନ୍ୟତମ । ପଙ୍କରୁ ପଙ୍କଜ ଜାତ ହେଲ ଭଳି ପୁରୀ ଜିଲ୍ଲାର 'ସୁଆଣ୍ଡୋ' ନାମକ ଏକ କ୍ଷୁଦ୍ର, ଅନାଦୃତ, ଅପରିଚିତ ପଲ୍ଲୀରେ ଜନ୍ମଗ୍ରହଣ କରି ସେ ସ୍ୱୀୟ ପ୍ରତିଭା ଓ ବ୍ୟକ୍ତିତ୍ୱ ବଳରେ 'ଉତ୍କଳମଣି' ଅଭିବାଚ୍ୟ ହୋଇ ପାରିଥିଲେ ।

ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ଥିଲ ଏକ ମହାମାନବର ବ୍ୟକ୍ତିତ୍ୱ, ଯାହା ଖୁବ୍ କ୍ୱଚିତ୍ ଲୋକଙ୍କ ନିକଟରେ ପରିଦୃଷ୍ଟ ହୁଏ । କାରଣ ତାହା

ଥିଲା ନୈସର୍ଗିକ, ସ୍ୱଚ୍ଛ, ଶୁଭ୍ର ଓ ଜ୍ୟୋତିର୍ମୟ । ସେଥିରେ କୌଣସି ପ୍ରକାର ଆବିଳତା ନ ଥିଲା; ପରନ୍ତୁ ତାହା ଥିଲା ସ୍ୱତଃସ୍ଫୂର୍ତ୍ତ ଏବଂ ସ୍ୱାଭାବିକ ।

ଗୋପବନ୍ଧୁଙ୍କ ଦର୍ଶନ ଆତ୍ମକୈନ୍ଦ୍ରିକ ନ ହୋଇ ଥିଲା ସମାଜ-କୈନ୍ଦ୍ରିକ । ପ୍ରତ୍ୟେକ ମନୁଷ୍ୟ ତଥା ସମାଜ ମଧ୍ୟରେ ନିଜର ଆତ୍ମାକୁ ଜଣାଇ ଦେଇ ନିଜକୁ ଉପଲବ୍ଧି ଓ ପରିପ୍ରକାଶ କରିବା ଥିଲା ତାଙ୍କ ଜୀବନର ବୈଶିଷ୍ଟ୍ୟ । ଆତ୍ମସୁଖପରତାର ପଙ୍କିଳ ଜଳବାୟୁରେ ପଲ୍ଲବିତ ହୋଇ ନ ଥିଲା ତାଙ୍କର ଆତ୍ମା ପ୍ରସୂନ, ଆତ୍ମତ୍ୟାଗରୂପୀ ପୁଷ୍ପରେ ତାହା ଷଣ୍ଡିତ ଥିଲା । ବିଶ୍ୱାତ୍ମା ଓ ନିଜ ଆତ୍ମାର ସମାବସ୍ଥିତି ଥିଲା ତାଙ୍କ ଜୀବନର ମୂଳମନ୍ତ୍ର । ତେଣୁ ହୃଦୟର ଉଚ୍ଛ୍ୱାସ ଆବେଗରେ ସେ ଗାଇଥିଲେ—

"ନିଜ ସ୍ୱାର୍ଥ ଲଗି ଜାତି ଭୁଲିବେ ହିନ୍ଦୁ
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ,
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧି ବିଶ୍ୱ ହିତ ତେଜି ଅଭିମାନ ।"

•

ଏହା କେବଳ ତାଙ୍କର ସାମୟିକ ଆବେଗର ଅଭିବ୍ୟକ୍ତି ନ ଥିଲା । ଏହା ହିଁ ଥିଲା ତାଙ୍କ ଜୀବନର ଦର୍ଶନ, ଜୀବନର ଆଦର୍ଶ । ବିଶ୍ୱପ୍ରେମର ପବିତ୍ର ମନ୍ଦାକିନୀ ଧାରାର ତରଙ୍ଗ ତାଙ୍କର ହୃଦ ଉପକୂଳ ସ୍ପର୍ଶ କରି ତାଙ୍କ ଜୀବନକୁ ପ୍ରେମରସାପ୍ଳୁତ କରିଥିଲା । ତେଣୁ ସେ ଲେଖିଥିଲେ—

"ପ୍ରେମ ଭାବ ଯାର ଅନ୍ତରେ ପୂରିତ
ସର୍ବ ପ୍ରାଣୀ ହୃଦ ତା ହୃଦେ ଅଙ୍କିତ
ସର୍ବ ଅନୁଭୂତି ସର୍ବ ଭୂତେ ତାର
ତା ଦୃଷ୍ଟିରେ ବିଶ୍ୱ ଏକ ପରିବାର ।"

ଗୋପବନ୍ଧୁ ବହୁ ସମ୍ବଳର ଅଧିକାରୀ ଥିଲେ । ଇଚ୍ଛା କରିଥିଲେ ସେ ବୃଏତ ସୁଖସମ୍ଭୋଗର ପ୍ରାଚୁର୍ଯ୍ୟ ମଧ୍ୟରେ ବୁଡ଼ି ରହିପାରିଥାନ୍ତେ ।

କିନ୍ତୁ ତାଙ୍କର ଜୀବନ ଅନ୍ୟ ଉପାଦାନରେ ଗଠିତ ହୋଇଥିଲା । ତେଣୁ ସେ ସମସ୍ତ ସୁଖ, ସମ୍ଭୋଗ, ଭୋଗ ଓ ବିଳାସ ପରିତ୍ୟାଗ କରି 'ଜାତି-ପ୍ରେମ ବହ୍ନି'ରେ ଝାସ ଦେଇଥିଲେ । ତାଙ୍କର ଗୋଟିଏ ଜୀବନ କୋଟିଏ ଲୋକଙ୍କପାଇଁ ଉଦ୍ଦିଷ୍ଟ ଥିଲା । ତେଣୁ ଦେଶ ଓ ଦଶର କଲ୍ୟାଣ ପାଇଁ ସାଧନାର ମହାବ୍ରତରେ ବ୍ରତୀ ହୋଇ ବ୍ୟକ୍ତିଗତ ଜୀବନକୁ ଜାତୀୟ ଜୀବନର ମହାପ୍ରବାହରେ ଯେ ବିଲୀନ କରିଦେଇଥିଲେ । ତେଣୁ ତାଙ୍କର ଶିରପୀ ହୃଦୟରୁ ଝରିଥିଲା—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

× × ×

"ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟ ବିଧି
ଏକର ଯା କ୍ଷୟ ଅନେକେ ଉଦୟ
ଅନେକେ ଏକର ସିଦ୍ଧି ।"

ଗୋପବନ୍ଧୁଙ୍କ ଜାତିପ୍ରୀତି ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ଜାତିର ସର୍ବାଙ୍ଗୀନ ଉନ୍ନତି କଳ୍ପେ ତାଙ୍କ ପ୍ରାଣ ଅତ୍ୟନ୍ତ ବିକଳ ହୋଇ ଉଠି-ଥିଲା । ତେଣୁ ନିଜର ଏକମାତ୍ର ସନ୍ତାନକୁ ରୋଗଶଯ୍ୟାରେ ତ୍ୟାଗକରି ସେ ଅନେକଙ୍କର ଦୁର୍ଦ୍ଦଶାମୋଚନ କରିବାକୁ ଆଗଭର ହୋଇଥିଲେ । ଲାଟସଭାରେ 'ମୁଠି' ଶାଗ ପ୍ରଦର୍ଶନ କରି ସେ ଯେଉଁ ବିକଳ କ୍ରନ୍ଦନ କରିଥିଲେ, ଏବେ ମଧ୍ୟ ସେପରି ବିକଳତା ଅନ୍ୟାନ୍ୟ ଜାତୀୟ ନେତାଙ୍କ-ଠାରେ ଦେଖିବାକୁ ବିରଳ କହିଲେ ସତ୍ୟର ଅପଳାପ ହେବ ନାହିଁ । ତାଙ୍କର ମମତା ଥିଲା ସ୍ୱତଃସ୍ଫୂର୍ତ୍ତ ।

ଗୋପବନ୍ଧୁଙ୍କ ଜାତୀୟତାର ଅନ୍ୟ ଏକ ଅସାଧାରଣ ବୈଶିଷ୍ଟ୍ୟ ଥିଲା । ସେ ବୁଝିଥିଲେ ଯେ ଜାତୀୟତା ହିଁ ଧର୍ମ ଓ ଧର୍ମ ହିଁ ଜାତୀୟତା ।

ତେଣୁ ତାହା ଆର୍ଯ୍ୟ ସଂସ୍କୃତି ଓ ସନାତନ ଧର୍ମ ଉପରେ ପ୍ରତିଷ୍ଠିତ ଥିଲା ଏବଂ ଏହା ଅହଂକୈନ୍ଦ୍ରିକ ନହୋଇ ଥିଲା ଈଶ୍ୱରକୈନ୍ଦ୍ରିକ । ସେ ନିଜର ଜୀବନରୁ ତାକୁ ଈଶ୍ୱରାଭିମୁଖୀ, ଚିନ୍ମୟ ଓ ବିଶୁଦ୍ଧ କରି ପାରିଥିଲେ । ତେଣୁ ସେ କହିଥିଲେ—

"ଦେଶବାସୀଙ୍କର ହେଲେ ଆତ୍ମଶୁଦ୍ଧି
ସତ୍ୟେ ଅନୁରାଗ ଧର୍ମେ ହିତବୁଦ୍ଧି
ମେଣ୍ଟିବ ଦୁର୍ଗତି ଦୁଃଖ ଯିବ କ୍ଷୟ
ଆସିବ ସୁଦିନ ହେବ ସୁଖୋଦୟ ।

ତାଙ୍କର ଏହି ଧର୍ମପ୍ରାଣତାରେ ରକ୍ଷଣଶୀଳତା ନଥିଲା, ପରନ୍ତୁ ଥିଲା ମାନବିକତା, ବିଶ୍ୱବ୍ୟାପକତା ଓ ପ୍ରଗତିଶୀଳତା । ତାଙ୍କର ବ୍ୟକ୍ତିଗତ ଅନ୍ତଃପୁରୁଷ ନିରନ୍ତର ସେହି ସନାତନ, ସଚ୍ଚିଦାନନ୍ଦ, ଅକ୍ଷୟ, ସନାତନ ପରମେଶ୍ୱରଙ୍କ ନିମିତ୍ତ ବ୍ୟାକୁଳ ଥିଲା । ଆବେଗରେ ସହିତ ସେ ଲେଖିଥିଲେ—

"ଜାଣେ ଅଛନ୍ତି ମୋ ପରାଣପତି
ସୁନ୍ଦର, ସତ୍ୟ, ଶିବ ଅଗତିଗତି
ରହିଛି ନିତି ତାଙ୍କ ବାଟ ଅନାଇ
ହୃଦ ପଲଙ୍କେ ଫୁଲ ଶେଯ ସଜାଇ ।"

ଗୋଟିଏ କଥାରେ କହିବାକୁ ଗଲେ ତାଙ୍କର ବ୍ୟକ୍ତିତ୍ୱ ଥିଲା ଈଶ୍ୱର ଓ ପୃଥିବୀ ମଧ୍ୟରେ ଥିବା ଦୀର୍ଘ ବ୍ୟବଧାନର ଏକ ସଂଯୋଜକ ।

ହିନ୍ଦୁ ଗର୍ଭରେ ଜନ୍ମ ଗ୍ରହଣ କରି ମଧ୍ୟ ଗୋପବନ୍ଧୁ ପୃଥିବୀର ସମସ୍ତ ଧର୍ମ ପ୍ରତି ସମାନ ଶ୍ରଦ୍ଧା ଓ ଭକ୍ତି ପ୍ରଦର୍ଶନ କରୁଥିଲେ । ବଜ୍ର ଗମ୍ଭୀର ସ୍ୱରରେ ସେ କହୁଥିଲେ—

ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିଆନ
ଶିଖ ଜୈନ ଯେତେ ଭାରତ ସନ୍ତାନ ।

ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ହିଷ୍ଟ, ହିତ ତେଜ ଅଭିମାନ ।"

ଗୋପବନ୍ଧୁ ଗର୍ବ, ଅଭିମାନ, ଅହଙ୍କାର ଓ ବଡ଼ିମାର ବହୁ ଊର୍ଦ୍ଧରେ ଥିଲେ । ନିରଳସ, ନିରାଡ଼ମ୍ବର ଜୀବନର ମହାମହିମ ତାଙ୍କୁ ପରିପୁଷ୍ଟ କରିଥିଲା ତାଙ୍କର ନମ୍ରତା ଓ ଉଦାରତା । ନିଜକୁ ସେ ସର୍ବଦା ଅତି କ୍ଷୁଦ୍ର ଓ ଅକିଞ୍ଚନ ମନେକରୁଥିଲେ । ନିଜ ପ୍ରତି ତାଙ୍କର ଯେଉଁ ଧାରଣା ଥିଲା, ତାକୁ ବ୍ୟକ୍ତ କରି ସେ ଲେଖିଛନ୍ତି—

"ମୁଁ ଅତି ସାମାନ୍ୟ ତାଙ୍କ ଅନୁଚର
ତୁମ ଅକିଞ୍ଚନ ଆତ୍ମୀୟ ସୋଦର ।"

ଗୋପବନ୍ଧୁ କେବଳ ଆଦର୍ଶବାଦୀ ନ ଥିଲେ, ତାଙ୍କ ବ୍ୟକ୍ତିତ୍ୱରେ ଆଦର୍ଶବାଦ ଓ ବାସ୍ତବବାଦର ଏକ ଅପୂର୍ବ ସମନ୍ୱୟ ଘଟିଥିଲା । ସେ ଥିଲେ ତପସ୍ୱୀ କିନ୍ତୁ କର୍ମଯୋଗୀ । ତ୍ୟାଗ, ତିତିକ୍ଷା, ସେବା ଓ ପ୍ରେମ ଥିଲା ତାଙ୍କର ମହାନ୍ ଆଦର୍ଶ ଏବଂ କର୍ମମୟ ଜୀବନର ଶ୍ରେଷ୍ଠ ଉପାଦାନ । 'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ' ନୀତିରେ ଅନୁପ୍ରାଣିତ ହୋଇ ସେ ଗାଇଥିଲେ—

"ମାନବ ଜୀବନ ନୁହଇ କେବଳ ବର୍ଷ, ମାସ, ଦିନ ଦଣ୍ଡ
କର୍ମେ ଜୀଏଁ ନର, କର୍ମ ଏକା ତାର ଜୀବନର ମାନଦଣ୍ଡ ।"

ସେ ଥିଲେ ଜଣେ ନିର୍ଭୀକ ଆଶାବାଦୀ । ଶତ ବାଧାବିଘ୍ନ ସତ୍ତ୍ୱେ ସେ କେବେହେଁ ସ୍ୱୀୟ ଅଭିଳାଷରୁ ବିରତ ହୋଇ ନ ଥିଲେ । ଶତ ବିଫଳତା ସତ୍ତ୍ୱେ ତାଙ୍କର ଦୂରଦୃଷ୍ଟି ବଳରେ ସେ ସର୍ବଦା ଅନ୍ଧକାର ମଧ୍ୟରେ ଆଲୋକର ସନ୍ଧାନ ପାଉଥିଲେ । ତେଣୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଆଶ୍ୱାସନାର ବାଣୀ ଶୁଣାଇ ସେ କହିଥିଲେ—

"ସୁଖ ଦୁଃଖ ଚକ୍ର ଘୂରେ ନିରନ୍ତର
ଏକ ପରେ ଆନ ଆସିବ ନିକର ।"

ସେ କେବେହେଁ ପଳାୟନପନ୍ଥୀ ବା ବିଷାଦବାଦୀ ନ ଥିଲେ, ବରଂ ବିପଦର ସମ୍ମୁଖୀନ ହେବାକୁ ସେ କର୍ତ୍ତବ୍ୟ ସ୍ୱରୂପ ମନେ କରୁଥିଲେ ଏବଂ ସେଇଥିରେ ହିଁ ସେ ଚିରନ୍ତନ ଆନନ୍ଦର ସନ୍ଧାନ ପାଉଥିଲେ । ତେଣୁ ସେ ଲେଖିଥିଲେ—

"ବିପଦ ପ୍ରଭୁଙ୍କ କଷଟି ପାଷାଣ
ପରଖନ୍ତି ତହିଁ ନର ହୃଦ ଟାଣ ।"

ଏହିପରି ବିଭିନ୍ନ ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ଥିଲା ଏକ ଅପୂର୍ବ, ଅନୁପମ ବ୍ୟକ୍ତିତ୍ୱ । ତାଙ୍କର ସମସ୍ତ ସାଧନାରେ ଭରି ରହିଥିଲା ଆନ୍ତରିକତା, ନୈଷ୍ଠିକତା, ନୈସର୍ଗିକତା ଏବଂ ପୂର୍ଣ୍ଣପ୍ରାଣତା । 'ତ୍ୟାଗରେ ଭୋଗ'—ଏହା ହିଁ ଥିଲା ତାଙ୍କର ଚରମ ଆଦର୍ଶ । ତାଙ୍କର ମାନବପ୍ରୀତି କୌଣସି ପ୍ରଦେଶ ବା ଦେଶର ସୀମା ମଧ୍ୟରେ ଆବଦ୍ଧ ନ ଥିଲା, ତାହା ଥିଲା ବିଶ୍ୱ ପରିବ୍ୟାପ୍ତ । ତାଙ୍କର ସେହି ଶାଶ୍ୱତ ଉକ୍ତି —

"କାପୁରୁଷ ପରି ମରିବା ଜଗତେ ନୁହେଁ ନର ପଉରୁଷ
ପରହିତ ସାଧି ମରେ ଯେ ମର୍ତ୍ତ୍ୟରେ ସେହି ଏକା ସୁପୁରୁଷ ।"

ତାଙ୍କ ନିଜ ପ୍ରତି ହିଁ ପ୍ରଯୁଜ୍ୟ ଏବଂ ତାଙ୍କ ବ୍ୟକ୍ତିତ୍ୱର ପରିମାପକ ।



# ଗୋପବନ୍ଧୁ ଯୁଗର ଓଡ଼ିଆ ଛାତ୍ର

## ଡକ୍ଟର ସତ୍ୟନାରାୟଣ ରାଜଗୁରୁ

[ ପାରଳାଖେମୁଣ୍ଡି ରାଜଗୁରୁ ବଂଶର ସୁସନ୍ତାନ ଶ୍ରୀ ରାଜଗୁରୁ କେବଳ ଜଣେ ବିଶିଷ୍ଟ ଇତିହାସ ଗବେଷକ ବା ପ୍ରତ୍ନତତ୍ତ୍ୱ ବିଶେଷଜ୍ଞ ନୁହନ୍ତି, ସେ ଏକାଧାରରେ ଜଣେ କବି, ଔପନ୍ୟାସିକ, ଗାଳ୍ପିକ ଓ ନାଟ୍ୟକାର ମଧ୍ୟ । ଭାରତର ବିଭିନ୍ନ ଭାଷାର ପତ୍ରପତ୍ରିକାରେ ତାଙ୍କର ବହୁ ଉପାଦେୟ ପ୍ରବନ୍ଧ ପ୍ରକାଶ ପାଇଛି ଏବଂ ତାଙ୍କର ଅନନ୍ୟସାଧାରଣ ଗ୍ରନ୍ଥ "Inscriptions of Orissa" ଓ History of the Ganges" ଓଡ଼ିଶା ସରକାର ପ୍ରକାଶ କରିଛନ୍ତି । ସମ୍ପ୍ରତି ୧୯୭୬ରେ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ପାଇଛନ୍ତି । ଆଲୋଚ୍ୟ ପ୍ରବନ୍ଧରେ ଲେଖକ ସ୍ୱୀୟ ଛାତ୍ରଜୀବନର ଅନୁଭୂତିକୁ କେନ୍ଦ୍ର କରି ଛାତ୍ରସମାଜକୁ ପଣ୍ଡିତ ଗୋପବନ୍ଧୁ ଯେଉଁ ମହତ୍ତ୍ୱ ଉପଦେଶବାଣୀ ଶୁଣାଇଥିଲେ ତା ଉପରେ ସମ୍ୟକ୍ ଆଲୋକପାତ କରିଛନ୍ତି ।—ସ ]

ଆଜକୁ ପ୍ରାୟ ୫୦ ବର୍ଷ ଆଗେ, ଯେଉଁ ସମୟରେ ଓଡ଼ିଆମାନେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ପାଇ ନ ଥିଲେ, ୪ଟି ପ୍ରଦେଶରେ ଅର୍ଥାତ୍ ବଙ୍ଗଳା, ବିହାର, ମାନ୍ଦ୍ରାଜ ଏବଂ ମଧ୍ୟପ୍ରଦେଶରେ ଭାଗ ଭାଗ ହୋଇ ଅଶେଷ ଦୁଃଖଯନ୍ତ୍ରଣା ଭୋଗୁଥିଲେ, ପୁଣି ଆକୁଳ ପ୍ରାଣରେ 'ଉତ୍କଳ ସମ୍ମିଳନୀ' ଜରିଆରେ ତତ୍କାଳୀନ ବ୍ରିଟିଶ୍ ସରକାରଙ୍କୁ ଗୁହାରି କରୁଥିଲେ—ଓଡ଼ିଶାର ସମସ୍ତ ବିଚ୍ଛିନ୍ନାଞ୍ଚଳ ଏକାଠି କରି ଗୋଟିଏ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଢ଼ିବା ପାଇଁ, ସେ ସମୟରେ ଏ ଦେଶର ନେତାମାନଙ୍କ ମଧ୍ୟରୁ ଦୁଇ ଜଣ ଦେଶପ୍ରାଣ ମହାନ୍ ବ୍ୟକ୍ତି ଏ ଜାତିର ଆଶା ଆକାଙ୍କ୍ଷା

ଫଳବର୍ଷ କରିବାକୁ ଆପ୍ରାଣ ଚେଷ୍ଟା କରୁଥିଲେ । ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ପଣ୍ଡିତ ଗୋପବନ୍ଧୁ ଦାସ ଏବଂ ଅନ୍ୟ ଜଣକ ମଧୁସୂଦନ ଦାସ ଓରଫ ମିଷ୍ଟର ଦାସ । ଗୋପବନ୍ଧୁ ସେତେବେଳେ ଅସହଯୋଗ ଆନ୍ଦୋଳନ (Non Co-operation Movement)ରେ ଅଗ୍ରଣୀ ହୋଇ କଂଗ୍ରେସ ସଙ୍ଗଠନରେ ଯୋଗ ଦେଇ ଥିବାରୁ ତତ୍କାଳୀନ ବ୍ରିଟିଶ୍ ସରକାର ତଥା ସାମନ୍ତ ରଜା ଓ ଜମିଦାରମାନଙ୍କ ବକ୍ରଦୃଷ୍ଟିରେ ପଡ଼ି ବହୁ ନିର୍ଯ୍ୟାତନା ଭୋଗିଥିଲେ । କେତେକ ଓଡ଼ିଆ ଜମିଦାର ଓ ରଜା ତାଙ୍କୁ ଆନ୍ତରିକ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ସୁଦ୍ଧା ପ୍ରକାଶ୍ୟରେ ତାଙ୍କୁ ସମର୍ଥନ ଜଣାଇବାକୁ ସାହସ କରୁଥିଲେ । କାରଣ ସେମାନେ ଜାଣିଥିଲେ ଯେ ପଣ୍ଡିତ ଗୋପବନ୍ଧୁଙ୍କୁ ସାହାଯ୍ୟ କରିବା ଫଳରେ ତାଙ୍କୁ ବ୍ରିଟିଶ ସରକାରଙ୍କ କୋପଦୃଷ୍ଟିର ଶରବ୍ୟ ହେବାକୁ ପଡ଼ିବ ।

ଭାଷା ଭିତ୍ତିରେ ପ୍ରଦେଶ ଗଠନ ନୀତି ସପକ୍ଷରେ ମଣ୍ଟେଗୁ ଓ ଚେମ୍‌ସ୍‌ଫୋର୍ଡ଼ଙ୍କ ରିପୋର୍ଟ ପ୍ରକାଶ ପାଇଲା ପରେ ଓଡ଼ିଆମାନଙ୍କ ପକ୍ଷରୁ "ସମ୍ମିଳନୀ" ଜରିଆରେ ଦେଶମିଶ୍ରଣ ଆନ୍ଦୋଳନ ବାସ୍ତବ ରୂପ ଧାରଣ କଲା । ଏଥିରେ ବ୍ରିଟିଶ୍ ସରକାର ମଧ୍ୟ ବିପଦ ଗଣିଲେ । କୌଣସି ପ୍ରକାରେ ଓଡ଼ିଆମାନଙ୍କୁ ସନ୍ତୁଷ୍ଟ ରଖିବା ଉଦ୍ଦେଶ୍ୟରେ ବୋଧହୁଏ ବିଚ୍ଛିନ୍ନ ଅଞ୍ଚଳବାସୀ ଓଡ଼ିଆମାନଙ୍କର ସମର୍ଥନ ସେହି ଆନ୍ଦୋଳନ ସପକ୍ଷରେ କେତେଦୂର ରହିଛି ତାହା ଜାଣିବାକୁ ଗୋଟିଏ କମିଶନ ଗଢ଼ାହେଲା । ଏ କମିଶନ୍ "ଫିଲିପ୍ ଓ ଡ଼ଫ୍ କମିଶନ୍" ନାମରେ ପରିଚିତ । ୧୯୨୪ ମସିହାରେ * ଏ କମିଶନ୍ ମାନ୍ଦ୍ରାଜର ତତ୍କାଳୀନ ଭିଶାଖାପାଟଣା ଜିଲ୍ଲା (ବର୍ତ୍ତମାନର ଜୟପୁର ବା କୋରାପୁଟ) ଏବଂ ଗଞ୍ଜାମ ଜିଲ୍ଲାର କେତେକ ଜମିଦାରୀ ଅଞ୍ଚଳରେ ତଥା ବ୍ରହ୍ମପୁର ସମେତ କେତେକ ଖାସମାହଲ ଅଞ୍ଚଳରେ ତାଙ୍କର ଗସ୍ତ ଓ ଅନୁସନ୍ଧାନ କାର୍ଯ୍ୟକ୍ରମ ସ୍ଥିର କଲେ । ଏହା ଫଳରେ ସେହି ସେହି ଜିଲ୍ଲାମାନଙ୍କରେ ଓଡ଼ିଆ ଓ

---

* ପ୍ରଥମ ସଂସ୍କରଣରେ ୧୯୨୭ ବୋଲି ଯାହା ପ୍ରକାଶ ପାଇଥିଲା ତାହା ଠିକ୍ ନୁହେଁ । ଏ ସମ୍ପର୍କରେ ଅନ୍ୟତ୍ର ପ୍ରକାଶିତ ସ୍ୱୟଂ ଫିଲିପ୍‌ଙ୍କ ଲେଖା ଓ ଶ୍ରୀ ଲକ୍ଷ୍ମୀଚରଣ ସାହୁଙ୍କ ଲେଖା ଦ୍ରଷ୍ଟବ୍ୟ ।

ତେଲୁଗୁ ଭାଷାଭାଷୀଙ୍କ ମଧ୍ୟରେ ଏକ ତୀବ୍ର ଉତ୍ତେଜନା ଦେଖାଦେଲା । ଏଥିରେ ଅଧିକାଂଶ ଭାଗ ବ୍ରହ୍ମପୁର ଓ ପାରଳାଖେମୁଣ୍ଡି କଲେଜର ଛାତ୍ରମାନେ ଗ୍ରହଣ କରିଥିଲେ ।

ମୋର ସ୍ମରଣ ହେଉଛି, ସେତେବେଳେ ଫିଲିପ୍-ଡ଼ଫ୍ କମିଶନ ପାରଳାଖେମୁଣ୍ଡି ଯିବା ପୂର୍ବବର୍ତ୍ତୀ କାଳରେ ମୁଁ ପାରଳାଖେମୁଣ୍ଡି ହାଇସ୍କୁଲର ଜଣେ ଛାତ୍ର ଥିଲି । ଆମର ଗୋଟିଏ ସାହିତ୍ୟ-ସଂସଦ ଥିଲା । ସେଥିର ସମ୍ପାଦକ ରୂପେ ମୁଁ ସେତେବେଳେ ସଂସଦ ପକ୍ଷରୁ ନିର୍ବାଚିତ ହୋଇଥାଏ । ତତ୍ରସ୍ଥ ହାଇସ୍କୁଲ ଓ କଲେଜ ଛାତ୍ରମାନଙ୍କୁ ପୋଷାକ ସମ୍ବନ୍ଧରେ ଗୋଟିଏ ନୀତି ମାନି ଚଳିବାକୁ ପଡ଼ୁଥିଲା । ପ୍ରତ୍ୟେକ ଛାତ୍ର ମୁଣ୍ଡରେ ଟୋପି ଲଗାଇ କ୍ଲାସରେ ବସିବାକୁ ବାଧ୍ୟ ହେଉଥିଲେ । ମାତ୍ର ଦକ୍ଷିଣ ଭାରତୀୟ ରୀତି ଅନୁସାରେ ଟୋପି ଲଗାଇ ଯିବାକୁ ଓଡ଼ିଆ ଛାତ୍ରମାନେ ଇଚ୍ଛୁକ ନ ଥିଲେ । କିନ୍ତୁ ତେଲୁଗୁ ହେଡ଼ମାଷ୍ଟର ଆଇ: କାନକାଚଲଂଙ୍କ କଠୋର ଶାସନକୁ ଅମାନ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ଏକଥା ଦିନେ ଆମର ଛାତ୍ରସଂସଦରେ ଆଲୋଚିତ ହେଲା । ଆମେ ସମସ୍ତେ ଶପଥ କଲୁ, ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଓଡ଼ିଆ ଛାତ୍ର କେହି ହେଲେ ଟୋପି ପିନ୍ଧି କ୍ଲାସକୁ ଯିବୁ ନାହିଁ ।

ସବୁ ଯୁଗରେ, ସବୁ ସ୍ଥାନରେ ଛାତ୍ର-ସଂସଦର ଯେପରି ମନୋଭାବ ଏବଂ ଦୃଢ଼ତା ପ୍ରକାଶ ପାଇଥାଏ, ଆମର ସଂକଳ୍ପ ମଧ୍ୟ ସେଥିରୁ ଭିନ୍ନ ନଥିଲା । ଗୋଟିଏ ଉଦ୍ଦାମ ଜଳୋଚ୍ଛ୍ୱାସ ଯେତେ ଅଧିକ ବାଧା ପାଏ, ତାର ଭୀଷଣତା ଓ ପ୍ରଖରତା ସେତିକି ଅଧିକ ଭାବରେ ବଢ଼ିଯାଏ । ପ୍ରକୃତିର ଏ ନିୟମ ସଙ୍ଗେ ଛାତ୍ର ଆନ୍ଦୋଳନ ତୁଳନୀୟ । ଆନ୍ଧ୍ର ପ୍ରଧାନ ଶିକ୍ଷକଙ୍କ ଶାସନ ଯେତେ କଠୋର ହେଲେ ସୁଦ୍ଧା ଛାତ୍ର-ସଂସଦ ସେଥିରେ ଅବନତ ହେଲା ନାହିଁ, ବରଂ ତା' ପ୍ରାଣରେ ଦେଶମାତୃକାର ଭାବ ଓ ଜାତୀୟତା ସ୍ପଷ୍ଟ ରୂପେ ଆତ୍ମପ୍ରକାଶ କଲା ।

ଯେଉଁ ଦିନଟି "ଟୋପି-ବର୍ଜନ-ଦିବସ" ରୂପେ ସ୍ଥିର କରାଯାଇ-ଥିଲା, ସେଦିନ ପାରଳାଖେମୁଣ୍ଡି ହାଇସ୍କୁଲ ଓ କଲେଜରେ ଦେଖାଗଲା —କେହି ଜଣେ ହେଲେ ଓଡ଼ିଆ ଛାତ୍ର ମୁଣ୍ଡରେ ଟୋପି ଲଗାଇ କ୍ଲାସକୁ

ଯାଇ ନାହିଁ । ଏଥିରେ ହେଡ଼ମାଷ୍ଟର ବଡ଼ ବିଚଳିତ ହେଲେ । ଆମ ସମସ୍ତଙ୍କୁ ଇତିହାସ କ୍ଳାସରୁ ବହିଷ୍କୃତ କରିଗଲା । ଗର୍ବମିଶ୍ରିତ ଆନନ୍ଦରେ ଆମେମାନେ ବାହାରକୁ ଚାଲିଆସିଲୁ । ସେତେବେଳେ କଲେଜର ପ୍ରିନ୍‌ସିପାଲ ଥିଲେ—ସ୍ୱର୍ଗୀୟ ଏସ୍. ରାଓ । ସେ ଅଳ୍ପ କିଛି ଦିନ ପୂର୍ବରୁ ବିଲାତରୁ ଫେରିଥାନ୍ତି । ତାଙ୍କର ଅଜା ସ୍ୱନାମଧନ୍ୟ କବି ମଧୁସୂଦନ ରାଓଙ୍କ ଉଦାର ରକ୍ତ ତାଙ୍କ ଧମନୀରେ ବହୁଥିଲା । ସେ ଆମମାନଙ୍କୁ ଆଶ୍ୱାସନା ଦେଇ କହିଲେ—"ତୁମେ ସମସ୍ତେ କ୍ଳାସରେ ଯାଇ ବସ । ମୁଁ ଏଥିର ପ୍ରତିକାର ବ୍ୟବସ୍ଥା କରୁଛି ।" ଆମେ ସବୁ ବିଜୟଗର୍ବରେ ଉତ୍‌ଫୁଲ୍ଲ ହୋଇ ନିଜ ନିଜ କ୍ଳାସରେ ଯାଇ ବସିଲୁ । ଅଳ୍ପକ୍ଷଣ ପରେ ପ୍ରିନ୍‌ସିପାଲ୍‌ଙ୍କଠାରୁ ଗୋଟିଏ ସର୍କୁଲର ଆସିଲା, "ଓଡ଼ିଆ ଛାତ୍ରମାନେ ଟୋପି ଲଗାଇବାକୁ ବାଧ୍ୟ ନୁହନ୍ତି ।" ଏଥିରେ ତେଲୁଗୁ ଶିକ୍ଷକମାନେ ବିମର୍ଷ ହୋଇପଡ଼ିଲେ; ହେଡ଼୍‌ମାଷ୍ଟର୍ ନିଜେ ଘୋର ଅପମାନିତ ହେଲେ ।

ଆମ ହାଇସ୍କୁଲ ଓ କଲେଜ ପାରଳାଖେମୁଣ୍ଡି ମହାରାଜଙ୍କ ଅର୍ଥରେ ପରିଚାଳିତ ହେଉଥିବାରୁ ନିଜେ ମହାରାଜା ଥିଲେ କଲେଜ-କମିଟିର ପ୍ରେସିଡେଣ୍ଟ୍ । ହେଡ଼ମାଷ୍ଟର ଏ ପ୍ରସଙ୍ଗ ମହାରାଜାଙ୍କୁ ଜଣାଇଲେ ଏବଂ ପ୍ରିନ୍‌ସିପାଲ୍‌ଙ୍କ କାର୍ଯ୍ୟର ପ୍ରତିବାଦ କଲେ । ପରେ ଶୁଣାଗଲା ଯେ ପ୍ରିନ୍‌ସିପାଲ୍ ଓଡ଼ିଆ ଛାତ୍ରମାନଙ୍କ ସପକ୍ଷରେ ନୀତି ଦୃଷ୍ଟିରୁ ବାଦ କରିଥିଲେ ସୁଦ୍ଧା ମହାରାଜା ସେଥିରେ ତୃପ୍ତ ହେଲେ ନାହିଁ । ତଥାପି ଛାତ୍ରମାନଙ୍କର ଦୃଢ଼ତା ଦେଖି ସେ ଆଦେଶ ଦେଲେ ଯେ, ଓଡ଼ିଆ ଛାତ୍ରମାନେ ଟୋପି ବଦଳରେ ତାଙ୍କର ଜାତୀୟ ପାଗ (National turban) ପିନ୍ଧି କ୍ଳାସକୁ ଯାଇପାରନ୍ତି । ଶେଷରେ ଦେଖାଗଲା ଯେ, ଓଡ଼ିଆ ପିଲାଏ ଖଣ୍ଡେ ଖଣ୍ଡେ ନାଲି ଚଦର କାନ୍ଧରେ ପକାଇ ସ୍କୁଲକୁ ଚାଲିଛନ୍ତି ।

ଏ ଘଟଣାର ଅଳ୍ପ କିଛିଦିନ ପରେ (୧୯୨୪ ମସିହାରେ) ✻ 'ଫିଲପ୍ ଉଫ୍-କମିଶନ୍' ଏ ଅଞ୍ଚଳ ଗସ୍ତ କରିବା ସମ୍ବାଦ ଆମେ

✻ ଏ ପ୍ରବନ୍ଧ ଶେଷରେ ପ୍ରଦତ୍ତ ସମ୍ପାଦକୀୟ ଟିପ୍‌ପଣୀ ଦ୍ରଷ୍ଟବ୍ୟ ।

ପାଇଲୁ । 'ଓଡ଼ିଆ ଗ୍ରୁନ ସଂସଦ' ଗୋଟିଏ ଜାତୀୟ ଆନ୍ଦୋଳନରେ ଜୟ ଲାଭ କରିଥିବାରୁ ତାଙ୍କ ମଧ୍ୟରେ ନିଷ୍ଠା ଏବଂ ସାହସ ଅଧିକ ଦୃଢ଼ତା ଲାଭକଲା । 'ସାହିତ୍ୟ-ସଂସଦ' ପକ୍ଷରୁ ଆମେ ବାରମ୍ବାର ସଭା କରି 'କମିଶନ୍' ଏଠାକୁ ଆସିଲେ ଆମ ପକ୍ଷରୁ କଅଣ ସବୁ କରିବାକୁ ହେବ ସେଥିର ଗୋଟିଏ ମସୁଧା କରିଥିଲୁ । ସେତେବେଳେ ପାରଳାର ସୁନାମଧନ୍ୟ ନାଟ୍ୟାଚାର୍ଯ୍ୟ ସ୍ୱର୍ଗୀୟ ଆପନା ପରିଚ୍ଛା ତାଙ୍କର ମଠରେ ଓଡ଼ିଶାର ନେତାମାନଙ୍କ ପାଇଁ ରହିବା ଓ ଖିଆପିଆର ସମସ୍ତ ଭାର ବହନ କରୁଥିଲେ । ପଣ୍ଡିତ ଗୋପବନ୍ଧୁ, ଗୋଦାବରୀଶ ମିଶ୍ର, ବିଶ୍ୱନାଥ ଦାସ, ଶଶିଭୂଷଣ ରଥ ପ୍ରଭୃତି ଯେତେ ଯେତେ ନେତା ପାରଳା ଗସ୍ତରେ ଯା'ନ୍ତି, ସେ ସମସ୍ତଙ୍କର ଏକମାତ୍ର ଆଶ୍ରୟସ୍ଥଳୀ ଥିଲା—ପରିଚ୍ଛାଙ୍କ ଶ୍ରୀ ରସିକରାଜ ମଠ । ସେଠାରେ ଆମେ ଓଡ଼ିଆ ଯୁବମାନେ ସମ୍ମିଳିତ ହୋଇ ଆମ ପକ୍ଷରୁ ଯେତେସବୁ ଆୟୋଜନ ଏବଂ ଆଲୋଚନା କରିବା କଥା ସେସବୁ କରୁଁ । ସ୍ୱର୍ଗୀୟ ପରିଚ୍ଛା ଆମମାନଙ୍କୁ ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରନ୍ତି । ସେତେବେଳେ ପାରଳାର ମହାରାଜା ମାନ୍ଦ୍ରାଜରେ ଅବସ୍ଥିତ ବ୍ରିଟିଶ ଅଫିସର୍ ତଥା ଆନ୍ଧ୍ରମାନଙ୍କ ପ୍ରଭାବରେ ପଡ଼ି ଓଡ଼ିଆ ଆନ୍ଦୋଳନକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ । ତେଣୁ ପରିଚ୍ଛାଙ୍କ ମଠ ହିଁ ଥିଲା ଆମମାନଙ୍କର ଏକମାତ୍ର ଆଶ୍ରୟସ୍ଥଳୀ । ବଙ୍ଗଳାର ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କ ରଚିତ "ଆନନ୍ଦମଠ"ର ଆଦର୍ଶରେ "ପରିଚ୍ଛାଙ୍କ ମଠ" ଦକ୍ଷିଣାଞ୍ଚଳ ଓଡ଼ିଆଙ୍କ ଏକ ଜାତୀୟ କେନ୍ଦ୍ର ରୂପେ ପରିକଳ୍ପିତ ହୋଇଥିଲା ।

ଯେବେ ଶ୍ରୀ ରସିକରାଜ ମଠରେ ବସି କେତେକ ଯୁବ ସାହିତ୍ୟ ଆଲୋଚନାରେ ଲାଗିଛୁ, ହଠାତ୍ ଶୁଣିଲୁ ପଣ୍ଡିତ ଗୋପବନ୍ଧୁ ଦାସ ପାରଳା ଗସ୍ତରେ ଆସୁଛନ୍ତି । ତାଙ୍କୁ ଅଭ୍ୟର୍ଥନା କରିବା ଭାର ଆମରି ଉପରେ ପଡ଼ିଲା । କଂଗ୍ରେସ ସଭା କରିବା ଉଦ୍ଦେଶ୍ୟରେ ସେ ଏଠାକୁ ଆସୁଥିଲେ ସୁଦ୍ଧା ଏ ଅଞ୍ଚଳର ଓଡ଼ିଆମାନଙ୍କ ଆନ୍ଦୋଳନ ଉପରେ ଦୃଷ୍ଟି ରଖିବା ଆବଶ୍ୟକ, ପୁଣି ଫିଲିପ୍ ଓ ଡ଼ଫ୍-କମିଶନ୍ ଆଗରେ ଆମ ପକ୍ଷରୁ କିପରି 'ସ୍ମାରକପତ୍ର' (Memorandum) ଉପସ୍ଥାପିତ କରିବା ଆବଶ୍ୟକ, ଏସବୁ ବିଷୟରେ ତାଙ୍କଠାରୁ ସୁପରାମର୍ଶ ଲାଭ କରିବା

ଅଭିଳାଷ ଆମର ରହିଥିଲା । ଗୁହମାନେ 'ବାନରସେନା' ପରି କାର୍ଯ୍ୟ ହାସଲ କରିବାକୁ ସବୁ ଯୁଗରେ ପ୍ରସ୍ତୁତ; କିନ୍ତୁ ସେମାନଙ୍କୁ ଉଚିତ ପନ୍ଥା ଦେଖାଇଦେବା ଭାର ବିଚାରଶୀଳ ନେତାଙ୍କ ଉପରେ । ଏ ସତ୍ୟଟି ସବୁ ଯୁଗରେ, ସବୁ ସ୍ଥାନରେ ପ୍ରଯୁଜ୍ୟ । ଆମେ ପଣ୍ଡିତ ଗୋପବନ୍ଧୁଙ୍କ ଅଭ୍ୟର୍ଥନା ଆୟୋଜନରେ ଲଗି ପଡ଼ିଲୁ ।

ଯଥା ସମୟରେ ବ୍ରହ୍ମପୁରଠାରୁ ଗୋପବନ୍ଧୁ ଓ ତାଙ୍କର ସହଯାତ୍ରୀ କେତେ ଜଣ ପାରଳାଖେମୁଣ୍ଡିରେ ଆସି ପହଞ୍ଚିଲେ । ତାଙ୍କ ପଛେ ପଛେ ପୁଲିସ ଓ ସି· ଆଇ· ଡ଼ି. ଦଳ ଲାଗିଥାନ୍ତି । ମହାରାଜାଙ୍କ କଲେଜ ପ୍ରାଙ୍ଗଣ କିମ୍ବା ମ୍ୟୁନିସିପାଲିଟି ମଇଦାନରେ ସଭା କରିବା ଅନୁମତି ତାଙ୍କୁ ଦିଆଗଲା ନାହିଁ । ଓଡ଼ିଆ ଗୁହମାନେ ସମସ୍ତେ ଘୋର ହତାଶ ହୋଇପଡ଼ିଲୁ । ଏକଥା ସ୍ୱର୍ଗୀୟ ଆପନା ପରିଚ୍ଛାଙ୍କୁ କହିଲୁ । ସେ ହସି ହସି ଆମକୁ ପରାମର୍ଶ ଦେଲେ—"ଏମିତି ହେବ ବୋଲି ମୁଁ ଆଗରୁ ଅନୁମାନ କରିଥିଲି । ତେଣୁ ଦାସେ ଆପଣଙ୍କ ରହିବା ଓ ଖାଇବା ପାଇଁ ଆଗରୁ ଆମ ମଠରେ ସବୁ ବ୍ୟବସ୍ଥା କରି ରଖିଛୁ । ଭଲ ହେଲା । ଆମେ ଏଠି ନିଭୃତରେ ତାଙ୍କ ସଙ୍ଗେ ପରାମର୍ଶ କରିପାରିବା । ଗୁହମାନଙ୍କ ମୁହଁରେ ହସ ଖେଳିଲା । ସମସ୍ତେ ଅପାର ଉତ୍ସାହରେ ତୋରଣ ସଜାଇ ଦେଇ ପଣ୍ଡିତ ଗୋପବନ୍ଧୁଙ୍କୁ ନେଇ ପରିଚ୍ଛା ମଠରେ ଅଭ୍ୟର୍ଥନା କଲୁ ।

ସେଦିନର ଘଟଣାବଳୀ ଓ ପଣ୍ଡିତ ଗୋପବନ୍ଧୁଙ୍କ ଉତ୍ସାହୋଦ୍ଦୀପକ ଉପଦେଶଗୁଡ଼ିକ ପ୍ରାୟ ୫୦ ବର୍ଷ ପରେ ମଧ୍ୟ ସେଦିନ କାଲି ପରି ମୋ ସ୍ମୃତି ପଥରେ ଉଦିତ ହେଉଛି । ପରିଚ୍ଛାଙ୍କ ମଠରେ ସ୍ଥାନାଭାବ ଦୃଷ୍ଟିରୁ ମୁକ୍ତାକାଶ-ସଭା ନ କରି ଗୋଟିଏ ଆଲୋଚନା ସଭାର ଆୟୋଜନ କରାଗଲା । ସାହିତ୍ୟ-ସଂସଦର କେତେକ କର୍ମୀ ଗୋପବନ୍ଧୁଙ୍କ ସମ୍ମୁଖରେ ବସି ଯେଉଁସବୁ ପ୍ରଶ୍ନ କରିଥିଲୁ, ପୁଣି ତାଙ୍କଠାରୁ ଯେଉଁ ଉତ୍ତର ପାଇଥିଲୁ ସେଥିରୁ କେତୋଟି ନିମ୍ନରେ ସଂକ୍ଷେପରେ ଦିଆଗଲା :—

ପ୍ରଶ୍ନ—କଂଗ୍ରେସ ଅନୁଷ୍ଠାନର ଭୁଙ୍ଗ ସମ୍ମିଳନରେ ଓଡ଼ିଶା ପ୍ରଦେଶ ଗଠନ ପାଇଁ କ'ଣ ବ୍ୟବସ୍ଥା କରାଯାଉଛି ?

ଉତ୍ତର—କଂଗ୍ରେସ ଏକା ଓଡ଼ିଶାର ନୁହେଁ । ଏହା ଗୋଟିଏ ମହାଭାରତୀୟ ଅନୁଷ୍ଠାନ । ସବୁ ଜାତିର ସ୍ୱାର୍ଥକୁ ଜଗିରଖି ବିଦେଶୀ ଶାସକଙ୍କ କବଳରୁ ଭାରତକୁ ମୁକ୍ତ କରିବା ହେଉଛି କଂଗ୍ରେସର ମୁଖ୍ୟ ଉଦ୍ଦେଶ୍ୟ ।

ପ୍ରଶ୍ନ—ତା'ହେଲେ କ'ଣ ସୀମା ସମସ୍ୟା ଏବଂ ଓଡ଼ିଶାର ଜାତୀୟ ଆନ୍ଦୋଳନରେ ଆପଣମାନେ ଯୋଗ ଦେବେ ନାହିଁ ?

ଉତ୍ତର—କିଏ କହିଲା ? ଦୁଇଟି ସ୍ୱତନ୍ତ୍ର ସମସ୍ୟା ହେଲେ ସୁଦ୍ଧା ଆମର କର୍ତ୍ତବ୍ୟ ଉଭୟରେ ସମାନ । ମଗର କ'ଣ ଏକା ଲୁଣି ପାଣିରେ ରହେ—ମିଠା ପାଣି ତାକୁ ସୁହାଏନି ? (ହାସ୍ୟ)

ପ୍ରଶ୍ନ—ଜାତୀୟ ଆନ୍ଦୋଳନରେ ଛାତ୍ରମାନେ କିପରି ସାହାଯ୍ୟ କରି-ପାରିବେ ?

ଉତ୍ତର—(ହସି ହସି) କାହିଁକି ? ଯେମାନେ ନିଜକୁ ନିଜେ ଯେମିତି ସାହାଯ୍ୟ କରନ୍ତି, ଆଉ ବୃଦ୍ଧ ବାପା-ମାଆଙ୍କ ସେବା କରନ୍ତି !

ପ୍ରଶ୍ନ—କଂଗ୍ରେସ କର୍ମୀମାନେ ମହାଭାରତୀୟ-ପଥର ପଥିକ । ସେମାନେ କ'ଣ ଓଡ଼ିଆ ଜାତିର ସ୍ୱାର୍ଥରେ ବାହାରିଲା ବେଳେ ଆନ୍ଧ୍ର, ବଙ୍ଗ, ବିହାରୀ ପ୍ରଭୃତି ଦେଶର ଭାଇମାନଙ୍କ ମନରେ ଯେଉଁଥିରେ ଆଘାତ ଲାଗିବ, ତାହା କରିବାକୁ ଯିବେ ?

ଉତ୍ତର—(ହସି ହସି) ଜଣେ ତୀର୍ଥଯାତ୍ରୀ ପୁରୀରେ ଜଗନ୍ନାଥଙ୍କ ଦର୍ଶନ କଲେ ଯଦି ଗଣେଶ, ଲକ୍ଷ୍ମୀ, ବିମଳା, ଲୋକନାଥ ଏ ସମସ୍ତେ ତା ପ୍ରତି ଖପ୍ପା ହେବେ ବୁଝନ୍ତୁ—ସେଥିରେ ତୀର୍ଥଯାତ୍ରୀର କ'ଣ ଯାଏ ଆସେ ?

ଏପରି ପ୍ରଶ୍ନୋତ୍ତର ଛଳରେ ବହୁ ଉପଦେଶ ଦେଇ ଆମମାନଙ୍କୁ ଦେଇ ଶେଷରେ ଟିକିଏ ଆଖି ଛଳ ଛଳ କରି ଗମ୍ଭୀର ସ୍ୱରରେ କହିଲେ, "ବାପାମାନେ, ତମେ ସମସ୍ତେ ମିଶି 'ଓଡ଼ିଆ ଜାତି' ଗଢ଼ିବ। ଗୋଟିଏ ବିରାଟ ଜାତିର ଏବେ ଯେଉଁ ଭଗ୍ନାବଶେଷ ପର୍ଯ୍ୟବସିତ ହୋଇଛି; ଯେଉଁ ଦୁଃଖ-ଦୁର୍ଦ୍ଦଶାରେ ପଡ଼ି ସେ ଆଜି ବିକଳାଙ୍ଗ; ଯେଉଁ ଦୁର୍ବହ କଷାଘାତ ସେ ସହୁଛି; ଯେଉଁ ତୀବ୍ର ଉପହାସର ଆଜି ସେ ଶରବ୍ୟ, ସେଥିରୁ ତମ ମାତୃଭୂମିକୁ ଉଦ୍ଧାର କରିବା ଭାର ତୁମମାନଙ୍କ ଯୋଗ୍ୟତା ଉପରେ ହିଁ ନିର୍ଭର କରେ। ତେଣୁ, ତୁମେ ପାଠପଢ଼ି ଯୋଗ୍ୟତା ହାସଲ କରି ଦେଶର ଓ ଦଶର ଉପକାରରେ ବ୍ରତୀ ହୁଅ, ଏହା ହିଁ ଭଗବାନଙ୍କଠାରେ ମୋର ପ୍ରାର୍ଥନା।"

ରାତି ସେତେବେଳକୁ ପ୍ରାୟ ୧୦ଟା ବାଜି ଯାଇଥିଲା। ସେହି ମହାପୁରୁଷଙ୍କ ସେ ମହାବାଣୀ * ଆମର ତରଳ ତରୁଣ ପ୍ରାଣକୁ ସ୍ପର୍ଶ କଲା

---

* [ଗୋପବନ୍ଧୁ ଛାତ୍ରସମାଜକୁ ସ୍ନେହ ଓ ସହାନୁଭୂତିପୂର୍ଣ୍ଣ ଦୃଷ୍ଟିରେ ଦେଖି ଉପଦେଶ ଛଳରେ ନାନା ମହତ୍ ବାଣୀ ଶୁଣାଇବା ସଙ୍ଗେ ସଙ୍ଗେ ତାଙ୍କୁ ଆଦର୍ଶ ମାନବ ରୂପେ ଗଢ଼ିବା ଉଦ୍ଦେଶ୍ୟରେ ସେମାନଙ୍କର ଦୋଷଦୁର୍ବଳତା, ନିଷ୍କ୍ରିୟତା ଓ ଉଦାସୀନତା ପ୍ରତି ଆକ୍ଷେପ କରି ସମାଲୋଚନା କରୁଥିଲେ। ଥରେ 'ସମାଜ'ରେ ଗୋଟିଏ କବିତାରେ ସେ ଲେଖିଥିଲେ—

"ହେ ଛାତ୍ରମଣ୍ଡଳ କର କେତେ ବାହାଦୂରୀ
ଦେଶର ଉଦ୍ଧାର ପାଇଁ ପକାଅ ତ ହୁରି।
ହିସାବ କିତାବ ବେଳେ ଗଲା ଏବେ ଜଣା
ତୁମ ଦେଶ ଅନୁରାଗ ଜଘନ୍ୟ ଛଳନା।"

ସୁତରାଂ ସାମ, ଦାନ, ଦଣ୍ଡ, ଭେଦ ଯେ କୌଣସି ନୀତିରେ ହେଉ ନା କାହିଁକି, ଦେଶ ଓ ଦଶର ଉନ୍ନତି କଳ୍ପେ ଛାତ୍ରସମାଜକୁ ଆଦର୍ଶ ପଥରେ ପରିଚାଳିତ କରିବା ଥିଲା ଗୋପବନ୍ଧୁଙ୍କର ଲକ୍ଷ୍ୟ। —ସଙ୍କଳକ]

ତା ଆବେଦନ ଆମେ ସେହି ମହା ପୁଣ୍ୟପୀଠରେ ଶପଥ କଲୁ—"ଉତ୍କଳ ଜନନୀର ମଳିନ ମୁଖରେ ହାସ୍ୟ ଫୁଟାଇବାକୁ ଆମେ ନିଜ ଯାହାର ଶକ୍ତି ଅନୁଯାୟୀ କାର୍ଯ୍ୟ କରିଯିବୁ ।" ଏହି ମହାଲକ୍ଷ୍ୟ ପଥରେ ଆମମାନଙ୍କ ଭିତରୁ କିଏ କେତେଦୂର ଆଗେଇଛନ୍ତି, ତାହା କଳନା କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।



---

# ସଂପାଦକୀୟ ଟିପ୍ପଣୀ

୧୯୩୩ ମସିହାରେ ସି. ପି. ଏଲ୍. ଫିଲିପ୍ ଓଡ଼ିଶାରୁ ବଦଳି ହୋଇଗଲା ବେଳ କଟକ ଟାଉନ୍ ହଲ୍ ଠାରେ ତାଙ୍କୁ ଦିଆଯାଇଥିବା ବିଦାୟ ସମ୍ବର୍ଦ୍ଧନାର ଉତ୍ତରରେ ସେ ନିଜେ ଦେଇଥିବା ବକ୍ତୃତାର କିୟଦଂଶ ନିମ୍ନରେ ଉଦ୍ଧାର କରାଗଲା :—

"Our recommendations in the committee report of 1924 was mostly guided by the views and wishes of the Maharaja of Parlakimendi, the leading Zamindar of Ganjam. × × × The Maharaja is great protagonist of the Oriya cause as I found it in our tours of Ganjam district in 1924."

ଫିଲିପ୍-ଡ଼ଫ କମିଶନ ୧୯୨୪ରେ ଗଞ୍ଜାମ ଅଞ୍ଚଳ ଗସ୍ତ କରିଥିବା ଓ ସେହି ବର୍ଷ (୧୯୨୪)ହିଁ ତାଙ୍କ ରିପୋର୍ଟ ଦେଇଥିବା କଥା ଉକ୍ତ ବକ୍ତୃତିରୁ ସ୍ପଷ୍ଟ ହୁଏ । ପୁଣି "ଧରିତ୍ରୀ"ର ୧୯୭୫ ଡିସେମ୍ବର ୧୪ ତାରିଖ ସଂଖ୍ୟାରେ ପ୍ରକାଶିତ ଶ୍ରୀଯୁକ୍ତ ରାଜଗୁରୁଙ୍କର ଏକ ପ୍ରବନ୍ଧରେ ମଧ୍ୟ ସେ ନିଜେ ଫିଲିପ୍-ଡ଼ଫ କମିଶନ ୧୯୨୪ ମସିହାରେ ଗଞ୍ଜାମ ଗସ୍ତ କରିବା ବିଷୟ ଉଲ୍ଲେଖ କରିଛନ୍ତି ।

# ଫିଲିପ୍-ଡଫ୍ କମିଶନ

# ଓ ପାରଳାର ଓଡ଼ିଆ ଛାତ୍ର

ଶ୍ରୀ ଲକ୍ଷ୍ମୀଚରଣ ସାହୁ, ବି. ଏ., ବି. ଏଲ୍.

[ ପାରଳାଖେମୁଣ୍ଡିର ଅବସରପ୍ରାପ୍ତ ଅର୍ଥବିଭାଗୀୟ ପଦସ୍ଥ ଅଫିସର ଶ୍ରୀଯୁକ୍ତ ସାହୁ ଜଣେ ଉଗ୍ର ସାହିତ୍ୟପ୍ରେମୀ ଓ ନିଷ୍ଠାପର ପାଠକ । ସେ ଏହି ସଂକଳନରେ ପ୍ରକାଶିତ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କ ପ୍ରବନ୍ଧଟି ପାଠକରି ଏହି ଲେଖାଟି ଲେଖିଛନ୍ତି । ଏଥିରୁ ମଧ୍ୟ ଗୋପବନ୍ଧୁଙ୍କ ସମୟରେ ପାରଳାର ଯୁବକମାନେ କଭଳି ଦେଶସେବା ପାଇଁ ଆଗଭର ହୋଇଥିଲେ ତାର ନମୁନା ମିଳେ ।—ସଂ ]

"ଯୁଗପୁରୁଷ ଗୋପବନ୍ଧୁ ଦାସ" ପ୍ରଥମ ସଂସ୍କରଣ ବହିରେ ଲବ୍ଧ-ପ୍ରତିଷ୍ଠ ଗବେଷକ ଓ ସାହିତ୍ୟିକ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ପ୍ରବନ୍ଧଟି ପଢ଼ିଲି । ସେଥିରେ କେତେଗୁଡ଼ିଏ ଭୁଲ ରହିଯାଇଛି ବୋଲି ମନେହୁଏ ।

ସେ ଲେଖିଛନ୍ତି—"୧୯୨୭ ମସିହାରେ ଏ କମିଟି (ଫିଲିପ୍ ଓ ଡଫ୍ କମିଶନ) ମାନ୍ଦ୍ରାଜର ତତ୍କାଳୀନ ବିଶାଖାପାଟଣା ଜିଲ୍ଲା (ବର୍ତ୍ତମାନର ଜୟପୁର ବା କୋରାପୁଟ) ଏବଂ ଗଞ୍ଜାମ ଜିଲ୍ଲାର କେତେକ ଜମିଦାରୀ ଅଞ୍ଚଳରେ ତଥା ବ୍ରହ୍ମପୁର ସମେତ କେତେକ ଖାସମାହାଲ ଅଞ୍ଚଳରେ ତାଙ୍କର ସ୍ତ ଓ ଅନୁସନ୍ଧାନ କାର୍ଯ୍ୟକ୍ରମ ସ୍ଥିର କଲେ ।"

ଏହା ଠିକ୍ ନୁହେଁ । ଫିଲିପ୍-ଡଫ୍ କମିଶନ ୧୯୨୪-୧୯୨୫ ପାଠ୍ୟ ବର୍ଷକ ବର୍ଷା ଋତୁରେ ଅର୍ଥାତ୍ ୧୯୨୪ ମସିହା ଜୁଲାଇ-ଅଗଷ୍ଟରେ ଗଞ୍ଜାମ ଜିଲ୍ଲାର ପାରଳା, ବ୍ରହ୍ମପୁର ଇତ୍ୟାଦି ଅଞ୍ଚଳ ଗସ୍ତ କରିଥିଲେ । ମୁଁ ସେତେବେଳେ ପାରଳା ମହାରାଜାଙ୍କ କଲେଜ ସଂଲଗ୍ନ ହାଇସ୍କୁଲ୍ ବିଭାଗରେ ପଞ୍ଚମ ଫାର୍ମ ଅର୍ଥାତ୍ ଦଶମ ଶ୍ରେଣୀରେ ପଢ଼ୁଥିଲି । ଫିଲିପ୍-ଡଫ୍ କମିଶନଙ୍କ ଗସ୍ତବେଳେ ଓଡ଼ିଆମାନଙ୍କ କାର୍ଯ୍ୟକ୍ରମ ସ୍ଥିର କରିବା ପାଇଁ ଗୋଟିଏ ଉପଦେଷ୍ଟା କମିଟି ଗଢ଼ା

ହୋଇଥିଲ । ଉକ୍ତ କମିଟିରେ ସ୍ୱର୍ଗତ ଯୁଗଳକିଶୋର ପାଣିଗ୍ରାହୀ ( ସେତେବେଳେ ପାରଳା କଲେଜର ବିଜ୍ଞାନ ଅଧ୍ୟାପକ ), ସ୍ୱର୍ଗତ ମଧୁସୂଦନ ମହାପାତ୍ର (ସେତେବେଳର ପାରଳା ମହାରାଜାଙ୍କର ସଂସ୍କୃତ କଲେଜର ଅଧ୍ୟକ୍ଷ), ସ୍ୱର୍ଗତ ହରିଲାଲ ବର୍ଦ୍ଧନ (ସେତେବେଳ ହାଇସ୍କୁଲର ଗଣିତ ଶିକ୍ଷକ) ସମେତ ପାରଳାର ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ଥିଲେ ।

ଉକ୍ତ କମିଟିରେ ସ୍ଥିର ହେଲା ଯେ ହାଇସ୍କୁଲ ବିଭାଗର ନବମ, ଦଶମ ଓ ଏକାଦଶ ଶ୍ରେଣୀର ଓଡ଼ିଆ ଛାତ୍ରଙ୍କୁ ନେଇ ଗୋଟିଏ ସ୍ୱେଚ୍ଛାସେବକ ବାହିନୀ ତିଆରି ହେବ । ପ୍ରତ୍ୟେକ ସ୍ୱେଚ୍ଛାସେବକ ଦଳରେ ଦଶ ଜଣ ଲେଖା ଛାତ୍ର ରହିବେ ଏବଂ ସେମାନଙ୍କ ଉପରେ ଜଣେ ଜଣେ ଅଧିନାୟକ ରହିବେ । ଅଧିନାୟକ ଭାବେ କାର୍ଯ୍ୟ କରିବେ ମହାରାଜାଙ୍କ କଲେଜର ପ୍ରଥମ ଓ ଦ୍ୱିତୀୟ ବାର୍ଷିକ କଳା ଛାତ୍ର । (ସେତେବେଳେ ପାରଳା କଲେଜରେ ବି. ଏ., ବି. ଏସ୍. ସି. କିମ୍ବା ଆଇ. ଏ. ଏସି. ପାଠ୍ୟକ୍ରମ ନ ଥିଲା ।)

କମିଟିଙ୍କ ନିର୍ଦ୍ଦେଶମତେ ଦଶ ଜଣକିଆ ସ୍ୱେଚ୍ଛାସେବକ ଦଳ ଗଢ଼ାଗଲା । ମୁଁ ଗୋଟିଏ ଦଳରେ ସ୍ୱେଚ୍ଛାସେବକ ଥିଲି । ଆମ ଦଳର ଅଧିନାୟକ ଥିଲେ ଶ୍ରୀ ନବୀନଚନ୍ଦ୍ର ପାତ୍ର (ଯେ କିଛିଦିନ ପୂର୍ବେ ଜୟପୁର ଉଚ୍ଚବିଦ୍ୟାଳୟର ପ୍ରଧାନ ଶିକ୍ଷକ ରୂପରୁ ଅବସର ନେଇଛନ୍ତି) । ଶ୍ରୀ ନବୀନଚନ୍ଦ୍ର ପାତ୍ର ୧୯୨୪-୨୫ ପାଠ୍ୟ ବର୍ଷରେ ପ୍ରଥମ ବାର୍ଷିକ କଳା ଛାତ୍ର ଥିଲେ ଏବଂ ୧୯୨୫-୨୬ ପାଠ୍ୟବର୍ଷରେ ଦ୍ୱିତୀୟ ବାର୍ଷିକ ପାଠ ଶେଷ କରି ଉଚ୍ଚ ଶିକ୍ଷା ପାଇଁ ବିଜୟନଗରକୁ ଚାଲି ଯାଇଥିଲେ ।

ଦ୍ୱିତୀୟରେ, ୧୯୨୬ ବେଳକୁ ଶ୍ରୀ ରାଜଗୁରୁ ହାଇସ୍କୁଲର ଛାତ୍ର ନ ଥିଲେ । ଶ୍ରୀ. ରାଜଗୁରୁ ମୋଠାରୁ ସାତ କି ଆଠ ବର୍ଷ ସିନିୟର । ମୁଁ ୧୯୨୫-୨୬ ପାଠ୍ୟବର୍ଷରେ, ମାଟ୍ରିକୁଲେସନ (S. S. L. C.) ପରୀକ୍ଷା ପାଶ କରି ୧୯୨୬ ଜୁଲାଇ ମାସରେ ପାରଳା କଲେଜର ପ୍ରଥମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲି । ୧୯୨୬ ବେଳକୁ ମୁଁ ଯେତେ-ବେଳେ ପ୍ରଥମ ବାର୍ଷିକ କଳା ଛାତ୍ର ଥିଲି ସେତେବେଳେ ଶ୍ରୀ ରାଜଗୁରୁ

ମୋ ଠାରୁ ବୟସରେ ପ୍ରାୟ ସାତ ବର୍ଷ ବଡ଼ ଥାଇ ୧୯୨୭ ବେଳକୁ ହାଇସ୍କୁଲର ଛାତ୍ର ଥିବେ କିପରି ?

ଶ୍ରୀ ରାଜଗୁରୁଙ୍କ ଜନ୍ମ ୧୯୦୩ ମସିହାରେ । ୧୯୨୭ ବେଳକୁ ତାଙ୍କୁ ୨୪ ବର୍ଷ । ୨୪ ବର୍ଷ ବୟସରେ ସେ କେବେ ହାଇସ୍କୁଲ ଛାତ୍ର ନ ଥିଲେ । ଶ୍ରୀ ରାଜଗୁରୁଙ୍କ ଶାଳକ ଶ୍ରୀ ଅଭିମନ୍ୟୁ ମିଶ୍ର ହାଇସ୍କୁଲ ଶ୍ରେଣୀରେ ମୋର ସହପାଠୀ ଥିଲେ । ଆମ ଦୁହେଁ ଏକା ବର୍ଷ (୧୯୨୭ ମସିହାରେ) ପାରଳା ହାଇସ୍କୁଲରୁ ଏସ୍. ଏସ୍. ଏଲ୍. ସି. (ବା ମାଟ୍ରିକ) ପରୀକ୍ଷା ପାଶ୍ କଲୁ । ଶ୍ରୀ ରାଜଗୁରୁ ଏହାର ଢେର ଦିନ ଆଗରୁ ହାଇସ୍କୁଲରୁ ବିଦାୟ ନେଇ ଥାଆନ୍ତି ।

[ ଶ୍ରୀ ରାଜଗୁରୁ ୧୯୨୭ରେ ପାରଳା ହାଇସ୍କୁଲର ଛାତ୍ର ଥିଲେ ବୋଲି ବୁଝିବା ଠିକ୍ ହେବ ନାହିଁ । କାରଣ ସେ ଉଲ୍ଲେଖ କରିଥିବା 'ସେତେବେଳେ' ଫିଲିପ୍-ଡଫ୍ କମିଶନଙ୍କ ଗସ୍ତର ପ୍ରକୃତରେ ପୂର୍ବବର୍ତ୍ତୀ କାଳକୁ ବୁଝାଉଛି । ସ୍ୱୀୟ ପ୍ରବନ୍ଧରେ ଅନ୍ୟତ୍ର ଶ୍ରୀ ରାଜଗୁରୁ ସ୍ପଷ୍ଟ ଲେଖିଛନ୍ତି "ଏ ଘଟଣାର ଅଳ୍ପ କିଛୁଦିନ ପରେ 'ଫିଲିପ୍-ଡଫ୍ କମିଶନ' ଏ ଅଞ୍ଚଳ ଗସ୍ତ କରିବା ସମ୍ବାଦ ଆମେ ପାଇଲୁ ।" ସୁତରାଂ ଫିଲିପ୍-ଡଫ କମିଶନଙ୍କ ଗସ୍ତ ତଥା ୧୯୨୪ ବେଳକୁ ମଧ୍ୟ ଶ୍ରୀ ରାଜଗୁରୁ ହାଇସ୍କୁଲ ଛାତ୍ର ନ ଥିବା କଥା ଏଥିରୁ ସ୍ପଷ୍ଟ ହୁଏ ।—ସ ]



# ଓଡ଼ିଶାରେ ଜାତୀୟ ଶିକ୍ଷା ଓ ପଣ୍ଡିତ ଗୋପବନ୍ଧୁ

ଅଧ୍ୟାପକ ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର

[ ପ୍ରାଚୀନ ଓଡ଼ିଆ ଗୀତ ଓ କବିତା, ଆଧୁନିକ ଓଡ଼ିଆ ସାହିତ୍ୟର ଗତିପଥ ପ୍ରଭୃତି ଉପାଦେୟ ପୁସ୍ତକର ପ୍ରଣେତା, ସ୍ୱନାମଧନ୍ୟ ଓଡ଼ିଆ ଅଧ୍ୟାପକ ଡକ୍ଟର ମିଶ୍ର ଆଲୋଚ୍ୟ ପ୍ରବନ୍ଧରେ ଓଡ଼ିଶାର ଶିକ୍ଷା ସମସ୍ୟା ଉପରେ ସମ୍ୟକ୍ ସମାଲୋଚନାତ୍ମକ ଆଲୋକପାତ କରିବା ସଙ୍ଗେ ସଙ୍ଗେ ଗୋପବନ୍ଧୁଙ୍କ ଆଦର୍ଶ ଶିକ୍ଷାନୀତିର ଗୁଣାବଳୀ ବିଶ୍ଳେଷଣ କରିଛନ୍ତି ଏବଂ ତାଙ୍କୁ ଓଡ଼ିଶାରେ ଜାତୀୟ ଶିକ୍ଷାର ପ୍ରଥମ ପ୍ରବର୍ତ୍ତକ' ରୂପେ ଚିହ୍ନିତ କରିଛନ୍ତି । ଏହି ପ୍ରବନ୍ଧଟି ୯-୧୦-୬୩ ତାରିଖ 'ସମାଜ'ରେ ପ୍ରକାଶ ପାଇଥିଲା । —ସ ]

ଜାତୀୟ ଜୀବନ ଯେଉଁ କେତୋଟି ଉପାଦାନ ଉପରେ ପ୍ରତିଷ୍ଠିତ ତନ୍ମଧ୍ୟରୁ ଶିକ୍ଷା ହେଉଛି ଅନ୍ୟତମ । ଯେ କୌଣସି ପଦ୍ଧତି ବା ପ୍ରଣାଳୀର ଶିକ୍ଷା ହେଉ ନା କାହିଁକି, ତାହାର ଉପଯୋଗିତା ଯଥାର୍ଥତଃ ଜାତୀୟ ଆଭିମୁଖ୍ୟ ବହନ କରିବାରେ ଥାଏ । ପ୍ରତି ଯୁଗରେ, ପ୍ରତି ଦେଶରେ ଏବଂ ରାଷ୍ଟ୍ରରେ ଶିକ୍ଷା ହୋଇଛି ମୁଖ୍ୟ ସମସ୍ୟା; କାରଣ ଶିକ୍ଷା ହିଁ ଭବିଷ୍ୟତ ବଂଶଧରମାନଙ୍କୁ କ୍ରମଶଃ ଉପଯୁକ୍ତ ନାଗରିକ ଏବଂ ସୁମନୁଷ୍ୟ ହେବା ପାଇଁ ପ୍ରେରଣା ଦେଇଥାଏ । ସେଥିପାଇଁ ଆଦର୍ଶ ଶିକ୍ଷା ହେଉଛି ଜାତୀୟ ଆଭିମୁଖ୍ୟସମ୍ପନ୍ନ ଏବଂ ଯେଉଁ ଶିକ୍ଷାରେ ମଣିଷ ଶିଶୁକୁ ସଞ୍ଜତ, ଶୃଙ୍ଖଳିତ, ବିବେକୀ, ସୁଧର୍ମୀ କରି ଗଢ଼ିବା ପାଇଁ ପ୍ରେରଣା ନ ଥାଏ, ତାହା ଜାତୀୟ ଇତିହାସରେ ସ୍ଥାୟୀ ହୁଏ ନାହିଁ । ଶିକ୍ଷା ଏକ ସଂସ୍କାର । ମନର ସ୍ରୋତକୁ ଠିକ୍ ଶୃଙ୍ଖଳିତ କରି ତୋଳିବା ପାଇଁ ତାହା ହିଁ ହେଉଛି

ସଭ୍ୟ ସମାଜର ଆବିଷ୍କୃତ ଅମୋଘ ଅସ୍ତ୍ର । ଜାତିର ଆଶା-ଆକାଙ୍କ୍ଷାକୁ ପ୍ରତିଫଳିତ କରିବା ପ୍ରତ୍ୟେକ ଶିକ୍ଷାର ପ୍ରଧାନ କର୍ତ୍ତବ୍ୟ । ପ୍ରାଚୀନ ଯୁଗର ଦ୍ରୋଣାଚାର୍ଯ୍ୟ କୃପ କିମ୍ବା ରାଜଦରବାରର ବିଷ୍ଣୁଶର୍ମା କଣ୍ୱ, ପ୍ରତ୍ୟେକଙ୍କର ଶିକ୍ଷାଦାନ ଏକ ମୌଳିକ ପଦ୍ଧତି ଉପରେ ପ୍ରତିଷ୍ଠିତ । ପ୍ରାଚୀନଭୂମି ଭାରତବର୍ଷର ଶିକ୍ଷା ଏବଂ ଶିକ୍ଷାଦାନର ଇତିହାସ ତାତ୍ପର୍ଯ୍ୟପୂର୍ଣ୍ଣ । ବିଭିନ୍ନ ବୈଦେଶିକ ଶକ୍ତିର ସଂଘର୍ଷରେ ଆସିଥିଲେ ମଧ୍ୟ ଭାରତ ତାର ଶିକ୍ଷାପରମ୍ପରାକୁ ଜାତୀୟ ଜୀବନରୁ ସମ୍ପୂର୍ଣ୍ଣ ବାଦ ଦେଇ ନାହିଁ । ଊନବିଂଶ ଶତାବ୍ଦୀର ଶେଷ ୨୦ ବର୍ଷ ଭାରତ ପକ୍ଷରେ ନିହାତି ଘଡ଼ିସନ୍ଧିର ସମୟ । ଶତ ବର୍ଷର ପରାଧୀନତା ବିରୋଧରେ ଭାରତ ଏହି ସମୟରେ କ୍ରମେ ସଙ୍ଗଠିତ ହୋଇଥିଲା । ସମ୍ପୂର୍ଣ୍ଣ ଅହିଂସା ହିଁ ତାର ଏକମାତ୍ର ପ୍ରତୀକ । ଜାତୀୟ କଂଗ୍ରେସର ଆନ୍ଦୋଳନ (୧୮୮୫) ଭାରତର ରାଜନୈତିକ ଏବଂ ସାଂସ୍କୃତିକ ଜୀବନରେ ଏକ ଅମ୍ଳାନ ପର୍ଯ୍ୟାୟ । ସମ୍ପୂର୍ଣ୍ଣ ଜାତୀୟତା ଭିତ୍ତିରେ ନୂତନ କରି ଭାରତର ଶିକ୍ଷାପଦ୍ଧତିକୁ ପୁନର୍ଗଠିତ କରିବା ଥିଲା ସେତେବେଳର ଏକମାତ୍ର ଆବଶ୍ୟକତା । ମହାତ୍ମା ଗାନ୍ଧୀଙ୍କ ସମସ୍ତ ପରିକଳ୍ପନା, ମୁକ୍ତି-ସଂଗ୍ରାମର ଖସଡ଼ା ନିମନ୍ତେ ଏକ ସ୍ୱୟଂସମ୍ପୂର୍ଣ୍ଣ ଶିକ୍ଷାଧାରା ଦରକାର ହୋଇଥିଲା । ଜାତୀୟ କଂଗ୍ରେସର ଅଭୀପ୍ସିତ ଆଦର୍ଶ ଏବଂ ତାର ଉତ୍ତମ ପରିପୂରଣ କେବଳ ଏକ ଭାରତ ଅନ୍ତରାତ୍ମା ଅଭିମୁଖୀ ଜାତୀୟ ଶିକ୍ଷାଦ୍ୱାରା ହିଁ ସମ୍ଭବ ହେବ ବୋଲି ନେତୃବର୍ଗ ଉପଲବ୍ଧି କରିଥିଲେ । ଅସହଯୋଗ, ସତ୍ୟ, ଶୃଙ୍ଖଳା, ଅହିଂସା ଏବଂ ନିବିଡ଼ ଜାତୀୟତା—ଏହା ହିଁ ସେହି ଈପ୍ସିତ ଶିକ୍ଷାର ଅଙ୍ଗୀଭୂତ ଗୁଣ ହେବାର କଥା । ଭାରତବର୍ଷରେ ଗତ ଅର୍ଦ୍ଧଶତାଧିକ ବର୍ଷର ଶିକ୍ଷାର ଆଭିମୁଖ୍ୟ ବିଶେଷ ଭାବରେ ଜାତୀୟ ଭାବାପନ୍ନ ଏବଂ ସଂଗ୍ରାମର ସମ୍ମୁଖୀନ ହୋଇଛି । ସମଗ୍ର ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କ ଚିନ୍ତା ଯେଉଁ ଆନ୍ଦୋଳନ ସୃଷ୍ଟି କଲା, ଉତ୍କଳରେ ତାହାର ପ୍ରକୃତ ପୁରୋଧା ଥିଲେ ଉତ୍କଳମଣି ଗୋପବନ୍ଧୁ ଦାସ ।

ସେ କଂଗ୍ରେସର ଯେଉଁଭଳି ବିଶ୍ୱସ୍ତ କର୍ମୀ ଥିଲେ, କଂଗ୍ରେସ ଉଦ୍‌ଘୋଷିତ ସମଗ୍ର ଆଦର୍ଶର ମଧ୍ୟ ସେ ଥିଲେ ସେହିଭଳି ପୃଷ୍ଠପୋଷକ । ଏହାର ଫଳରେ ଗୋପବନ୍ଧୁଙ୍କର ଓଡ଼ିଶାରେ ଏକ ଜାତୀୟ ବିଦ୍ୟାଳୟ

ପ୍ରତିଷ୍ଠା କରିବାର ପରିକଳ୍ପନା । ୧୯୦୯ ମସିହା ହିଁ ମୁଖ୍ୟତଃ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ସମ୍ବତ୍ସର । କାରଣ ସେହି ବର୍ଷ ଅଗଷ୍ଟ ମାସ ୧୨ ତାରିଖରେ ମାତ୍ର ୧୯ଟି ପିଲାଙ୍କୁ ନେଇ ସତ୍ୟବାଦୀଠାରେ ମାଇନର ସ୍କୁଲ୍ ସ୍ଥାପିତ ହେଲା । ୧୯୧୦ ମସିହାରେ ଶିକ୍ଷା ବିଭାଗ ତାକୁ ମଞ୍ଜୁରୀ ପ୍ରଦାନ କରିଥିଲେ ଏବଂ ୧୯୧୨ ମସିହା ଜାନୁୟାରୀ ମାସରେ ଉଚ୍ଚ ଇଂରାଜୀ ବିଦ୍ୟାଳୟର ୪ର୍ଥ ଶ୍ରେଣୀ ଖୋଲା ଯାଇଥିଲା । ରାମଚନ୍ଦ୍ର ରଥ ସ୍କୁଲ କାର୍ଯ୍ୟରେ ଯୋଗଦେଲେ ଏବଂ ଏହାର ଅଳ୍ପ ପୂର୍ବରୁ ପଣ୍ଡିତ ନୀଳକଣ୍ଠ ଏମ୍. ଏ. ପାଶ୍ କରି ଯୋଗଦାନ କରି ସାରିଥାନ୍ତି । ୧୯୧୩ ମସିହାରେ ଦ୍ୱିତୀୟ ଏବଂ ତୃତୀୟ ଶ୍ରେଣୀ ଖୋଲିଥିଲା । ଆଚାର୍ଯ୍ୟ ହରିହର ଏବଂ ପଣ୍ଡିତ ଗୋଦାବରୀଶ ମେ ପହିଲା ୧୯୧୩ରେ ଯୋଗଦାନ କରିଥିଲେ । ଗୋପବନ୍ଧୁଙ୍କର ଜାତୀୟ ଏବଂ ମୌଳିକ ଶିକ୍ଷା ସମ୍ପର୍କରେ ଯେଉଁ ଧାରଣା, ତାହା ବାସ୍ତବିକ ମାନବୀୟ ଦୃଷ୍ଟିକୋଣ ଦ୍ୱାରା ପ୍ରଭାବିତ ହୋଇଥିଲା । ସେହି ସମୟରେ ବିଦ୍ୟାଳୟ ସମ୍ପର୍କୀୟ ଏକ ବିବରଣୀରେ ଗୋପବନ୍ଧୁ ସ୍ପଷ୍ଟ ଘୋଷଣା କରିଥିଲେ ଯେ ଶିକ୍ଷାର ଆଦର୍ଶ କ'ଣ ହେବା ଉଚିତ—

"ବର୍ତ୍ତମାନ ଶିକ୍ଷାପ୍ରଣାଳୀ ଏ ଦେଶ ପକ୍ଷରେ ହିତକର ହେଲେ ସୁଦ୍ଧା ଏହା କୌଣସି ପ୍ରକାରେ ପୂର୍ଣ୍ଣାଙ୍ଗ ବା ପରିପୂର୍ଣ୍ଣ ନୁହେଁ । ଏ ଶିକ୍ଷା ପ୍ରଣାଳୀରେ ଅନେକ ତ୍ରୁଟି ବର୍ତ୍ତମାନ ଜାଜଲ୍ୟ ଦେଖାଗଲାଣି । କେତେକ ନିର୍ଦ୍ଦିଷ୍ଟ ସମସ୍ୟାରେ ଏ ଶିକ୍ଷା ଆମ ଦେଶର ଲୋକଙ୍କୁ ସୁହାଉ ନାହିଁ । ତେଣୁ ଆମ ଦେଶର ଆବଶ୍ୟକତା ପୂରାପୂରି ମଧ୍ୟ ମେଣ୍ଟାଇ ପାରୁ ନାହିଁ । ଏପରିକି ଭାରତରେ ବର୍ତ୍ତମାନ ଶିକ୍ଷାର ସବୁଠାରୁ ଅଧିକ ଅଭାବ ଏବଂ ଓଡ଼ିଶା ପକ୍ଷରେ ଏହା ଚରମ ଅଭାବ । ସତ୍ୟବାଦୀ ସ୍କୁଲ ପ୍ରତିଷ୍ଠା କରିବାର ୭ ବର୍ଷ ପୂର୍ବରୁ ଏଥିର କେତେ କର୍ମୀ, ଯେଉଁମାନେ କି ସେତେବେଳେ କଲେଜ ଓ ସ୍କୁଲରେ ପଢ଼ୁଥିଲେ, ସେମାନେ ଲୋକ-ସାଧାରଣଙ୍କର ଏହି ଚରମ ଅଭାବ ବଡ଼ ଗଭୀର ଭାବରେ ଉପଲବ୍ଧି କଲେ ଏବଂ ଯୁବକସୁଲଭ ପ୍ରାଣରେ ଯାହା ସାଧାରଣତଃ ଘଟିଥାଏ, ସେହିଭଳି ଏକ ଉଦ୍‌ବେଗ ଓ ଆକାଙ୍କ୍ଷା ସେମାନଙ୍କ ମନରେ ଜନ୍ମିଲା ଏବଂ ଗୋଟିଏ ମହତ୍ତ୍ୱ ପ୍ରେରଣାଦାୟକ ଚିନ୍ତା ସେମାନଙ୍କ ମନକୁ ପ୍ରଥମେ ସ୍ପର୍ଶ କଲା ।"

ତତ୍କାଳୀନ ପ୍ରଚଳିତ ଶିକ୍ଷାର ତ୍ରୁଟି ଏବଂ ଦୋଷ ମଧ୍ୟରେ ଶିକ୍ଷା ବ୍ୟୟ ବହୁଳ ହେବା, ଶିକ୍ଷାର ପ୍ରସାର ପାଇଁ କୋଠାବାଡ଼ିର ଆବଶ୍ୟକତା, ଛାତ୍ରମାନଙ୍କର ଶାରୀରିକ ଶ୍ରମବିମୁଖତା, ଗୁରୁ-ଶିଷ୍ୟ ମଧ୍ୟରେ ପ୍ରାଚୀନ ଗୁରୁକୁଳ ସମ୍ପର୍କର ଅଭାବ, ସର୍ବୋପରି ଜାତୀୟ ଭାବରହିତ ବିଦେଶୀ ଛାଞ୍ଚରେ ଗଢ଼ା ଶିକ୍ଷାପ୍ରଣାଳୀ ଦେଶ ପକ୍ଷରେ ବରଂ ଘୋର କ୍ଷତିକାରକ ଥିଲା । ଏପରି ଅବସ୍ଥାରେ ଓଡ଼ିଶାରେ ପ୍ରକୃତ ଜାତୀୟ ଶିକ୍ଷାର ପ୍ରବର୍ତ୍ତନ ପାଇଁ ଗୋପବନ୍ଧୁ ଦାସ ଜୀବନ ଉତ୍ସର୍ଗ କରିଥିଲେ । ସେ ଯେଉଁ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ, ତାହା ହିଁ ଏ ଦେଶର ପ୍ରଥମ ଏବଂ ଶେଷ ଜାତୀୟ ଅନୁଷ୍ଠାନ । ଗୋପବନ୍ଧୁ ଦାସଙ୍କର ଉକ୍ତି ବଡ଼ ଗୁରୁତ୍ୱପୂର୍ଣ୍ଣ —

"Bricks and mortar do not make a school nor the desks and chairs. To make teaching efficient there must be efficient teachers and even the efficiency of a teacher does not always be in high educational attainments but in the spirit and devotion with which he works. The single minded devotion of a teacher is possibel when he is sufficiently remunerated. So as to be bove all possible wants or if he takes a life long vow of poverty to serve education as his life's calling."

କେବଳ ଇଟା ଚୂନ ସ୍କୁଲ ତିଆରି କରିଦିଏ ନାହିଁ କି ଚୌକି ଡେସ୍କ ମଧ୍ୟ ସ୍କୁଲ ଗଢ଼ିଦିଏ ନାହିଁ । ତେବେ ସ୍କୁଲ ପାଇଁ ଦରକାର କ'ଣ ? ସ୍କୁଲ ପାଇଁ ଆବଶ୍ୟକ ଯୋଗ୍ୟ ଶିକ୍ଷକ, ଶିକ୍ଷକଙ୍କର ଜୀବନୋତ୍ସର୍ଗ, ନିଷ୍ଠା ତଥା ଆନ୍ତରିକତା ଉପରେ ହିଁ ଶିକ୍ଷାର ସଫଳତା ନିର୍ଭର କରିଥାଏ । ତେବେ ଶିକ୍ଷକ କିପରି ଏକନିଷ୍ଠ ଏବଂ ତ୍ୟାଗଭାବାପନ୍ନ ହେବେ ? ତାହାର ଏକମାତ୍ର ପନ୍ଥା, ଶିକ୍ଷକମାନଙ୍କୁ ଉପଯୁକ୍ତ ବେତନ ଦେବାକୁ ପଡ଼ିବ । ନଚେତ୍ ଦାରିଦ୍ର୍ୟ ହିଁ ତାଙ୍କର ହେବ ଏକମାତ୍ର

ସହଚର । ଗୋପବନ୍ଧୁ ଦାସ ଶିକ୍ଷାକ୍ଷେତ୍ରରେ ଦାରିଦ୍ର୍ୟ ହିଁ ବରଣ କରିଥିଲେ ।

ଗୋପବନ୍ଧୁଙ୍କର ଏହି ମହତ୍ତ୍ୱ ଆଦର୍ଶ ଆଜି କେତେ ଜଣ ଶିକ୍ଷକ ଅଧ୍ୟାପକ ଗ୍ରହଣ କରିପାରିବେ ? ଗୋପବନ୍ଧୁଙ୍କ ଶିକ୍ଷା କ୍ଷେତ୍ରର ଆଦର୍ଶ ଆଜି ନାହିଁ ଏବଂ ଶିକ୍ଷା ନାମରେ ଆଜି ପ୍ରକୃତ ମଣିଷ ଗଢ଼ା ନ ହୋଇ ବରଂ "ଯାନ୍ତ୍ରିକ ମଣିଷ" ଗଢ଼ା ଯାଉଛନ୍ତି । ଏହି ଦୁର୍ଗତି ସମୟରେ ଗୋପବନ୍ଧୁଙ୍କର ପ୍ରଦର୍ଶିତ ଶିକ୍ଷା ପନ୍ଥା ହିଁ ଏକମାତ୍ର ଅନୁଧ୍ୟେୟ ବସ୍ତୁ । ଗୋପବନ୍ଧୁ ହିଁ ଓଡ଼ିଶାରେ ଜାତୀୟ ଶିକ୍ଷାର ପ୍ରଥମ ପ୍ରବର୍ତ୍ତକ ।



# ଓଡ଼ିଶାର ଇତିହାସରେ ଗୋପବନ୍ଧୁଙ୍କ ସ୍ଥାନ

ଶ୍ରୀ କାହ୍ନୁଚରଣ ସାହୁ, ବି. ଏ. (ରାଷ୍ଟ୍ରଭାଷା-କୋବିଦ)

[ ବାଲେଶ୍ୱର ଜିଲ୍ଲାର ଜଣେ କ ବିଶିଷ୍ଟ ଶିକ୍ଷକ ତଥା ସାହିତ୍ୟପ୍ରେମୀ ଶ୍ରୀ ସାହୁ ଆଲୋଚ୍ୟ ପ୍ରବନ୍ଧରେ ଓଡ଼ିଆ ସାହିତ୍ୟର କ୍ରମବିକାଶ, ସତ୍ୟବାଦୀ ଯୁଗର ଭୂମିକା, ଗୋପବନ୍ଧୁଙ୍କ ସାହିତ୍ୟରେ ଆର୍ଯ୍ୟସଂସ୍କୃତି ଉପାସନା, ବିଭୂପ୍ରୀତି, ରାଜନୈତିକ ଓ ଗଣତାନ୍ତ୍ରିକ ଚିନ୍ତାଧାରା, ହିତବାଦନୀତି, ଜାତୀୟତା ଓ ବିଶ୍ୱପ୍ରେମିକତା ଇତ୍ୟାଦି ବିଷୟର ଅବତାରଣା କରି ଜାତୀୟ ଇତିହାସରେ ତାଙ୍କର ଆସନ ନିରୂପଣ କରିବାକୁ ଚେଷ୍ଟା କରିଛନ୍ତି ।—ସଂ ]

"ପିବନ୍ତି ନଦ୍ୟଃ ସ୍ୱୟମେବ ନାମ୍ଭଃ
ସ୍ୱୟଂ ନ ଖାଦନ୍ତି ଫଳାନି ବୃକ୍ଷା
ଧାରାଧାରୋ ବର୍ଷତି ନାତ୍ମହେତୋଃ
ପରୋପକାରାୟ ସତାଂ ବିଭୂତୟଃ ।"

ପରୋପକାର ପାଇଁ ମହାତ୍ମାମାନଙ୍କର ଜନ୍ମ । ଭଗବାନ ସେମାନଙ୍କୁ ବିଶେଷ ଗୁଣ ଯୁକ୍ତ କରି ପଠାଇଥାଆନ୍ତି ପୃଥିବୀକୁ । ମାୟା-ଜଞ୍ଜାଳମୟ ଜଗତରେ ସେହିମାନେ କର୍ଣ୍ଣଧାର । ଜନସମାଜର ସେହିମାନେ ଆତ୍ମୀୟ ଓ ଜାତି ପକ୍ଷେ ସେହିମାନେ ଧ୍ରୁବତାରା ଭଳି ଉଜ୍ଜ୍ୱଳ ଜ୍ୟୋତିଷ୍କ ।

ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଥିଲେ ଏସବୁର ମୂର୍ତ୍ତି ଦ୍ରଷ୍ଟାକ । ତାଙ୍କର ପ୍ରତିଷ୍ଠା ଯୋଗୁଁ ସେ ଆଜି ଅମରତ୍ୱ ଲାଭ କରିଛନ୍ତି । ତାଙ୍କର ସାହିତ୍ୟ ସାଧନା ଥିଲା ଗଣମୁଖୀ ଓ ଜାତିବୋଧନମୟୀ । ଓଡ଼ିଶା ଇତିହାସ ତଥା ଓଡ଼ିଆ ସାହିତ୍ୟରେ ତାଙ୍କର ସମ୍ମାନଯୋଗ୍ୟ ଆସନରୁ କେହି ତାଙ୍କୁ ଟିକିଏ ସୁଦ୍ଧା ଘୁଞ୍ଚାଇ ପାରିବ ନାହିଁ । ତେବେ ଏ ସମ୍ପର୍କରେ ସୂକ୍ଷ୍ମାତିସୂକ୍ଷ୍ମ ପର୍ଯ୍ୟାଲୋଚନା କଲେ ତାଙ୍କର ପ୍ରତିଭା, ବ୍ୟକ୍ତିତ୍ୱ ଓ କବିତ୍ୱର ସୁସ୍ପଷ୍ଟ ଆଭାସ ମିଳିପାରିବ ।

## ଓଡ଼ିଆ ସାହିତ୍ୟର କ୍ରମବିକାଶ—

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବିଭିନ୍ନ ଯୁଗ ପ୍ରତିଭାନ୍ତ ଦେଖା ଦେଇଛି । ସାମାଜିକ ଓ ରାଜନୈତିକ ପରିବର୍ତ୍ତନ ଏହାକୁ ଅନେକାଂଶରେ ପ୍ରଭାବିତ କରି ଏହାର କ୍ରମବିକାଶ ଧାରାକୁ ବଦଳାଇ ଦେଇପାରିଛି । ପ୍ରଥମେ ଓଡ଼ିଆ ସାହିତ୍ୟରେ ଦେଖାଦିଏ ଚଉତିଶା ଯୁଗ । ଏ ସାହିତ୍ୟର ଅଭାବ ପରିଲକ୍ଷିତ ହେବା ବେଳେ ଉତ୍କଳବ୍ୟାସ ସାରଳାଦାସ ରଚନା କରିଗଲେ ବିଶାଳ କାବ୍ୟଗ୍ରନ୍ଥ ମହାଭାରତ । ଏହା ଓଡ଼ିଆ ଜାତିର ପ୍ରଥମ ଓ ମୌଳିକ ମହାକାବ୍ୟ । ସାରଳାଦାସଙ୍କ ପରେ ଯେଉଁ ସାହିତ୍ୟ ସୃଷ୍ଟି ହେଲା ସେଥିରେ ଧର୍ମଭାବ ଆମୂଳାନ୍ତ ପ୍ରକ୍ଷିପ୍ତ ହେଲା । ତତ୍କାଳୀନ କବିମାନେ ସାଧାରଣତଃ ବୈଷ୍ଣବ ଧର୍ମାବଲମ୍ବୀ । ଏ ଯୁଗକୁ ସାହିତ୍ୟରେ ପଞ୍ଚସଖା ଯୁଗ ବୋଲି କୁହାଯାଏ । ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଅନନ୍ତ ଦାସ ଓ ଯଶୋବନ୍ତ ଦାସଙ୍କୁ ନେଇ ଏହି ଯୁଗ ଗଠିତ । ଏ କବିମାନଙ୍କର ସାହିତ୍ୟ ବହୁଦିନ ପ୍ରଚଳନ ହେବା ପରେ ପୁଣି ସାହିତ୍ୟ-ରାଜ୍ୟରେ ଆସିଲା ଏକ ଅଭୂତପୂର୍ବ ପରିବର୍ତ୍ତନ । ଛନ୍ଦୋବଦ୍ଧ କାବ୍ୟକବିତା ଦେଖାଦେଲା ନୂତନ ଦୃଷ୍ଟିଭଙ୍ଗୀ ନେଇ । ଏ ଯୁଗର କର୍ଣ୍ଣଧାର ହେଲେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ ତାଙ୍କ ନାମାନୁସାରେ ହେଲା ଭଞ୍ଜଯୁଗ । ପଣ୍ଡିତ ଉତ୍କଳମଣି ଉପେନ୍ଦ୍ର ଭଞ୍ଜଙ୍କୁ ଲକ୍ଷ୍ୟ କରି ଲେଖିଥିଲେ—

"ଗାଏ ଭୃମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପନ୍ଥ ହୃଷ୍ଟମନା ।
ବଳେ ବୋଲେ ଚଷା ଅନ୍ତଃପୁରେ ବେଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଭକ୍ତକବି ଅଭିମନ୍ୟୁ ସାମନ୍ତସିଂହାର ଓ ଭକ୍ତକବି ଦିନକୃଷ୍ଣଙ୍କ ସାହିତ୍ୟ ଆଜି ପ୍ରତ୍ୟେକ ଓଡ଼ିଆଙ୍କ ପ୍ରାଣ-ବୀଣାକୁ ଝଙ୍କୃତ କରୁଛି । ସେଥିପାଇଁ କୁହାଯାଇଛି—

ଉପମା ଭଞ୍ଜବୀରସ୍ୟ ତସ୍ୟୈବ ଶ୍ଳେଷଗୌରବମ୍
କଲ୍ଲୋଳେ ପଦଲାଳିତ୍ୟଂ ସନ୍ତି ଜନ୍ତାମଣୌ ତ୍ରୟଃ ।

ତେବେ କାଳର କୁଟିଳ ଗତିରେ ଉତ୍କଳ ସ୍ୱାଧୀନତା ହରାଇ ବହୁ ବିଜାତୀୟ ଶାସକଙ୍କ ହାତରେ ଶାସିତ ହେଲା । ସେହି ଶାସନର ପ୍ରଭାବ ଜନଜୀବନକୁ ବହୁ ସଙ୍କଟାପନ୍ନ କଲା । ସଭ୍ୟତାର ନୂଆ ନୂଆ କଥା ଅପାତମଧୁର ସ୍ପର୍ଶ ଜନ-ମନ ଆକର୍ଷଣ କଲା । ଜୀବନକ୍ଷେତ୍ରରେ ଦେଖାଦେଲା ଦ୍ୱନ୍ଦ୍ୱ ଓ ସଂଘର୍ଷ । ପୃଥିବୀରେ ବିଶ୍ୱମହାଯୁଦ୍ଧ ସଂଘଟିତହେବା ଫଳରେ ପ୍ରତ୍ୟେକ ଘଟଣାପ୍ରବାହର ପରିବର୍ତ୍ତନ ପରିଦୃଷ୍ଟ ହେଲା । ଆଉ ଦୀର୍ଘ ଛନ୍ଦଯୁକ୍ତ କବିତାକୁ ଲୋକେ ପସନ୍ଦ କଲେ ନାହିଁ । ଠିକ୍ ଏତିକବେଳେ ଦେଖାଦେଲା ପୁଣି ଏକ ନୂଆ ଯୁଗ । ତାହା ରାଧାନାଥଯୁଗ ନାମରେ ନାମିତ । ଏ ଯୁଗର ସାହିତ୍ୟ ଅଳଙ୍କାରର ଗୁରୁଭାରରୁ ମୁକ୍ତ ହୋଇ ସ୍ୱାଭାବିକ ଢଙ୍ଗରେ କବିତାସୁନ୍ଦରୀ ଶୋଭା ପାଇଲେ । ସ୍ୱଭାବକବି ଗଙ୍ଗାଧର, ବ୍ୟାସକବି ଫକୀରମୋହନ ଓ ଭକ୍ତକବି ମଧୁସୂଦନ ହେଲେ ଏ ଯୁଗର ଶ୍ରେଷ୍ଠ ବରଦାଣୀ । ସେମାନଙ୍କ ଲେଖାରେ ଉତ୍କଳୀୟତା, ଜାତୀୟତା ଫୁଟିଉଠିଲା । କାବ୍ୟସୁନ୍ଦରୀ ସରଳଭଙ୍ଗୀରେ ପ୍ରକାଶିତ ହୋଇ ପାଠକାଶ୍ରୟୀ ହେଲେ । ଅନୁବାଦ ସାହିତ୍ୟର କ୍ରମିକ ବିକାଶ ଏ ଯୁଗର ଅନ୍ୟତମ ବୈଶିଷ୍ଟ୍ୟ । ଅମିତ୍ରାକ୍ଷରଛନ୍ଦ ପ୍ରଚଳନ ଫଳରେ ସାହିତ୍ୟରାଜ୍ୟରେ ଆସିଥିଲା ନୂତନ ଆଲୋଡ଼ନ । ମାତ୍ର ସମସ୍ତ ଦିନ କାହାର ସମାନ ଭାବରେ ଯାଏ ନାହିଁ ।

ଆକାଶର ରଙ୍ଗ ସ୍ଥିର ନୁହେଁ କି ବସନ୍ତର ସ୍ପର୍ଶ ସବୁକାଳ ପାଇଁ ମିଳେ ନାହିଁ । ପ୍ରକୃତି ରାଜ୍ୟଠାରୁ ଆରମ୍ଭ କରି ଆମର କ୍ଷୁଦ୍ର ପରିବାର ତଥା ବ୍ୟକ୍ତିବିଶେଷଙ୍କ ଜୀବନ ପର୍ଯ୍ୟନ୍ତ ସର୍ବତ୍ର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ପରିବର୍ତ୍ତନ ହିଁ ସୃଷ୍ଟିର ନିୟମ ଓ ସୃଷ୍ଟି କର୍ତ୍ତାର ମୌଳିକ ଲକ୍ଷ୍ୟ । ଆମର ସାହିତ୍ୟ ରାଜ୍ୟର ଗତି ଠିକ୍ ସେହିଭଳି ନିୟନ୍ତ୍ରିତ । ରାଧାନାଥଯୁଗ ପରେ ସାହିତ୍ୟରେ ଆସିଲା ପ୍ରକାଣ୍ଡ ଆନ୍ଦୋଳନ । ଜାତୀୟତାକୁ ପୂର୍ଣ୍ଣରୂପେ ଜନ ସାଧାରଣଙ୍କଠାରେ ହୃଦବୋଧ କରାଇବା ଲକ୍ଷ୍ୟରେ ଲେଖନୀ ଚାଳନ କଲେ ଆମର କବିମଣ୍ଡଳୀ । ଇଂରେଜ ଶାସନକୁ ଦେଶରୁ ହଟାଇବା ପାଇଁ ସାହିତ୍ୟରେ ଦିଆଗଲା ଦେଶାତ୍ମବୋଧ ଇଙ୍ଗିତ । ରାଜନୀତିର ଝଲକ ଗାଁ ଗହଳରେ ପ୍ରବେଶ କରାଇବା ହେଲା ଯୁଗଦ୍ରଷ୍ଟାମାନଙ୍କର ଧ୍ୟେୟ । ଏ ଯୁଗର ଶ୍ରେଷ୍ଠ ସାହିତ୍ୟରଥୀ ହେଲେ ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଦାସ । ଏ ଯୁଗକୁ ଆଧୁନିକ ପଞ୍ଚସଖା ବା ସତ୍ୟବାଦୀ ପଞ୍ଚସଖା ଯୁଗ ବୋଲି କହନ୍ତି । ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ଐତିହାସିକ କୃପାସିନ୍ଧୁ ମିଶ୍ର ଓ ଆର୍ଯ୍ୟରଷି ଆଚାର୍ଯ୍ୟ ହରିହର ଦାସଙ୍କୁ ନେଇ ଏ ଯୁଗ ଗଠିତ । ପ୍ରତ୍ୟେକଙ୍କ ସାହିତ୍ୟରେ ସ୍ୱାତନ୍ତ୍ର୍ୟ ବିଦ୍ୟମାନ । ବହୁ ଖଣ୍ଡ କବିତା, ଗଳ୍ପ, ନାଟକ, ଆତ୍ମଚରିତ ଏ ଯୁଗରେ ପ୍ରସାର ଲାଭକଲା । ଏସବୁ ମାଧ୍ୟମରେ ଜୀବନଦର୍ଶନ, ଜାତିପ୍ରୀତି ଓ ଉତ୍କଳର ଶ୍ରେଷ୍ଠତ୍ୱ ପ୍ରତିପାଦନରେ କବି ଲେଖନୀ ଚଞ୍ଚଳ ହୋଇଉଠିଲା ।

## ସତ୍ୟବାଦୀ ଯୁଗ ଓ ଗୋପବନ୍ଧୁ—

ଓଡ଼ିଆ ସାହିତ୍ୟ ଉପରେ ଯେଉଁ ଯୁଗ ବିଜୟୀ ହୋଇଯାଇଛି, ତାହାର ଏକ ଚୁମ୍ବକ ଆଭାସ ମାତ୍ର ଦିଆଗଲା । ବର୍ତ୍ତମାନ ସତ୍ୟବାଦୀ ଯୁଗର ବୈଶିଷ୍ଟ୍ୟ ସଙ୍ଗେ ସଙ୍ଗେ ଗୋପବନ୍ଧୁଙ୍କ କବିପ୍ରତିଭା ବିଚାର୍ଯ୍ୟ ।

ମହାତ୍ମା ଗୋପବନ୍ଧୁଙ୍କ ପ୍ରତିଭା ଅବିନଶ୍ୱର । ସେ ଏ ଯୁଗର ପଥଦ୍ରଷ୍ଟା । ସେ ମଧ୍ୟ ଏକାଧାରରେ କବି, ଯୋଗୀ, ବାଗ୍ମୀ, କର୍ମୀ, ଭାବୁକ, ସେବକ, ପ୍ରେମିକ ଓ ଶିକ୍ଷକ । ସେ ସତ୍ୟବାଦୀ ବନବିଦ୍ୟାଳୟରେ

ଯେଉଁ ସାଂଗଠନିକ କର୍ମାନୁଷ୍ଠାନ କରି ଯାଇଛନ୍ତି, ଓଡ଼ିଆ ଜାତି ତାହା ଭୁଲି ପାରିବ ନାହିଁ । ଆଜୀବନ ଦରିଦ୍ରନାରାୟଣ ସେବାରେ ଆତ୍ମନିୟୋଗ କରି ଓ ମହାତ୍ମା ଗାନ୍ଧୀଙ୍କ ଅହିଂସା ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ସେ ନିଜ କର୍ମମୟ ଜୀବନକୁ ଉତ୍ସର୍ଗ କରିଯାଇଛନ୍ତି ଏହି ଉତ୍କଳର ସର୍ବାଙ୍ଗୀନ ଉନ୍ନତି ପାଇଁ । କାପୁରୁଷତ୍ୱକୁ ସେ ଅତିଶୟ ଘୃଣା କରି କହିଛନ୍ତି—

"କାପୁରୁଷ ପରି ମରିବା ଜଗତେ
ନୁହେଁ ନର ପଉରୁଷ
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ ।"

ତାଙ୍କ 'ଧର୍ମପଦ', 'କାରାକବିତା', 'ଅବକାଶ ଚିନ୍ତା', 'ବନ୍ଦୀର ଆତ୍ମକଥା', 'ଗୋ-ମହାତ୍ମ୍ୟ', 'ନଚିକେତା ଉପାଖ୍ୟାନ' ଓ ଅନ୍ୟାନ୍ୟ ମନୋଜ୍ଞ ପ୍ରବନ୍ଧମାନ ସାହିତ୍ୟିକ କୃତିର ଶ୍ରେଷ୍ଠ ନିଦର୍ଶନ । ତାଙ୍କ ସାହିତ୍ୟରେ ଉତ୍କଳୀୟତା, ଆର୍ଯ୍ୟ ସଂସ୍କୃତିର ସଂରକ୍ଷଣ, ଦେବଭକ୍ତି, ଗଣତାନ୍ତ୍ରିକ ଚିନ୍ତାଧାରା, ହିତବାଦ ନୀତି, ଜାତୀୟତା, ବିଶ୍ୱପ୍ରେମିକତା, ରାଜନୀତିକ ଚିନ୍ତାଧାରା ଓ ଆର୍ଥନୀତିକ ସମସ୍ୟା ଓତପ୍ରୋତ ଭାବେ ଜଡ଼ିତ । ସରଳ ଓ ତରଳ ଛନ୍ଦରେ ସେ ଗାଇଯାଇଛନ୍ତି କବିତା । କୀର୍ତ୍ତିମାଳିନୀ ଉତ୍କଳର ଧ୍ୱଂସାବଶେଷ ଦର୍ଶନ କରି ଓଡ଼ିଆ ପ୍ରାଣରେ ଦେଇଛନ୍ତି ସେ ଚେତନା ଓ ଉଦ୍‌ବୋଧନୀ । ଉତ୍କଳର ପ୍ରାଚୀନ ସୌନ୍ଦର୍ଯ୍ୟ ସମ୍ପଦ ସନ୍ଦର୍ଶନରେ କବି ହୋଇଛନ୍ତି ଆତ୍ମହରା । ପୂର୍ବସ୍ମୃତି ମନେ ମନେ ଗୁଣି ହୋଇ ବ୍ୟଥିତ ଅନ୍ତରରେ ଗାଇଛନ୍ତି —

"କାହିଁ ଗଲା ପୂର୍ବ ଓଡ଼ିଆ ବୋଇତ ?
କାହିଁ ସେ ନାବିକ ଉଦ୍ଦାମ ସଙ୍ଗୀତ ?
ଜଳପଥେ କାହିଁ ବିଦେଶ ଗମନ ?
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବ ଧନ ?
କଥାରେ ରହିଛି ସବୁ ଆଜ ଯାଏ,
ସାଧବାଣୀ ବୋଇତ ବନ୍ଦାଏ ।"

ସେ ରେଳଗାଡ଼ିରେ ବସି ବ୍ୟଥିତ ଅନ୍ତରରେ ଏହି ଜାତିର ଐତିହ୍ୟକୁ ରୂପମୟୀ ତୂଳିକା ତୂଳରେ ବ୍ୟକ୍ତ କରିଯାଇଛନ୍ତି । ଯେଉଁ ଉତ୍କଳ ଉତ୍କୃଷ୍ଟ କଳାପୀଠ ରୂପେ ପ୍ରଖ୍ୟାତ ଥିଲା, ଯେଉଁ ଦେଶରେ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇଥିଲେ, ଯେଉଁ ଦେଶ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ତାକୁ ଆଜି ଶ୍ରୀ ଓ ବିକଳାଙ୍ଗ ଅବସ୍ଥାରେ ଦେଖି କବିଙ୍କ ନେତ୍ର ଲୋତକ ପ୍ଲାବିତ ହୋଇ ଉଠିଛି—

'ବିଂଶ ଶତାବ୍ଦୀର ପ୍ରଥମ ଦିନରେ ବାରବାଟୀ ଦର୍ଶନ' କବିତାରେ ସେ ଯେଉଁ ଜାତୀୟ ପ୍ରୀତି ପରିବେଷଣ କରିଯାଇଛନ୍ତି ତାହା ଅନ୍ୟ କୁତ୍ରାପି ପରିଦୃଷ୍ଟ ହୁଏ ନାହିଁ। ସେ ଭଗବାନଙ୍କୁ ପ୍ରାର୍ଥନା କରି ଜଣାଇଛନ୍ତି ।

"ଏ ଅଧଃପତିତ ଜାତି ପାଇଁ ତୁମେ କେବଳ ସହାୟ ।" ତେଣୁ ତାଙ୍କ ମାଗୁଣିରେ ଏତିକି କହିଛନ୍ତି—

"ଉତ୍କଳ ତନୟେ ଦିଅ ନବବଳ,
ଉତ୍କଳ ପାଦପେ ରସମୟ ଫଳ ।
ଉତ୍କଳ ସରିତେ ପବିତ୍ର ଜୀବନ,
ଉତ୍କଳ କାନନେ ସ୍ୱର୍ଗୀୟ ସୁମନ ।
ଉତ୍କଳ ଆକାଶେ ନବ ଯଶଃ ରବି,
ଉତ୍କଳ ପ୍ରକୃତି ଧରୁ ନବ ଛବି ।"

ଜନ୍ମଭୂମି ଉତ୍କଳ ପ୍ରତି ଏତିକି କମ୍ କଥା ନୁହେଁ । ଯାହାଦ୍ୱାରା ଉତ୍କଳୀୟତା, ଅଖଣ୍ଡତା ପ୍ରତିଷ୍ଠିତ ହେବ ତାହା ହିଁ ଭଗବାନଙ୍କୁ ପ୍ରାର୍ଥନା ।

## ଆର୍ଯ୍ୟ ସଂସ୍କୃତି ସଂରକ୍ଷଣ—

ଜୀବନକୁ ମଧୁମୟ କରିବା ଲାଗି ଆର୍ଯ୍ୟ ଋଷିବୃନ୍ଦ ବେଦ, ଉପନିଷଦ, ସଂହିତା, ଗୀତା ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥ ପ୍ରଣୟନ କରିଯାଇଛନ୍ତି । ତନ୍ମଧ୍ୟରୁ ବେଦ ଆମର ପ୍ରଧାନ ଧର୍ମଗ୍ରନ୍ଥ । ସେ ବାକ୍ୟ

କସି୍ମନ କାଳେ ଅସ୍ୱୀକାର୍ଯ୍ୟ ବା ଉପେକ୍ଷଣୀୟ ନୁହେଁ । ଆମର ଶରୀର ଓ ମନ ପୁଷ୍କଳ ହେବା ଲାଗି ନିର୍ମଳ ଜଳ, ସୁଧାମୟ ଫଳ, ମଧୁର ସୂର୍ଯ୍ୟାଲୋକ, ପରିଷ୍କାର ବାୟୁ, ହୃଷ୍ଟପୁଷ୍ଟ ଧେନୁ ଓ ରସାଳ ବୃକ୍ଷ ଆବଶ୍ୟକ । ତେଣୁ ଋକ୍‌ବେଦରେ କୁହାଯାଇଛି—

"ଓଁ ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ
ମଧୁନକ୍ତ ମୁତୋଷସୋ ମଧୁମତ୍ ପାର୍ଥିବଂ ରଜଃ
ମଧୁଦ୍ୟୌରସ୍ତୁନଃ ପିତାଃ
ମଧୁମାନ୍ନୋ ବନସ୍ପତିଃ ମଧୁମାଂ ଅସ୍ତୁ ସୂର୍ଯ୍ୟଃ
ମାଧ୍ୱୀର୍ଗାବୋ ଭବନ୍ତୁ ନଃ ।"

ପଣ୍ଡିତ ଗୋପବନ୍ଧୁ ତାଙ୍କ ସାହିତ୍ୟରେ ଏହି ବୈଦିକ ଭୂମିକାର ଅବତାରଣା କରି ଗାଇଛନ୍ତି—

"ସର୍ବସିନ୍ଧୁସ୍ରୋତେ କ୍ଷରୁ ମଧୁମୟ ନୀର
ବହୁ ମଧୁମୟ ଗନ୍ଧ ଶୀତଳ ସମୀର
ମଧୁମୟ ରସେ ପୁଷ୍ଟ ହେଉ ବନସ୍ପତି
ମଧୁମୟ ରଙ୍ଗେ ଶୋଭୁ ସର୍ବ ବସୁମତୀ
ହେଉ ମଧୁମୟ ଉଷା ପ୍ରଦୋଷ ରଜନୀ
ନଭୋଦେଶେ ମଧୁମୟ ରବି ହିମମଣି
ମଧୁମୟ ଚିତ୍ତେ ହେଉ ବିଶ୍ୱ ନିନାଦିତ
ଉଠୁ ବିଶ୍ୱ ପ୍ରାଣେ ମଧୁ ଅମୃତ ସଙ୍ଗୀତ ।"

"ପିତୃପକ୍ଷ ତର୍ପଣ" କବିତାରେ ସେ ଯେଉଁ ବୈଦିକ ସମ୍ବନ୍ଧ (vedic touch) ସଂଯୋଗ କରିଛନ୍ତି, ତାହା ମହାଭାରତୀୟ ସାହିତ୍ୟରେ ଏକ ଉଚ୍ଚାଙ୍ଗ ଆସନ ଦାବୀ କରି ବସୁଛି । ଉତ୍କଳରେ ଏହି ମହାଭାରତୀୟ ଭାବନା ଖେଳାଇ ସେ ସାହିତ୍ୟିକର ଉଚ୍ଚାସନ ପାଇପାରିଛନ୍ତି ।
ଶ୍ରୀମଦ୍‌ଭଗବଦ୍‌ଗୀତାରେ ଅଛି—

"ଯଦାଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଭାଗବତ କହେ—

"ଯୁଗକୁ ଯୁଗ ଏହି ମତେ,
ପରମାନନ୍ଦ ଏ ଜଗତେ ।

× × ×

ଦୁଷ୍ଟ ନିବାରି ସନ୍ଥ ପାଳି
ଦୟା ସାଗର ବନମାଳୀ ।"

ଗୀତା-ଭାଗବତର ଏହି ବାଣୀ ଧ୍ରୁବ ସତ୍ୟ । ସତ୍ୟାଶ୍ରୟୀ କବି ଗୋପବନ୍ଧୁ ଏହି ବାଣୀର ସୂକ୍ଷ୍ମ ବିଗ୍ରହ କରି ସ୍ୱୀୟ ଲେଖାରେ ପ୍ରକାଶ କରିଛନ୍ତି—

"କ୍ଷୀଣ ହେଲେ କେବେ ଧାର୍ମିକ ଶକତି,
ଆସନ୍ତି ଓହ୍ଲାଇ ପ୍ରଭୁ ବିଶ୍ୱପତି
ନିତ୍ୟଧାମ୍‌ଁ ଛାଡ଼ି ରତ୍ନସିଂହାସନ,
କରିବାକୁ ଧର୍ମ ପକ୍ଷ ସମର୍ଥନ ।"

## ଦେବଭକ୍ତି :—

ଦେଶ ଓ ଜାତିର ଦୁଃସହ କଷଣ ଘୁଞ୍ଚାଇବା ଲାଗି ସେ ବିଭୁ ପଦାରବିନ୍ଦରେ ନିବେଦନ ଜଣାଇଛନ୍ତି । ବିଭୁପ୍ରେମ ବିନା ତାଙ୍କ ଜୀବନ ହତାଶ ହେଲା ଭଳି ଅନୁଭୂତ ହୁଏ । ପୁରାଣ ଯୁଗର ଭକ୍ତ ଧ୍ରୁବ, ପ୍ରହ୍ଲାଦଙ୍କ ପରି ସେ ସର୍ବତ୍ର ବିଭୁ ଦର୍ଶନ କରି 'ବନ୍ଦୀର ସନ୍ଧ୍ୟା ଭାବନା' କବିତାରେ ଗାଇଛନ୍ତି—

"ପୂରି ରହିଛନ୍ତି ପ୍ରଭୁ ସର୍ବଭୂତେ ସର୍ବସ୍ଥାନେ,
ପାଇବି ପରାଣେ ଶାନ୍ତି ତାଙ୍କ ପାଦପଦ୍ମ ଧ୍ୟାନେ ।
ବଜାଇବି ହୃଦେ ଘଣ୍ଟା ଅନ୍ତରେ ପ୍ରଦୀପ ଜାଳି,
ଆରତି କରିବି ଏଥି ପଦେ ପ୍ରେମ-ପୁଷ୍ପ ଢାଳି ।
ଜୀବନ ନିବେଦିତମେ ହେବ ମୋର ଧ୍ରୁବତାରା,
ତାଙ୍କ ବଳେ ଛିଡ଼ି ଯିବ ମୋର ବିଷମ ଦୁଃସହ କାରା ।"

କାରାଗାରର ଦୁଃଖକୁ ସେ ଭଗବଦ୍ ସତ୍ତାରେ ମିଶାଇଦେଇ ନିଜେ ତା ଭିତରେ ହଜି ଯାଇଛନ୍ତି । ଆହୁରି ମଧ୍ୟ ବାଳକ ଧର୍ମପଦ ମୁଖରେ ଯେଉଁ ଦେବସ୍ତୁତି ବୋଲାଇଛନ୍ତି । ତାହା ତାଙ୍କ ଅନ୍ତରର ବହିଃ ପ୍ରକାଶ ମାତ୍ର । ବାଳକ ଧରମା ବାର ଶହ ବଢ଼େଇଙ୍କ ପ୍ରାଣରକ୍ଷା ଲାଗି ନିଜର ଜୀବନକୁ ଉତ୍ସର୍ଗ କରିଥିଲା ସାଗରର ଅତଳ ଜଳରାଶି ମଧ୍ୟରେ । ମୃତ୍ୟୁ ପୂର୍ବରୁ ପ୍ରାର୍ଥନାଟି ବଡ଼ ହୃଦ୍ୟ ହୋଇଉଠିଛି—

"ନମୋ ନିରଞ୍ଜନ ନିଖିଳ ନିଦାନ
ବ୍ୟାପ୍ତ ସର୍ବ ଚରାଚରେ
ପ୍ରଭୁ ଦୟାମୟ ମଙ୍ଗଳ ଆଳୟ
ଜୟ ଜଗଦୀଶ ହରେ ।

× × +

ପ୍ରକାଶି କରୁଣା ଯେ ପୁଣ୍ୟ ପ୍ରେରଣା
ଦେଇ ଅଛ ମୋ ଅନ୍ତରେ,
କର ତାହା ସିଦ୍ଧି କରୁଣାବାରିଧି
ଜୟ ଜଗଦୀଶ ହରେ ।"

ଉତ୍କଳମଣିଙ୍କ ଆନ୍ତରିକ ଚିନ୍ତାଧାରା ରୂପାୟିତ ହୋଇଛି ଏ ପ୍ରାର୍ଥନାମୟୀ କବିତାରେ ଓ ଧରମା ମୁଖରେ ।

## ରାଜନୀତିକ ଚିନ୍ତାଧାରା—

ସାହିତ୍ୟ କ୍ଷେତ୍ରରେ ରାଜନୀତିର ସ୍ଥାନ ପ୍ରାପ୍ତ ତାଙ୍କଠାରୁ ବିଶେଷ ରୂପେ ଦେଖାଦେଲା । ଗାଁଗଣ୍ଡାର ଲୋକମାନଙ୍କ ପାଖରେ ସେ ନେଇ ପହଞ୍ଚାଇଲେ ଏହି ନୀତି । ଇଂରେଜ ସରକାର କୂଟନୀତିକୁ ସେ କବିତା ମାଧ୍ୟମରେ ପ୍ରକାଶ କରି ସମସ୍ତଙ୍କର ହୃଦବୋଧ କରିଦେଲେ । ଏହା ପଞ୍ଚସଖା ଯୁଗ ବା ସତ୍ୟବାଦୀ ଯୁଗୀୟ କବିମଣ୍ଡଳୀର ବୈଶିଷ୍ଟ୍ୟ ବୋଲି କହିବାକୁ ହେବ । ସେ ଗାଇଛନ୍ତି—

'ରାଜପଦ ଅର୍ଥ ଯହିଁ ପରଜା ରଞ୍ଜନ
ସେହି ପ୍ରଜା ତହିଁ ଏବେ କି ଗୁରୁ ଗଞ୍ଜନ ?
ବିଜଧର୍ମ କ୍ଷାନ୍ତଧର୍ମ କ୍ଷତ୍ରୁଁ କରେ ତ୍ରାଣ
ରାଜନୀତି ଶ୍ଳେଷେ ଯେବେ କ୍ଷତ ପ୍ରଜାପ୍ରାଣ ।
ଘୋର ଅତ୍ୟାଚାର ଯେବେ ରାଜନୀତି ନାମେ
ସତ୍ୟ ରାଜନୀତି କାହିଁ ଏ ଭାରତ ଧାମେ ?"

ଏହି ଭଣ୍ଡାମି ବା ଛଳନାପୂର୍ଣ୍ଣ ନୀତିକୁ ଲକ୍ଷ୍ୟ କରି କବି ବେଦନା-ବ୍ୟଥିତ ହୋଇ ସ୍ୱାଧୀନତା ହାସଲ ପାଇଁ ଉତ୍କଳବାସୀଙ୍କୁ ଆହ୍ୱାନ ଜଣାଇ କହିଥିଲେ—

"ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି
ଚାରି ସ୍ତମ୍ଭେ ମାନବର ସମାଜ ସ୍ଥିତି ।"

ସ୍ୱାଧୀନ ଚିନ୍ତା ଜାଗ୍ରତ ନ ହେଲେ ମାନବଜୀବନ ଅସାରବୋଲି କବିତାର ଛନ୍ଦେ ଛନ୍ଦେ ସେ କହି ଯାଇଛନ୍ତି ।

## ଗଣତାନ୍ତ୍ରିକ ଚିନ୍ତାଧାରା—

ଗଣତନ୍ତ୍ର ଶାସନରେ ପ୍ରଜାଙ୍କର ସବୁ ବିଷୟରେ ଅଧିକାର ଅଛି । ଏଠାରେ ଜାତିଭେଦ ଓ ଧର୍ମଭେଦ ନାହିଁ । ଜଗନ୍ନାଥ ଧର୍ମ ଓ ଦର୍ଶନ

ତାର ଜୀବନ୍ତ ପ୍ରମାଣ । ପୁଣ୍ୟଭୂମି ନୀଳାଚଳରୁ ଏହି ଭାବ ପ୍ରସୃତ ହେବା ଲାଗି ସେ ପ୍ରୟାସୀ । ପ୍ରଜାର ହିତସାଧନ ପାଇଁ ଦେବତାମାନେ ସୁଦ୍ଧା ତତ୍ପର । ତଦ୍ୱାରା ଗଣତନ୍ତ୍ରର ବିକାଶ ସାଧିତ ହୁଏ; ମାତ୍ର ବିଜାତୀୟ ଶୋଷକର ଶାସନ କେବଳ ପିଷ୍ଟ ପେଷଣ ବିନା ଅନ୍ୟ କିଛି ନୁହେଁ । ସେ 'ବନ୍ଦୀର ଆତ୍ମକଥା'ରେ ବର୍ଣ୍ଣନା କରିଛନ୍ତି—

"ପ୍ରଜା ଲାଗି କଲେ ପ୍ରଜାପତି ସୃଷ୍ଟି,
ପ୍ରଜା ଲାଗି ଇନ୍ଦ୍ର କଲେ ଜଳବୃଷ୍ଟି ।
ପ୍ରଜା ଲାଗି ଉଦେ ରବି ଶଶୀ ତାରା,
ପ୍ରଜା ଲାଗି ବହେ ଶତ ନଦୀ ଧାରା ।
ପ୍ରଜା ଲାଗି ରାଜ୍ୟ ପ୍ରଜାର ଶାସନ,
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।

× × ×

ଛାଡ଼ି ଉଚ୍ଚ ନୀଚ ଭେଦ ଅହଙ୍କାର,
ହେଉ ନୀଳାଚଳୁ ସମତା ପ୍ରଚାର ।

ଏଭଳି ମହାଜାଗତିକ ଭାବରେ ତାଙ୍କର ଅନ୍ତର ପୂରିତ ।

## ହିତବାଦ ନୀତି—

ନିଜେ ପବିତ୍ର ରହି ଦେଶବାସୀଙ୍କୁ ପବିତ୍ର ରଖିବା ବାସନା ଥିଲା ତାଙ୍କର ପ୍ରବଳତର । ସେଥିପାଇଁ ସେ ଆଜି ଦେଶବନ୍ଧୁ । ସତ୍ୟାଶ୍ରୟୀର ସର୍ବଦା ବିଜୟ ହୁଏ—ଏହି ଭାବ ଧରି ସେ କଳୁଷ ପଙ୍କିଳମୟ ଜୀବନର ମାର୍ଜନା ଗାହିଁଛନ୍ତି—

"ସତ୍ୟ ଶାନ୍ତ ପଥେ ଚାଲ ଅବିରତ,
ଗ୍ରାମେ ଗ୍ରାମେ ସର୍ବେ କର ପଞ୍ଚାୟତ ।
ଚଳାଅ ଅରଟ ଛାଡ଼ି ମନୁ ଖେଡି,
ତେଜ ଉଚ୍ଚ ନୀଚ ଘୃଣା ଭେଦ ନୀତି ।
ଛେଇର ନାଶି ନିଶା ଆଦି ଦୁରାଚାର,
ନ କର ଦୂଷିତ ଗ୍ରାମ ଘରଦ୍ୱାର ।

ଏ ଆତ୍ମର ହେବ ଜଗତ ମଙ୍ଗଳ;
ଯଥାକାଳେ ମେଘ ବରଷିବ ଜଳ ।"

'ଗୋ ମାହାତ୍ମ୍ୟ'ରେ ଗୋଜାତିର ଉନ୍ନତି ବର୍ଣ୍ଣିତ । ଏ ପୁସ୍ତକ-ଖଣ୍ଡି ସମ୍ପୂର୍ଣ୍ଣ ଉପଦେଶଗର୍ଭକ ଓ ନୀତିପୂର୍ଣ୍ଣ । ଗୋଜାତି ସୁଖରେ ରହିଲେ ଜଗତର ସୁଖ ଅନିବାର୍ଯ୍ୟ ଓ ଜୀବନରେ ଅକ୍ଷୟ ବିଭୂତି ମିଳିଥାଏ । ତାଙ୍କର ଭାଷାରେ—

"ଯେ ନିତି ଖାଇବ ଗୋ-କ୍ଷୀର, ତେଜେ ଉଜ୍ଜ୍ୱଳେ ତା ଶରୀର ।
ହୁଅଇ ବୁଦ୍ଧି ବିଚକ୍ଷଣ, ନ ଭୋଗେ ସେ ଦୁଃଖ କଷଣ ।
ହୋମରେ ଦେଲେ ଘୃତାହୁତି, ମିଳଇ ଅକ୍ଷୟ ବିଭୂତି ।
ଗୋ-ଘୃତେ କରିବ ସାଧନ, ଦେବତା ପୂଜା ସ୍ୱସ୍ତ୍ୟୟନ ।"

## ଅଖଣ୍ଡ ଜାତୀୟତା—

ସ୍ୱରାଜ୍ୟସାଧନ ପାଇଁ ତାଙ୍କ ଆତ୍ମା ବ୍ୟଥିତ । ସ୍ୱାଧୀନତା ପାଇଁ ସେ ନିଜର ହାଡ଼, ମାଂସ ଦାନ କରିବା ଲାଗି ବ୍ୟାକୁଳ । ଜାତୀୟ ଐକ୍ୟ, ଜାତୀୟ ସହତିକୁ ସେ ଜୀବନର ମହତ୍ତମ କାର୍ଯ୍ୟରୂପେ ଗ୍ରହଣ କରିଯାଇଛନ୍ତି । ସେହିଠାରେ ହିଁ ତାଙ୍କର ପୌରୁଷତ୍ୱ ନିହିତ । ଆଳଙ୍କାରିକ ଓ ଆନୁପ୍ରାସିକ ଛନ୍ଦରେ ତାଙ୍କର ବର୍ଣ୍ଣନା ଓଡ଼ିଆପ୍ରାଣିର ସ୍ମୃତି ଭୂମି ସ୍ମରଣୀୟ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

## ବିଶ୍ୱ ପ୍ରେମିକତା—

କବି ବିଶ୍ୱର ମିଳନାତ୍ମକ ଚିତ୍ର ଦେଖି ବିଶ୍ୱପ୍ରେମରେ ମଜ୍ଜି-ଯାଇଛନ୍ତି । ପ୍ରକୃତି-ରାଜ୍ୟରେ ଯେପରି ବାସ୍ତବ ମିଳନ ଘଟୁଛି, ଠିକ ସେହିପରି ବିଶ୍ୱାତ୍ମା ପରମେଶ୍ୱରଙ୍କ ପ୍ରେମ ପାଇବାକୁ ସେ ଅଗ୍ରହୀ । 'ବିଶ୍ୱର ମିଳନଚିତ୍ର' କବିତାରେ ସେ ଲେଖିଛନ୍ତି ।

"ନାଚେ ଲହରୀ ଯଥା ଶଶୀ ପରଶେ,
ନଳିମା ଯଥା ରବି କରେ ହରଷେ ।
ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ,
ନାଚିବି ବିଶ୍ବ-ପ୍ରେମ ପରମାନନ୍ଦେ ।
ଗିରି, ସାଗର, ନଦୀ, ତପନ, ଶଶୀ,
ସର୍ବେ ଚୁମ୍ବିବେ ମୋତେ ପ୍ରେମେ ପରଶି ।
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା,
ହେବ ଏ ବିଶ୍ବ ମୋର ପ୍ରେମ ପସରା ।"

## ସାମ୍ବାଦିକତା—

ଗୋପବନ୍ଧୁଙ୍କ ସାମ୍ବାଦିକତାକୁ ଉତ୍କଳ ଭୁଲିପାରିବ ନାହିଁ । "ସମାଜ" ପତ୍ରିକା ଯେତେଦିନ ଧରି ଥିବ, ସେ ପଣ୍ଡିତଙ୍କ ସ୍ବାକ୍ଷର ବହନ କରିଥିବ । 'ସତ୍ୟବାଦୀ' ପତ୍ରିକା ତାଙ୍କର ସାହିତ୍ୟସାଧନାର ଅନ୍ୟତମ ଉତ୍ସ । 'ଅଦ୍‌ଭୁତ ସତ୍ୟ' ସମ୍ବାଦ ପରିବେଷଣ ଶକ୍ତି ତାଙ୍କର ଅବିନଶ୍ବର ।

ତାଙ୍କ ପରବର୍ତ୍ତୀ ଯୁଗର ସାହିତ୍ୟ ହେଲା ଭିନ୍ନମୁଖୀ । ସ୍ବାଧୀନତା ପରେ ପରେ ଗଦ୍ୟ ସାହିତ୍ୟର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହେଲା । ପଣ୍ଡିତଙ୍କ ଗଦ୍ୟ ସାହିତ୍ୟ ମଧ୍ୟ ଉଦ୍‌ବୋଧମୂଳକ ଓ ଜୀବନ୍ୟାସଦାୟିନୀ । ଏହିସବୁ ଦୃଷ୍ଟିକୋଣରୁ ବିଚାର କଲେ ଉତ୍କଳ ସାହିତ୍ୟକୁ ତାଙ୍କର ଦାନ ଅବିସ୍ମରଣୀୟ । ଓଡ଼ିଶା ଇତିହାସରେ ତାଙ୍କ ଆସନକୁ କେହି ନ୍ୟୂନ ବୋଲି କହିପାରିବ ନାହିଁ । ମହାତ୍ମା ଗୋପବନ୍ଧୁଙ୍କୁ ସମସ୍ତଙ୍କ ନିକଟରେ ପରିଚିତ କରାଇବା ଲାଗି ପଣ୍ଡିତ ୰ ନୀଳକଣ୍ଠ ଦାସ ପୁରୀର ଜଗନ୍ନାଥ ମହାପ୍ରଭୁଙ୍କ ସିଂହଦ୍ୱାର ସମ୍ମୁଖସ୍ଥ ପ୍ରତିମୂର୍ତ୍ତିର ଭିତ୍ତିଗାତ୍ରରେ ଯେଉଁ ଶ୍ଳୋକଟି ଲେଖି ଯାଇଛନ୍ତି ତାହା ଏହି—

"ବିସ୍ତୀର୍ଣ୍ଣା ଯସ୍ୟ କୀର୍ତ୍ତିର୍ନବନବ ଘଟନେ 'ସସ୍ୟବାଦୀ ବିହାରେ',
ସାର୍ଥାଖ୍ୟେ ଗ୍ଧପିପଦେ ବିପୁଲ ବିହୁମତେ 'ସତ୍ୟବାଦୀ', 'ସମାଜେ' ।
ଦୁର୍ଭିକ୍ଷେ ବନ୍ୟମାତ୍ରୌ ସହଜ ବିକଶିତୋ ଯସ୍ୟ ଦେଶାତ୍ମବୋଧଃ,
ସୋଽୟଂ ଶ୍ରୀ ଗୋପବନ୍ଧୁର୍ଜନହୃଦୟନିଧି ମୂର୍ତ୍ତିରୂପୋ ବିଭାତି ।"

ଏଭଳି ମହାନ୍ ପୁରୁଷ ଉତ୍କଳର ଏକ ସ୍ୱତନ୍ତ୍ର ଇତିହାସ । ତାଙ୍କ ଯଶଃଗୁଣ ବର୍ଣ୍ଣନା କରି ପ୍ରବନ୍ଧ ଲେଖିବା ଏକାବେଳେ ସମ୍ଭବ ନୁହେଁ । ତାଙ୍କ ସମ୍ପର୍କରେ କବିବର ରାଧାନାଥଙ୍କ ଉକ୍ତିକୁ ଟିକିଏ ପରିବର୍ତ୍ତନ କରି କହିଲେ ଯଥାର୍ଥ ହେବ—

''ଧନ୍ୟ କବି ! ତୁମ୍ଭ ଜନ୍ମ ଶୁଭ କ୍ଷଣେ,
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ ଭୁବନେ ।
ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ,
ମାନ ଯଶୋ ଦେହେ ତୁମ୍ଭେ ଆୟୁଷ୍ମାନ ।''

ପରିଶେଷରେ ଉତ୍କଳମଣିଙ୍କ ଭଳି ସ୍ୱଦେଶପ୍ରାଣ ମହାପୁରୁଷ ଉତ୍କଳରେ କାହିଁକି, ସାରା ଦେଶରେ ବିରଳ । ତାଙ୍କର ଭଳି ମହାତ୍ମା ଜନ୍ମଲାଭ କରନ୍ତୁ ଓ ଏ ଦେଶର କଷଣ ଘୁଞ୍ଚିଯାଉ । ଆମଠାରୁ ପ୍ରେୟ ଭାବ ଦୂର ହୋଇ ଶ୍ରେୟଃ ଭାବ ଦେଖା ଦେଉ । ତାଙ୍କର ଉକ୍ତିର ଆଦର୍ଶ ସେ ନିଜେ—

''ଶ୍ରେୟଃ ପ୍ରେୟ ବେନି ଭାବେ ଆବଦ୍ଧ ମାନବ,
ପ୍ରେୟ ପଥେ ଲଭଇ ସେ ସଂସାର ବିଭବ ।
ଶ୍ରେୟଃ ପଥ ଅନୁସରି କାଟେ ଭବ ପାଶ,
ପାଏ ପୁରୁଷାର୍ଥ ଯା'ର ନାହିଁ କେବେ ନାଶ ।''

ମହାନ୍ ଐତିହାସିକ ପୁରୁଷ ଗୋପବନ୍ଧୁ ଦାସଙ୍କର ସେହି ପୁରୁଷାର୍ଥ ଆମର କାମ୍ୟ ହେଉ ।



# ତ୍ରିଧାରା

## ଶ୍ରୀ ମୁରଲୀଧର ମଲ୍ଲୀକ

[ ଦୈନିକ 'ସମାଜ'ର ସହକାରୀ ସଂପାଦକ ତଥା ଓଡ଼ିଶାର ଜଣେ ସୁପରିଚିତ ଐତିହାସିକ ଉପନ୍ୟାସ ଲେଖକ ଶ୍ରୀ ମଲ୍ଲିକ ୧୯୪୬ରୁ ୧୯୫୧ ପର୍ଯ୍ୟନ୍ତ କନିକା ପ୍ରଜା ସଂଗଠନର ଜଣେ କର୍ମୀ ଭାବରେ କାର୍ଯ୍ୟ କରୁଥିଲେ । ସେହି ସମୟରେ ବିଶିଷ୍ଟ ପ୍ରଜାନେତା ଶ୍ରୀଯୁକ୍ତ ଚକ୍ରଧର ବେହେରାଙ୍କଠାରୁ କନିକା ଇତିହାସ ସମ୍ପର୍କରେ ସେ ଯେଉଁସବୁ ତଥ୍ୟ ସଂଗ୍ରହ କରିଥିଲେ, ତାର ଉପରେ ଏଇ ଲେଖା ଆଧାରିତ । ଏଇ ଲେଖକଙ୍କର ବିସ୍ତୃତ ବିବରଣୀସମ୍ବଳିତ ସୁବୃହତ୍ କନିକା ଇତିହାସ ନିକଟରେ ପ୍ରକାଶ ପାଇବ ବୋଲି ଆଶା କରାଯାଉଛି ।—ସଂ ]

ଆପଣେ ଆମ ପାଇଁ କ'ଣ ଆଣିବେ ?

୧

ହଜାର ହଜାର ଲୋକ ଆଗ୍ରହ ଓ ଉତ୍କଣ୍ଠାରେ ଚାହିଁ ରହିଛନ୍ତି । ନଦୀକୂଳରେ ତିଳଧାରଣର ସ୍ଥାନ ନାହିଁ । ଆପଣେଙ୍କର ନଦୀ ପଥରେ ଆସିବାର କଥା । ସମସ୍ତେ ସେ ଆଡ଼କୁ ଚାହିଁ ରହିଛନ୍ତି । ଦୂରରେ କେଉଁଠି ନଦୀ ଉପରେ ବଗଟିଏ ଉଡ଼ିଗଲେ ଲୋକେ ତାକୁ ଡଙ୍ଗାର ପାଲ ମନେ କରି କହୁଛନ୍ତି—ଏହି ଆସିଗଲେ । ମାତ୍ର ଧଳାଚଢ଼େଇ ଅପସରି ଗଲା ପରେ ନୀରବ ରହୁଛନ୍ତି । କେତେଜଣ ଉତ୍ସାହୀ ଯୁବକ ମଧ୍ୟ କିଛି ଦୂର ଆଗକୁ ଚାଲି ଯାଇଛନ୍ତି । ଡଙ୍ଗା ଦିଶିଲେ ଦଉଡ଼ି ଆସି ଖବର ଦେବେ ।

ଜୁଆର ଫୁଲି ଫୁଲି ନାଚୁଛି । କ୍ରମେ ନଦୀଗର୍ଭ ପୂର୍ଣ୍ଣହୋଇ ପାଣି କୂଳକୁ ମାଡ଼ିଆସିଲା । ଦିନ ଆସି ଦଶ ଘଡ଼ି ହେଲାଣି । ସମସ୍ତେ ଏକ ଲକ୍ଷ୍ୟରେ ପୂର୍ବଦିଗକୁ ଚାହିଁଛନ୍ତି । କିଏ ଜଣେ ଦୂରରୁ ଦଉଡ଼ି ଦଉଡ଼ି

ଆସୁଥିବାର ଦେଖାଗଲା । ଦୁଇ ଗୃହ ଜଣ ନଗାକୁଳ ବରଗଛରେ ଚଢ଼ି ଅନାଇଲେ ।

—"ହଁ, ଡଙ୍ଗାର ପାଲ ଦେଖାଯାଉଛି ।" ଏକ ସଙ୍ଗରେ ବହୁ ଲୋକ କହିଉଠିଲେ—"ଏହି ଆସିଗଲେ ।"

ସଙ୍ଗେ ସଙ୍ଗେ ସମବେତ ଜନତା କଣ୍ଠରୁ ଧ୍ୱନି ଉଠିଲା— "ମହାତ୍ମା ଗାନ୍ଧୀ କି ଜୟ, ଦାସ-ଆପଣେ କି ଜୟ ।"

× × ×

୧୯୨୨ ମସିହା କଥା । ଦାସ-ଆପଣେଙ୍କ ଯତ୍ନରେ ସେତେବେଳକୁ ଅହିଂସାମୂଳକ ଗଡ଼ଯାତ ଠାରୁ ଆରମ୍ଭ କରି ମୋଗଲବନ୍ଦୀର ଘରେ ଘରେ ଅସହଯୋଗ ବାର୍ତ୍ତା ପ୍ରଚାରିତ ହୋଇସାରିଥାଏ । ଲୋକମାନେ ସେମାନଙ୍କ ହକ୍ ଦାବି ବୁଝି ସାରିଥାଆନ୍ତି ।

ଏହି ସମୟରେ କନକାର ଅତ୍ୟାଚାର ବିଷୟ ଖବର କାଗଜ ମାନଙ୍କରେ ପ୍ରକାଶିତ ହେଲା । ସେତେବେଳେ କନକାରଜା ବ୍ରିଟିଶ୍ ସରକାରଙ୍କର କୋଡ଼ପୋଷ୍ୟ ପୁଅ । ରଜାଙ୍କ କଥା ବ୍ରିଟିଶ୍ ସରକାରଙ୍କ ଆଦେଶ ବୋଲି ମନେ ହେଉଥିଲା । କନକା ରଜା ସାର୍ଟିଫିକେଟ କ୍ଷମତା ହାସଲ କରିଥାଆନ୍ତି ।

ରଜାଙ୍କଦ୍ୱାରା ଜମିଜମା ବନ୍ଦୋବସ୍ତ କରାଯିବା ଠିକ୍ ହେଲା । ପ୍ରଜାମାନେ ଆପତ୍ତି କରି କହିଲେ—ସରକାରଙ୍କଦ୍ୱାରା ବନ୍ଦୋବସ୍ତ ହେଉ । ପ୍ରଜାଙ୍କ ଗୁହାରି ଶୁଣାଗଲା ନାହିଁ । ଯେପରି କୌଶଳରେ ବନ୍ଦୋବସ୍ତ କରାଗଲା ଓ କର, ଟିକସ ଯେପରି ବୃଦ୍ଧି କରାଗଲା, ଉତ୍କଳ ଦୀପିକା' ଓ 'ସେବା' ପ୍ରଭୃତି ଖବରକାଗଜ ମାନଙ୍କରେ ତାହାର ପ୍ରତିବାଦ କରାଗଲା । ପ୍ରଜାମାନେ ବେଆଇନ ଖଜଣା ଦେବାକୁ ଆପତ୍ତି କଲେ ।

ରଜା କହିଲେ – ଖଜଣା ଓ ଟିକସମାନ ଆଗ ଦେଇଦେଲେ ସେ ଆପତ୍ତି ପରେ ଶୁଣାଯିବ । ପ୍ରଜାମାନେ ତହିଁରେ ଅସ୍ୱୀକୃତ ହୋଇ ଖଜଣା ଇତ୍ୟାଦି ନ ଦେବାର ସ୍ଥିର କଲେ । ଅସହଯୋଗ କର୍ମୀମାନେ ଖଜଣା

ବନ୍ଦ ନ କରିବାକୁ ପ୍ରଜାମାନଙ୍କୁ ଅନୁରୋଧ କଲେ ସୁଦ୍ଧା ସେମାନେ ଶୁଣିଲେ ନାହିଁ ।

ରାଜା ସରକାରୀ କର୍ତ୍ତୃପକ୍ଷଙ୍କୁ ଜଣାଇଦେଲେ ଯେ ପ୍ରଜାମାନେ ମେଳି କରି ଖଜଣା ବନ୍ଦ କରିଛନ୍ତି । ଏଥିରେ ପୁଲିସ କର୍ତ୍ତାମାନେ ଅସହଯୋଗୀମାନଙ୍କୁ ଦୋଷ ଦେଇ ଜେଲ ଧମକ ଦେଲେ । ଇତିମଧ୍ୟରେ ଖଜଣା କିସ୍ତି ତାରିଖ ହିନ ଗଡ଼ିଗଲା । ପ୍ରଜାମାନେ ସଭାକରି ପୂର୍ବ ହାରରେ ଖଜଣା ଦେବା ସ୍ଥିର କଲେ ।

ନଅରଠାରୁ ପ୍ରାୟ ୪।୫ ମାଇଲ ଦୂରରେ ଏହିପରି ଏକ ସଭା ଚାଲିଥିବା ବେଳେ ରାଜାଙ୍କ ତରଫରୁ ପ୍ରଚାର ହେଲା ଯେ ପ୍ରଜାମାନେ ବିପ୍ଳବ କରି ନଅର ଲୁଟି ନେବାକୁ ଆସୁଛନ୍ତି । ସଙ୍ଗେ ସଙ୍ଗେ ନଅର ଜଗୁଆଳୀ ଥିବା ପୋଲିସ ଫଉଜ ଘଟଣାସ୍ଥଳକୁ ଚାଲିଲେ । ପଚରପୁର ପୋଖରୀ ନିକଟରେ କେତେକ ଲୋକ ଆସୁଥିବା ବେଳେ ସେମାନଙ୍କ ଉପରେ ଗୁଳି ଚାଲିଲା । ବାସୁ ସେଠୀ ଓ ବିଶ୍ୱନାଥ ମଡ଼ୁଆଳ ନାମରେ ଦୁଇଜଣ ଲୋକ ଗୁଳି ଚୋଟରେ ପ୍ରାଣ ହରାଇଲେ । ଆଉ କେତେକ ତରବାରୀ ଆଘାତରେ ଆହତ ହେଲେ । କେତେ ଜଣ ବନ୍ଦୀ ହୋଇ ହାଜତରେ ରହିଲେ ।

ଏହାର ପରବର୍ତ୍ତୀ ଅବସ୍ଥା ଅତି ଭୟାବହ ହୋଇପଡ଼ିଲା । ଖଜଣା ନ ଦେବାରୁ ସ୍ତ୍ରୀଲୋକଙ୍କ ଉପରେ ଅତ୍ୟାଚାର ହେଲା । ଘର ଲୁଟ ପାଟ ହେଲା । କେତେ ଆସନ୍ନପ୍ରସବା ମହିଳା ବଣକୁ ପଳାଇଯାଇ ସନ୍ତାନ ପ୍ରସବ କଲେ । ସଦ୍ୟଜାତ ଶିଶୁମାନେ ବିଲୁଆ କୁକୁରଙ୍କର ଆହାର ହେଲେ ।

ଏତିକିବେଳେ କନିକାର ପାଞ୍ଚମୁକା ଅଞ୍ଚଳରେ ଦଳେ ଶିକ୍ଷିତ ଯୁବକ ଏକଯୁଟ ହୋଇ ଅତ୍ୟାଚାରର ମୁକାବିଲା କରିବାକୁ ଅଣ୍ଟାଭିଡ଼ି ଠିଆହେଲେ । ସେମାନଙ୍କ ମଧ୍ୟରୁ କେତେକ ଯାଇ ଦାସ-ଆପଣେଙ୍କ ସହ ଯୋଗସୂତ୍ର ସ୍ଥାପନ କଲେ । କନିକା ବିଷୟ 'ସମାଜ' ଖବର କାଗଜରେ

ପ୍ରକାଶ ପାଇଲା । ଏହି ବିପ୍ଳବୀ ଯୁବକମାନଙ୍କର କେନ୍ଦ୍ରସ୍ଥାନ ନରେନ୍ଦ୍ର-ପୁରରେ ରହିଲା ।

ସେ ବର୍ଷ ମଇ ମାସ ୧୪ ତାରିଖରେ ପ୍ରାଦେଶିକ କଂଗ୍ରେସ କମିଟିର ଏକ ବୈଠକ ବାଲେଶ୍ୱରଠାରେ ବସିଲା । କମିଟିର ଅନୁରୋଧ-ମତେ ଉତ୍କଳ ସମ୍ମିଳନୀ ଓ ଉତ୍କଳ ପ୍ରାଦେଶିକ କଂଗ୍ରେସ ଦୁହେଁ ମିଶି ଗୋଟିଏ ଜାତୀୟ ଅନୁଷ୍ଠାନରେ ପରିଣତ ହେଲା । ଗୋପବନ୍ଧୁ ପ୍ରାଦେଶିକ କମିଟିର ଏହି ବୈଠକରେ କନିକା ଅତ୍ୟାଚାରର ପୁଙ୍ଖାନୁପୁଙ୍ଖ ନିରପେକ୍ଷ ଅନୁସନ୍ଧାନ ନିମନ୍ତେ ପ୍ରସ୍ତାବ ଦେଲେ ।

ବ୍ରିଟିଶ ସରକାର ଓ କନିକାରାଜା ଏ ପ୍ରସ୍ତାବରେ ପ୍ରମାଦ ଗଣିଲେ । ତେଣୁ ବାଲେଶ୍ୱର ଜିଲାର କୌଣସିଠାରେ ଗୋପବନ୍ଧୁ ସଭାସମିତି କରିପାରିବେ ନାହିଁ ବୋଲି ୧୪୪ ଧାରା ଜାରି କରାଗଲା । ଏହା ବ୍ୟତୀତ 'ସମାଜ' କାଗଜରେ କେତେକ ବିଷୟ ପ୍ରକାଶ ପାଇଥିବା ଯୋଗୁ ପଣ୍ଡିତ ଗୋପବନ୍ଧୁଙ୍କ ନାମରେ ମାନହାନି ମକଦ୍ଦମା ମଧ୍ୟ ଦାଏର କରାଗଲା । ମାତ୍ର ଗୋପବନ୍ଧୁ ଭଦ୍ରକ ସବ୍‌ଡ଼ିଭିଜନ ସମ୍ମିଳନୀର ସଭାପତି ରୂପେ ଆଗରୁ ନିର୍ବାଚିତ ହୋଇଥିବାରୁ ୧୪୪ ଧାରା ଅମାନ୍ୟ କରି ଭଦ୍ରକ ସମ୍ମିଳନୀରେ ଯୋଗ ଦେଲେ ।

+ + +

ଭଦ୍ରକ ସମ୍ମିଳନୀରେ ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ପ୍ରସ୍ତାବ ମହତାବବାବୁଙ୍କ ଅନୁମୋଦନକ୍ରମେ ଗ୍ରହଣ କରାଗଲା ଯେ ଆପଣେ କନିକା ଯାଇ ଜମିଦାର ଓ ପ୍ରଜାଙ୍କର ବିବାଦ ଆପୋଷରେ ମେଣ୍ଟାଇ ଦିଅନ୍ତୁ ।

ଆପଣେ ପ୍ରଥମେ ଏ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ସେ କହିଲେ—ଅନ୍ୟାୟ ସହିତ ଆପୋଷ କରିବା ଅସହଯୋଗୀର କର୍ତ୍ତବ୍ୟ ନୁହେଁ । ମାତ୍ର ଏ ଘଟଣାକୁ ଆଉ ବେଶୀଦୂର ନ ନେବାକୁ ଅସହଯୋଗୀ-ମାନେ କହିବାରୁ ସେ ବାଧ୍ୟ ହୋଇ ତହିଁରେ ସମ୍ମତ ହେଲେ । ଠିକ୍ ହେଲା ଯେ ଆପଣେ କନିକାରୁ ଫେରି ନଦୀପଥରେ ନରେନ୍ଦ୍ରପୁରରେ ଆସି

ଓହ୍ଲାଇବେ । ରାଜାସାହେବଙ୍କ ସହିତ ଯାହା କଥାବାର୍ତ୍ତା ହେଲା, ତାହା ସେଠାରେ ଶୁଣାଇବେ । ତେଣୁ ସେଦିନ ଆପଣଙ୍କୁ ଦେଖିବା ପାଇଁ ଓ ତାଙ୍କ କଥା ଶୁଣିବା ପାଇଁ ହଜାର ହଜାର ଲୋକ ନଈକୂଳ ପଡ଼ିଆରେ ଆସି ରୁଣ୍ଡ ହେଲେ ।

ଡଙ୍ଗା ଆସି କୂଳରେ ନଙ୍ଗର କଲା । ଆପଣେ ଡଙ୍ଗା ଉପରେ ଠିଆ ହୋଇଗଲେ । ହଜାର ହଜାର କଣ୍ଠରୁ ଧ୍ୱନି ଉଠିଲା—

"ମହାତ୍ମା ଗାନ୍ଧୀଙ୍କ ଜୟ ।"
"ଗୋପବନ୍ଧୁ ବାବୁଙ୍କ ଜୟ ।"

ଆପଣେ ଦୁଇ ହାତ ଉପରକୁ ଉଠାଇଲେ । ମୁହୂର୍ତ୍ତକରେ ସମସ୍ତ ପାଟିତୁଣ୍ଡ ବନ୍ଦ ହୋଇଗଲା । ଗୋପବନ୍ଧୁ ବାବୁ କହିଲେ— "ଭାଇମାନେ, ମୁଁ ଆପଣମାନଙ୍କ ପାଇଁ କିଛି ଆଣି ପାରି ନାହିଁ । ଖାଲି ହାତରେ ଫେରି ଆସିଛି ।"

ନଈକୂଳ ପଡ଼ିଆରେ ଶ୍ମଶାନର ନିସ୍ତବ୍ଧତା ବିରାଜମାନ କଲା ।

ଆପଣେ ଡଙ୍ଗାରୁ ଓହ୍ଲାଇ କୂଳକୁ ଆସିଲେ । ଲୋକେ ଫୁଲମାଳ ଦେଇ ତାଙ୍କୁ ସଭାସ୍ଥଳକୁ ନେଇଗଲେ । ସଭା କାମ୍ ଆରମ୍ଭ ହେଲା ।

ଆପଣେ କହିଲେ—"ଭାଇମାନେ, ମୁଁ ଆପଣମାନଙ୍କ ପାଇଁ କିଛି ଆଣି ପାରି ନାହିଁ ବୋଲି ଦୁଃଖ କରନ୍ତୁ ନାହିଁ । କନିକାରାଜା ଯେ ପ୍ରକାର ଆପୋଷରେ ରାଜି ହେଲେ, ତହିଁରେ ଆପଣମାନଙ୍କର ସମ୍ମାନହାନି ଘଟିବ ବୋଲି ମୁଁ ତାହା ଗ୍ରହଣ କଲି ନାହିଁ । ତେଣୁ ଶୂନ୍ୟ ହସ୍ତରେ ମୋତେ ଫେରି ଆସିବାକୁ ପଡ଼ିଲା । ନିଜର ଆତ୍ମସମ୍ମାନକୁ ବଳି ଦେଇ କୌଣସି ଆପୋଷ କରିବାର ମୁଁ ଘୋର ବିରୋଧୀ । ତେଣୁ ଆପଣମାନେ ମୋତେ ଭୁଲ୍ ବୁଝିବେ ନାହିଁ !"

ସଭା ଭିତରୁ ଧ୍ୱନି ଉଠିଲା—"ନା, ଆମେ ମଧ୍ୟ ଏ ପ୍ରକାର ଆପୋଷ ଚାହୁଁ ନାହିଁ ।

ଆପଣେ ପୁଣି କହିଲେ—"ଭାଇମାନେ, ମୁଁ ଆପଣମାନଙ୍କୁ ବର୍ତ୍ତମାନ ତିନୋଟି ଉପଦେଶ ଦେଉଛି । ଏ ତିନିଧାରାକୁ ଯଦି ଆପଣମାନେ ମିଳନ କରାଇ ପାରିବେ, ତେବେ ମୋର ବିଶ୍ୱାସ ଯେ ତ୍ରିପଥଗା ଗଙ୍ଗା ପରି ତାହା ଆପଣମାନଙ୍କର ସମସ୍ତ ଦୁଃଖଦୁର୍ଦ୍ଦଶା ମୋଚନ କରିପାରିବ । ଆପଣମାନେ ମନ ଦେଇ ଶୁଣନ୍ତୁ । ମୋର ପ୍ରଥମ ଉପଦେଶ—

ଆପଣମାନଙ୍କର ଏହି ସ୍ଥୂଳ ଘରକୁ ଦେଖନ୍ତୁ । କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ତୃଣ ଏକତ୍ର ହୋଇଥିବାରୁ ପ୍ରବଳ ଝଡ଼ ବୃଷ୍ଟିକୁ ମଧ୍ୟ ସେମାନଙ୍କର ଖାତିର ନାହିଁ । ଆପଣମାନେ ଏହି ତୃଣ ପରି ଏକତ୍ର ହୋଇ ପାରିଲେ କନକ ରାଜା କାହିଁକି, ଇନ୍ଦ୍ରର ବଜ୍ର ମଧ୍ୟ ଆପଣମାନଙ୍କୁ ଭୟ କରିବ ।

ମୋର ଦ୍ୱିତୀୟ ଉପଦେଶ ହେଉଛି—ଅହିଂସା ଅର୍ଥ ଭୀରୁତା ନୁହେଁ । ଆତ୍ମରକ୍ଷା ପାଇଁ ଓ କୁଳଲଳନାମାନଙ୍କର ଇଜ୍ଜତ ରକ୍ଷା ପାଇଁ ଆପଣମାନେ ଯଦି ପ୍ରତିରୋଧ କରନ୍ତି, ତେବେ ତାହା ଅହିଂସା ବୋଲି କୁହାଯିବ ନାହିଁ । ଏ ସମ୍ପର୍କରେ ମୁଁ ଗୋଟିଏ କାହାଣୀ କହୁଛି ଶୁଣନ୍ତୁ—

ଥରେ ଗୋଟିଏ ନାଗ ସାପ ନାରଦ ମହର୍ଷିଙ୍କୁ ଭେଟି କହିଲା—ଋଷି, ମୋତେ ସମସ୍ତେ ଖଳ ବୋଲି କହୁଛନ୍ତି । ଏ ଅପବାଦରୁ ମୁଁ କିପରି ରକ୍ଷା ପାଇବି କୁହନ୍ତୁ ।

ନାରଦ କହିଲେ – ତୁ ଲୋକଙ୍କ ପ୍ରାଣହାନି ଘଟାଉଥିବାରୁ ସେମାନେ ତୋତେ ଖଳ ବୋଲି କହୁଛନ୍ତି । ତୁ ଆଜିଠାରୁ ଯଦି କାହାରି ଅନିଷ୍ଟ ନ କରିବୁ, ତେବେ ତୋର ଅପବାଦ ଘୁଞ୍ଚିଯିବ ।

ନାରଦ ମହର୍ଷି ଚାଲିଗଲେ । ନାଗସାପ ତାଙ୍କ ଉପଦେଶ ଅନୁସାରେ ସେହି ଦିନରୁ କାହାରିକୁ କାମୁଡ଼ିଲା ନାହିଁ । ସବୁବେଳେ ଗୋଟିଏ ସ୍ଥାନରେ ପଡ଼ିରହିଲା । ସାପର ଏଭଳି ଅବସ୍ଥା ଦେଖି ପିଲାମାନେ ଆସି ତା ଉପରକୁ ପଥର ଫିଙ୍ଗିଲେ । ବାଡ଼ିରେ ପିଟିଲେ । କ୍ଷତବିକ୍ଷତ ଅବସ୍ଥାରେ ସେ ସେହିଠାରେ ପଡ଼ିରହିଲା ।

କେତେ ଦିନ ପରେ ନାରଦ ମହର୍ଷି ପୁଣି ସେ ବାଟେ ଆସିଲେ । ତାଙ୍କୁ ଦେଖି ସାପ କହିଲା—ଗୋସେଇଁ, ମୋ ଅବସ୍ଥା ଦେଖନ୍ତୁ । ଆପଣ କାମୁଡ଼ିବାକୁ ମନା କଲେ; ମାତ୍ର ତା ଫଳରେ ମୋର ଏଭଳି ଦୁର୍ଦ୍ଦଶା ଘଟିଛି । ପିଲାଏ ଟେକାପଥର ଫିଙ୍ଗି ମୋତେ ଏଭଳି ଖଣ୍ଡିଆ ଖାବରା କରିଦେଲେଣି ।

ସାପ କଥା ଶୁଣି ନାରଦ କହିଲେ ମୁଁ ତୋତେ କାମୁଡ଼ିବାକୁ ସିନା ମନା କରିଥିଲି, ମାତ୍ର ଫଁ କରିବାକୁ ତ ମନା କରି ନାହିଁ ? ତୁ ଫଁ କଲୁ ନାହିଁ କାହିଁକି ?

ସେହିଦିନଠାରୁ ସାପ ଯାହାକୁ ଦେଖିଲା ଫଁ, ଫଁ ଗର୍ଜ୍ଜନ କରିବାରେ ଲାଗିଲା । ତାର ସେ ଶବ୍ଦରେ ଆଉ କେହି ତା ପାଖକୁ ଯିବାକୁ ସାହସ କଲେ ନାହିଁ । ସେ ନିରାପଦରେ ରହିଲା ।

ମୋ କଥା କହିବାର ତାତ୍ପର୍ଯ୍ୟ ହେଉଛି—ଆପଣମାନେ ଆଗ ଆଘାତ କରନ୍ତୁ ନାହିଁ, ମାତ୍ର ଆଘାତ ଆସିଲେ ତାକୁ ମୁଣ୍ଡପାତି ସହି ନ ନେଇ ତାର ପ୍ରତିରୋଧ କରନ୍ତୁ ।

ମୋର ତୃତୀୟ ଉପଦେଶ ହେଉଛି—ମୁଦେଇ ନ ହୋଇ ମୁଦାଲା ହୁଅ । କାରଣ କୋର୍ଟ କଚେରୀକୁ ବିଶ୍ୱାସ କରିବା ଠିକ୍ ନୁହେଁ । ମକଦ୍ଦମା କଲେ ଦଉଡ଼ି ଦଉଡ଼ି ଯେପରି ହନ୍ତସନ୍ତ ହେବ, ସେହିପରି ସାକ୍ଷୀ ସାବୁଦ ଅଭାବରୁ ମକଦ୍ଦମା ମାଡ଼ ଖାଇଯିବାର ମଧ୍ୟ ସମ୍ଭାବନା ରହିଛି । ଏଣୁ ନିଜର ହକ୍ ଦାବୀ ହାସଲ ପାଇଁ ଏପରି ଦୃଢତାର ସହିତ ପ୍ରତିରୋଧ କର, ଯାହା ଫଳରେ ତୁମ ବିରୋଧୀ ପକ୍ଷ ତୁମ ବିରୋଧରେ ମକଦ୍ଦମା କରିବାକୁ ବାଧ୍ୟ ହେବ । ମୋର ବିଶ୍ୱାସ ଏହି ନୀତିର ମହାକର୍ମ ସ୍ପର୍ଶରେ ଆପଣମାନେ କେବଳ ଜୟଯୁକ୍ତ ହେବେ ନାହିଁ, ଏହା ଫଳରେ ଅଚିରେ ଆପଣମାନଙ୍କ ନିକଟକୁ ସ୍ୱରାଜ୍ୟ ମଧ୍ୟ ଆସି ପହଞ୍ଚିଯିବ ।”

ଆପଣେ ତାଙ୍କ ବକ୍ତୃତା ଶେଷ କରି ମହତାବବାବୁଙ୍କୁ ଉଦ୍ଦେଶ୍ୟ କରି କହିଲେ—"ମହତାବ, ତୁମକୁ ଏ ପ୍ରଜାମାନଙ୍କ କଥା ଲାଗିଲା । ତୁମେ ଏମାନଙ୍କ କଥା ବୁଝ ।"

ଆପଣେ ସେଦିନ ନରେନ୍ଦ୍ରପୁରର ସେହି ବିରାଟ ଜନସଭାରେ ଜନତା ଲୋକମାନଙ୍କୁ ସ୍ୱାଧୀନତାଲାଭର ଏ ଯେଉଁ ତିନୋଟି ସୂତ୍ର କହିଥିଲେ, ତାହା ସେଦିନ କାହିଁକି, ଆଜି ଏବଂ ଭବିଷ୍ୟତରେ ମଧ୍ୟ ମାନବଜାତିର ପଥପ୍ରଦର୍ଶକ ହେବ ।



# ଗୋପବନ୍ଧୁଙ୍କ ଭବିଷ୍ୟତ

ଅଧ୍ୟାପକ କାଙ୍ଗାଲୀଚରଣ ପତି

[ଓଡ଼ିଶାର ସୁପରିଚିତ ସାହିତ୍ୟିକ ଅଧ୍ୟାପକ କାଙ୍ଗାଲି ଚରଣ ପତି ବର୍ତ୍ତମାନ ପଣ୍ଡିଚେରୀ ଅରବିନ୍ଦ ଆଶ୍ରମରେ ସେବାରତ ରହି ସାହିତ୍ୟ ସାଧନା ପଥରେ ଅଗେଇଛନ୍ତି । ଦେଶର ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ବହୁ ପ୍ରବନ୍ଧ ପ୍ରକାଶ ପାଇଛି । ଆଲୋଚ୍ୟ ପ୍ରବନ୍ଧଟି ମଧ୍ୟ 'ସମାଜ'ର ୬୦ଶ ଶ୍ରାଦ୍ଧସଂଖ୍ୟାରେ ପ୍ରକାଶ ପାଇଥିଲା । ଏଥିରେ ଲେଖକ ଆଧୁନିକ ସାମାଜିକ ଜୀବନର ପୃଷ୍ଠଭୂମିରେ ଗୋପବନ୍ଧୁଙ୍କ ଜୀବନଦର୍ଶନର ମୂଲ୍ୟାଙ୍କନ କରି ତାଙ୍କୁ ଭବିଷ୍ୟତ ମାନବସମାଜର ପଥଦ୍ରଷ୍ଟା ବୋଲି ପ୍ରମାଣ କରିଛନ୍ତି ।—ସଂ]

•

ବର୍ତ୍ତମାନ ସମାଜ ଗୋଟାଏ ଦ୍ରୁତ ପରିବର୍ତ୍ତନ ମଧ୍ୟଦେଇ ଗତି କରୁଛି । କେହି କେହି ଏହାକୁ ସାମାଜିକ ବିବର୍ତ୍ତନ ଦୃଷ୍ଟିରୁ ଗୋଟାଏ ସନ୍ଧିକ୍ଷଣ ବୋଲି କହୁଛନ୍ତି । କେବଳ ଆମ ଦେଶରେ ନୁହେଁ, ସକଳ ଦେଶରେ ଏକ ଘୋର ସମାଜିକ ବିପର୍ଯ୍ୟୟ ଓ ବିଚ୍ୟୁତି ଦେଖାଦେଇଛି । ସମାଜର ପୁରାତନ ନୀତି, ଧର୍ମ, ମୂଲ୍ୟବୋଧ, ଆଦର୍ଶ ସମସ୍ତ ଯେପରି ଓଲଟ ପାଲଟ ହୋଇଯାଉଛି । ଜ୍ଞାତରେ ହେଉ ବା ଅଜ୍ଞାତରେ ହେଉ, କାହାରି ଇଙ୍ଗିତରେ ଯେପରି ମନୁଷ୍ୟର ଯୁଗ ଯୁଗ ସଞ୍ଚିତ ମଙ୍ଗଳମୟ ଓ କଲ୍ୟାଣକର ବିଧିବିଧାନ ଭାଙ୍ଗି ଚୂରମାର ହୋଇଯାଉଛି । ମନୁଷ୍ୟ ଜୀବନ ମଧ୍ୟ ଅମଡ଼ା ପଥରେ ଚାଲିବାକୁ ଆରମ୍ଭ କରିଛି । ଚାରିଆଡ଼େ ଗୋଟାଏ ବୃହତ୍ତର ବ୍ୟାପକ ମାନସିକ ଅଶାନ୍ତି, ବିକ୍ଷୋଭ, ବିକୃତି ଓ ବୀଭତ୍ସତା ଦେଖାଦେଇଛି । ମନୁଷ୍ୟକୁ ସବୁ କଥା ଯେପରି ଅନିଶ୍ଚିତ,

ଅସ୍ପଷ୍ଟ କରି ଓ ଅଙ୍କିତ ମନେ ହେଉଛି । ସେ ନିଜେ ମଧ୍ୟ ଅବ୍ୟବସ୍ଥିତ-ଚିତ୍ତ, ଉଦ୍‌ଭ୍ରାନ୍ତ, ଦିଗଭ୍ରଷ୍ଟ ।

ଏପରି ଗୋଟିଏ ବିଷମ ପରିସ୍ଥିତିରେ ସାଧାରଣ ମନୁଷ୍ୟ ସାମାଜିକ ଜୀବନରେ ମୂହ୍ୟମାନ ହୋଇପଡ଼ୁଛି, ବିବ୍ରତ ହୋଇ ହଙ୍ଗି ପଡ଼ୁଛି । ଏତିକବେଳେ ମନୁଷ୍ୟ ଜାତି ଓ ମନୁଷ୍ୟ ସମାଜ ଆଗରେ ବାରମ୍ବାର ତାହାର ପୂର୍ବନିର୍ଦ୍ଧାରିତ ମହାନ୍ ଆଦର୍ଶ, ଅଭୀପ୍ସା ଓ ଲକ୍ଷ୍ୟକୁ ସ୍ମରି ଦେବାକୁ ହେବ । ମହାପୁରୁଷ, ସାଧକ ଓ ମହାମାନବ-ମାନଙ୍କର ଜୀବନର ବିଭିନ୍ନ ଦିଗ ପର୍ଯ୍ୟାଲୋଚନା କରିବାକୁ ହେବ । ମହାପୁରୁଷଙ୍କର ସମାଜ କ୍ଷେତ୍ରରେ ଅପୂର୍ବ ଦାନର କଥା ବାରମ୍ବାର ସ୍ପଷ୍ଟ ରୂପେ ଉପସ୍ଥାପିତ ହେବାକୁ ହେବ । ଗୋପବନ୍ଧୁ ଆଗାମୀ ମାନବ-ସମାଜର ପଥଦ୍ରଷ୍ଟା, ଦିଶାରୀ । ସେ ଯେଉଁ ଆଦର୍ଶ ଓ ମହାନ୍ ଲକ୍ଷ୍ୟକୁ ତାଙ୍କ ଜୀବନରେ ରୂପ ଦେଇଥିଲେ, ତାହା ଭବିଷ୍ୟତ ମାନବସମାଜର ଏକ ବୃହତ୍ତର ଆଦର୍ଶ ଓ ବ୍ୟାପକ ଲକ୍ଷ୍ୟ । ସାମାଜିକ ଜୀବନର ଏହି ପର୍ଯ୍ୟାୟରେ ଗୋପବନ୍ଧୁଙ୍କର ଜନ୍ମ ଅତି ରହସ୍ୟପୂର୍ଣ୍ଣ । ମହାପୁରୁଷ ରୂପେ ଗୋପବନ୍ଧୁ ମାନବସମାଜ ସମ୍ମୁଖରେ ଯେଉଁ ଆଦର୍ଶ ଥୟ ରଖିଅଛନ୍ତି, ତାହାର ଭବିଷ୍ୟତ ସମ୍ପର୍କରେ ଏଠାରେ କିଞ୍ଚିତ ଆଲୋଚନା କରିବା । ପୁନଶ୍ଚ ପରିବର୍ତ୍ତିତ ପରିସ୍ଥିତିରେ ତାଙ୍କ ଆଦର୍ଶଗୁଡ଼ିକର ଏବଂ ତାଙ୍କ ସାଧନାର ମୂଲ୍ୟ କେତେ, ତାହା ହିଁ ଏଠାରେ ନିରୂପଣ କରିବା ପାଇଁ ଚେଷ୍ଟା କରିବା ।

ଗୋପବନ୍ଧୁଙ୍କର ଜୀବନଦର୍ଶନର ଯେଉଁ ତିନୋଟି ପ୍ରଧାନ ଦିଗ ଅଛି, ତାହାହେଲା—(୧) ଭଗବତପ୍ରୀତି, (୨) ଜାତିପ୍ରୀତି, (୩) ମାନବ-ପ୍ରୀତି । ଏହି ପ୍ରତ୍ୟେକ ଦିଗ ପରସ୍ପର ଏପରି ଭାବରେ ସଂଶ୍ଳିଷ୍ଟ ଯେ ସେସବୁକୁ ଗୋଟାଏ ଗୋଟାଏ ସ୍ୱତନ୍ତ୍ର ବିଷୟ କରି ଧରିବା ଯଦିଓ ସମୀଚୀନ ନୁହେଁ, ତେବେ ବିଚାର ଓ ଆଲୋଚନା ଦୃଷ୍ଟିରୁ ତାହା ହିଁ କରିବା ଶ୍ରେୟସ୍କର । ଗୋପବନ୍ଧୁ ତାଙ୍କ ସମଗ୍ର ଜୀବନରେ ଏହି ଯେଉଁ ମହାନ୍ ସତ୍ୟଗୁଡ଼ିକ ଅନୁସନ୍ଧାନ କରିଥିଲେ, ତାହା ମାନବ ଜାତିର ଭବିଷ୍ୟତ କ୍ରମପରିଣାମ ଦୃଷ୍ଟିରୁ ବିଚାର କରିବା ବାଞ୍ଛନୀୟ ।

ଗୋପବନ୍ଧୁ କ୍ଷଣଜନ୍ମା, ମହାପୁରୁଷ, ଦେଶପ୍ରେମୀ, ପରୋପକାରୀ, ସେବକ, ଭକ୍ତ ଓ ତ୍ୟାଗୀ ପୁରୁଷ ଥିଲେ । ତୁଷାରପିଣ୍ଡରୁ ନର୍ଝର ଯେପରି ପ୍ରବାହିତ ହୁଏ, ସୂର୍ଯ୍ୟଙ୍କ ମଧ୍ୟରୁ ତେଜୋରଶ୍ମି ଯେପରି କ୍ଷରିତ ହୁଏ, ସିଦ୍ଧାନ୍ତ ମଧ୍ୟରୁ ଉପସିଦ୍ଧାନ୍ତ ଯେପରି ପରିସ୍ଫୁଟ ହୁଏ, ଗୋପବନ୍ଧୁଙ୍କ ମଧ୍ୟରୁ ଏହିସବୁ ଗୁଣ ସେହିପରି ସ୍ୱତଃ ବିକାଶ ଲାଭ କରିଥିଲା । ସେ ଥିଲେ ସ୍ୱୟମ୍ଭୂ ପୁରୁଷ । ସ୍ୱତଃଜାତ, ସହଜ ଓ ସ୍ୱାଭାବିକ ପ୍ରେରଣା ଓ ପ୍ରକ୍ରିୟା ଦ୍ୱାରା ସେ ବହୁ ଗୁଣର ଅଧିକାରୀ ହୋଇଥିଲେ । ମାନବସମାଜ ନିକଟରେ ଗୋଟାଏ ଅର୍ଥରେ ସେ ଥିଲେ ଦେବଦୂତ, ଆଗାମୀ ଯୁଗର ବାର୍ତ୍ତାବହ । ତାଙ୍କ ଯୁଗ ଆସିବାର ବହୁ ପୂର୍ବରୁ ସେ ଜନ୍ମଗ୍ରହଣ କରିଥିଲେ । ସେ ହେଲେ ପୃଥିବୀ ଉପରେ ଯେଉଁ ସ୍ୱର୍ଣ୍ଣିମମୟ ଯୁଗ ଆସୁଅଛି, ତାହାର ଅନ୍ତର୍ଭୁକ୍ତ ବ୍ୟକ୍ତି । କିନ୍ତୁ ତାଙ୍କ ଜନ୍ମର ଯେପରି ଏକ ରହସ୍ୟ ଅଛି । ସମାଜ ଯେତେବେଳେ ତମସା ଓ ଅନ୍ଧକାର ଗର୍ଭରେ ବିଲୀନ ହେବ ସେତେବେଳେ ସେ ତାହା ଆଗରେ ଗୋଟାଏ ବିଶାଳ ଆଲୋକ ସ୍ତମ୍ଭ ତୁଲ୍ୟ ଦଣ୍ଡାୟମାନ ହୋଇ ତାହାକୁ ପଥ ଦେଖାଇବେ । ସେହି ପଥ ଏକ ଜ୍ୟୋତିର୍ମୟ ପଥ, ସୂର୍ଯ୍ୟଯାତ୍ରା ପଥ । ଗୋପବନ୍ଧୁ ସେହି ସୂର୍ଯ୍ୟଯାତ୍ରା, ଜ୍ୟୋତିର୍ମୟ ପଥର ଯାତ୍ରୀ । ସେହି ଜ୍ୟୋତି ଚିରନ୍ତନ, ସେହି ପଥ ଅମୃତମୟ, ସେହି ଯାତ୍ରୀ ଅମର । ଉତ୍କଳ ଜନନୀ, ଜଗନ୍ନାଥ ଓ ଗୋପବନ୍ଧୁ—ଏହି ତ୍ରିବିଧ ସତ୍ତା ଅମୃତମୟ ଓ ନିତ୍ୟବିଦ୍ୟମାନ ।

କୁହାଯାଏ ଗୋପବନ୍ଧୁ ଧର୍ମପରାୟଣ, ଭକ୍ତ ଓ ସାଧକ ଥିଲେ । କିନ୍ତୁ ଏକ ବ୍ୟାପକ ଏବଂ ଗଭୀରତର ଦୃଷ୍ଟିରୁ ବିଚାର କଲେ, ତାଙ୍କର ଏହି ଧର୍ମପରାୟଣତା କୌଣସି ଗୋଷ୍ଠୀଗତ ମତ ବା ବିଗ୍ରହ-ଆଗ୍ରହ ବା କ୍ରିୟାପଦ୍ଧତିର ଅନୁସରଣ ନୁହେଁ, ଏହା ମନୁଷ୍ୟର ଅନ୍ତର୍ଦେଶ୍ୟଙ୍କର, ଅନନ୍ତଙ୍କର ଆବାହନ ଏବଂ ଅର୍ଚ୍ଚନା । ଏପରି ଭଗବତ୍‌ପ୍ରୀତି ଓ ଅର୍ଚ୍ଚନାରେ କୌଣସି ଆହ୍ନିକ ପଦ୍ଧତି ନ ଥାଏ; ଥାଏ ଏକ ଜୀବନ୍ତ, ମହାନ୍ ଚେତନାର ସ୍ପର୍ଶ, ଯେଉଁଥିରେ ସମଗ୍ର ଜୀବନ ଏକ ଅପୂର୍ବ କଳାରେ ପରିଣତ ହୁଏ । କଥିତ ଅଛି, ଗୋପବନ୍ଧୁ ଅତି ବାଲ୍ୟକାଳରେ ଭାଗବତ ପାଠ ବେଳେ ମନ୍ତ୍ରମୁଗ୍ଧ ସର୍ପ ତୁଲ୍ୟ ବସି ଶୁଣୁଥିଲେ । ଭାଗବତର ଦିବ୍ୟବାଣୀ, ଜ୍ୟୋତି ଓ ଆନନ୍ଦ ତାଙ୍କ ମଧ୍ୟରେ ପ୍ରବେଶ

କରି ତାଙ୍କ ଅନ୍ତରସ୍ଥ ଚୈତ୍ୟ-ପୁରୁଷଙ୍କୁ ଉଦ୍ଭୁଦ୍ଧ ଓ ଜାଗ୍ରତ କରୁଥିଲା । ଜନ୍ମଜନ୍ମାନ୍ତରରେ ମନୁଷ୍ୟ ଭଗବାନଙ୍କର ଯେଉଁ ବିଭୂତି ବହନ କରି ଚାଲୁଅଛି, ତାହା ହିଁ ତାର ଚୈତ୍ୟ-ପୁରୁଷ, ଅନ୍ତଃପୁରୁଷ । ଅନ୍ତରସ୍ଥ ଏହି ଶାଶ୍ୱତ ଅଗ୍ନିକଣାର ସ୍ପଷ୍ଟ ପ୍ରକାଶ ଘଟିଲେ ବ୍ୟକ୍ତିଜୀବନ ଆଉ ଅଜ୍ଞାନ ଓ ଅନ୍ଧକାର ମଧ୍ୟରେ ଆବଦ୍ଧ ନ ରହି ଏକ ଜ୍ୟୋତିର୍ମୟ ପଥର ଅନୁସରଣ କରେ । ସମଗ୍ର ଜୀବନ ତାର ହୋଇଯାଏ ଏକ ଅର୍ଚ୍ଚନା, ଉପାସନା, ପୂଜା ଓ ଆହୁତି ।

"ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ<br>
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ ।<br>
ହୃଦ-କପିଳାସେ ତୋର ବନ୍ଧେ ପ୍ରେମଝର<br>
ବିଜେ କରିଛନ୍ତି ତହିଁ ସ୍ୱୟମ୍ଭୂ ଶଙ୍କର ।<br>
ଶୁଚିମନ୍ତ ହୋଇ ନିତି ଜ୍ଞାନ-ଦୀପ ଜାଳି<br>
ଶୁଦ୍ଧ-ଭକ୍ତିରସ ଦିଅ ସେ ଶ୍ରୀପଦେ ଢାଳି ।<br>
ଉଜାଗର ରହି କର ତାଙ୍କ ପ୍ରିୟ କର୍ମ<br>
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରି ଧର୍ମ ।<br>
ସମସ୍ତ ଜୀବନ କର ଏକ ଶିବରାତ୍ରି<br>
ଅନ୍ଧାରେ ନ ବୁଡ଼ି ପଥ ହେ ସ୍ୱରଗଯାତ୍ରି !"

(ଅବକାଶ ଚିନ୍ତା)

ଏହି ଶାଶ୍ୱତ-ସତ୍ତାକୁ ସକ୍ରେଟିସ୍‌ଙ୍କର (Dasemon) ଅନ୍ତରବାଣୀ ସଙ୍ଗେ ତୁଳନା କରାଯାଇପାରେ । କଠୋପନିଷଦରେ ଏହାକୁହିଁ "ମାଧ୍ୟାନେ ତିଷ୍ଠିତ ପୁରୁଷ" ବୋଲି କୁହାଯାଇଛି । ଗୋପବନ୍ଧୁଙ୍କ ମଧ୍ୟରେ ଏହି ମହିମାମୟ ଚେତନା ଏପରି ଜାଗ୍ରତ ଓ ଶକ୍ତିଶାଳୀ ଥିଲା ଯେ ତାଙ୍କର ଶିଶୁପ୍ରାଣ ଭଗବତ୍ ବାଣୀ ଶୁଣି ସୂର୍ଯ୍ୟମୁଖୀ ଫୁଲ ପରି ଜୀବନର ପରମ ସୂର୍ଯ୍ୟଙ୍କ ପ୍ରତି ନତମସ୍ତକ ହେଉଥିଲା । ଯୁବକ ଗୋପବନ୍ଧୁ ଛବିଶ ବର୍ଷ ବୟସରେ ଏକ ଗଭୀର ଆତ୍ମନିବେଦନ ବାଣୀ ସ୍ପଷ୍ଟରୂପେ ଶୁଣି ପାରିଥିଲେ—

"ଧର୍ମ ଅନୁକୂଳ ଯେବେ ମୋ କାମନାଚୟ
ସାଧନେ ଶକ୍ତି ଦିଅ ପ୍ରଭୁ ଦୟାମୟ ।"

ବାସ୍ତବରେ ଗୋପବନ୍ଧୁଙ୍କର ସମଗ୍ର ଜୀବନ ଏକ ଗଭୀର ଅନ୍ତର୍ଚେତନାଦ୍ୱାରା ପରିଚାଳିତ, ନିୟନ୍ତ୍ରିତ ହୋଇଥିଲା ଏବଂ ଏହିସବୁ ଦେଖିଲେ ମନେହୁଏ ସେ ଯେପରି ଭଗବାନଙ୍କର ଏକ ଅମରକଳା ନେଇ ଜନ୍ମଗ୍ରହଣ କରିଥିଲେ । ସେ ବାରମ୍ବାର ଉତ୍କଳ ସଂସ୍କୃତି, ଚିନ୍ତାଧାରା, ଜାତୀୟତା ପଛରେ ଏହି ଚିନ୍ମୟ ପୁରୁଷଙ୍କର ସାନିଧ୍ୟ ଓ ଏକ ଆମୋଘ ବିଧାନ ଅନୁଭବ କରୁଥିଲେ । ସେହି ଚିନ୍ମୟ ପୁରୁଷ ଓ ବିଦାନ ହେଲେ ସ୍ୱୟଂ ଜଗନ୍ନାଥ । ତାଙ୍କର ଦିବ୍ୟ ଦୃଷ୍ଟିରେ ସେ ସ୍ୱୟଂ ଜଗନ୍ନାଥଙ୍କୁ ହିଁ ଉତ୍କଳର ନେତା ରୂପେ ଦେଖିଛନ୍ତି—

"ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।"

କିନ୍ତୁ ଗୋପବନ୍ଧୁଙ୍କର ଆତ୍ମନିବେଦନ ଓ ଭକ୍ତିର ପରାକାଷ୍ଠା ଦେଖିବାକୁ ମିଳେ ଯେତେବେଳେ ସେ ଏକ ନୈସର୍ଗିକ ଭାବରେ ତନ୍ମୟ ହୋଇ ସର୍ବତ୍ର ଜଗନ୍ନାଥଙ୍କ ଅଧିଷ୍ଠାନକୁ ଅନୁଭବ କରିଅଛନ୍ତି—

"ଥିଲେ ଯହିଁ ତହିଁ ଭାରତ ବକ୍ଷରେ
ମଣିବି ମୁଁ ଅଛି ଆପଣା କକ୍ଷରେ ।
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ
ପ୍ରତି ସ୍ଥାନ ମୋର ପ୍ରିୟ ପୁରୀଧାମ ।
ସକଳ ସଲିଲ ପଞ୍ଚତୀର୍ଥ ଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।

× × ×

ଭାରତର ପ୍ରତି ବୃକ୍ଷ କଳ୍ପବଟ
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।

ସାମ୍ୟ-ସ୍ୱାଧୀନତା ପ୍ରେମ ସମୁଦାୟ୍ୟ ।
ନୀଳାଚଳ ଶୁଦ୍ଧ ଭାରତ ହୃଦୟ ।
ଥିଲେ ଯହିଁ ତହିଁ ଭାରତ ଶପୂଳେ
ମଣିବ ମୁଁ ଅଛି ନୀଳଚକ୍ର ତଳେ ।
ପ୍ରଭୁ ଜଗନ୍ନାଥ ପତିତପାବନ
ଜୀବନେ ମରଣେ ତୁମ୍ଭେ ମୋ ଶରଣ ।"
( ବନ୍ଦୀର ଆତ୍ମକଥା )

ସଂସାରର ଯାବତୀୟ କର୍ମ ମଧ୍ୟରେ ବୁଡ଼ିରହି ମଧ୍ୟ ଗୋପବନ୍ଧୁଙ୍କର ଏବଂବିଧ ଶ୍ରଦ୍ଧା, ଈଶ୍ୱରଭକ୍ତି, ଭଗବତ୍‌ପ୍ରୀତି ବାସ୍ତବରେ ଅତି ଅଲୌକିକ । ଭଗବାନଙ୍କ ଆଦିଷ୍ଟ କର୍ମ ସମ୍ପାଦନ ଏବଂ ସକଳ କର୍ମ ତାଙ୍କ ଚରଣରେ ନିବେଦନ ଓ ନିଃଶେଷରେ ସମର୍ପଣ—ଏହାହିଁ ଗୀତାର ଚରମବାଣୀ ଥିଲା । ଗୋପବନ୍ଧୁ ଗୀତାର ଏହି ମହାନ୍ ଆଦର୍ଶକୁ ନିଜ ଜୀବନରେ ଫୁଟାଇ ପାରିଥିଲେ । ଭଗବତ୍ ପ୍ରେମର ସାର୍ବଜନୀନ ପ୍ରବାହ ତାଙ୍କ ପ୍ରାଣକୁ ଅହରହ ପୁଲକିତ କରୁଥିଲା । ତାଙ୍କର ବ୍ୟକ୍ତିଗତ ଆତ୍ମା ନିରନ୍ତର ଯେପରି ସେହି ଅବ୍ୟକ୍ତ ପରମସୁନ୍ଦରଙ୍କ ନିମିତ୍ତ ଅଥୟ ହୋଇ ଉଠୁଥିଲା –

"ଜାଣେ ଅଛନ୍ତି ମୋ ପରାଣପତି
ସୁନ୍ଦର ସତ୍ୟ ଶିବ ଅଗତିଗତି ।
ରହିଛି ନିତି ତାଙ୍କ ବାଟ ଅନାଇ
ହୃଦ-ପଲଙ୍କେ ଫୁଲ ଶେଯ ସଜାଇ ।

× × ×

ମିଶେ ସରିତ ଯଥା ମହାସାଗରେ
ଜଡ଼େ ବଲ୍ଲରୀ ଯଥା ତରୁ ଅଙ୍ଗରେ,
ନୀଳ ନୀରଦେ ଯଥା ଖେଳେ ଚପଳା
ନିର୍ଝର ଧାଏଁ ଯଥା ଗିରି ମେଖଳା ।
ନାଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବି କରେ ହରଷେ ।

ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବ ବିଶ୍ୱପ୍ରେମେ ପରମାନନ୍ଦେ ।"

( କାରା କବିତା )

ଗୋପବନ୍ଧୁଙ୍କର ଏହି ଈଶ୍ୱର-ପ୍ରାଣତା, ଧର୍ମମୂଳକ ଆଧ୍ୟାତ୍ମିକତା ମନୁଷ୍ୟସମାଜର କ୍ରମପରିଣାମ ପଥରେ ଗୋଟାଏ ଆଗାମୀ ପାବଚ୍ଛ । ଦିନ ଆସିବ, ଯେତେବେଳେ ମନୁଷ୍ୟ ବର୍ତ୍ତମାନ ଅର୍ଦ୍ଧ-ପଶୁ ସ୍ତରରୁ ଉନ୍ନୀତ ହୋଇ ଦିବ୍ୟ ଭଗବତ୍ ପ୍ରେମ ଓ ଚେତନାରେ ଅଧିଷ୍ଠିତ ହେବ । ଏହି ଦୃଷ୍ଟିରେ ଦେଖିଲେ, ଗୋପବନ୍ଧୁଙ୍କ ଭବିଷ୍ୟତ୍ ଉଜ୍ଜ୍ୱଳ । ଗୋପବନ୍ଧୁ ଯେଉଁ ପରିଣାମ ଓ ଲକ୍ଷ୍ୟ ଆମ ସମ୍ମୁଖରେ ରଖିଅଛନ୍ତି, ତାହା ସମଗ୍ର ମନୁଷ୍ୟଜାତି ଓ ସମାଜର ଏକ ଅବଶ୍ୟମ୍ଭାବୀ ପରିଣାମ ।

ଗୋପବନ୍ଧୁଙ୍କର ଜାତି-ପ୍ରୀତି ଥିଲା ଈଶ୍ୱରକେନ୍ଦ୍ରିକ, ଭଗବତ୍ ଶକ୍ତି ଓ ସ୍ରୋତରୁ ପ୍ରବାହିତ ଏକ ନିର୍ମଳ ଧାରା । ତାଙ୍କର ଜାତୀୟତାର ମୂଳ ଉତ୍ସ ହେଲା ଏକ ପ୍ରଦୀପ୍ତ, ଜ୍ୟୋତିର୍ମୟ ଚେତନା । ଗୋପବନ୍ଧୁ ଅନନ୍ୟସାଧାରଣ ବ୍ୟକ୍ତି ଥିଲେ । ତାଙ୍କ ଭିତରେ ଯେଉଁ ଭଗବତ୍-ଚେତନା କାର୍ଯ୍ୟ କରୁଥିଲା, ତାହାକୁ ସେ ଜାତୀୟତାରେ ସଫଳତା ସହ ରୂପାୟିତ କରିଥିଲେ । ସେ ବରାବର ଉତ୍କଳ ପ୍ରାନ୍ତ ଓ ଓଡ଼ିଆ ଜାତିକୁ ଏକ ଜୀବନ୍ତ ମୂର୍ତ୍ତିମାନ ବସ୍ତୁରୂପେ ଦେଖୁଥିଲେ । ସେ ଭାବୁଥିଲେ ବ୍ୟକ୍ତିର ଯେପରି ଏକ ଆତ୍ମା, ମନ-ପ୍ରାଣ-ଶରୀର ଅଛି, ଜାତିର ମଧ୍ୟ ସେହିପରି ଏକ ଆତ୍ମା, ମନ-ପ୍ରାଣ-ଶରୀର ଅଛି । ବ୍ୟକ୍ତି ଯେପରି ତାହାର ଚରିତ୍ର, ସ୍ୱଭାବ, ସ୍ୱଧର୍ମ, ପରମ୍ପରା ଓ ଐତିହ୍ୟଦ୍ୱାରା ନିୟନ୍ତ୍ରିତ ହୁଏ, ଜାତି ମଧ୍ୟ ସେହିପରି ତାହାର ସ୍ୱଭାବ ଓ ସ୍ୱଧର୍ମଦ୍ୱାରା ନିୟନ୍ତ୍ରିତ ହୁଏ । ଜାତିର ସକଳ ବାହ୍ୟ-ପ୍ରକାଶ, ସ୍ଥୂଳତା ଓ ଖଣ୍ଡତାକୁ ଭେଦ କରି ତାହା ମଧ୍ୟରେ ସେ ଉପଲବ୍ଧି କରୁଥିଲେ ଏକ ମହାନ୍ ଆତ୍ମା, ଏକ ମହତୀ ଶକ୍ତି । ଏହା ହିଁ ବାସ୍ତବରେ ଅତି ଉଚ୍ଚକୋଟୀର ଜାତୀୟତା । ଏଠାରେ ଧର୍ମ ହିଁ ଜାତୀୟତା, ଭାରତୀୟତା ହିଁ ଧର୍ମ । ଏହି ଜାତୀୟତା ଭାରତୀୟ ସଂସ୍କୃତିର ସନାତନ ଧାରାର ଓ ପରମ୍ପରାର ଏକ ଅଂଶବିଶେଷ । ଏହାକୁ ହିଁ ଶ୍ରୀ ଅରବିନ୍ଦଙ୍କ ଭାଷାରେ 'The Discovery of Nation Soul'

ଅର୍ଥାତ୍ ଜାଣିପୂ ଆତ୍ମାର ଆବଷ୍କାର 'ବୋଲାଯାଇପାରେ । ଗୋପବନ୍ଧୁଙ୍କର ମହାନ୍ ଜାତିପ୍ରେମ ନାଶବାନ୍ ବସ୍ତୁ ନୁହେଁ । ତାହା କୌଣସି ପ୍ରକାର ସମୃଦ୍ଧି, ପରିପୁଷ୍ଟ, ପ୍ରାଣଜ ଅହଂ ( Vital Ego ) ଭିତରୁ ଜନ୍ମି ନ ଥିଲା । ସେ ନିଜର କ୍ଷୁଦ୍ର ଅହଂକୁ ପ୍ରସାରିତ କରି ତାହାକୁ ଜାଣିପୂ ଅହଂକାର ( National Ego ) ରେ ମିଶାଇ ଦେଇ ନ ଥିଲେ । ଦ୍ୱିତୀୟତଃ, ଜାତିର ଉତ୍ଥାନ ପାଇଁ ସେ ଜାଣିପୂ ଆତ୍ମା ନିକଟରେ ପ୍ରାର୍ଥନା କରିଛନ୍ତି । ଜାତିର ଉତ୍ଥାନ ଓ ପତନକୁ ସେ ଭଗବତ୍ କରୁଣା ଓ ବିମୁଖତା ବୋଲି ସ୍ପଷ୍ଟ ଅନୁଭବ କରିଛନ୍ତି । ଆଧୁନିକ ଉତ୍କଳର ନିଃସ୍ୱ ଓ ଅସହାୟ ଅବସ୍ଥାରେ ସେ ମୁହ୍ୟମାନ ହୋଇଛନ୍ତି—

"କାହିଁ ଉତ୍କଳର ସେ ସୁକୃତରାଶି
ଯାହାର ପ୍ରଭାବେ ପ୍ରଭୁ ବ୍ରହ୍ମବାସୀ
ନିଜେ ନିରଞ୍ଜନ ଜଗତ ଈଶ୍ୱର
ଧରିଣ ସୈନିକ ନର କଳେବର
ଉତ୍କଳର ଯଶ ପ୍ରତିଷ୍ଠା ରକ୍ଷଣେ
ବିଜେ କଲେ ଘୋର ସମର-ପ୍ରାଙ୍ଗଣେ
କାହିଁ ସେ ସୌଭାଗ୍ୟ କାହିଁ ସେ ସୁକୃତି ?
ପବିତ୍ର ଉତ୍କଳ ଆହା କି ବିକୃତି
ଆର୍ଯ୍ୟ ଧର୍ମକ୍ଷେତ୍ର ପୂତ ନୀଳାଚଳ
ହରାଇଛି ସବୁ କର୍ମ-ଧର୍ମ-ବଳ ।
× × ×
ଅଛି ସେହି ଗିରି ଅଛି ସେ ବିପିନ
ଅଛି ତୋର ଶିଳା ସୁଦୃଢ଼ ପୁଳିନ ।
କିନ୍ତୁ କାହିଁ ଆହା ଏବେ ସେ ବୀରତା ?
ଓଡ଼ିଆ ଜାତିର ପୂର୍ବ ଜାଣିପୂତା ?"

( ଅବକାଶ ଚିନ୍ତା )

କିନ୍ତୁ ଗୋପବନ୍ଧୁ ମହାତପସ୍ୱୀ । ଏକ ଅପ୍ରାକୃତ ଦିବ୍ୟ-କରୁଣା ନିକଟରେ ବାରମ୍ବାର ପ୍ରାର୍ଥନା କରି ସେ ଉତ୍କଳର ଉତ୍ଥାନ ଓ

ସର୍ବାଙ୍ଗୀନ ଉନ୍ନତିକୁ ସୃହାଁଉନ୍ତି । ସତେ ଅବା ଗୋପବନ୍ଧୁ, ଭଗୀରଥଙ୍କ ଭଳି ସ୍ୱୀୟ ତପସ୍ୟା ବଳରେ ଉତ୍କଳର ନିଃସ୍ୱ, ଶ୍ରୀହୀନ, ଊଷର ଭୂମିରେ ଭଗବତ୍ କରୁଣାର ଜାହ୍ନବୀଧାରକୁ ବୁହାଇ ଆଣିବେ !

"ଉତ୍କଳ-ତନୟେ ଦିଅ ନବ ବଳ,
ଉତ୍କଳ-ପାଦପେ ରସମୟ ଫଳ ।
ଉତ୍କଳ-ସରିତେ ପବିତ୍ର ଜୀବନ,
ଉତ୍କଳ-କାନନେ ସ୍ୱର୍ଗୀୟ ସୁମନ ।
ଉତ୍କଳ-ଆକାଶେ ନବ ଯଶଃ ରବି,
ଉତ୍କଳ-ପ୍ରକୃତି ଧରୁ ନବ ଛବି ।"

ପୁନଶ୍ଚ—

"ସଂସାର ତୁମୂଳ ରଣ ପ୍ରାଙ୍ଗଣେ
ଉତ୍କଳର ହୀନ ତନୟଗଣେ
ପଛରେ କେବେହେଁ ନ ପଡ଼ନ୍ତୁ ହେ ଦେବ
ଶ୍ରୀ ମୁଖରୁ ଏହି ଆଦେଶ ହେବ

ଯେବେ ଅପୂର୍ବ ଉତ୍ସାହ ଯେ
ଭାରତର ମହା— ଜାତୀୟ-ତରଙ୍ଗ
• ମିଶୁ ଉତ୍କଳର ପ୍ରବାହ ଯେ ।"

( ଅବକାଶ ଚିନ୍ତା )

ଜାତୀୟତାର ଏହି ମହାନ୍ ମୂଳ ଉତ୍ସକୁ ଆବିଷ୍କାର କରି ଗୋପବନ୍ଧୁ ଉତ୍କଳର ଘରେ ଘରେ, ଗ୍ରାମେ ଗ୍ରାମେ, "ବ୍ରାହ୍ମଣଶାସନ, ଶବରପଲ୍ଲୀ, କୃଷକ କୁଟୀର, ନୃପ ଅଙ୍ଗନ"ରେ ଯେଉଁ ମହାନ୍ ପ୍ରେମ ପ୍ରଚାର କରିଥିଲେ, ତାହା ଆଜି ବି ଏକ ଜୀବନ୍ତ ବସ୍ତୁ ହୋଇ ରହିଛି । ସେଥିପାଇଁ ଯୁଗକୁ ଯୁଗ ଗୋପବନ୍ଧୁ ଉତ୍କଳର ସର୍ବଶ୍ରେଷ୍ଠ ଜାତୀୟ ପୁରୁଷ ହୋଇ ରହିବେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏହି ଜାତି-ପ୍ରୀତିରୁ ଯେଉଁ ସଂସ୍କୃତି ଓ ଶିକ୍ଷାର ଉଦ୍ଭବ ହୋଇଥିଲା, ତାହା ହିଁ ସତ୍ୟବାଦୀ-ବିଚାରର ଭାବଧାରା (Satyabadi School of Thought) ସତ୍ୟବାଦୀ ବିଚାରର ଚିନ୍ତାଧାରା ଆଧୁନିକ ଉତ୍କଳର ଜାଗରଣ ପଥରେ

ସର୍ବଶ୍ରେଷ୍ଠ ଉପାଦାନ । ଏହା କହିବା ବାହୁଲ୍ୟ ଯେ ଗୋପବନ୍ଧୁଙ୍କର ଜାତୀୟତାର ମୂଳମନ୍ତ୍ରଗୁଡ଼ିକ ତାହାଙ୍କ ଶିଷ୍ୟବର୍ଗଙ୍କୁ ଓ ସହକର୍ମୀମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ପଣ୍ଡିତ ନୀଳକଣ୍ଠଙ୍କ ସାହିତ୍ୟରେ ଓ ଭାବଧାରାରେ ଏହି ପ୍ରକାର ଜାତୀୟତାର ଏକ ବ୍ୟାପକ ରୂପ ଦେଖିବାକୁ ମିଳେ । ପଣ୍ଡିତଜୀ ଗୋଟିଏ କଥା ବାରମ୍ବାର ସୂଚାଇଛନ୍ତି ଉତ୍କଳୀୟ ସଂସ୍କୃତି, ଜାତୀୟତା ଓ ଐତିହ୍ୟର ପ୍ରାଣପୁରୁଷ ହେଲେ ସ୍ୱୟଂ ଜଗନ୍ନାଥ । ନୀଳକଣ୍ଠଙ୍କ ଚିନ୍ତାଧାରାରେ ଜଗନ୍ନାଥ-ଧର୍ମ ଯଥାର୍ଥ ଜାତୀୟତାର ଅନ୍ୟ ରୂପ ମାତ୍ର । କିନ୍ତୁ ତଫାତ୍ ଏହି ଯେ ନୀଳକଣ୍ଠଙ୍କ ଭାବଧାରାରେ ଓ ଚିନ୍ତାଧାରରେ ଜଗନ୍ନାଥ ଏକ ଆଦର୍ଶ, ଏକ ଦାର୍ଶନିକ ତତ୍ତ୍ୱ, ଏକ ମହାନ ଐତିହାସିକ ପରମ୍ପରା, ଆଉ କିଛି ! କିନ୍ତୁ ଗୋପବନ୍ଧୁଙ୍କ ଚିନ୍ତାଧାରାରେ ଜଗନ୍ନାଥ ଏକ ସଜୀବ, ମୂର୍ତ୍ତିମାନ, ଶାଶ୍ୱତ, ଅପ୍ରାକୃତ ଦିବ୍ୟ-ପୁରୁଷ । ତାଙ୍କର ସାନିଧ୍ୟ ଅଛି, ବ୍ୟକ୍ତିତ୍ୱ ଅଛି, ରୂପ ଓ ସ୍ପର୍ଶ ଅଛି । ଗୋପବନ୍ଧୁଙ୍କ ନିକଟରେ ସେ ଯେପରି ସଖା, ଅର୍ଜୁନଙ୍କ ନିକଟରେ ଭଗବାନ ଶ୍ରୀକୃଷ୍ଣ ।

ଏହି ଜାତୀୟତାର ଭବିଷ୍ୟତ ଅତ୍ୟନ୍ତ ଉଜ୍ଜ୍ୱଳ । ଏହା ହିଁ ଆଗାମୀ ମାନବସମାଜର ଯଥାର୍ଥ ଜାତି-ପ୍ରୀତିର ଅଟଳ ଭିତ୍ତି । ପ୍ରତ୍ୟେକ ଜାତୀୟ ବୀର ନିଜ ମଧ୍ୟରେ ଏବଂ ଜାତି ମଧ୍ୟରେ ହିଁ ଅନନ୍ତ ଓ ଅସୀମ ଭଗବତ୍ ଗୋଷ୍ଠୀ-ଆତ୍ମାର ସନ୍ଧାନ ପାଇଲେ ହିଁ ଯଥାର୍ଥରେ ଜାତୀୟ ସେବକ ହୁଏ । ଗୋପବନ୍ଧୁଙ୍କର ଜାତୀୟତା ଅତି ମହାନ୍, ଏହାର ପ୍ରଭାବ ସୁଦୂରପ୍ରସାରୀ । ଯୁଗେ ଯୁଗେ ଏହା ମନୁଷ୍ୟସମାଜକୁ ଉଦ୍‌ବୁଦ୍ଧ କରିବ ।

ତୃତୀୟତଃ ଗୋପବନ୍ଧୁଙ୍କ ମାନବପ୍ରୀତି । ଗୋପବନ୍ଧୁଙ୍କର ମାନବ-ପ୍ରୀତି ଆତ୍ମ-କୈନ୍ଦ୍ରିକ (Soul-Centred) ବା ଭଗବତ୍-ପ୍ରୀତି-ମୂଳକ । ମାର୍କସ୍‌ବାଦରେ ବା ଆଧୁନିକ ଭୌତିକବାଦୀ ଦର୍ଶନରେ ମାନବ-ପ୍ରୀତି ହେଉଛି ପ୍ରାଣମୂଳକ (Vitulistic) ବା ବସ୍ତୁମୂଳକ (Physical) । ଏହି ପ୍ରକାର ମାନବପ୍ରୀତି କୌଣସି ଗଭୀର ଓ ବ୍ୟାପକ ମୂଳି ଉପରେ ପର୍ଯ୍ୟବସିତ ନୁହେଁ । ଭୌତିକବାଦ ମନୁଷ୍ୟଜୀବନକୁ ଓ ବ୍ୟକ୍ତିତ୍ୱକୁ ଯେପରି ଜଡ଼ରୁ ଉତ୍ପନ୍ନ ବୋଲି ମନେ କରେ, ସେହିପରି ମନୁଷ୍ୟର

ସମସ୍ତ ମୂଲ୍ୟବୋଧକୁ ମଧ୍ୟ ଏକ ଅସ୍ଥାୟୀ, ସାମୟିକ ମାନସିକ ବିକାର ବୋଲି ମନେ କରେ । ଆଧ୍ୟାତ୍ମବାଦୀ ବା ଆଦର୍ଶବାଦୀ ମହାମାନବ ଜଡ଼ ଏବଂ ସ୍ଥୂଳ ପଶ୍ଚାତରେ ଏକ ପରମ ସତ୍ୟ, ଜାଗ୍ରତ, ସତତ ଚେତନଶୀଳ, ସର୍ବମୟ ସତ୍ତାକୁ ଅନୁଭବ କରେ ଏବଂ ସକଳ ସୃଷ୍ଟିକୁ ସେହି ଏକ ହିଁ ଅଦ୍ୱିତୀୟ ସଚ୍ଚିଦାନନ୍ଦଙ୍କର ପ୍ରକାଶ ବୋଲି ଅନୁଭବ କରେ । ଏଠାରେ ଏକ ଆତ୍ମାରେ ସର୍ବ ଆତ୍ମା ବିରାଜିତ, ସର୍ବ ଆତ୍ମାରେ ଏକ ଆତ୍ମା ବିରାଜିତ । ଗୋପବନ୍ଧୁ ନିଜ ଆତ୍ମାର ଡାକ ଶୁଣି ପାରୁଥିଲେ ଏବଂ ସ୍ୱୀୟ ଆତ୍ମାକୁ ସର୍ବତ୍ର ଦେଖୁଥିଲେ । ତାଙ୍କର ହୃଦୟ ସର୍ବଦା ଏକ ପ୍ରକାର ବିଶ୍ୱଜନୀନ ଭ୍ରାତୃତ୍ୱ ଓ ମୈତ୍ରୀରେ ପରିପୂର୍ଣ୍ଣ ଥିଲା । ତାଙ୍କ ପାଖରେ ପର ଓ ଆପଣା ବୋଲି କିଛି ନ ଥିଲା । ତେଣୁ ନିଜ ପୁଅକୁ ରୋଗଶଯ୍ୟାରେ ଛାଡ଼ି ଦେଇ ଚାଲି ଯାଇଥିଲେ ବନ୍ୟା-ଦୁର୍ଗତ ବାସହୀନ ଶହ ଶହ ସନ୍ତାନମାନଙ୍କର ସେବା କରିବାକୁ । ଏହି ନିଃସ୍ୱାର୍ଥପରତା, ସେବା ମନୋଭାବର ତୁଳନା ଆଧୁନିକ ଯୁଗରେ ନାହିଁ କହିଲେ ଚଳେ । ଗୋପବନ୍ଧୁ ସମ୍ପ୍ରଦାୟିକ ବା ମତବାଦୀଙ୍କ ପରି କାର୍ଯ୍ୟ କରୁ ନ ଥିଲେ । ତାଙ୍କ ଆଗରେ ଗତବନ୍ଧା ଆଦର୍ଶ ନ ଥିଲା । ସେ ସର୍ବଦା ମୁକ୍ତପ୍ରାଣ, ମୁକ୍ତହୃଦୟ ଓ ମୁକ୍ତହସ୍ତ ଥିଲେ । ସେ ଭିତରେ ଯେପରି ସର୍ବଦା କାହାର ଇଙ୍ଗିତ, ସୂଚନା ଓ ଆଭାସ ପାଉଥିଲେ; ସେହି ପ୍ରେରଣା ତାଙ୍କର ହାତ ଧରି କାର୍ଯ୍ୟ କରାଇ ନେଉଥିଲା । ସେ ସଂସାରୀ ଥିଲେ, ସଂସାରର ମାୟାମମତା ଓ ବନ୍ଧନ ତାଙ୍କୁ ଘାରିଥିଲା; ମାତ୍ର ସେ ସେଥିରେ କେବେ ବି ଆବଦ୍ଧ ହୋଇ ନ ଥିଲେ । ତାଙ୍କର କାର୍ଯ୍ୟାବଳୀକୁ ଅନୁଧ୍ୟାନ କଲେ ମନେହୁଏ, ଯେପରି ଗୋଟାଏ ମୁକ୍ତ- ଆତ୍ମା ସଂସାରର ବହୁବିଧ ବନ୍ଧନ ମଧ୍ୟଦେଇ ଗତି କରୁଅଛି, କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ସ୍ୱକୀୟ ଜ୍ୟୋତିର୍ମୟ ପ୍ରଭାବ ଓ ସ୍ପର୍ଶ ଦେଇ ଯାଉଅଛି । ଗୋପବନ୍ଧୁ ରାଜନୀତି କ୍ଷେତ୍ରରେ କାର୍ଯ୍ୟ କରିଥିଲେ, ରାଷ୍ଟ୍ର-ଗଠନର ବିଭିନ୍ନ କାର୍ଯ୍ୟରେ ଲିପ୍ତ ଥିଲେ; ମାତ୍ର ସେ ଯଥାର୍ଥରେ ଥିଲେ ମାନବସମାଜର ଜଣେ ଖାଣ୍ଟି ସେବକ ଓ ଭୃତ୍ୟ । ଗୋପବନ୍ଧୁଙ୍କର ମାନବ-ପ୍ରୀତି ମାନବୀୟ (Humanistic) ନୁହେଁ, ଏହା ଐଶ୍ୱରୀୟ, ଅତୀନ୍ଦ୍ରିୟ । ବର୍ତ୍ତମାନ ମାନବସମାଜରେ ଏହିବିଧ ମାନବପ୍ରୀତି ଏକ ଅବାସ୍ତବ ବସ୍ତୁ ବୋଲି ମନେ ହେବ; କିନ୍ତୁ ଗୋପବନ୍ଧୁ

ଯଥାର୍ଥରେ ସେ ଅତି ଉଚ୍ଚତମ ଭଗବତ୍-ପ୍ରେମମୂଳକ ସହଜାତ ମାନବ-ପ୍ରୀତିକୁ ନିଜ ଜୀବନରେ ଫୁଟାଇଥିଲେ । ମାନବ-ସେବାର ଏହି ଆଦର୍ଶ ଭବିଷ୍ୟତ୍ ମାନବସମାଜର ପୁନରୁତ୍ଥାନ ଓ ଐକ୍ୟ ଦିଗରେ ଏକ ମାଇଲ ଖୁଣ୍ଟ । ଗୋପବନ୍ଧୁଙ୍କର ମାନବ-ପ୍ରୀତିର ଆଦର୍ଶ ଭବିଷ୍ୟତ୍ ମାନବ-ସମାଜର ଏକ ଅବଶ୍ୟମ୍ଭାବୀ ପରିଣାମ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗୋପବନ୍ଧୁଙ୍କର ମହାନ୍ ବ୍ୟକ୍ତିତ୍ୱର ମୂଲ୍ୟବୋଧର ସମୟ ଏ ପର୍ଯ୍ୟନ୍ତ ଆସି ନାହିଁ । ଭବିଷ୍ୟତ୍ ମାନବସମାଜର ସେ ପଥଦ୍ରଷ୍ଟା, ଅଗ୍ରଦୂତ । ତାଙ୍କର ଅମୃତମୟ ହସ୍ତର ସ୍ପର୍ଶ, ଅବିନାଶୀ ଆତ୍ମାର ଅଭୀପ୍ସା ମାନବ-ସମାଜକୁ, ସମଗ୍ର ଓଡ଼ିଆ ଜାତିକୁ ବହୁ ଦୂର ଆଗେଇ ନେଇଛି । ‘A soul’s ambition lifted up the race’ ଯୁଗ ଯୁଗକୁ ଗୋପବନ୍ଧୁ ଦୁନିଆର ଅନ୍ଧକାରମୟ ବିଚ୍ଛିନ୍ନ ରାସ୍ତାରେ ଛିଡ଼ା-ହୋଇ ମନୁଷ୍ୟକୁ ଯଥାର୍ଥ ପଥରେ ଚାଲିବାପାଇଁ ନିର୍ଦ୍ଦେଶ ଦେଉଥିବେ । ବିଶେଷ କରି ଗୋପବନ୍ଧୁ ତାଙ୍କର ସବୁ କିଛିକୁ ନିଃଶେଷରେ ଦାନ କରି ଆଧୁନିକ ଓଡ଼ିଶାର ମୂଳଭିତ୍ତି ସ୍ଥାପନା କରିଛନ୍ତି ।

ତପସ୍ୟା କେବେ କ୍ଷୟ ହୁଏ ନାହିଁ । ତପଃଶକ୍ତି ଭଗବତୀ ଶକ୍ତିର ଅନ୍ୟ ରୂପ । ତାହା ନିଶ୍ଚୟ ଫଳବତୀ ହେବ । ଏହି ଦୃଷ୍ଟିରେ ଦେଖିଲେ ଗୋପବନ୍ଧୁଙ୍କର ଭବିଷ୍ୟତ ଯେପରି ଉଜ୍ଜ୍ୱଳ, ଓଡ଼ିଶା ଓ ଓଡ଼ିଆ ଜାତିର ଭବିଷ୍ୟତ୍ ସେହିପରି ଉଜ୍ଜ୍ୱଳ ।



# ଗୋପବନ୍ଧୁଙ୍କ ଜୀବନ-ଟିପ୍ପଣୀ

( ୧୮୭୭-୧୯୨୮ )

୧୮୭୭—ଅକ୍ଟୋବର ୯ ତାରିଖ ବୁଧବାର ପୁରୀ ଜିଲ୍ଲା ଅନ୍ତର୍ଗତ ସାକ୍ଷୀଗୋପାଳ ନିକଟବର୍ତ୍ତୀ ସୁଆଣ୍ଡୋଠାରେ ଆବିର୍ଭାବ । ଜନ୍ମର ଅଳ୍ପଦିନ ପରେ ମାତୃ ବିୟୋଗ ।

୧୮୮୯—ବାର ବର୍ଷ ବୟସରେ ବାଲ୍ୟ ବିବାହ ।

୧୮୯୩—ପୁରୀ ଜିଲ୍ଲା ସ୍କୁଲରେ ଛାତ୍ର ଥିବା ବେଳେ ୧୬ ବର୍ଷ ବୟସରେ ନିମିତ୍ତ କାର୍ଯ୍ୟ ସମ୍ପାଦନ; ପୁରୀ ସେବା ସମିତି ଗଠନ; ବିଭିନ୍ନ ଜନ କଲ୍ୟାଣ କାର୍ଯ୍ୟରେ ଯୋଗଦାନ; କଲେରା ରୋଗୀଙ୍କ ସେବା ଓ ଶବ ସତ୍କାର ।

୧୮୯୪—ରାଧାନାଥ ରାୟଙ୍କ ବିରୁଦ୍ଧରେ 'ଇନ୍ଦ୍ରଧନୁ' ପତ୍ରିକାରେ ସ୍ୱରଚିତ କବିତା ପ୍ରକାଶ କରିବା ଅଭିଯୋଗ ଓ ଅର୍ଥଦଣ୍ଡ ।

୧୮୯୯—ରଥଯାତ୍ରା ସମୟରେ ଅନୁଗତ ଛାତ୍ରମାନଙ୍କୁ ଧରି ହଇଜା ରୋଗୀଙ୍କ ସେବା, ବିପନ୍ନଙ୍କୁ ସାହାଯ୍ୟ ବିତରଣ ଓ ଶବ-ସତ୍କାର; ପିତୃ ବିୟୋଗ । ମାଟ୍ରିକ୍ୟୁଲେଶନ ପରୀକ୍ଷାରେ ଉତ୍ତୀର୍ଣ୍ଣ ଓ କଟକ ରେଭେନସା କଲେଜରେ ନାମ ଲିଖନ; କଟକରେ 'କର୍ତ୍ତବ୍ୟବୋଧିନୀ ସମିତି' ଗଠନ । 'ଅବକାଶ ଚିନ୍ତା'ର ପ୍ରକାଶନ ।

୧୯୦୧—ଏଫ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ଏବଂ ଶିକ୍ଷାନୁଷ୍ଠାନ ପରିତ୍ୟାଗ କରିବାର ପରିକଳ୍ପନା ।

୧୯୦୨—'କଳ୍ପଲତା' ନାମକ ଏକ ଉଚ୍ଚକୋଟିର କାବ୍ୟ ପ୍ରଣୟନ ଏବଂ ରେଳଯାତ୍ରାବସରରେ ପାଣ୍ଡୁଲିପି ହସ୍ତାନ୍ତରିତ; ବିଭିନ୍ନ ଜନକଲ୍ୟାଣ କାର୍ଯ୍ୟରେ ଆତ୍ମନିୟୋଗ ।

୧୯୦୩—ବି. ଏ. ପରୀକ୍ଷାରେ ଅକୃତକାର୍ଯ୍ୟ । ଉତ୍କଳ ସମ୍ମିଳନୀର ପ୍ରଥମ ବୈଠକରେ ଅଂଶ ଗ୍ରହଣ ।

୧୯୦୪—ବି. ଏ. ପାଶ, ବନ୍ୟାପ୍ଲାବିତ ଉତ୍କଳର ସେବା ଓ ପୁତ୍ର ନାଶ ।

୧୯୦୫—କ୍ଷୁଦିରାମ ପ୍ରମୁଖଙ୍କ ସାହଚର୍ଯ୍ୟ ଲାଭ ଓ ଦେଶମୁକ୍ତି ଚିନ୍ତା ।

୧୯୦୬—ନୀଳଗିରିରେ ଶିକ୍ଷକତା କରୁଥିବା ସମୟରେ ଏକାଧିକରେ ସ୍ତ୍ରୀଙ୍କର ତିରୋଧାନ ଓ ବି. ଏଲ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପାଇ ଚେଷ୍ଟା ।

୧୯୦୭—ନୀଳଗିରି ପରିତ୍ୟାଗ; କଟକରେ ଓକିଲାତି; ବ୍ରାହ୍ମଣୀ, ବୈତରଣୀ ଓ ଖରସୁଆଁ ବନ୍ୟାରେ ପ୍ରପୀଡ଼ିତ ବ୍ୟକ୍ତିଙ୍କୁ ସାହାଯ୍ୟ ଓ ସେବା ।

୧୯୦୮—ପୁରୀରେ ଓକିଲାତି, କୁଷ୍ଠାଶ୍ରମର ସେକ୍ରେଟାରୀ ଭାବେ ସେବା ଓ ଅର୍ଥସଂଗ୍ରହ, ବ୍ରାହ୍ମଣ ସମିତି ଗୃହାବାସରେ ବିଭିନ୍ନ ସଭାସମିତିର ଆୟୋଜନ, ବ୍ୟାୟାମଶାଳା ପ୍ରତିଷ୍ଠା ଇତ୍ୟାଦି ।

୧୯୦୯—ଅଗଷ୍ଟ ୧୨ ତାରିଖରେ ସତ୍ୟବାଦୀ ମଧ୍ୟ ଇଂରାଜୀ ବିଦ୍ୟାଳୟ ଉଦ୍‌ଘାଟନ ।

୧୯୧୦—ଜାନୁୟାରୀ ମାସରେ ମୟୂରଭଞ୍ଜରେ ସରକାରୀ ଓକିଲ ଭାବେ ନିଯୁକ୍ତ ଓ ବ୍ୟବସ୍ଥାପକ ସଭାର ସଭ୍ୟ ଭାବେ ମନୋନୀତ ।

୧୯୧୧—ସତ୍ୟବାଦୀ ବିଦ୍ୟାପୀଠରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଯୋଗଦାନ, ମାଧ୍ୟମିକ ସ୍କୁଲ୍‌କୁ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କରିବାପାଇଁ ଉଦ୍ୟମ ।

୧୯୧୨—ମାର୍ଚ୍ଚ ୧୨ ତାରିଖରେ ସତ୍ୟବାଦୀ ସ୍କୁଲଘର ଅଗ୍ନିକାଣ୍ଡରେ ଧ୍ୱଂସ, ଆଚାର୍ଯ୍ୟ ହରିହର ଦାସଙ୍କ ଯୋଗଦାନ, ଗୋପବନ୍ଧୁଙ୍କ ମୟୂରଭଞ୍ଜ ପରିତ୍ୟାଗ ଏବଂ କଟକରେ ଆଇନ ବ୍ୟବସାୟ ।

୧୯୧୩—ସତ୍ୟବାଦୀଠାରେ ନୂତନ ସ୍କୁଲ୍‌ଗୃହର ଭିତ୍ତି ସ୍ଥାପନ ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଯୋଗଦାନ ।

୧୯୧୪—ମ୍ୟାଟ୍ରିକୁଲେସନ ଶ୍ରେଣୀ ଉନ୍ମୋଚନ ଏବଂ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଯୋଗଦାନ ।

୧୯୧୭—ପାଟଣା ବିଶ୍ୱବିଦ୍ୟାଳୟ ଦ୍ୱାରା ସତ୍ୟବାଦୀ ସ୍କୁଲର ସମ୍ମିଶ୍ରଣ, ଓଡ଼ିଶା-ବିହାର ବିଧାନସଭାରେ ସଦସ୍ୟ ରୂପେ ଯୋଗ ଦେବାକୁ ଯାଇ ଆଇନ ବ୍ୟବସାୟ ପ୍ରତ୍ୟାଖ୍ୟାନ ।

୧୯୧୮—କଟକ ଉତ୍କଳ ସମ୍ମିଳନୀ ଅଧିବେଶନରେ ଯୋଗଦାନ ଓ ସଭାପତି ରୂପେ ନିର୍ବାଚିତ ।

୧୯୧୯—ଏପ୍ରିଲ ୧୯ରେ ଉତ୍କଳ ସମ୍ମିଳନୀର ୧୪ଶ ଅଧିବେଶନରେ ସଭାପତିତ୍ୱ, ପୁରୀରେ ଦୁର୍ଭିକ୍ଷ, ଦୁର୍ଭିକ୍ଷ ପ୍ରଶ୍ନ ନେଇ ବିଧାନ ସଭାରେ ଆନ୍ଦୋଳନ, ଅକ୍ଟୋବର ୪ରେ 'ସମାଜ' ପ୍ରକାଶିତ, ସରକାରୀ ଚାକିରି ଛାଡ଼ି, ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ସତ୍ୟବାଦୀରେ ଯୋଗଦାନ ।

୧୯୨୦—ଏପ୍ରିଲ ୭ରେ ଗେଇଟ ସାହେବଙ୍କ ସହ ଓଡ଼ିଶାର ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ, ଅଗଷ୍ଟରେ ଜିଲ୍ଲା କଂଗ୍ରେସ କମିଟି ଗଠନ, ସେପ୍ଟେମ୍ବର ମାସରେ କଲିକତାଠାରେ ଅନୁଷ୍ଠିତ ସ୍ୱତନ୍ତ୍ର ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦାନ, ଡିସେମ୍ବର ମାସରେ ନାଗପୁର କଂଗ୍ରେସ ଅଧିବେଶନରେ ଯୋଗଦାନ ଏବଂ ୩୦ ତାରିଖରେ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନରେ ଅଂଶଗ୍ରହଣ ।

୧୯୨୧—ଓଡ଼ିଶା-ବିହାର ବ୍ୟବସ୍ଥାପକ ସଭାରୁ ଇସ୍ତଫା, ଗାନ୍ଧିଜୀଙ୍କ ସହ ଓଡ଼ିଶା ଆଗମନ; କାଠଯୋଡ଼ି କୂଳେ ବିରାଟ ଜାତୀୟ ସଭା ଓ ୧୪୪ ଧାରା ଜାରି ।

୧୯୨୨—ମଇ ୩୧ ତାରିଖରେ ବନ୍ଦୀ ଓ ଦୁଇ ବର୍ଷ ସଶ୍ରମ କାରାଦଣ୍ଡ । ( କାରାବାସରେ 'ଧର୍ମପଦ', 'କାରାକବିତା', 'ଗୋମାହାତ୍ମ୍ୟ' ଓ 'ବନ୍ଦୀର ଆତ୍ମକଥା' ସମ୍ପନ୍ନ )

୧୯୨୪—ଜୁନ୍‌ରେ କାରାମୁକ୍ତ, ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ ପ୍ରାଦେଶିକ ରାଜନୈତିକ ସମ୍ମିଳନୀକୁ 'ଉତ୍କଳମଣି' ନାମରେ ଆମନ୍ତ୍ରିତ ଓ ସେହିଦିନୁ ସେହି ଉପାଧିରେ ଭୂଷିତ ।

୧୯୨୫—ପୁରୀରେ ପଥୁରିଆ ସାହିକୁ 'ସମାଜ' ଅନୁଷ୍ଠାନର ସ୍ଥାନ ପରିବର୍ତ୍ତନ ।

୧୯୨୬—ଲାଲାଜୀଙ୍କ ସହଯୋଗରେ ଲୋକସେବକ ମଣ୍ଡଳର ସଭ୍ୟରୂପେ ଯୋଗଦାନ ।

୧୯୨୭—କଟକକୁ 'ସମାଜ' କାର୍ଯ୍ୟାଳୟର ସ୍ଥାନ ପରିବର୍ତ୍ତନ, ବନ୍ୟା-ପ୍ରପୀଡ଼ିତଙ୍କୁ ସେବା ଓ ସାହାଯ୍ୟ ଦାନ ।

୧୯୨୮—ଏପ୍ରିଲ ୧୨ରେ ଲାହୋର ଯାତ୍ରା, ୨୫ରେ ଲୋକସେବକ ମଣ୍ଡଳ ଅଧିବେଶନ କାର୍ଯ୍ୟ ସାରି ପ୍ରତ୍ୟାବର୍ତ୍ତନ, କ୍ରମଶଃ ସ୍ୱାସ୍ଥ୍ୟହାନି ଓ ଜୁନ୍ ୧୭ରେ ବହୁ ବନ୍ଧୁ ଓ ସହକର୍ମୀଙ୍କ ଗହଣରେ ଶରୀରାବସାନ ।



# ଉତ୍କଳମଣିଙ୍କ ଅମର ବାଣୀ

## ଜୀବନର ବିକାଶସାଧନ ପନ୍ଥା—

ମାନବ ସାଧାରଣର ସମ୍ପର୍କରେ ଆସି ସେମାନଙ୍କର ଅଭାବ, ଆକାଂକ୍ଷା, ରୋଗ, ଦୁଃଖ, ଭାବ, ବିକାର ପ୍ରଭୃତି ଅନୁଭବରେ ନ ଆଣିଲେ, ଜୀବନର ସତ୍ୟ ଶିଖିବା ଅସମ୍ଭବ । ମାନବକୁ ସ୍ନେହ କରି ନ ଶିଖିଲେ, ମାନବ ପ୍ରତି ପ୍ରାଣରେ ସହାନୁଭୂତି ନ ଆସିଲେ, ଜୀବନର ବିକାଶ ହେବ ନାହିଁ ।

## ନୈତିକ ଜୀବନର ବିକାଶ ହିଁ ମାନବତ୍ୱ—

ନୈତିକ ଜୀବନର ବିକାଶରେ ହିଁ ମାନବର ପ୍ରକୃତ ମାନବତ୍ୱ । ଏ ପ୍ରକାର ଶିକ୍ଷା ଅଭାବରୁ ଆଧୁନିକଶିକ୍ଷାବିଧାନ ବହୁ ଦିନ ଏ ଦେଶରେ ପ୍ରବର୍ତ୍ତିତ ହେଲେ ସୁଦ୍ଧା ଆଜିଯାଏ ବିଶେଷ କିଛି ଫଳ ଦେଖାଇ ପାରି ନାହିଁ ।

## ପ୍ରକୃତ ନୀତିଶିକ୍ଷାର ପ୍ରକୃଷ୍ଟ ପନ୍ଥା—

ପ୍ରକୃତ ନୀତିଶିକ୍ଷାର ପନ୍ଥା ଲୋକସେବା । ଲୋକସେବା ଅଭ୍ୟାସ କରିବାରେ ଜୀବନର ପ୍ରକୃତ ତତ୍ତ୍ୱ ଅନୁଭବରେ ଶିକ୍ଷା ହୁଏ । ତେଣୁ ଛାତ୍ର ଜୀବନରେ ଏହି ଲୋକସେବା ଶିଖିବା ବିଷୟରେ ଛାତ୍ରମାନଙ୍କୁ ଯଥୋଚିତ ପ୍ରଶ୍ରୟ ଦେବା ପ୍ରୟୋଜନ ।

## ଆଦର୍ଶ ଶିକ୍ଷାର ସ୍ୱରୂପ—

ପ୍ରକୃତି ପର୍ଯ୍ୟବେକ୍ଷଣ, ଭୂଗୋଳ ଓ ଇତିହାସ ବିଷୟକ ସାଧାରଣ ଶିକ୍ଷା ମନୁଷ୍ୟକୁ ପ୍ରକୃତ ମନୁଷ୍ୟ କରେ । ଉଦାରତା ବିଦ

ସମ୍ପର୍କରେ ସାଧାରଣ ଜ୍ଞାନ ମନୁଷ୍ୟକୁ କ୍ଷୁଦ୍ର ପୃଥିବୀରୁ ଅନନ୍ତର ଉପଲବ୍ଧି ଆଡ଼କୁ ଟାଣିନିଏ । ସେ ସବୁ ମନୁଷ୍ୟର ହୃଦୟ ବିସ୍ତୀର୍ଣ୍ଣ କରେ । ଆତ୍ମାର ଏହି ପ୍ରସାରରେ ପ୍ରାଣର ନୀଚତା ଚାଲିଯାଏ, ଉଦାରତା ଜାଗିଉଠେ ଏବଂ ମାନବଚରିତ୍ରର ବିମଳତା ସ୍ୱତଃ ବିକଶିତ ହୁଏ ।

## ଜାତୀୟ ଶିକ୍ଷାର ସ୍ୱରୂପ—

ଯେ କୌଣସି ଜାତିର ଶିକ୍ଷା ସେହି ଜାତିର ନିଜ ଭାଷାରେ ନ ହେବା ଯାଏ ତାହା ଜାତୀୟ ଶିକ୍ଷା ନୁହେଁ । ଭାଷା ଭାବପ୍ରକାଶର ଉପାୟ ମାତ୍ର ସତ, କିନ୍ତୁ ଯେଉଁ ଭାଷା ମନୁଷ୍ୟର ନିଜ ଭାଷା, ଯେଉଁ ଭାଷାବେଷ୍ଟନୀ ମଧ୍ୟରେ ସେ ଜନ୍ମଦିନୁ ଲାଳିତପାଳିତ, ସେ ଭାଷାରେ ଭାବ ଯେପରି ସୁବୋଧ ହୁଏ, ଅନ୍ୟ ଭାଷାରେ ସେପରି ହୁଏ ନାହିଁ ।

## ଶିକ୍ଷାର ମୁଖ୍ୟ ଲକ୍ଷ୍ୟ—

କେବଳ ବିଜ୍ଞାନ ଦର୍ଶନ ପଢ଼ି କେତେଗୁଡ଼ିଏ ପ୍ରାକୃତିକ ବା ଆଧ୍ୟାତ୍ମିକ ସତ୍ୟ ଜାଣିରଖିଲେ ମନୁଷ୍ୟ ପକ୍ଷେ ଯଥେଷ୍ଟ ହେଲ ନାହିଁ । କେବଳ ଭାଷା ଶିକ୍ଷା ତ ଶିକ୍ଷା ନୁହେଁ । ଶିକ୍ଷାର ମୁଖ୍ୟ ଲକ୍ଷ୍ୟ ଜୀବନର ସୁଗଠନ ଏବଂ ବିକାଶ ।

## ସ୍ୱାଧୀନତାର ଉତ୍କର୍ଷ—

ପରାଧୀନ ଭାବ ଦାସତ୍ୱ, ସ୍ୱାଧୀନ ଭାବ ବିଭୂତ୍ୱ । ସ୍ୱାଧୀନତାର ଭାବରେ ସାକ୍ଷାତ ଭଗବାନଙ୍କୁ ଆଗରେ ଦେଖି ତାଙ୍କର ସତ୍ତା ଅନୁଭବ କରିବାକୁ ହେବ, ତାଙ୍କର ଆହ୍ୱାନ ଶୁଣିବାକୁ ହେବ । ସ୍ୱାଧୀନତା ବାହାରେ ନାହିଁ, ଏହା ଆତ୍ମାରେ ପ୍ରତିଷ୍ଠିତ । ଆତ୍ମଶାସନ ହିଁ ଏହାର ସାଧନା, ତିତିକ୍ଷା ହିଁ ଏହାର ମନ୍ତ୍ର ।

## ସାହିତ୍ୟିକ ଆଦର୍ଶ—

ସାହିତ୍ୟ ଜାତି ସମକ୍ଷରେ ଉନ୍ନତ ଆଦର୍ଶ ରଖେ ଏବଂ ସେହି ଆଦର୍ଶରେ ଜାତୀୟ ଚରିତ, ଜାତୀୟ ଆକାଙ୍କ୍ଷା ପ୍ରଭାବିତ ହୋଇ

ତାହା ପୁଣି ସାହିତ୍ୟରେ ପ୍ରତିବିମ୍ବିତ ହୁଏ । × × × ସମଗ୍ର ଜାତିର ଚିନ୍ତାରେ, କାର୍ଯ୍ୟରେ, ପ୍ରାଣରେ ନୂତନ ଶକ୍ତି ସଞ୍ଚାର କରାଇବାକୁ ହେବ । ଏଥିନିମନ୍ତେ ବିଶିଷ୍ଟ ବଳିଷ୍ଠ ଜାତୀୟ ସାହିତ୍ୟ ଗଠନ ସର୍ବପ୍ରଥମେ ଆବଶ୍ୟକ ।

## ସାହିତ୍ୟର ଉନ୍ନତିରେ ଜାତିର ଉନ୍ନତି—

ସମାଲୋଚନାର ଆଦର କରିବାକୁ ହେବ । ସାହିତ୍ୟ ସାଧନାରେ ଏହା ପ୍ରଥମ ସୋପାନ । × × × ଯେଉଁ ପୁସ୍ତକ ପ୍ରତି ଆଦର ଓ ସମ୍ମାନ ଅଛି ତାହା କିଣିବା ହିଁ ଏକ ପ୍ରକାର ସାହିତ୍ୟସେବା । ଲୋକ-ସାଧାରଣ ଯେତେ ଦିନ ଏହା ବୁଝି ଏହି ଅନୁସାରେ କାର୍ଯ୍ୟ କରି ନାହାନ୍ତି, ସେତେ ଦିନ ସାହିତ୍ୟର ଉନ୍ନତି ହେବ ନାହିଁ ଏବଂ ଓଡ଼ିଶାର ସାହିତ୍ୟ ଉନ୍ନତି ନ ହେଲେ ଜାତୀୟ ଉନ୍ନତି ଏକ ପ୍ରକାର ଅସମ୍ଭବ ।

## ଓଡ଼ିଆର ଆରାଧ୍ୟ ଦେବତା—

ଭାଗବତ ଓଡ଼ିଆର ଆରାଧ୍ୟ ଦେବତା, ଧର୍ମଗ୍ରନ୍ଥ, ପାଠ୍ୟପୁସ୍ତକ । ଗୃହେ ଗୃହେ ଏହାର ଆଦର ଏବଂ ପୂଜା × × × ରାଞ୍ଚି ଜିଲ୍ଲାର ଅରଣ୍ୟ ମଧ୍ୟରେ, ବଙ୍ଗ ପ୍ରଦେଶର ରୂପନାରାୟଣ କୂଳରେ, ମାନ୍ଦ୍ରାଜର ଗୋଦାବରୀ ଅଞ୍ଚଳରେ, ମଧ୍ୟପ୍ରଦେଶର ଗିରି ପ୍ରାନ୍ତରରେ, ଓଡ଼ିଶାର ସାଗର ସୈକତରେ ଜଗନ୍ନାଥଙ୍କର ପବିତ୍ର ମଧୁର ଭାଗବତ ପଦାବଳୀ ଅଦ୍ୟାପି ସକଳଙ୍କ ଓଡ଼ିଆ ଜାତିର ହୃତ୍ପିଣ୍ଡକୁ ଅଖଣ୍ଡ, ଅକ୍ଷୁଣ୍ଣ ଏବଂ ଜାଗ୍ରତ ରଖିଅଛି ।

## ଜାତୀୟ ଶକ୍ତିର ମଜ୍ଜା—

ଆମ୍ଭମାନଙ୍କର ଜାତୀୟ ଶକ୍ତିର ମଜ୍ଜା ପଲ୍ଲୀରେ । ଭାରତୀୟ ସଭ୍ୟ-ତାର କେନ୍ଦ୍ର ସହର ନୁହେଁ, ପଲ୍ଲୀ ଗ୍ରାମ; ନଗରର କୃତ୍ରିମତାରେ ନୁହେଁ —ପଲ୍ଲୀର ସ୍ୱାଭାବିକତାରେ ।

## ସନ୍ନ୍ୟାସୀର ସାଧନାରେ ହିଁ ଜାତିର ମୁକ୍ତି—

କେତେ ସାଧୁ, ସନ୍ନ୍ୟାସୀଙ୍କୁ ଏ ପୁଣ୍ୟଭୂମି ଯୁଗେ ଯୁଗେ ଆକର୍ଷଣ କରିଅଛି । ବର୍ତ୍ତମାନ ଏହାର ସନ୍ତାନମାନଙ୍କର ସନ୍ନ୍ୟାସୀ ହେବାର ସମୟ ଆସିଅଛି, ପ୍ରୟୋଜନ ହୋଇଅଛି । ସନ୍ନ୍ୟାସୀର ତପସ୍ୟା ଏବଂ ସାଧନା ବିନା ଜଗତରେ କେବେ କୌଣସି ଗୁରୁକାର୍ଯ୍ୟ ସାଧିତ ହୋଇ ନାହିଁ । ସନ୍ନ୍ୟାସୀ ସାଧନାରେ ହିଁ ଆମ୍ଭମାନଙ୍କର ଜାତିର ମୁକ୍ତି ।

## କର୍ମହିଁ ଜୀବନର ମାନଦଣ୍ଡ—

ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ, ଦଣ୍ଡ,
କର୍ମେ ଜୀଏ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।

## ଅସାଧ୍ୟ ସାଧନ ପ୍ରଭୁ ଅନୁଗ୍ରହ—

ଧ୍ରୁବ ପ୍ରହ୍ଲାଦ ପୁରାଣ ପ୍ରବାଦ
କବି-କଳ୍ପନା ନ କହ,
କାଳେ କାଳେ ଶିଶୁ ଅସାଧ୍ୟ ସାଧିବ
ହେଲେ ପ୍ରଭୁ ଅନୁଗ୍ରହ ।

## ଗୋଟିକୁ ନୁହନ୍ତି କୋଟିଏ ସମାନ—

ଯାର ଗୁଣରାଶି ଜଗତେ ପ୍ରକାଶି
ରଖେ ଜାତିକୁଳ ମାନ,
ସେପରି ଗୋଟିକ ସଙ୍ଗତେ ନୁହନ୍ତି
ଆନ କୋଟିଏ ସମାନ ।

ଏ ଲୋକେ ରହେ ତା ଆଦର ଯଶ—

ମୁହୂର୍ତ୍ତେ ମାତ୍ରାର ଉଜ୍ଜ୍ୱଳ ପ୍ରଖର
ଶିଖା ଟେକ ହୁତାଶନ,
ଜଳ ଯେବେ କରେ ଆଲୋକ ଉତ୍ତପ
ଚଉଦିଗେ ବିତରଣ,
ଲିଭୁ ସେ କ୍ଷଣକେ ତଥାପି ଏ ଲୋକେ
ରହେ ତା ଆଦର ଯଶ,
କି ଲୋଡ଼ା ତହିଁରେ ରହେ ଯେ ମହୀରେ
କୁତ୍ସିତ ସହସ୍ର ବର୍ଷ ।

ସୁପୁରୁଷ କିଏ ?—

କାପୁରୁଷ ପରି ମରିବା ଜଗତେ
ନୁହେଁ ନର ପଉରୁଷ,
ପର ହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ ।

ଜନ୍ମ-ମୃତ୍ୟୁ ଦୁସ୍ତର ବନ୍ଧନ ତରେ କିଏ ?—

ପିତାମାତା ଗୁରୁଜନ ଆଜ୍ଞା ଘେନି ଶିରେ
ପୂଜେ ଯେ ତ୍ରିସନ୍ଧ୍ୟା ଅଗ୍ନି ନୟତ ବିଧିରେ ।
ଯଜ୍ଞ, ଦାନ, ଅଧ୍ୟୟନେ ରତ ଅନୁକ୍ଷଣ
ତରଇ ସେ ଜନ୍ମ-ମୃତ୍ୟୁ ଦୁସ୍ତର ବନ୍ଧନ ।

ଅବିବେକୀ ପୁରୁଷ କିଏ ?—

ଚପଳ ବାଳକ ମତ ଅବିବେକୀ ନରେ
ଅନୁରାଗ ପ୍ରକାଶନ୍ତି ବାହ୍ୟ ବିଷୟରେ ।

ସୁଖ ଶଯ୍ୟା ଧନମାନ ବନିତା ବିଳାସ
ଏ ଆଦି ଅନିତ୍ୟ କାମେ କରନ୍ତି ପ୍ରୟାସ ।
ସୁବିସ୍ତୀର୍ଣ୍ଣ ମୃତ୍ୟୁ ପାଶେ ହୁଅନ୍ତି ସେ ବନ୍ଦୀ
ଅବିଦ୍ୟା ଅନ୍ଧାରେ ବୃଥା କାମକର୍ମେ ଛନ୍ଦି ।
ଜନ୍ମ-ମୃତ୍ୟୁ ଜରା-ବ୍ୟାଧି ଯନ୍ତ୍ରଣା ଅପାର
ଲଭନ୍ତି ଏ ମର୍ତ୍ତ୍ୟଧାମେ ଆସି ବାରମ୍ବାର ।

## ବିବେକୀ ପୁରୁଷ କିଏ ?

ବିବେକୀ ପୁରୁଷ ତେଣୁ ତେଜି ଭୋଗରାଶି
ଅମୃତତ୍ୱ ଲାଗି ହୁଏ ଏକାନ୍ତ ପ୍ରୟାସୀ ।
ଜାଣନ୍ତି ସେ ସ୍ୱର୍ଗେ ନାହିଁ ପ୍ରକୃତ ଅମୃତ
ପୁଣ୍ୟକ୍ଷୟେ ସ୍ୱର୍ଗ ଜୀବ ହୁଏ ପ୍ରତ୍ୟାବୃତ୍ତ ।
ଆତ୍ମ ଲାଭେ ମିଳେ ଏକା ଚିର ଅମୃତତ୍ୱ
ବୁଝନ୍ତି ଜ୍ଞାନୀଜନ ଏହି ସତ୍ୟ ସାରତତ୍ତ୍ୱ ।
ଆତ୍ମା ଧ୍ରୁବ ଅନ୍ୟ ସବୁ ଅଧ୍ରୁବ ଜଗତେ
ନିଧାର୍ଯ୍ୟ ଜାଣି ଏ ତଥ୍ୟ ନିଜ ହୃଦଗତେ ।
ଅନିତ୍ୟ ବିଷୟେ କେବେ ନ କରେ କାମନା
ଲୋଡ଼େ ନାହିଁ ପୁତ୍ର ବିତ୍ତ ଲୋକ ସମ୍ଭାବନା ।

## ସଂସାର-ସମ୍ପଦ କ୍ଷଣସ୍ଥାୟୀ—

ମାନବ ଇନ୍ଦ୍ରିୟ ତେଜ, ଇନ୍ଦ୍ରିୟ ବିଳାସ
ବିଳାସ ସାମଗ୍ରୀ ସବୁ ଯାଏ କ୍ଷଣେ ନାଶ ।
ସଂସାର-ସମ୍ପଦରାଶି କ୍ଷଣକାଳ ସ୍ଥାୟୀ
ଆଜି ଅଛି ଯାହା ପୁଣି କାଲିକି ତା ନାହିଁ ।

## ଏ ଜଗତ ମହାମୁଖଶାଳ—

ଏ ଜଗତ ବାପ ମହାମୁଖଶାଳ
ନରନାଶ ଯଜମାନ
ସେହି କୃତୀ, ସେହୁ ପରହିତେ କରେ
ଜୀବନ ଆହୁତି ଦାନ ।

ଏ ଜଗତେ ସମସ୍ତ ମାୟାଭିଆଣ—

ଏ ଜଗତେ କାହା ପୁଅ ବା କାହାର
ସମସ୍ତ ମାୟା ଭିଆଣ,
ସାର୍ଥକ ଜୀବନ ତାର ଏକା ଯିନା
ପର ହିତେ ଯାର ପ୍ରାଣ ।

କାଳସ୍ରୋତର ବିଚିତ୍ର ଗତି—

ତୃଣ ବେନା ଯଥା ମହାସାଗର ତରଙ୍ଗେ
ଭସି ଆସି କ୍ଷଣେ ମିଳି ହୁଏ ଅନ୍ତରିତ ।
ପିତା ପୁତ୍ର ପତି ପତ୍ନୀ ମିଳି ଏକ ସଙ୍ଗେ
କାଳସ୍ରୋତେ କାହିଁ ପୁଣି ଚଳନ୍ତି ଭ୍ରମିତ ।

ବିଚ୍ଛେଦରେ ପ୍ରେମର ବିକାଶ—

ବିଚ୍ଛେଦେ ବିକାଶେ ପ୍ରେମ ଅତି ମଧୁମୟ
ଶୀତ ଅନ୍ତେ ଶୋଭେ ଯିନା ନବ କିଶଳୟ ।

ସ୍ନେହ-ବନ୍ଧନ ଅମର—

ଚିତାନଳେ ଭସ୍ମ ନୁହେଁ ସେନେହ ବନ୍ଧନ
ଶ୍ମଶାନ ନୁହେଁ ଏ ଜୀବ ଶେଷ ପରସୀମା,
କେବେ କାହିଁ ହେବ ନଷ୍ଟେ ଶୁଭ ସମ୍ମିଳନ
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ-ମାଧୁରିମା ।

ପ୍ରେମ ଅମର—

ପ୍ରେୟୁନ ସ୍ଥାନ ନୁହେଁ ଏ ସଂସାର ଏକା,
ପ୍ରେମେ ପ୍ରଣୟୀ ସଙ୍ଗତେ ହେବ ସ୍ୱର୍ଗେ ଦେଖା ।
ଏହି ଦିବ୍ୟ ସାନ୍ତ୍ୱନାରେ ଆଶ୍ୱାସିତ ମନେ,
କ୍ଷଣେ ଏଥି ରହି ଚଳ ଅମର ଭୁବନେ ।

## ଆତ୍ମା ଅମର—

ବ୍ରାହ୍ମଣ କ୍ଷତ୍ରିୟ ଆଦି ଉତ୍ତମ ମଧ୍ୟମ
ଅଛନ୍ତି ଜଗତେ ଯେତେ ସ୍ଥାବର ଜଙ୍ଗମ ।
ଆତ୍ମାର ଆଧାର ସର୍ବେ ଆତ୍ମାର ଅଧୀନ
ଆତ୍ମା ଅଭ୍ୟନ୍ତରେ ଜାତ ଆତ୍ମାରେ ବିଲୀନ ।
ନିଜେ ମୃତ୍ୟୁ ଭବେ ଯେହ୍ନେ ସକଳ ବିନାଶେ
ଭଜେ ମୃତ୍ୟୁ ପଡ଼େ ଯେବେ ଆତ୍ମାର ଗରାସେ ।
ଆତ୍ମା ଅନ୍ତର୍ଭୁକ୍ତ ସୃଷ୍ଟି ସ୍ଥିତି ପ୍ରଳୟ
ଲୋକେ ଯାହା ବିପର୍ଯ୍ୟୟ ନୁହେଁ ତା ବିଲୟ ।

## ଆତ୍ମା ଅନଶ୍ୱର—

ସୁରାସୁର ନର ଅବା ଜଙ୍ଗମ ସ୍ଥାବର
ଚରାଚର ବିଶ୍ୱଲୋକେ ସକଳ ନଶ୍ୱର ।
ଆତ୍ମା ଏକା ଅନଶ୍ୱର ସମସ୍ତ ନଶ୍ୱରେ
ଆତ୍ମା ଏକା ନିତ୍ୟ ସର୍ବ ଅନିତ୍ୟ ଅନ୍ତରେ ।

## ପ୍ରାଣାପାନ ଆଦି ସର୍ବେ ଆତ୍ମାର ଆୟତ୍ତ—

ବହୁ ଉପାଦାନେ ଗଢା ପଦାର୍ଥ ନିଚୟ
ଆହାର ଉଦ୍ୟାନ ଶଯ୍ୟା ବସନ ଆଳୟ ।
ଲାଗେ ନାହିଁ କେବେ ଯଥା ନିଜ ପ୍ରୟୋଜନେ
ଲୋଡ଼ା ହୁଏ ସଦା ଅନ୍ୟ ସଂଭୋଗ ସାଧନେ ।
ପ୍ରାଣପାନ ଇନ୍ଦ୍ରିୟାଦି ତଥା ସହଯୋଗେ
ଅବିରତେ କାର୍ଯ୍ୟେ ରତ ଆତ୍ମା ଉପଭୋଗେ ।
ଏ ସକଳୁଁ ଆତ୍ମା ଭିନ୍ନ ନିତ୍ୟ ଅସଂହତ
ପ୍ରାଣାପାନ ଆଦି ସର୍ବେ ଆତ୍ମାର ଆୟତ୍ତ ।

## ଶରୀର ସ୍ୟନ୍ଦନ, ମନ ଲଗାମ—

ନର ଶରୀର ଏକ ଅପୂର୍ବ ସ୍ୟନ୍ଦନ
ଚକ୍ଷୁ ଆଦି ପଞ୍ଚ ଅଶ୍ୱ ଏଥିରେ ବାହନ ।
ଜୀବ ରଥୀ, ପୁଣି ବୁଦ୍ଧି ସାରଥି ଏ ରଥେ ।
ଦଉଡ଼ନ୍ତି ଅଶ୍ୱେ ରୂପ ରସ ଆଦି ପଥେ ।
ମନ ଲଗାମକୁ ଟାଣି ସନ୍ତତେ ସାରଥି ।
ନରୋଧେ ଚଞ୍ଚଳ ଅଶ୍ୱ ବିଶୃଙ୍ଖଳ ଗତି ।

## ଜ୍ଞାନ-ଦୀପ ଜାଳି କର ଚିତ୍ତ ସମାହିତ—

ତେଣୁ ଅତି ସାବଧାନେ ଏକାଗ୍ର ମାନସେ
ନରୋଧି ଇନ୍ଦ୍ରିୟଗଣ ରଜନୀ ଦିବସେ ।
ଜ୍ଞାନ-ଦୀପ ଜାଳି କର ଚିତ୍ତ ସମାହିତ
ଆତ୍ମ ଦରଶନେ ଯେବେ ବାଞ୍ଛା ନିତ୍ୟ ହିତ ।

## ଅନ୍ଧାରେ ନ ହୁଡ଼ ପଥ—

ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ,
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ ।
ହୃଦ-କପିଳାସେ ତୋର ବନ୍ଦେ ପ୍ରେମଝରେ,
ବିଜେ କରିଛନ୍ତି ତହିଁ ସ୍ୱୟମ୍ଭୁ ଶଙ୍କର;
ଶୁଚିମନ୍ତ ହୋଇ ନୀତି ଜ୍ଞାନ-ଦୀପ ଜାଳି,
ଶୁଦ୍ଧ ଭକ୍ତିରସ ଦିଅ ସେ ଶ୍ରୀପଦେ ଢାଳି ।
ଉଜାଗର ରହି କର ତାଙ୍କ ପ୍ରିୟକର୍ମ,
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରି ଧର୍ମ ।
ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନ ହୁଡ଼ ପଥ ହେ ସ୍ୱରଗ-ଯାତ୍ରି ।

## ଗୋଜାତିକୁ ପାଳ ସଦା ସାବଧାନେ—

ଗୋ ଦାନ ସମାନ ନୁହେଁ ଅନ୍ୟ ମୋର୍ ମତେ
କରନ୍ତୁ ମାନବ ସର୍ବେ ଗୋ-ସେବା ଜଗତେ ।
ଇହ ପରକାଳେ ସୁଖ ଗୋ-ସେବା, ଓଗୋ-ଦାନେ
ଗୋଜାତିକୁ ପାଳ ଜନେ ସଦା ସାବଧାନେ ।

## ଆର୍ଯ୍ୟଅଭିମାନ କର କାହିଁ ନାମେ ?—

ଭାରତବାସୀର ଧର୍ମବଳ ହାର
ଧର୍ମ ବିନା ଆଜ ଏତେ ଛାରଖାର ।
ଧର୍ମେ ପଶି ଆସେ ଭ୍ରମ ଅନ୍ଧକାର,
ସତ୍ୟ ଶୁଦ୍ଧ ଧର୍ମ କର ହେ ପ୍ରଚାର ।
ଦେଖାଅ ଜୀବନେ ଅଦ୍ଭୁତ ଶକତି,
କର୍ମେ ଅନାସକ୍ତି, ଧର୍ମେ ଦିବ୍ୟ ରତି ।
ପୂତ 'କର୍ମଭୂମି' ଏ ଭାରତ ଧାମେ,
ଆର୍ଯ୍ୟ ଅଭିମାନ କର କାହିଁ ନାମେ ?

## ନିଜ ସୁଖ ଲାଗି ଜାତ ନୁହେ ହିନ୍ଦୁ—

ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ,
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।
ଦେଖାଅ ଏ ସତ୍ୟ ଆପଣା ପରାଣେ,
ଦିଅ ଏହି ମନ୍ତ୍ର ସର୍ବ ବର୍ଣ୍ଣ କାନେ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ ।
ସାଧ ବିଶ୍ୱହିତ ତେଜ ଅଭିମାନ ।

## ବିଶ୍ୱ ଏକ ପରିବାର—

ପ୍ରେମ ଭାବେ ଯାର ଅନ୍ତର ପୂରିତ,
ସର୍ବ ପ୍ରାଣୀ ହୃଦ ତା ହୃଦେ ଅଙ୍କିତ

ସର୍ବ ଅନୁଭୂତ ସର୍ବଭୂତେ ତାର,
ତା ଦୃଷ୍ଟିରେ ବଶ୍ୱ ଏକ ପରିବାର ।

ବିନାଶ୍ରୟେ ନ ବର୍ତ୍ତନ୍ତି କବିତା ବନିତା ଲତା—

ସୁଦୃଢ଼ ଗମ୍ଭୀର ନୁହଇ ଯେଣୁ ନାରୀ ହୃଦୟ,
ତେଣୁ ସିନା ନରେ ଅଟନ୍ତି ନାରୀ ଜାତି ଆଶ୍ରୟ ।
ସୁକୋମଳ କ୍ଷୀଣ ବଲ୍ଲରୀ ଲଭି ପାଦପ ସଙ୍ଗ,
ଆହା କି ପରମ ମଞ୍ଜୁଳ ଦିଶେ ଉଭୟ ଅଙ୍ଗ ।
ତେବେ କପାଁ ଏତେ ଯୁଝନ୍ତି ସଭ୍ୟ ନାରୀ-ସମାଜ,
ପତିଗଣ ସଙ୍ଗେ ସର୍ବାଂଶେ ସମ ହେବାକୁ ଆଜ ।
ରହିବ ବେନିଙ୍କ ପ୍ରକୃତି ମଧ୍ୟେ ନିଶ୍ଚେ ଭିନ୍ନତା,
କିଏ ସେ କରିବ ଅନ୍ୟଥା ଯାହା କଲ୍ପିଛି ଧାତା ।

ସୃଷ୍ଟିର ଏ ଏକ ବିଧି—

ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟ ବିଧି,
ଏକର ଯା କ୍ଷୟ ଅନେକ ଉଦୟ
ଅନେକ ଏକର ସିଦ୍ଧି ।

ତ୍ୟାଗର ମାର୍ଗ—

ନ ହୋଇ ବ୍ୟାକୁଳ ଗ୍ରାମ ହିତେ କୁଳ
ବରଜନ୍ତି ସାଧୁଜନ,
ଦେଶ ହିତେ ଗ୍ରାମ ଜଗତ କଲ୍ୟାଣେ
କର ଦେଶ ବିସର୍ଜନ ।

ଭାରତର ସନାତନ ରାଜଧର୍ମ—

ପ୍ରଜା ଲଗି କଲେ ପ୍ରଜାପତି ସୃଷ୍ଟି,
ପ୍ରଜା ଲଗି ଇନ୍ଦ୍ର କରେ ଜଳ ବୃଷ୍ଟି ।

ପ୍ରଜା ଲାଗି ଉଦେ ରବି ଶଶୀ ତାରି,
ପ୍ରଜା ଲାଗି ବର୍ଷେ ଶତ ନଦୀ ଧାରି ।
ପ୍ରଜା ଲାଗି ରାଜ୍ୟ, ପ୍ରଜାର ଶାସନ,
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।
ଭାରତର ରାଜଧର୍ମ ସନାତନ—
ପରଜା ରକ୍ଷଣ ପାଳନ ରଞ୍ଜନ ।

## ଉପେକ୍ଷିତ ପ୍ରଜା ମତର ପରିଣତି—

ପ୍ରଜା ସାଧାରଣ ମତ ଯେବେ ଉପେକ୍ଷିତ
ଅଶାନ୍ତ ଅନଳ ହୁଏ ହୃଦୟେ ସଞ୍ଚିତ ।
ଦମନ-ପବନେ ଥରେ ଜଳିଲେ ପାବକ
ମାନେ ନାହିଁ ବେଡ଼ି ଶୂଳ କୃପାଣ ଶାୟକ ।
ଉଠେ ସେ ଦାବାଗ୍ନି ଜମେ ମହାରୁଦ୍ର ବେଶେ
ଭୀଷଣ ବିପ୍ଳବ ବାତ୍ୟା ବହେ ସାରା ଦେଶେ ।

## ନିଜ କୃତ କର୍ମ ନିଜେ ଭୋଗେ ନର—

ନିଜ କୃତ କର୍ମ ଭୋଗେ ନିଜେ ନର
ଏଡ଼ି ନ ପାରେ ତା ବ୍ରହ୍ମା ହରିହର ।
ଧର୍ମ ନିକିତିରେ ହୁଏ ଯେ ତଉଲ
ପରମାଣୁ ତହିଁ ଯାଏ ନାହିଁ ଭୁଲ ।
ଇତର ଜନର କଥା କିବା ଛାର
କେତେ ଜାତି କେତେ ବ୍ୟକ୍ତି ବଳୀଆର;
ନିଜ କର୍ମ ଦୋଷେ ଯାଇଛନ୍ତି ନାଶ
ପ୍ରମାଣ ତହିଁର ଶାସ୍ତ୍ର ଇତିହାସ ।

## ନ କର ବିପଦେ ଚିତ୍ତ ବିଚଳିତ—

ଜତୁଗୃହ ଜାଳି ମାମୀ ଦୁର୍ଯ୍ୟୋଧନ
ଜାଣିଛ ଲଭିଲା କପଟ ନିଧନ ।

ନ ନେଲା ସେ କଂସ କେତେ ଶିଶୁ ପ୍ରାଣ
କହ କେତେ ଦିନ ରହିଲା ସେ ଠାଣ ?
ପଶ୍ଚିମ ରାଇଜେ ହେରଡ଼ ନୃପତି
ଥିଲା କଂସ ସମ ଦୁରାତ୍ମା ଦୁର୍ମତି ।
ପ୍ରଭୁ ଯୀଶୁ ପ୍ରତି ମନେ ବହି ରୋଷ
ଶିଶୁ ହତ୍ୟା ଆଦି କଲା ନାନା ଦୋଷ ।
ଥିଲା ସେହିପରି ମିଶରେ ଫେରସ
ଗଲେ ଏ ସକଳେ ଯଥାକାଳେ ଧ୍ୱଂସ ।
ଶାସ୍ତ୍ର ପୁରାଣର ବୁଝି ଏ ଚରିତ
ନ କର ବିପଦେ ଚିତ୍ତ ବିଚଳିତ ।

ସତ୍ୟ-ଶାନ୍ତି-ପଥେ ଚାଲ ଅବିରତ—

ହେଉ ଗୃହ ନାଶ ଅବା କାରବାସ
ଯାଉ ପଛେ ପ୍ରାଣ ନ ଯାଉ ବିଶ୍ୱାସ ।
ସତ୍ୟ-ଶାନ୍ତି ପଥେ ଚାଲ ଅବିରତ
ଗ୍ରାମେ ଗ୍ରାମେ ସର୍ବେ କର ପଞ୍ଚାୟତ ।
ଚଳାଅ ଅରଟ ଗୁଡ଼ ମନ୍ଦ ଖିଲ
ତେଜ ଉଚ୍ଚ ନୀଚ ଘୃଣା ଭେଦ ନୀତି ।
ଚୋର ନାଶ ନିଶା ଆଦି ଦୁରାଚାର
ନ କରୁ ଦୂଷିତ ଗ୍ରାମ ପରିବାର ।

ନ ଛାଡ଼ ସ୍ୱରାଜ୍ୟ ଶାନ୍ତି-ସତ୍ୟ-ପଥ—

ଦଗ୍ଧ ହେଉ ଦେହ, ଭସ୍ମ ହେଉ ଘର,
ସ୍ୱରାଜ୍ୟ ସାଧନେ କେବେହେଁ ନ ଡର ।
ନ ଛାଡ଼ ସାହସ ନ ହୁଅ ନିରାଶ,
ହେଲେ ହେଉ ପଛେ କାରାଗାରେ ବାସ ।
ନ ଛାଡ଼ ସ୍ୱରାଜ୍ୟ ଶାନ୍ତି-ସତ୍ୟ-ପଥ,
ଲାଗୁ ସିଂହଦ୍ୱାରେ ନନ୍ଦିଘୋଷ ରଥ ।

## ସ୍ଥିରସ୍ତମ୍ଭେ ମାନବର ସମାଜ ସଂସ୍ଥିତି—

ସ୍ୱାଧୀନତା ମାନବର ଜନ୍ମ ଅଧିକାର,
ସ୍ୱାଧୀନ ଭୂଷଣ ଆଉ ସ୍ୱାଧୀନ ବିହାର,
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି,
ସ୍ଥିର ସ୍ତମ୍ଭେ ମାନବର ସମାଜ ସଂସ୍ଥିତି ।

## ଏକତା ମନ୍ତ୍ରରେ ସଦା ରଖ ମତି—

ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିଆନ,
ଶିଖ, ଜୈନ ଯେତେ ଭାରତ-ସନ୍ତାନ ।
ଯେତେ ଧର୍ମ, ଯେତେ ବର୍ଣ୍ଣ-ଜାତି-କୁଳ,
ଭାରତ ଜନନୀ ସମସ୍ତଙ୍କ ମୂଳ ।
ଏକ ଆଶା, ଏକ ଲକ୍ଷ୍ୟ, ଏକ ଧ୍ୟାନ,
ଏକଇ ଅନୁଷ୍ଠି, ଏକଇ ଶ୍ମଶାନ ।
ଏକ କର୍ମ ଖେଳ, ଏକ ମାତୃ ପଦେ,
କର ଏକ ପ୍ରାଣ ସମ୍ପଦେ ବିପଦେ ।
ଏକତା ମନ୍ତ୍ରରେ ରଖ ସଦା ମତି
ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି ।

## ନ ଅଟକେ କର୍ମ ନେତାର ଅଭାବେ—

କର କି ଭାବନା କାଣ୍ଡାରି ବିହୁନେ
ଚଳିବ ସ୍ୱରାଜ୍ୟ-ବୋଇତ କେସନେ ?
ନ ଅଟକେ କର୍ମ ନେତାର ଅଭାବେ,
ଧର୍ମ ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ,
ଉତ୍କଳର ନେତା ନିଜେ ନାରାୟଣ ।

## କର ନାହିଁ ଭାଇ ! ଏତେବେଳେ ହେଲା—

ନ ହୁଅ ନିରାଶ, ନ ହୁଅ ଦୁଃଖିତ
ଉତ୍କଳର ଦେଖି ଦୁଃଖମୟ ଚିତ୍ର ।
ସୁଖଃ ଦୁଃଖ ଚକ୍ର ଘୂରେ ନିରନ୍ତର,
ଏକ ପରେ ଆନ ଅସିବ ମୁକର ।
ଆଲୁଅ ଅନ୍ଧାର ଖେଳେ ଲୁଚକାଳି
ଆସିବ ଆଲୁଅ ପଡ଼ିଲଣି ପାଳି ।
ପହଞ୍ଚିଛୁ ଏବେ ସେ ମାହେନ୍ଦ୍ର ବେଳା,
କର ନାହିଁ ଭାଇ ! ଏତେ ବେଳେ ହେଳା ।

## ପଛଘୁଞ୍ଚା ନାହିଁ ବୀରର ଜାତକେ—

ଜାତରଚା ସିନା କାପୁରୁଷ ପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ ସେ କେବେ ପରାଣ ଆତଙ୍କେ ।

## ଏ ମହାଦୀକ୍ଷା—•

ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ,
ମାନବ-ଜନମ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?

## ଏହି ଶେଷ ଭିକ୍ଷା—

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।

ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ ମୋର ମାଂସ ହାଡ ।
ସ୍ୱାଧୀନତା ପଥେ ଭଲେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।

## ସାର୍ଥ ହେଉ ଋଷି ବାଣୀ—

ପଡ଼ୁ ଏ ଭାରତ ପ୍ରାଣେ ସ୍ୱର୍ଗୀୟ କିରଣ,
ନନ୍ଦନ କାନନୁ ବହୁ ସ୍ନିଗ୍ଧ ସମୀରଣ,
ସ୍ୱରାଜ୍ୟ-ଅଙ୍କୁର କ୍ରମେ ହେଉ କଳ୍ପତରୁ,
ଭାରତ ଅଭୀଷ୍ଟ ଶାଖା ଫୁଲ ଫଳ ଧରୁ,
ଭାରତ ପ୍ରଭାବେ ହେଉ ସାର୍ଥ ଋଷି ବାଣୀ
ମଧୁମୟ ଭାବେ ମତ୍ତ ହେଉ ବିଶ୍ୱ ପ୍ରାଣୀ ।

